## ଦକ୍ଷିଣୀ ବା ଦାଣ୍ଡୀ ରାମାୟଣ

# କିଷ୍କିନ୍ଧ୍ୟାକାଣ୍ଡ



ଜୟ ଜୟ ଜଗନ୍ନାଥ ଜଗତ ବିଳାସ
ସକଳ ଜୀବ ହୃଦରେ କରିଅଛ ବାସ ।
ଦେବଙ୍କର ମୋକ୍ଷଦାତା ଜନ୍ତୁଙ୍କ ଜୀବନ
ତୋହର ରଖିବାରେ ଅଛନ୍ତି ସର୍ବଜନ ।
ସଂସାର କର ଦେବ କରୁଣା ସାଗର
ବେଦପୁରାଣେ ନାମ ତୋର ଅଟେ ତହୁଁ ସାର
ଉକୁଟିଲା ପଦ୍ମ ଜାଣି ଶରୀର ଦିବ୍ୟ ତେଜ
ନୟନ ବେନି ଅଟେ ଯେସନେ ଚନ୍ଦ୍ରସୂର୍ଯ୍ୟ ।
ପିଙ୍ଗଳ କେଶ ତୋର ସୁବର୍ଣ୍ଣ ଜ୍ୟୋତି କାନ୍ତି
ଶିରରେ କୀରୀଟି ଶୋହେ ବିବିଧମଣି ଗୋଟି ।
ଲଲାଟେ କସ୍ତୁରୀ ଚିତା ଚନ୍ଦନ ତିଳକ
ତିଳପୁଷ୍ପ ନିନ୍ଦଇ ତୁମ୍ଭର ନାସା ରେଖ ।
ଡାଳିମ୍ବ କୁସୁମ ଜାଣି ଅଧର ଦିଶେ ରଙ୍ଗ
ଶ୍ୟାମଳ ବର୍ଣ୍ଣ ଗୋଟି ଶ୍ରୀଅଙ୍ଗେ ଅପାଙ୍ଗ
ରଙ୍ଗବସ୍ତ୍ର ପରିହର ଶ୍ୱେତ ପୁଷ୍ପମାଳ
ଏକମୁଖୀ ରୁଦ୍ରାକ୍ଷ ଗଳାରେ ଢଳଢଳ ।
ବାମକରେ ଅଗ୍ନି ତୋର ଦକ୍ଷିଣ କରେ ଜପାମାଳି
କଳାମେଘେ ବିରାଜଇ ଯେସନେ ବିଜୁଳୀ ।
ପ୍ରସନ୍ନବଦନ ତୋର ବିରାଜେ ସୁନ୍ଦର ଜ୍ୟୋତି
ଜୟ ବୈଶ୍ୱାନର ତୋତେ ସୁମରେ ସୁରପତି ।
ଦୋହରା ବୋଲି ତୋତେ କହିଲେ ବିପ୍ରବର
ଅଗ୍ନି ତୁ କୋପ ନ କର ଶାନ୍ତି କର ତୋ ଶରୀର ।
ଦେବାସୁର ନର ଭଜନ୍ତି ଯେ ଗନ୍ଧର୍ବ
ଆଶ୍ୱାସନା କର ଏ ସଂସାର ସାର ଦ୍ରବ୍ୟ ।
ଈଶ୍ୱର ପୁଅ ତୋତେ ରଖିଛି ହୃଦଗତେ
ମହାନୀଳ ବୋଲାଉ ବଡ଼ବା ତୋର ଗାତ୍ରେ ।
ବଳବନ୍ତ ହୃଦଗତ ବୁଦ୍ଧିବନ୍ତ ହୋନ୍ତି
ଯେବଣ ନରେ ନିତ୍ୟେ ତୋତେ ଯେ ସେବନ୍ତି ।
ତେଣୁ ସେ ସଂସାରେ ଯେ ତୋତେ ସେବାକରନ୍ତି
ତୁ ଦେବ ଅନନ୍ତ ମୂର୍ତ୍ତି ଜଗତ କରୁ ସ୍ଥିତି ।
ଋଷ୍ୟଶୃଙ୍ଗମୁନି ଯେ ତୋତେ ସେବାକଲେ
ପୂର୍ଣ୍ଣାହୁତି ବେଳେ ତୋତେ ସେ ଦେଖିଲେ ।
ତେଣୁ ସେ ଦଶରଥ ପାଇଲା ପୁତ୍ରଗତି
ତୁ ତହୁଁ ଅନ୍ନ ଗୃହ କଲ ଯେ ତେଜମୂର୍ତ୍ତି ।
ଗଦାଧର ଶୂଳପାଣି ଗରୁଡ଼ ଶରୀର
ଊର୍ଦ୍ଧ୍ୱମୁଖ ଅଟୁ ତୁ ଯେ ବିକଟ ଭୟଙ୍କର ।
ସକଳ ପାପ ହରନ୍ତି ବିପ୍ରଜନ ଗୁରୁ
କରୁଣାସାଗର ତୁ ଯେ ଧରିଣ ପାରୁ ମେରୁ ।
ମୁହିଁ **ବଳରାମ ଦାସ** ଅଟେ ଶ୍ରୀହରିର ଦାସ
ତୁ ମୋତେ ରକ୍ଷାକର କମଳା ବିଳାସ ।
ଏ ମୋହର ପାପ ଯେ ସକଳ କର କ୍ଷୟେ
ଦହନ କଲେ ମୋର କଷ୍ଟ ଅକ୍ଷୟେ ପ୍ରାୟେ ।
ତୋହର କୃପାରେ ବୁଦ୍ଧି ହେଉ ମୋ ପ୍ରକାଶ
ରାମାୟଣ ଗ୍ରନ୍ଥ ମୋର ସମ୍ପୂର୍ଣ୍ଣରେ ଆଶ ।
ସୁଦୟା ନକଲେ ମୋର ଗ୍ରନ୍ଥ ନୁହେଁ ଭଣି
ତେଣୁ ମୁଁ ପ୍ରାର୍ଥନା କରଇ ତୋତେ ପୁଣି ।
ଆବର କଥାଏ ମୋତେ ପ୍ରସନ୍ନ ହୋଇ ତହିଁ
ଏ ତୋହର ସୁଦୟାରେ ତେଜ ମୋ ହେଉ ଦେହୀ ।
ନୀଳଗିରି ଜଗନ୍ନାଥଙ୍କ ଅଟଇ ମୁଁ ଦାସ
ତୁ ମୋତେ ଦୟାକର କଶ୍ୟପର ସୁତ ।
ତ୍ରୈଲୋକ୍ୟ ସଂସାରରେ ତୁହି ସେ ବଳରାମ
ଜୟ ଜୟ ଅଗ୍ନିତୋର ହିରଣ୍ୟ ବାହନ ।
ଜଗତ ରକ୍ଷଣ ପୁଣି ତୋହର ହୁଅଇ
ତୁହି ସେ ଦେବ ବଡ଼ ସଂସାରରେ ସାଇଁ ।
ଶ୍ରୀହରିର ପାଶରେ ଅବିଚ୍ଛିନ୍ନରେ ଦାସ
ସୁଦରଶନ ଚକ୍ର ଯେ ତୋହର ତେଜସ ।
ତେଣୁ ତୋ ଚରଣରେ ମୋହର ଭରସା
ତୁହୋ ବୈଶ୍ୱାନର ମୋତେ ନ କର ନିରାଶା ।
ପୂର୍ବ ଦକ୍ଷିଣ ମହୋଦଧିରେ ତୋର ଘର
ଦ୍ୟୁତିମୟେ କଟକ ସକଳ ଗୁଣେ ସାର୍ ।
କାଳେ କାଳେ ଧର୍ମରେ ଆତଯାତ ତୁହି
ଦେବଙ୍କର ହିତକାରୀ ବ୍ରହ୍ମାର ବୋଲେ ରହି ।
**ବଳରାମ ଦାସ** ମୁଁ ଯେ ପ୍ରାର୍ଥନା କରେ ତୋତେ
ନିଜ ତେଜ ଘେନି ସ୍ୱାମୀ ସୁଦୟା କରମୋତେ ।

ବନ୍ଦଇ ନୟନୀ ଋଷିର ପାଦଗତେ
ଭବଜଳ ମଧ୍ୟରୁ ଉଦ୍ଧରି ଧର ମୋତେ
ସେ ଋଷିର ପରିମଳ ତିନିକାଣ୍ଡ ଗ୍ରନ୍ଥ
ସେ ଋଷିର ଚରଣେ ଲୁଟୁ ଯେ ମୋର ମାଥ ।
ପାର୍ବତୀ ପଚାରିଲେ ଶୁଣ ହେ ବିଶ୍ୱନାଥ
ଜାମ୍ବୁବୃକ୍ଷ ତଳେ ରହିଲେ ସୀତାକାନ୍ତ ।
ସେଠାରୁ କିସ କଲେ କହ ହେ ତ୍ରିଲୋଚନ
ଶୁଣିବାକୁ ଶରଧା ମୋ ଅଟଇ ମନ ।
ଶୁଣିଣ ଈଶ୍ୱର ଯେ ହରଷ ହୋଇଲେ
ଶୁଣସି ଗୋ ପର୍ବତୀ ବୋଲିଣ କହିଲେ ।
ଜାନକୀଙ୍କୁ ରାବଣ ନେଲା ଦିନୁ ପୁଣ
ଅତି ଦୁଃଖେ ରାମ ଲକ୍ଷ୍ମଣ ବୁଲନ୍ତି ବନ ।
କ୍ଷୁଧା ତୃଷା ନିବାରଣ ନୁହଇ ହୃଦୟରୁ
ଭାଳନ୍ତି ବେନି ଭାଇ ଯେସନେ ଗରୁ ମେରୁ ।
ଅରଣ୍ୟ ଭିତରେ ଯେ ବେନି ପୁରୁଷ ବୁଲି
ଶବରଣୀ ମଢ଼ିଆରେ କ୍ଷୁଧାଦି ଯେ ହରି ।
ଗୋପାଳ ଗୋଷ୍ଠରେ ଦିନେକ ତୃଷା ହରି
ପମ୍ପା ସରୋବରେ ଯେ ଜଳପାନ କରି ।
ଋଷ୍ୟମୂକ ପର୍ବତ ତଳରେ ଯାଇ ପୁଣ
ଜାମୁଗଛ ମୂଳରେ ବିଶ୍ରାମେ ରଘୁରାଣ ।
କୋମଳ ପତ୍ର ଆଣି ଲକ୍ଷ୍ମଣ ଶଯ୍ୟା କଲେ
ଦୁଃଖିତ ହୋଇ ରାମ ସେଥିରେ ବସିଲେ ।
ଜାନକୀ ସୁମରି ରାମ ପଡ଼ିଲେକ ଢଳି
ଲକ୍ଷ୍ମଣ ତୋଳିଧରି ଚେତନା ବେଗ କରି ।
କୋମଳପତ୍ର ଉପରେ ଶୋଇଲେ ରଘୁରାଣ
ବେନି ଘଡ଼ି ବେଳ ଯେ ଅଛନ୍ତି ତହିଁ ପୁଣ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଶୂନ୍ୟରେ ଦେବତାଏ ତାଙ୍କର କଷ୍ଟ ଦେଖି ।
ବିଚାରିଲେ ଏଥର ହୋଇବ ବାଳୀନାଶ
ବାନର ହୋଇକରି ଧର୍ମରେ ଅବିଶ୍ୱାସ ।
ବେଦବର ଈଶ୍ୱରଙ୍କୁ ସୁମରଣା କଲେ
ପରମ ହଂସ ଚଢ଼ିଣ କୃଷ୍ଣପାଣି ମିଳିଲେ ।
ବୃଷଭ ଚଢ଼ିଣ ଯେ ବିଜୟ ତ୍ରିଲୋଚନ
ସୁଧର୍ମା ସଭାରେ ଯେ ମିଳିଲେ ବେନିଜନ ।
କରଯୋଡ଼ି ଦେବତାଏ କହନ୍ତି ଧୀରବାଣୀ
ଜାନକୀଙ୍କୁ ହରିନେବାକୁ କିଂଶପାଣୀ ।
ଅନେକ ଦୁଃଖ ଯେ ପାଇଲେ ଦାଶରଥି
ଆମ୍ଭରି ସକାଶେ ପ୍ରଭୁ ପାଇଲେ ଦୁଃଖ ଅତି ।
ଋଷ୍ୟମୂକ ପର୍ବତ କନ୍ଦରେ ଛନ୍ତି ରହି
ଚିନ୍ତାଭରେ ଶ୍ରୀରାମଙ୍କ ତନୁ ଯେ କ୍ଷୀଣହୋଇ ।

କିଷ୍କିନ୍ଧ୍ୟାରେ ରାଜା ଯେ ଅଟଇ ବାଳୀବୀର
ବଳେ ବଳୀୟାର ଯେ ଗର୍ବିତ ବାନର ।
ସୁଗ୍ରୀବର ଭାରିଯା ଅଟଇ ସାନବୋହୂ
ତାହାକୁ ଧରି ବଳେ ହରିଲାକ ସେହୁ ।
ସାନଭାଇ ସୁଗ୍ରୀବକୁ ପାଶରୁ ଘଉଡିଲା
ପାଣ ପସରାଘେନି ସୁଖରେ ବିଳସିଲା ।
ବେନି ସହସ୍ର ବରଷ ହୋଇଲା ଯେ ପୁଣ
ଅଧର୍ମେ ଆଶ୍ରେ କରି ବଞ୍ଚିଲା ଯେ ଜାଣ ।
ଏବେ ତାର ଦଶା ଯେ ହୋଇଲାକ ପାର
ଶ୍ରୀରାମ ହସ୍ତରେ ଯେ ମରିବ ବାଳୀବର ।
ଏବେ ଯେ ସେ ଠାବକୁ ଜଣେ ପୁଣ ଯାଉ
ସୁଗ୍ରୀବର ପାଶରେ ସକଳ କଥା କହୁ ।
ଶ୍ରୀରାମରେ ବୁଝାଇଣ କହିବ ସର୍ବ ପୁଣ
ଯେଉଁରୂପେ ବାଳୀକି ମାରନ୍ତି ରଘୁରାଣ ।
ଶୁଣିଣ କୃଷ୍ଣପାଣି ନାରଦଙ୍କୁ କହି
ଦେବଙ୍କର କଥା ବାବୁ କର ବେଗ ଯାଇ ।
ଯେଉଁରୂପେ ରଘୁନାଥ ସୁଗ୍ରୀରେ ବିଶ୍ୱାସ
ବାଳୀଙ୍କୁ ଯେଉଁରୂପେ କରନ୍ତି ରାମ ନାଶ ।
ଭାଲୁ ବାନର ଘେନିଣ ଲଙ୍କାକୁ ଯେବେ ଯାଇ
ଚାରି ରାବଣ ଦୈତ୍ୟ ହୋଇବେ ତହିଁ ଦହି ।
ତେବେ ସେ ଦେବତାଙ୍କର ହୋଇବ କାରଣ
ଅସୁର ସେବାରୁ ମୁକତି ହେବେ ପୁଣ ।
ଶୁଣିଣ ନାରଦ ଯେ ଉଠିଣ ତତକ୍ଷଣି
ସାମବେଦ ଉଚ୍ଚାରଣ କଲେକ ମହାମୁନି ।
ମନ ପବନ ଦଣ୍ଡରେ ବିଜୟେ କରିଗଲେ
ବୀଣା ଗୋଟି କରରେ ଧରିଣ ଛନ୍ତି ଭଲେ ।
ଋଷ୍ୟମୁକ ପର୍ବତ ଉପରେ ଯାଇ ମିଳି
ଯେଉଁଠାରେ ସୁଗ୍ରୀବ ଅଛନ୍ତି ବିଜେକରି ।
ସେ ସ୍ଥାନରେ ମୁନି ଯେ ହୋଇଲେ ପରବେଶ
ସୁଗ୍ରୀବର ସାଥିରେ ଅଛନ୍ତି ଜଣ ପାଞ୍ଚ ।
ନଳ ନୀଳ ସୁଷେଣ ଜମ୍ବେବ ହନୁମନ୍ତ
ଏମାନଙ୍କୁ ଘେନି ସୁଗ୍ରୀବ ବସିଛି ଦୁଃଖିତ ।
ଏମନ୍ତ ସମୟେ ତହିଁ ନାରଦ ମିଳେ ଆଗ
ଦେଖିଣ ସୁଗ୍ରୀବର ଉଠିଲୋକ ବେଗ ।
ପାଞ୍ଚଜଣ ଘେନିଣ ଚରଣ ତଳେ ଭେଟି
ଶତେବାର ପରିଯନ୍ତେ ମୂର୍ଦ୍ଧନୀ କଲା ଲୋଟି ।
ସୁବର୍ଣ୍ଣ ଝରୀରେ ନୀଳ ପୂରାଇ ବେଗ ପାଣି
ମୁନିଙ୍କର ଚରଣ ଧୋଇଲା ତତକ୍ଷଣି ।
ଚରଣୁ ଉଦକ ନେଇଣ ସେବା କଲା
ବେନି ସହସ୍ରବରଷେ ସୁଫଳ ଆଜମୋର ହେଲା ।

ଏତେ ବୋଲି ମୁନିଙ୍କି ଆସନ ଦେଲା ଆଣି
ମୃଗ ଛାଲ ଉପରେ ବସିଲେ ମୁନିମଣି ।
କରଯୋଡ଼ି ସୁଗ୍ରୀବର ଆଗରେ ଉଭା ହୋଇ
ଏତେକାଳେ ମୋରଠାରେ ଦୟାହୃଦେ ବହି ।
ସୁଗ୍ରୀବଙ୍କୁ ନାରଦ କହିଲେକ ପୁଣ
ତୋର ପୁରେ ଆଜ ମୁଁ କଲି ଯେ ଗମନ ।
ପଶ୍ଚିମ ଦିଗକୁ ମୁଁ ଯେ ଯାଆନ୍ତେ ପୁଣଶୂନ୍ୟେ
ତୋହର ଦୁଃଖ କଥା ପଡ଼ିଲା ମୋର ମନେ ।
ତେଣୁ କରି ମୁଁ ଯେ ଯୋଗକୁ ସୁମରିଲି
ସୁଫଳ ଦଶା ତୋର ଦେଖିଣ୍ଟା ଅଇଲି ।
ତିନି ଦିନରେ ତୁ ଯେ ପାଇବୁ ଇନ୍ଦ୍ରପଦ
କିଷ୍କିନ୍ଧ୍ୟା କଟକରେ ହୋଇବୁ ନରେନ୍ଦ୍ର ।
ଏତେକାଳେ ଦଶା ଯେ ଲେଉଟିଲା ତୋର
ତିନି ଦିନେ ଭାଇ ତୋର ମରିବ ନିକର ।
ସୁଗ୍ରୀବ ବୋଇଲା ମୋର ମନେ ନାହିଁ ପ୍ରତେ
ତାହାକୁ ମାରିବାକୁ କେହୁ ସେ ସାମରଥେ ।
କାହାକୁ ନ ଡରଇ ବାଳୀ ବଳୀୟାର
ଏ କଥା ମୁନି ସତେ ନାହିଁ ମୋ ମନର ।
ନାରଦ ବୋଇଲେ ତୁ କରିବୁ ଯେବେ ସତ୍ୟ
ଭାଇମଲେ ତୁହି ଯେ ହେବୁ କପିଙ୍କ ନୃପତ୍ୟ
ସୁଗ୍ରୀବର ବୋଇଲା ଶୁଣ ହେ ମୁନିବର
ଦାରା ଶତ୍ରୁ ଅଟଇ ବାଳୀ ଯେ ମୋହର ।
ମୋତେ ବାହାର କରି ରାଜ୍ୟରୁ ପୁଣି ଦେଲା
ମୋର ଘରଣୀକୁ ନେଇ ପୁଣି ସେ ହରିଲା ।
ବେନି ସହସ୍ର ବରଷ ହୋଇଲା ଏବେ ପୁଣ
ଫଳମୂଳ ଖାଇ ମୁଁ ବଞ୍ଚିଲି ଏଥି ଦିନ ।
ନିରନ୍ତରେ ମୋହର ଲୋତକ ଧାର ବହି
ବାଳୀମଲେ ମୋହର ସେ ସୁଖେ ମନ ତ୍ରାହି ।
ତାହାର ଘରଣୀ ତାରାକୁଟି ଯେବେ ମୁହିଁ
ତାକୁ ହରିଲେ ମୋର ମନ ଯେ ସୁଖ ହୋଇ ।
ଏତେ ବୋଲି ସୁଗ୍ରୀବର କରଇ ନିୟମ
ବୈଶ୍ୱାନର ଥାପିଣ ଯେ ସାକ୍ଷୀ କରେ ପୁଣ ।
ବୋଇଲେ ବୈଶ୍ୱାନର ସାକ୍ଷୀ ତୁମେ ମୋର
ବାଳୀ ମଲେ ହୃଦ ଯେବେ ହେବ ମୋ ବିକଳ ।
ତେବେ ମୁଁ ଚଉରାଶି ନର୍କକୁ ଯିବି ଜାଣ
ଏ କଥା ସତ୍ୟ ମୋର ଅଟଇ ପ୍ରମାଣ ।
ତାହାର ଘରଣୀ ଯେ ଅଟଇ ତାରା ସତୀ
ତାହାକୁ ହରିବାକୁ ଅଟଇ ମୋର ମତି ।
ତାହାଠାରେ ଯେବେ ମୁଁ ଧର୍ମ ବିଚାରିବି
କଳପେ ପରିଯନ୍ତେ ସର୍ପ ମୁଁ ହୋଇବି ।

ଏମନ୍ତେ ପ୍ରମାଣ କରିଲାକ ସୁଗ୍ରୀବର
ଶୁଣିଣ ନାରଦ ମୁନି ହସନ୍ତି କରକର ।
ବୋଲନ୍ତି ନାରାୟଣ ଅଟନ୍ତି ଦେବ ରାଜା
ଅସୁର ମାରିବାକୁ ବୈକୁଣ୍ଠ କଲେ ତେଜ୍ୟା ।
ଦେବତାଙ୍କ ଛଳେ ସେ ମାନବରୂପ ଧରି
ମର୍ତ୍ତ୍ୟପୁରେ ଜନମ ଯେ ହୋଇଲେ ଶ୍ରୀହରି ।
ଉତ୍ତର ଦିଗେ ଅଯୋଧ୍ୟା ଦେଶରେ ଯେ ପୁଣ
ଦଶରଥ ଘରେ ଜାତ ହୋଇଲେ ନାରାୟଣ ।
ଶ୍ରୀରାମ ଲକ୍ଷଣ ଭରତ ଶତ୍ରୁଘନ
ଚତୁର୍ଦ୍ଧା ମୂରତି ହୋଇ ଜନମିଲେ ଜାଣ ।
ବାଲ୍ୟକାଳେ ରାମଙ୍କୁ ବିଶ୍ୱାମିତ୍ର ନେଲେ
କଉଶିକେ ନଗ୍ରରେ ଯାଗ ରକ୍ଷା କଲେ ।
ସେ ସ୍ଥାନରେ ବହୁତ ରାକ୍ଷସ କଲେ ନାଶ
ଦେଖିଣ ମୁନିମାନେ ହୋଇଲେ ହରଷ ।
ରାମ ଲକ୍ଷ୍ମଣଙ୍କୁ ନେଇ ମୁନି ସେଠାବରୁ ଗଲେ
ଜାନଭୀ ନଦୀକୂଳେ ପ୍ରବେଶ ହୋଇଲେ ।
ଗଉତମ ମୁନିଙ୍କର ଘରଣୀ ଅହଲ୍ୟା
ସ୍ୱାମୀଙ୍କର ଶାପ୍ୟରେ ପାଷାଣ ହୋଇଥିଲା ।
ବିଶ୍ୱାମିତ୍ର ଦେଖାଇ ଶ୍ରୀରାମଙ୍କୁ କହିଲେ
ଏହି ପାଷାଣରେ ପାଦ ଲଗାଅ ବୋଇଲେ ।
ବିଶ୍ୱାମିତ୍ରଙ୍କ ଠାରୁ ଶୁଣି ରାମ ରାଣ
ପାଷାଣ ଉପରେ ଯେ ଲଗାଇଲେ ଚରଣ ।
ତତକ୍ଷଣେ ପାଷାଣ ନାରୀ ରୂପ ଧରି
ବିଶ୍ୱାମିତ୍ରଙ୍କ ଚରଣେ ଓଳଗି ଯାଇକରି ।
ମେଲାଣି ମାଗିକରି ସ୍ୱାମୀ ପାଶେ ଗଲା
ଯାଇଁଣ ଗଉତମ ଋଷିଙ୍କି ଭେଟିଲା ।
ଦେଖିଣ ଗଉତମ ପରମ ତୋଷ ହେଲେ
ପୂର୍ବର କଥାକୁ ମନରେ ବିଚାରିଲେ ।
ସେଠାରୁ ରାମ ଲକ୍ଷ୍ମଣ ବିଶ୍ୱାମିତ୍ର ତିନି
ମିଥିଳା ନଗ୍ରେ ପ୍ରବେଶ ହୋଇଲେକ ପୁଣି ।
ଜନକ ଋଷି ଘରେ ଜନମ ନାରାୟଣୀ
ଯୋଗବଳେ ତାହା ବିଶ୍ୱାମିତ୍ର ଜାଣି ।
ଅଯୋନି ସମ୍ଭୁତ ସେ ଜନମ ଜଗତ୍‌ମାତା
ଜନକ ଋଷି ଯେ ଅଟନ୍ତି ତାଙ୍କ ପିତା ।
ସେ ଋଷି ଜନମ ବେଳେ କରିଛି ପ୍ରମାଣ
ଶିବ ଧନୁ ଯେ ଭାଙ୍ଗିବ ଦୁହିତା ନେବ ଜାଣ ।
ଶ୍ରୀରାମ ଶିବଧନୁ ଆମଞ୍ଚି ଭାଙ୍ଗି ଦେଲେ
ଜନକ ଦୁହିତାଙ୍କୁ ବିଭା ତହିଁ ହେଲେ ।
ଜାନକୀ ଘେନି ରାମ ଅଯୋଧ୍ୟା ପ୍ରବେଶ
ସେଠାରେ ରହିଲେ ବେନି ଯେ ବରଷ ।

ରାଜା କରିବାକୁ ଦଶରଥ ବିଚାରିଲେ
ଦେବତାଏ ଜାଣିଣ କପଟ ପାଞ୍ଚିଲେ ।
ଖଳ ପେଶି କୈକୟୀ ହୃଦରେ ମାୟାବଳେ
କୈକୟୀ ଦଶରଥଙ୍କୁ ସତ୍ୟ କରାଇଲେ ।
ବୋଇଲେ ମୋ ପୁତ୍ର ଭରତ ରାଜା ହେବ
ଚଉଦ ବରଷ ରାମ କାନନକୁ ଯିବ ।
ଶୁଣିଣ ଦଶରଥ ଶ୍ରୀରାମଙ୍କୁ କହି
ଚଉଦ ଯେ ବରଷ ବନକୁ ଯାଅ ତୁହି ।
ଶୁଣିଣ ଶ୍ରୀରାମ ବନକୁ ଚଳିଗଲେ
ଭାରିଯା ଭାଇ ପୁଣ ସଙ୍ଗତରେ ଗଲେ ।
ଅନେକ ଅସୁର ବନରେ ମାରିଣ
ପଞ୍ଚବଟୀ ବନରେ ରହିଲେ ରଘୁରାଣ ।
ରାବଣର ଭଉଣୀ ସୂର୍ପଣଖା ଗଲା
ପଞ୍ଚବଟୀ ବନରେ ତାହାଙ୍କୁ ଠାବ କଲା ।
ଖର ଦୂଷଣ ତ୍ରିଶିରାକୁ କହିଲା ଆସି ପୁଣ
ପୁଣି ଅସୁର ବଳ ଯୁଦ୍ଧ କଲେ ଜାଣ ।
ଚଉଦ ସହସ୍ର ବଳ ସମସ୍ତେ ଗଲେ ନାଶ
ସୂର୍ପଣଖା ଲଙ୍କାରେ ହୋଇଲା ପ୍ରବେଶ ।
ରାବଣ ଆଗରେ ବୁଝାଇ କହିଲା
ତହୁଁ ସେ ରାବଣ ବହନ ଚଳିଲା ।
ମାୟା ମୃଗ ନେଇଣ ସେଠାରେ ଦେଖାଇଲା
ଭ୍ରମରେ ରାମ ତାକୁ ମାରିବାକୁ ଗଲା ।
ମାୟାରାବ ଶୁଣିଣ ଗଲେକ ଲକ୍ଷ୍ମଣ
ବେନି ଭାଇ ଯିବାରୁ ଆସିଲା ରାବଣ ।
ଜାନକୀଙ୍କି କହିଲା ବହୁତ ଦୁଷ୍ଟବାଣୀ
ବୋଇଲା ଅସୁରକୁଳେ ଅଟେ ମୁଁ ଚୂଡାମଣି ।
ମୋହର ଘରଣୀ ହୋଇବୁ ଚାଲ ବେଗେ
ନୋହିଲେ ତୋତେ ମୁହିଁ ବଧିବଇଁ ରାଗେ ।
ଶୁଣିଣ ଜାନକୀ ମନରେ କ୍ରୋଧ ହେଲା
ଦାବାଗ୍ନି ଅନଳ ତାଙ୍କ ଶରୀରେ ବ୍ୟାପିଲା ।
ତେଣୁ ସେ ଦଶାନନ ନ ପାରି ଭରସି
କରବାଳ ଘେନିଣ ଦେବୀଙ୍କି ସେ ତ୍ରାସି ।
ଗର୍ଜନ ତର୍ଜନ କରନ୍ତେ ଅସୁର
ଅସୁର ଗର୍ଜନରେ ଜାନକୀ ଅସ୍ଥିର ।
ସୀତୟା ବୋଇଲେ ଶୁଣରେ ରାବଣ
ତୋରପୁରକୁ ମୁଁ ଗଲେ ହେବୁ ନିଧନ ।
ବନ୍ଧୁପୁତ୍ର ନାତି ଭାଇ କେହି ନ ରହିବେ
ତୋହର ସହିତରେ ଯମପୁର ଯିବେ ।
ରାବଣ ବୋଇଲା ମୋ ସେ କଥା ଅଛି ଲୋଡା
ଦେବତାମାନେ ମୋର ବଶ୍ୟବୃତ୍ତିରେ ଛିଡା ।

ଯେତେକ ବଳବନ୍ତ ତିନିପୁରେଛନ୍ତି
ବିଶ୍ରବା ନନ୍ଦନକୁ ସମ କେ ନୁହନ୍ତି ।
ତୋର ସ୍ୱାମୀ ଦେବର ଅଟନ୍ତି ମାନବ
ମୋତେ କିସ କହିବେ ଚଳ ତୁହି ଯବ ।
ଶୁଣିଣ ଜାନକୀ ବେଗେ ଚଳିଗଲେ
କେ ତୋତେ ରଖିବ ଜାନକୀ କହିଲେ ।
ପୁଷ୍ପକ ବିମାନ ଉପରେ ଯାଇ ବସି
ତେଜ ଦେଖି ରାବଣ ନପାରେ ଭରସି ।
ସାରଥିପଣେ ବୀର ବାହିଲା ତଳପୀଢ଼େ
ଉପରେ ଥାଇ ଜାନକୀ ବସିଲା ନିବିଡେ ।
ତୁମ୍ଭ ଛଅଜଣଙ୍କୁ ଏ ପର୍ବତରେ ଦେଖି
ଅମଳାଣ ଶାଢ଼ୀରେ ଗହଣା ବାନ୍ଧି ରଖି ।
ବାରତା କହିବାକୁ କହିଣ ପିଙ୍ଗ ଦେଲେ
ସେ ଅଳଙ୍କାରକୁ ତୁମ୍ଭେ ରଖିଅଛ ଭଲେ ।
ସେଠାରୁ ରାବଣ ରଥ ବାହି ନେଲା
ଲଙ୍କାଗଡ ଭିତରେ ଯାଇଣ ପଶିଲା ।
ଅଶୋକ ବନରେ ରଖିଲା ରାମନାରୀ
ଅସୁରୁଣୀ ଜଗାଇ ନିଜପୁରେ ଚଳି ।
ଏ ବଚନ ଶୁଣିଣ ବୋଇଲା ସୁଗ୍ରୀବର
ନିଜ ନବରେ କିମ୍ପା ନନେଲା ଦୈତ୍ୟବୀର ।
ଆୟତ ଲୋକକୁ କିମ୍ପା ବନସ୍ତରେ ଥୋଇ
ଏ କଥା ମୁନିବର କହ ହେ ବୁଝାଇ ।
ନାରଦ ବୋଇଲେ ଶୁଣ ରବିସୁତ
ଜାନକୀ କୋପାନଳ ଅଟେ ଅଗ୍ନିବତ ।
ପ୍ରଳୟ ଅଗ୍ନିପ୍ରାୟେ ରାବଣକୁ ଦିଶି
ତେଜ ଦେଖି ରାବଣ ଭୟରେ ମନେ ତ୍ରାସି ।
ବିଚାରିଲା ମୁଁ ଯେବେ ନେବି ଏ ବଇଦେହୀ
ନିଶ୍ଚୟ ଲଙ୍କାଗଡ ପକାଇବ ଦହି ।
ପୁର୍ବରେ ବେଦବର କହିଅଛି ମୋତେ
ସୀତା ହରିଲେ ଦୈତ୍ୟ ମରିବୁ ନିୟତେ ।
ଯେତେବେଳେ ଯାଗ ମୁଁ କରିଲି ବସିକରି
ମୋଡ଼ିଣ ମୁଁ ମୁଣ୍ଡମାଳ ଅଗ୍ନିରେ ଦେଲିଜାଳି
ଦେଖିଲି ମୁଣ୍ଡରେ ଲେଖାଅଛି ଜାଣ ।
ରାମରାଣୀ ହରିଲେ ଲଭିବୁ ମରଣ ।
ସେ କଥାକୁ ମନରେ ଚେତିଣ ରାବଣ
ଅଶୋକ ବନରେ ସେ ରଖିଲାକ ଜାଣ ।
ସୁଗ୍ରୀବର ବୋଇଲା ଏକଥା ଯେବେ ଜାଣ
ସତୀକି କେଉଁଲାଗି ଆଣିଲା ଅକାରଣ ।
ଜାଣୁ ଜାଣୁ ଆପଣା ମୃତ୍ୟୁକୁ ଲୋଡ଼ି ବସି
କିମ୍ପାଇ ଦଶଶିର ଆଣିଲା ଭରସି ।

ନାରଦ ବୋଇଲେ ହୋଇଲା ଦେବକୁଟ
ଦେବତାଙ୍କୁ ରାବଣଦେଲା ବହୁ କଷ୍ଟ ।
ନର ଦେବ ଗୋ ବ୍ରାହ୍ମଣ ସବୁରୀ ଅଟେ ସଲ
ତେଣୁକରି ତାହାର ନ ରହଇ ତୁଲ୍ୟ ।
ତେଜମୂର୍ତ୍ତି ଦେଖିବାରୁ ପୂର୍ବକଥା ଜାଣି
ବନସ୍ତରେ ରଖିଲା ରାମଙ୍କ ଘରଣୀ ।
ସୁଗ୍ରୀବର ବୋଇଲା ସେ ଜାଣୁ ଜାଣୁ ମଲା
ଲଙ୍କାଗଡ଼ ଶ୍ରୀହରିଙ୍କି ଦୂର କି ହେବ ଭଲା ।
ଯାହାର ଗର୍ଭରେ ଅଶେଷ ବ୍ରହ୍ମାଣ୍ଡ
ଲଙ୍କାଗଡ଼ ଅଛିନିକି ଅଗ୍ର ହୋଇ ଖଣ୍ଡ ।
ଦେବଙ୍କର କୂଟ ସେ ଜାଣି ନ ପାରିଲା
ମରିବାବେଳକୁ ବୁଦ୍ଧି ହରାଇଲା ।
ନାରଦ ବୋଇଲେ ସେ ମରିବ ନିୟତ
ତାହାରି ପାଇଁ ଜାତ ହୋଇଲେ ରଘୁନାଥ ।
ସୁଗ୍ରୀବର ବୋଇଲା ଜାନକୀ ଘେନିଗଲା
ତେଜମୂର୍ତ୍ତି ଦେଖିଣ ଅଲଗା ରହିଲା ।
ସେଠାରୁ ଲକ୍ଷ୍ମଣ ଶ୍ରୀରାମ ବେନିଭାଇ
କିସ କଲେ ମୋତେ କହହେ ମୁନି ବୁଝାଇ ।
ନାରଦ ବୋଇଲେ ଶୁଣ ସୁଗ୍ରୀବର
ମୃଗ ମାରିଣ ବେଗେ ଲେଉଟେ ରାମ ବୀର ।
ବାଟରେ ଲକ୍ଷ୍ମଣକୁ ପାଇଲେ ସେ ଭେଟ
ମଉନ ହୋଇ ଦେବ ଅଇଲେ ରଘୁଚାଟ ।
ପୂର୍ଣ୍ଣ କୁଟୀରେକ ଆସି ପ୍ରବେଶ ହୋଇଲେ
ଜାନକୀକୁ ନ ଦେଖିଣ ରାମ ବିଳପିଲେ ।
ଚତୁଃ ପାରୁଶରେ ଖୋଜିଲେକ ବନଲତା
ଜଟାୟୁଣ ମୁଖରୁ ପାଇଲେ ବାରତା ।
ନିଶାଖୀ ହେବାରୁ ଅଇଲା ଶାଖା ଖୋଜି
ପମ୍ପା ସରୋବରେ ଭକ୍ଷିଲେ ଜଳ ହେଜି ।
ଏ ପର୍ବତ ତଳରେ ଅଛଇ ଜାମୁଗଛ
ସେ ବୃକ୍ଷମୂଳରେ ଅଛନ୍ତି ରଘୁବତ୍ସ ।
ବାଳୀ ମରିବାର ନିୟତ କାଳ ହେଲା
ଦେବକୂଟ ଦଇବ ଲେଖନ କରିଲା ।
ତୋହର ଦୟା ଆସି ହୋଇଲାକ ସାର
ପରମ ବ୍ରହ୍ମମୂର୍ତ୍ତି ତୁ ଦରଶନ କର ।
ଶ୍ରୀରାମ ଚରଣେ ଦିଅ ମନବୃତ୍ତି
ତେବେ ତୁ କିଷିନ୍ଧ୍ୟାରେ ହୋଇବୁ ନୃପତି ।
ଦାଶରଥି ସଙ୍ଗତରେ ମଇତ୍ର ହୁଅ ତୁହି
ମୈତ୍ର ଛଳେ ବାଳୀକି ମାରିବେ ରଘୁସାଇଁ ।
ଶ୍ରୀରାମର କାର୍ଯ୍ୟ ତୁ କରିବୁ ସୁଗ୍ରୀବର
ବାନର ଭାଲୁ ଘେନି ଯିବୁ ତାଙ୍କ ସଙ୍ଗର ।
ଦନୁଜ ମାରି ଚାରି ରାବଣ ନାଶକରି
ତିନିପୁରେ ଯଶ ତୁ ପାଇବୁ ଦେବ ପରି ।
ସେ ରଘୁନାଥ ତୋତେ କରିବେ ସୁଦୟା
ତାଙ୍କ ସଙ୍ଗେ ବୈକୁଣ୍ଠ ଯିବୁ ନ ହେବ ତୋତେ ମାୟା ।
ଏତେ କହି ନାରଦ ସେଠାରୁ ଚଳିଗଲେ
ଶ୍ରୀରାମଙ୍କ ପାଶରେ ପ୍ରବେଶ ହୋଇଲେ ।
ଦେଖିଣ ବେନି ଭାଇ ଉଠିଲେ ଆସନୁ
ନାରଦଙ୍କୁ ନମସ୍କାର ହେଲେ ରଘୁସୁନୁ ।
କୋମଳ ପତ୍ରଗୁଡ଼ିଏ ଲକ୍ଷ୍ମଣ ଆଣିଦେଲେ
ସେଥିଉପରେ ନାରଦ ମହର୍ଷି ବସିଲେ ।
ଶ୍ରୀରାମ ପୁଚ୍ଛାକଲେ ଶୁଣ ହେ ମୁନିବର
କେଉଁସ୍ଥାନେ ବିଜେକଲେ କୁହ ମୋ ଆଗର ।
ନାରଦ କହିଲେ ଶୁଣ ହେ ରଘୁନାଥ
ପଶ୍ଚିମଦିଗେ ମୁଁ ଗଲି ଶୂନ୍ୟପଥ ।
ଅସ୍ତଗିରି ଶିଖରେ ପରବେଶ ହେଲି
ସେ ଗିରିପରେ ମୁଁ ଯେ ଦେବୀଏ ଦେଖିଲି ।
ମଉନ ହୋଇ ଦେବୀ ବସିଛି ଗିରିବର
ମୋତେ ଦେଖି ନମିଲା ଚରଣେ ମୋହର ।
ବୋଇଲା ଭୋ ମୁନି ଶୁଣ ମୋହର ବଚନ
ଅସୁରଙ୍କ ଭୟରେ ନ ସରେ ମୋର ଦିନ ।
ପାତାଳପୁରେ ଅସୁର ଉପଦ୍ରବ ବଡ଼
ମର୍ତ୍ତ୍ୟପୁରରେ ଅଟନ୍ତି ଚାରିରାବଣ ବଡଗାଢ଼ ।
ଏମାନଙ୍କୁ କିମ୍ପାଇ ନ ମାରେ ଚକ୍ରଧର
ନାଗଦେବତାଙ୍କୁ ମହୀ ହେଲା ଅସମ୍ଭାଳ ।
ମଣ୍ଡୁକୀର କଥା ଯେ ଭାରି କଲା ଆସି
କୂର୍ମ ପୃଷ୍ଠରେ ଭରା ସକଳେ ଯାଇଁ ବସି ।
ମୁଁ ବୋଇଲି ଅଳପ ଦିନରେ ଦୈତ୍ୟନାଶ
ଶୟନ ବାସୁଦେବ ମାରିବେ ଅବଶ୍ୟ ।
ଏତେକହି ସ୍ୱର୍ଗକୁ କଲି ମୁଁ ଗମନ
ଏଠାରେ ତୁମ୍ଭଙ୍କୁ ଦେଖିଣ ରଘୁରାଣ ।
ଶ୍ରୀରାମ ବୋଇଲେ ମୋର ଦୁଃଖ ଦେଖ ମୁନି
ରାଜାର କୁମର ହୋଇ ନ ସରେ ଦିନ ପୁଣି ।
ରାଜ୍ୟ ପାଇଥିଲେ ମୁଁ ହୋଇଥାନ୍ତି ରାଜନ
ଦଇବ ଲେଖନ ଯାହା କେ କରିବ ଆନ ।
ଦଣ୍ଡ ସିଂହାସନ ନଦେଇ ବନକୁ ପେଷିଲେ
ବନରେ କେତେ କଷ୍ଟ କି କହିବି ଭଲେ ।
ବନକୁ ଆସିବାରେ ବାରଦିନ ମୋର
ପିତା ନାଶଯିବା କଥା ପାଇଲି ନିକର ।
ଭାଇ ଭାର୍ଯ୍ୟା ଘେନି ବନେ ବଞ୍ଚିଲି ମୁଁ ଜାଣ
ତେରବର୍ଷ ବେନିମାସ ଏଥିରେ ଗଲା ଦିନ ।

ଦଶମାସ ଅଛି ଯେ ପୂରିଲେ ଯା଼ନ୍ତି ଘର
କେହୁ ଘେନିଗଲା ଭାର୍ଯ୍ୟାକୁ ମୋହର ।
ଖୋଜିଣ ବନ ଜୀବମାନଙ୍କୁ ପଚାରିଲି
କେ ବୋଲଇ ରାବଣ ନେଲା ଲଙ୍କା ପୁରି ।
କେ ବୋଲଇ ରଥରେ ବସିଣ ଯାଉଥିଲା
କେ ବୋଲଇ ଶୂନ୍ୟରେ ରୋଦନ କରୁଥିଲା ।
ଏ ଭାଷାମାନ ଶୁଣି ବେନି ପକ୍ଷ ବୁଲି
ଏଠାରେ ସରୋବର ଆସିଣ ଦେଖିଲି ।

✤ ✤ ✤

ଏଥୁ ଅନନ୍ତରେ ଶୁଣ ଗୋ ଦେବୀ ଉମା
ନଳପାଶେ ପ୍ରବେଶ କଲେକ ଦେବ ସିନା ।
ନଳକୁ ବୋଇଲେ ଉଠରେ ବାବୁ ବେଗ
ପୂର୍ବର ଅଭିଶାପ ହୋଇଲା ଏବେ ଭୋଗ ।
ମୁହି ଯେ ନାରାୟଣ ଅବତାର ହେଲି
ଅସୁର ମାରିବାକୁ ବନରେ ବୁଲିଲି ।
କମଳା ମୋର ଜାତ ସୀତାରୂପେ ଜାଣ
ମୋର ନାମ ଶ୍ରୀରାମ ତୁ ହେତୁକର ପୁଣ ।
ମୋହର ଘରଣୀକୁ ରାବଣ ଘେନିଗଲା
ଲଙ୍କାଗଡ଼ରେ ନେଇ ବନ୍ଦିରେ ରଖିଲା
ତେଣୁ ଯେ କୋପାନଳ ମୋହର ଶରୀର
ଦାରା ବଇରୀ ମୁଁ ଯେ ମାରିବି ନିକର ।
ତୁ ମୋତେ ଉପକାରୀ ହୋଇବୁ ଯେ ପୁଣ
ତୋହ ହେତୁ ବାଣରେ ବଧ ହେବ ଜାଣ ।
ତୁ ଛୁଇଁଲେ ପଥର ନ ବୁଡ଼ିବ ଜଳେ
ସମୁଦ୍ରେ ସେତୁବନ୍ଧ ବାନ୍ଧିବି ମୁଁ ହେଳେ ।
ତେବେ ସେ ଚାରି ରାବଣ ମାରିବି ନିକର
ଦେବଙ୍କର ଶଲ ଯେ ଦାରାଶତୃ ମୋର ।
ବେନି ଶତ ସିଂହର ବଳ ଏବେ ପାଅ
ମୋହର ଚରଣରେ ଚିତ୍ତବୃତ୍ତି ଦିଅ ।
ଏତେ ବୋଲି ନାରାୟଣ ଅନ୍ତର୍ଦ୍ଧାନ ହେଲେ
ସ୍ୱପନ ଚେତିଣ ନଳ ଯେ ଉଠିଲେ ।
ନାରାୟଣ ସୁମରି ଅନ୍ତର୍ଗତେ ଭାଳି
ବାହା ନାଦ କରଇ ବେନି ଭୁଜ ତୋଳି ।
ନାରାୟଣ ଚରଣେ ନମସ୍କାର କଲା
ଶତେବାର ପରିଯନ୍ତେ ଭୂମିରେ ଓଳଗିଲା ।
ସୁଗ୍ରୀବକୁ ଚାହିଁଣ କହଇ ବଚନ
ତୋହରସୁଫଳ ଦିନ ପ୍ରବେଶ ହେଲା ଜାଣ ।
ବାସୁଦେବ ଶ୍ରୀରାମ ରୂପେ ଜାତ ହୋଇ
ଏ ପର୍ବତ ତଳେ ଅଛନ୍ତି ଯେ ରହି ।
ତାଙ୍କର ଘରଣୀକୁ ରାବଣ ଘେନିଗଲା
ଲଙ୍କାଗଡ଼ରେ ନେଇ ଗୁପତେ ରଖିଲା ।

ସେଥିର ନିମନ୍ତେ ଗୁରୁ କ୍ରୋଧ ରାମ
ବାଳୀକି ମାରି ତୋତେ କରିବେ ରାଜନ ।
ଏମନ୍ତ ବଚନ ନଳ ପ୍ରକାଶିଲା
ଗଡୁଁ ଶତେ ଗୁଣରେ ତା ରୂପ ପ୍ରକଶିଲା ।
ପାର୍ବତୀ ବୋଇଲେ ଶୁଣ ତ୍ରିଲୋଚନ
ସେଠାରୁ କିସ ହେଲା କହ ହେ ବହନ ।
କିଷ୍କନ୍ଧ୍ୟାରେ ବାଳୀ ଯେ ବାନରେଶ୍ୱର ରାଜା
ସକଳ ଭାଲୁ ବାନର କରନ୍ତି ତାକୁ ପୂଜା ।
ନିୟତ କାଳ ତାର ହୋଇଲା ଏବେ ଆସି
ଦୁର୍ଯ୍ୟୋଗ କଥା ସେ ଯେ ଆଗରୁ ଅର୍ଜିଛି ।
ଈଶ୍ୱର ବୋଇଲେ ଶୁଣ ଶଶୀମୁଖୀ
ତୁ ମୋର ସଙ୍ଗାତୁଣୀ ପରମ ପଦେ ସୁଖୀ ।
ନାରଦଯିବା ରଜନୀରେ ତାକୁ ଯେକାଳଘୋଟି
ରତ୍ନ ପଲ୍ୟଙ୍କ ଉପରେ ଶୟନ କଲା ସେଟି ।
ତାହାର ମନୋହାରୀ ଅଟଇ ତାରା ନାରୀ
ସବୁଦିନେ ଯୁବା ସେ ଅତ୍ୟନ୍ତ ସୁନ୍ଦରୀ ।
ଜଗତ ମୋହିନୀ ଯେ ଅଟଇ ଅବଳା
ମୁନିମାନେ ତାକୁ ଦେଖିଲେ ହୁଅନ୍ତି ଭୋଳା ।
ଦେବତାମାନେ ତାକୁ ବହୁତ ଲୋଭ କରି
ଅସୁରମାନେ ତାକୁ ନେବାକୁ ମନ କରି ।
ବାଳୀ ବଳିୟାର ଭୟରେ ନ ଆସନ୍ତି
ଦେବତାଏ ଡରିଣ କଥା ନ କହନ୍ତି ।
ନର ବାନର ଭୟରେ ନ ଯାନ୍ତି ତାର ସୀମା
ବାନରେଶ୍ୱର ତାର ଏ ରୂପେ ଗାରିମା ।
ଚନ୍ଦ୍ରବଦନୀକି କୋଳେ ଘେନି ବାଳୀ ରାଜା
ବିବିଧ ବିନୋଦେ କରଇ ରତି ମଜା ।
ସେହିଦିନ ବାଳୀ ଦେଖିଲା ସ୍ୱପନ
କାଳପାଶ ଘେନି ଯମ ବସିଛି ସୀମସ୍ଥାନ ।
ରକ୍ତପୁଷ୍ପମାଳା ଗଳାରେ ଆଭରଣ
ମଇଁଷୀ ବାହନରେ ଚଢ଼ିଛି ରାଜନ ।
ଦକ୍ଷିଣ ଦିଗକୁ ସେ ଗମନ କରିଯାଏ
ଆଗରେ କାଳସର୍ପ ଦିଶଇ ତାକୁ ଭୟେ ।
ବେନି ପାଶେ ଶୃଗାଳ କରନ୍ତି ରଡ଼ି ଘୋର
ପଛରେ ଗୃଧ୍ରପକ୍ଷୀ ଗୋଡ଼ାନ୍ତି ଅପାର ।
ଏମନ୍ତ ସ୍ୱପନ ଦେଖିଲାକ ବାଳୀ ରାଜା
ଚେତିଣ ଉଠି ବସିଲା କରି ସବୁ ତେଜ୍ୟା ।
ବିଚାରିଲା ସ୍ୱପନ ଅଟଇ ବିଡ଼ମ୍ବନ
ଶୟନ ସ୍ଥାନେ ଦେଖାଯାଇ ଯେ ଏମାନ ।
ଏମନ୍ତ ବିଚାରି ଚିନ୍ତା କଲାକ ରାଜନ
ତାରା ସଙ୍ଗରେ ରମଣ କରିଲା ସେ ପୁଣ ।

ଦୁର୍ଯ୍ୟୋଗ ବେଳରେ ସୁଯୋଗ ନୁହେଁ ଜାତ
ତେଣୁ ମତ୍ତଗର୍ବ ହୋଇଲା ବାନର ତ ।
ସେହି ରଜନୀରେ ତାରା ସ୍ୱପନ ଯେ ଦେଖି
ରତ୍ନଚୁଡି ନାହିଁ ହସ୍ତେ ହୋଇଛି ନିରୀମାଖି ।
କପାଳରେ ସିନ୍ଦୂର ନୟନେ କଜ୍ଜ୍ୱଳ
ବାହୁଟି ବାଜୁବନ୍ଧ ନାହିଁ ଯେ ହସ୍ତର ।
ପାହୁଡ ନୁପୁର ଗଳା ରତ୍ନହାର ନାହିଁ
ବିଧବା ସ୍ତିରୀଙ୍କ ସଙ୍ଗେ ରୋଦନ କରଇ ।
ଦକ୍ଷିଣ ଦିଗକୁ ଗମନ କରିଯାଏ
ରଙ୍ଗପୁଷ୍ପ ରଙ୍ଗଅଶ୍ୱ ଆଗରେ ଦେଖାଯାଏ ।
ଶୃଗାଳ ଗୋଡ଼ାଚି ଉଲୁକା ଡାକ ଦେଇ
ବେନିପାଶେ ମହିଷୀ ଚରନ୍ତି ଗୋଲ ହୋଇ ।
ଏମନ୍ତ ସ୍ୱପନ ଦେଖିଲା ତାର ନାରୀ
ତତ୍‌କ୍ଷଣେ ନିଦ୍ରା ଭାଙ୍ଗିଲା ତାହାରି ।
ଉଠି ଭାଳଇ ସେ କାଳମାନ ମନେ
ଏମନ୍ତ ସମୟେ ସ୍ୱାମୀ ଧଇଲା ତାକୁ ତେଣେ
ରମଣ ସରନ୍ତେ ବିଚାର କରେ ନାରୀ
ନିଶ୍ଚୟ ଅପଘାତ ପଡ଼ିବ ମୋ ପୁରୀ ।
ଈଶ୍ୱର ବୋଇଲେ ଶୁଣ ଗୋସାମଣି
ଦୁର୍ଯ୍ୟୋଗ ସ୍ୱପନ ଏହାକୁଟି ଜାଣି ।
ପାର୍ବତୀ ବୋଇଲେ କହ ହେ ଈଶାନ
ଶ୍ରୀରାମ ସେ ରାତ୍ରିରେ କଲେକ ଶୟନ ।
ସେ ପୁଣି କି ସ୍ୱପନ ସେ ରାତିରେ ଦେଖି
ସେ କଥା ଶୁଣିଲେ ମୁଁ ହୋଇବି ଯେ ସୁଖୀ ।
ଈଶ୍ୱର ବୋଇଲେ ସେ କଥା ଏବେ ଶୁଣ
ସେ ଦିନ ରଜନୀରେ ନିଦ୍ରା ଗଲେ ରାମ ।
ଶ୍ରୀରାମ ସ୍ୱପନରେ ଦେଖିଲେକ ପୁଣି
ଲଙ୍କାରେ ଚାରିଭାଇ ଲକ୍ଷେ ସୈନ୍ୟ ଘେନି ।
ଅସୁରବଳ ସବୁ ପକାଇଲେ ମାରି
ଚାରିରାବଣ ମାରି ସୀତାଙ୍କୁ ଘେନି ଫେରି ।
ଶ୍ୱେତପୁଷ୍ପ ରଥରେ ବସିଣ ରାମାରାଣ
ଜାନକୀ ଧରି କୋଳେ ବିଜୟ କରି ପୁଣ ।
ଅଯୋଧ୍ୟାରେ ଅଭିଷେକ ଲକ୍ଷେ ଛତ୍ର ଟେକି
ଦେବ୍‌ତାମାନେ ଛାମୁରେ ସ୍ତୁତି କଲେ ସୁଖୀ ।
ବ୍ରହ୍ମା ସଦାଶିବ ଯେ ଧରଣୀ ତୀର୍ଥଜଳ
ମଣିମା ଡାକଦେଇ ଢାଳନ୍ତି ରାମଶିର ।
ମୁନିମାନେ ଆଗରେ ଢ଼ାଳନ୍ତି ଚାମର
ରାଜାମାନେ ବିଞ୍ଚଣୀ ବିଞ୍ଚନ୍ତି ପାର୍ଶ୍ୱର ।
ଅସୁରମାନେ ପଞ୍ଝା ଆଲଟ ଧରି ବିଞ୍ଚୁ
ହରିବୋଲ ଶବଦ ସେଠାରେ ପଡୁଅଛି ।
ରାମତାଳି ଦୁନ୍ଦୁଭି ଶବଦ ହୁଏ ଘୋର
ଜୟ ଜୟ ଶବଦ ଶୁଭଇ ନିରନ୍ତର ।
ଏମନ୍ତ ସ୍ୱପନ ଦେଖିଲେ ରାମ ରାଣ
ଉଠିଣ ସେଠାରେ ବସିଲେ ତତକ୍ଷଣ ।
ବିଚାରିଲେ ମୁହିଁ ଅଟଇ ବାସୁଦେବ
ନିଶ୍ଚୟ ରାବଣ ମୋର ହସ୍ତେ ନାଶ ଯିବ ।
ଏମନ୍ତ ବିଚାରି ସୀତାଙ୍କୁ ସୁମରି
ମନ ପ୍ରାଣ ଧନ ଗୋ ଅନ୍ତର ହେଲୁ ନାରୀ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ଲକ୍ଷ୍ମଣ ସେ ରାତ୍ରରେ ସ୍ୱପନେ ଦେଖିଲେଟି ।
ରତ୍ନସିଂହାସନ ପରେ ବିଜୟ ଶ୍ରୀରାମ
ଭୃଣ୍ଡ ହୋଇଅଛନ୍ତି ତ୍ରିପୁର ନଗ୍ରଜନ ।
ଧବଳ ଛତ୍ରଟେକା ହୋଇଛି ଶିରପର
ଜାନକୀ ବସିଛନ୍ତି ଶ୍ରୀରାମଙ୍କ କୋଳର ।
ଶ୍ୱେତପୁଷ୍ପ ଭୂଷଣ ହୋଇଣ ରଘୁନାଥ
ଚତୁର୍ଭୁଜରେ ଚାରି ଆୟୁଧ ସମ୍ଭୃତ ।
ଶ୍ରୀମୁଖରେ ଆଜ୍ଞା ଦେଲେ ଦାଶରଥି
ତିନି ଭାଇ ରାଜାମୋର ହୁଅନ୍ତି ଏହି ପୃଥ୍ୱୀ ।
ଏମନ୍ତ ସ୍ୱପନ ଦେଖିଲେ ଲକ୍ଷ୍ମଣ
ସ୍ୱପନ ତେଜିଣ ଫେଡିଲେ ଚକ୍ଷୁ ପୁଣ ।
ଭାବିଲେ ନିଶ୍ଚେ ରାମ ଅଟନ୍ତି ନାରାୟଣ
ଅସୁରଙ୍କୁ ମାରିବାକୁ ହୋଇଛନ୍ତି ଜନ୍ମ ।
ଏମନ୍ତ ବିଚାରି ମନରେ ଆନନ୍ଦ
ମୁଖ ବିକାଶଇ ପୂର୍ଣ୍ଣମୀର ଚାନ୍ଦ ।
ପାର୍ବତୀ ବୋଇଲେ ସ୍ୱପ୍ନାନ୍ତେ କି କଲେ
ସେ କଥା ବୁଝାଇ କହ ମୋତେ ଭଲେ ।
ସ୍ନାହାନ ଶଉଚ ସାରିଣ ବେନି ଭାଇ
ଜାମ୍ବୁଗଛ ମୂଳରେ ବିଜୟ କଲେ ଯାଇ ।
ସୁଗ୍ରୀବର ସଙ୍ଗରେ ଉଠିଲେ ପାଞ୍ଚଜଣ
ନାରଦ କହିବା କଥା ବିଚାରି ସେ ମନ ।
ପାର୍ବତୀ ବଚନେ କହନ୍ତି ପଞ୍ଚାନନ
ସୁଗ୍ରୀବର ସଙ୍ଗରେ ଅଛନ୍ତି ପାଞ୍ଚଜଣ ।
ଜମ୍ବେବ ବୋଇଲେ ମୋର ବୋଲ କର
ଜଟା ଝରେ ସ୍ନାହାନ କରିବା ବେଗେ ଚାଲ ।
ଆଜି ତ ସୁଯୋଗ ହୋଇବ ପରବେଶ
ଶ୍ରୀରାମ ଲକ୍ଷ୍ମଣ ଭେଟିବା ଅବଶ୍ୟ ।
ଜମ୍ବେବ ବଚନରେ ସମସ୍ତେ ଚଳିଗଲେ
ପଥରକଟା ଝରରେ ସ୍ନାହାନ କରିଲେ ।
ନିତ୍ୟକର୍ମ ସାରିଣ ତର୍ପଣ ଜଳ ଦେଲେ
ଶ୍ରୀହରିଙ୍କି ସେଠାରେ ମନରେ ସୁମରିଲେ ।

ସେଠାରୁ ପାଞ୍ଚଜଣ ଗୁମ୍ଫା ସ୍ଥାନେ ମିଳି
ଫଳମୂଳ ଭୋଜନ କଲେ ବେଗକରି ।
ଆଞ୍ଚୋବନ ସାରି କଷାଫଳ ଖାଇ
ସେଠାରୁ ସୁଗ୍ରୀବର ବଚନ କହଇ ।
ବୋଇଲେ ହନୁମନ୍ତ ଆଗ ହୋଇ ଯାଉ
ଶ୍ରୀରାମଙ୍କୁ ଦେଖିଣ ସନମାନ ଦେଉ ।
ସେ ଗଲାରୁ ଜଣେ ଜଣେ ଯିବା ଆମ୍ଭେ ପୁଣ
ଦର୍ଶନ କରିବା ଯାଇ ଶ୍ରୀରାମଙ୍କ ଚରଣ ।
ଶୁଣିଣ ହନୁମନ୍ତ ବେଗେ ଚଳିଗଲା
ପର୍ବତର ତଳ ସ୍ଥଳୀରେ ମିଳିଲା ।
ଦେଖିଲା ଜାମୁଗଛ ମୂଳରେ ବେନିଭାଇ
ଯତୀବେଶ ହୋଇଛନ୍ତି ଶିରରେ ଜଟାବହି ।
ଧନୁ କମାଣ ଯେ ପାଶରେ ଅଛି ପୁଣ
ମୃଗଛାଲ ଉପରେ ବିଜେ ରାମ ରାଣ ।
ଅପୂର୍ବ ତେଜ ଦିଶେ ବେନି ଜନଙ୍କର
ଦେଖିଣ ସନ୍ତୋଷ ପବନ କୁମର ।
ନିଜରୂପ ଗୋଟି ହନୁ ସେଠାରେ ଗୋପ୍ୟକଲା
ବ୍ରାହ୍ମଣ ରୂପ ହୋଇ ତହୁଁ ବାହାରିଲା ।
ଭିକ୍ଷୁକ ବ୍ରାହ୍ମଣ ପରି ହୋଇ ବେଶ ତାର
କାଖରେ ବେଦପୋଥି ଛତା ପାତ୍ରୀ କର ।
ଧୀର ଧୀର ହୋଇ ଚଳିଲା ପଥରେ
ମନରେ ବିଚାରି ଚାରିଆଡକୁ ଚାହେଁ ଖରେ ।
ଯାନ୍ତେଣ ଦେଖିଲା ବସିଅଛନ୍ତି ରଘୁନାଥ
ଜାମୁଗଛ ମୂଳଟି ଦିଶଇ ଶୋଭିତ ।
ଜାନକୀଙ୍କ କଥା ଭାବନ୍ତି ବେନିଭାଇ
ଏମନ୍ତ ସମୟେ ହନୁମନ୍ତ ମିଳି ତହିଁ ।
ଶ୍ରୀରାମଙ୍କ ନିକଟେ ମିଳିଲା ହନୁମନ୍ତ
ବିଚାରିଲା ମନରେ ଏହି ତ ରଘୁନାଥ ।
ନିକଟକୁ ଯାଇ ହନୁ ପଚାରେ ବାରତା
କେବଣ ଦେଶର ତୁମ୍ଭେ ବନରେ ବୁଲ ଏକା ।
କେ ତୁମ୍ଭର ମାତା କେ ତୁମ୍ଭର ପିତା
କେହୁ ତୁମ୍ଭର ଅଟନ୍ତି କୁଳର ଦେବତା ।
ଜଟା କଷାବାସ ଯେ ବିଭୁତି କିସ ପାଇଁ
କେବଣ ବେଦର ପଇତା ଅଛ ବହି ।
ତୁମ୍ଭେ ବେନି ଜନ ହୁଅ କିସ କିସ
ଏଥକୁ ଅଇଲ ଘେନି କାହାର ଆଦେଶ ।
ଏଘୋର ଅରଣ୍ୟେ ମୁଁ ନଦେଖେ ପୁଣି ଆନ
ଅପୁର୍ବ ଋଷିପ୍ରାୟେ ଦିଶ ବେନି ଜନ ।
ସ୍ୱରୂପ ସିଦ୍ଧାନ୍ତ କହ ମୋର ଆଗେ
ଗୁପତ କଥାମାନ ଦୂର କର ବେଗେ ।

ଶୁଣିଣ ରଘୁନାଥ ଲକ୍ଷ୍ମଣଙ୍କୁ ଚାହିଁ
ଯାହା ପଚାରିଲ ତାହା କହସି ବୁଝାଇ ।
ଶ୍ରୀରାମଙ୍କ ଆଜ୍ଞାରେ ସୁମିତ୍ରାଙ୍କ ସୁତ
ମାରୁତିର ଆଗରେ କହିଲେ ସିଦ୍ଧାନ୍ତ ।
ଶୁଣ ହେ ବିପ୍ରବର ପଚାରୁଛ ଯାହା
ଦଶରଥ ନୃପତି ଅଯୋଧ୍ୟାର ନାହା ।
ତପନକୁଳେ ସମ୍ଭୁତ ରଘୁବଂଶେ ଜାତ
ଅଜନାମେ ନୃପତି ଅଟନ୍ତି ତାଙ୍କ ତାତ ।
ତିନିପୁରେ ପ୍ରତାପୀ ଅଟନ୍ତି ମହାରାଜା
ଚାରିଦିଗର ନୃପତି କରନ୍ତି ପାଦପୂଜା ।
ଶବଦ ଶୁଭନ୍ତେ ବିନ୍ଧଇ ରାଏ ବାଣ
ଶନିଙ୍କୁ ଜିଣିଲେ ଯୁଦ୍ଧକରି ପୁଣ ।
ସହସ୍ର ବର୍ଷକୁ ପାଇଥିଲେ ସେ ଆୟୁଷ
ଅକଣ୍ଟକ ରାଜ୍ୟକୁ କୁଶଳେ ପାଳେ ଦେଶ ।
ସୁମନ୍ତ ମନ୍ତ୍ରୀ ତାଙ୍କର ବଶିଷ୍ଠ ଅଟେ ଗୁରୁ
ଭୁଜବଳେ ରାଜନ ସାଧିଲେ ହୋଇ ଗୁରୁ ।
ସାତଶ ପଚାଶ ଅଟନ୍ତି ତାଙ୍କ ରାଣୀ
ସେ ରାଣୀଙ୍କ ଉପରେ ଶ୍ରେଷ୍ଠ ତିନି ରାଣୀ ।
କୈକେୟୀ ଜ୍ୟେଷ୍ଠ ଅଟେ ସୁମିତ୍ରା କନିଷ୍ଠ
କୌଶଲ୍ୟା ରାଣୀ ଯେ ଅଟନ୍ତି ସର୍ବଶ୍ରେଷ୍ଠ ।
ଏ ତିନି ରାଣୀ ଅଟେ ରାଜାଙ୍କ ନିଜ ପାଟ
ଆଉ ରାଣୀମାନେ ଏ ରାଣୀଙ୍କ ତଳି ପାଟ ।
ନବସସ୍ର ବରଷ ପରିଯନ୍ତେ ପୁଣ
ରାଜା ଦଶରଥଙ୍କ ନୋହିଲା ନନ୍ଦନ ।
ବୃଦ୍ଧ ହୁଅନ୍ତେ ରାଜା ପୁତ୍ରରେ ଶ୍ରଦ୍ଧା କଲା
ଋଷ୍ୟଶୃଙ୍ଗେ ମୁନି ଲୋମପାଦ ଦେଶେ ଗଲା ।
ଚମ୍ପାବତୀ ଦେଶରେ ଇନ୍ଦ୍ର ନ ପାଳିଲା
ତେଣୁ ସେ ମୁନିଙ୍କି ରାଜନ ଅଣାଇଲା ।
ଋଷ୍ୟଶୃଙ୍ଗ ଆସିବାରୁ ଇନ୍ଦ୍ର ଦୃଷ୍ଟିକଲା
ଦେଖିଣ ଲୋମପାଦ ହରଷ ହୋଇଲା ।
ମୁହିଁ ଅପୁତ୍ରିକ ହେଲି ତୁମ୍ଭ ଆଗେ
ଶୁଣିଣ ଋଷ୍ୟଶୃଙ୍ଗ ଯାଗ କଲେ ବେଗେ ।
ସେ ରାଜାର ଶତେ ରାଣୀ ଅଟନ୍ତି ପୁତ୍ରହୀନ
ଶତେ ରାଣୀଙ୍କୁ ଚରୁ ଦେଲେ ଋଷି ପୁଣ ।
ସେ ରାଜାଙ୍କ ଶତେ ରାଣୀ ଗର୍ଭବାସ ହେଲେ
ଦଶମାସ ପରିପୂର୍ଣ୍ଣେ ପୁତ୍ର ଉପୁଜିଲେ ।
ଦଶରଥ ଦୁହିତା ସାଆନ୍ତା କୁମାରୀ
ଋଷିଙ୍କି ବେନିରାଜା ସେ କନ୍ୟା ବିଭାକରି ।
ବିଭା ହୋଇ ସନ୍ତୋଷେ ବିଭାଣ୍ଡକ ବଳା
ଅଯୋଧ୍ୟା ପୁରକୁ ବେଗେ ଚଳିଗଲା ।

ଦଶରଥ କହିଲେ ଅପୁତ୍ରିକ ମୁହିଁ
ଶୁଣିଣ ଋଷିଶୃଙ୍ଗ ଯାଗ କଲେ ତହିଁ ।
ବୃଦ୍ଧକାଳେ ରାଜା ପୁତ୍ର ବାଞ୍ଛା କଲେ
ଋଷ୍ୟଶୃଙ୍ଗ ମୁନି ଯାଗରୁ ଚରୁ ଦେଲେ ।
ତିନିରାଣୀ ଗର୍ଭୁ ଚାରିପୁତ୍ର ହେଲେ ଜାତ
କଉଶଲ୍ୟା ଗର୍ଭରୁ ଶ୍ରୀରାମ ସମ୍ଭୂତ ।
କୈକେୟୀ ରାଣୀଠାରୁ ଭରତ ଜନ୍ମ ହୋଇ
ସୁମିତ୍ରାଠାରୁ ଜାତ ବେନି ଦୁଇ ଭାଇ ।
ଲକ୍ଷ୍ମଣ ଶତ୍ରୁଘନ ତାହାର ନାମ ଜାଣ ।
ସେ ବେନି କୁମର ଅଟନ୍ତି ଯେ ସାନ ।
ଚାରିପୁତ୍ର ପାଇ ରାଜା ମନରେ ଆନନ୍ଦ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣମୀର ଚାନ୍ଦ ।
ନାମକରଣ କରାଇ ବ୍ରତ କରାଇଲେ
ସହସ୍ର ସହସ୍ର ଯୋଗାନ୍ତ ଶିଖାଇଲେ ।
ସିଦ୍ଧାନ୍ତ ନାଗାନ୍ତ ଜ୍ଞାନବାଟ ଶିଖି
ବିଦ୍ୟାରେ ନିର୍ଜିତ ଚାରି କୁମରଟି ।
ଦ୍ୱାଦଶ ବରଷ ଯହୁଁ ହୋଇଲା ସେ ପୁଏ
ବିଶ୍ୱାମିତ୍ର ମୁନି ଅଯୋଧ୍ୟା ଯାଇହୁଏ ।
ଦଶରଥଙ୍କୁ ମାଗିଣ ଜ୍ୟେଷ୍ଠ ପୁତ୍ର ନେଲେ
ତାଙ୍କର ସଙ୍ଗରେ ଲକ୍ଷ୍ମଣ ଯେ ଗଲେ ।
ସରଯୂ ପାରି ହୋଇ ଗଲେ ତିନିଜଣ
ପ୍ରବେଶ ହେଲେ ଯାଇ ଗହନ ବନେଣ ।
ତାଡ଼କୀ ରାକ୍ଷସୀ ଆଗରେ ଓଗାଳିଲା
ନାରାଚ ଘେନିଣ ରାମ ତାହାକୁ ନାଶିଲା ।
କଉଶିକ ବନେ ଯାଗ କଲେ ବିଶ୍ୱାମିତ୍ର
ଶ୍ରୀରାମ ଲକ୍ଷ୍ମଣ ରହିଲେ ଜଗି ସେତ ।
ଅସୁରବଳ ମାରି ଦୁଷ୍ଟଙ୍କୁ ସାଧ କଲେ
ମୁନିମାନଙ୍କର ମନକୁ ତୋଷିଲେ ।
ଜାଣିଣ ଅସୁର ଯେତେକ ଆସିଲେ
ଶ୍ରୀରାମ ହସ୍ତରେ ସମସ୍ତେ କ୍ଷୟ ଗଲେ ।
ଯାଗ ସମାପତ କରିଲେ ଗାଧିସୁତ
ରାମଙ୍କୁ ସଙ୍ଗେ ଘେନି ଚଳିଲେ ତପୋବନ୍ତ ।
ଯାନ୍ତେଣ ଅହଲ୍ୟାକୁ ପଥରୁ ମୁକ୍ତ କଲେ
ଜନକଋଷି ନଗ୍ରରେ ପ୍ରବେଶ ହୋଇଲେ ।
ମିଥିଳା ନଗରେ ଶିବଧନୁକୁ ଭାଙ୍ଗି
ସନମାନ ପାଇଣ ସେଠାରେ ହେଲେ ଭୋଗୀ
ସୀତାଙ୍କୁ ବିଭା ହୋଇଣ ଅଇଲେ ନିଜଦେଶ
ବାଟରେ ଓଗାଳିଲା ରେଣୁକାର ଶିଷ୍ୟ ।
ତାହାକୁ ବିବାଦେ ଜିଣିଲେ ରଘୁସାଇଁ
ଅଯୋଧ୍ୟା କଟକରେ ପ୍ରବେଶ ହେଲେ ଯାଇ ।

ବେନି ବରଷ ସେଠାରେ ରହିଲେ ଚାପଧାରୀ
ଚଉଦ ବରଷ ବୟସ ଗଲା ପୂରି ।
ଦଶରଥ ରାମଙ୍କୁ ରାଜ୍ୟ ଦେବା କଲେ
କୈକେୟୀ ରାଣୀଙ୍କି ଦାସୀ ମନ୍ଥରି ମନ୍ଥିଲେ ।
ସାବତ ସପତଣୀ ତୁମ୍ଭର କଉଶଲ୍ୟା
ତାଙ୍କର ନନ୍ଦନ ଶ୍ରୀରାମ ଅଟେ ଦ୍ୱରା ।
ସେ ପୁତ୍ରକୁ ରାଜ୍ୟ ଦେବାକୁ ରାଜା ମନ
କାଲି ପ୍ରଭାତରେ ରାମ ହୋଇବେ ରାଜନ ।
ସାବତ ଜନନୀ ପୁତ୍ର ହୋଇବ ନୃପତି
ପାରୁ ଯେବେ ରଜାକର ତୋର ପୁତ୍ରଗୋଟି ।
ବିପରୀତ ବାଣୀ ଶୁଣି ମନରେ ଗୁଣିଲା
କପଟେ ନୃପତିଙ୍କି ସତ୍ୟ କରାଇଲା ।
ଶ୍ରୀରାମ ବନଯିବ ଚଉଦ ବରଷ
ଭରତ ରାଜା ହୋଇଣ ପାଳିବ ଏ ଦେଶ ।
ପିତା ସତ୍ୟ ପାଳି ଆସିଲୁ ଭାଇ ବେନି
ସଙ୍ଗରେ ଆସିଲେ ଜନକ ନନ୍ଦିନୀ ।
ବୁଲିଣ ପଞ୍ଚବଟୀ ବନରେ ରହିଲୁଁ
ତେରବର୍ଷ ବେନିମାସ ସଂପୂର୍ଣ୍ଣ ସେଠି କଲୁ ।
ବେନିଭାଇ ଦିନେ ମୃଗମାରି ଗଲୁଁ
ଜାନକୀଙ୍କୁ ମଢ଼ିଆ ଜଗାଇ ଆସିଲୁ ।
ଏକା ସେ ସ୍ଥାନରେ ରହିବାରୁ ସୀତା
ଘେନିଗଲା କେହୁ ଜନକ ଦୁହିତା ।
ତାହାଙ୍କୁ ନ ପାଇଣ ବନରେ ଖୋଜିଲୁଁ
ଜଟାୟୁଷକୁ ପଥରେ ଭେଟିଲୁ ।
ସେ ଆମ୍ଭକୁ କହିଲା ସୀତାଙ୍କ ସନ୍ଦେଶ
ସୀତାଙ୍କୁ ନେଇଗଲା ଲଙ୍କାର ଦଶଆସ୍ୟ ।
ଶବରୀ ମୁଖରୁ ପୁଣି ପାଇଲୁଁ ବାରତା
ରାବଣ ରାକ୍ଷସ ନେଇଗଲା ସୀତା ।
କେ ବୋଲେ ଦକ୍ଷିଣେ କେ ବୋଲେ ଉତ୍ତରେ
କେ ବୋଲେ ଗଡ଼ ତାର ସମୁଦ୍ର ମଧ୍ୟରେ ।
ତେଣୁ ଦୁଃଖୀ ହୋଇ ବୁଲୁଛୁଁ ଭାଇ ବେନି
ଘରକୁ ଯିବୁ ଆମ୍ଭେ କାହାକୁ ସଙ୍ଗେ ଘେନି ।
ପୁଣି ପଥେ ଆସନ୍ତେ ଦେଖିଲୁଁ ଏକମୁହିଁ
ବିପରୀତ ବାଣୀ ଯେ ଶ୍ରୀରାମଙ୍କୁ କହି ।
ବୋଇଲେ ଶ୍ରୀରାମ ତୁ ନୁହ ହୋ ବିକଳ
ଆଗରେ ଦେଖିବୁ ତୁ ପମ୍ପା ସରୋବର ।
ସେ ସରୋବର ଦକ୍ଷିଣ ଭାଗରେ ଋଷ୍ୟମୁଖ
ସେ ପର୍ବତରେ ସୁଗ୍ରୀବ ପାଉଅଛି ଦୁଃଖ ।
ବାଳୀ ସୁଗ୍ରୀବର ଅଟନ୍ତି ଦୁଇଭାଇ
ବାଳୀ ଯେ ଦୁଷ୍ଟ ପଣ କଲା ତହିଁ ରହି ।

ସୁଗ୍ରୀବକି ମାଡ଼ ଦେଇ ଘଉଡ଼ିଣ ଦେଲା
ତାହାର ଘରଣୀକି ବଳେ ଘେନିଗଲା ।
ତେଣୁ ସେ ଅଧର୍ମରେ ହୋଇଲା ଗ୍ରାହୀସ
ଦୁଷ୍ଟ ବାଳୀକି ତୁମ୍ଭେ କର ଯାଇ ନାଶ ।
ସୁଗ୍ରୀବର ସଙ୍ଗତେ ପୀରତି ଯାଇ କର
ତେବେ ତୋତେ ପ୍ରାପତ ହେବ ନାରୀ ତୋର
ସେ ଋଷି କହିବାରୁ ଅଇଲୁ ସରୋବର
ସ୍ନାହାନ ନିତ୍ୟକର୍ମ ସାରି ସେ ଜଳର ।
ଫଳମୂଳ ଆଣିଣ ଭୋଜନ ତହିଁ କଲୁ
ଏ ବୃକ୍ଷ ତଳରେ ଆସି ବିଶ୍ରାମ କରିଲୁଁ ।
ଏହିଟି ଶ୍ରୀରାମ ରଘୁବଂଶ ନାଥ
ମୁହିଁ ଲକ୍ଷ୍ମଣ ଶ୍ରୀରାମଙ୍କ ସାନ ଭ୍ରାତ ।
ଶୁଣ ହେ ଦ୍ୱିଜବର ପଚାରିଲ ଯାହା
ଏ ରାମ ଅଯୋଧ୍ୟା ରାଜ୍ୟର ନରନାହା ।
ତୁମ୍ଭେ ତ ଦ୍ୱିଜବର ସକଳ ଠାବେ ଯାଅ
ଦେଶେ ଦେଶେ ବୁଲିଣ ସବୁ ବାରତା ପାଅ ।
ଜାନକୀର ବାରତା କି ପାଇବ ବିପ୍ରବର
ଜାଣିଥିଲେ ତାହା କହ ହେ ସତ୍ୱର ।
ଧନରତ୍ନ ଦେଇଣ ତୋଷିବୁଁ ବିପ୍ର ତୋତେ
ନୋହିଲେ ରାଜ୍ୟକୁ ନେଇ ରଖିବୁଁ ନିଶ୍ଚିନ୍ତେ
ଦୁଃଖର କାଳରେ ଆସି ହେଲ ଦେଖା
ଅଯୋଧ୍ୟାରେ ଦେଖାହେଲେ ପୂରନ୍ତା ମନବାଞ୍ଛା ।
ଜାଣକି କେଉଁଠାରେ ଅଛି ସୁଗ୍ରୀବର
ସେହି ଅଟେ ଦୁଃଖୀ ଆମ୍ଭରି ପ୍ରକାର ।
ତା ସଙ୍ଗରେ ଭେଟ କି କରାଇଦେବୁ ନେଇ
ତେବେହେଲେ ଉପକାର ଦ୍ୱିଜ ତୋର ହୋଇ ।
ତୁମ୍ଭେ ବିପ୍ରବର କେଣିକି ଯିବ କହ
ନଚେତ ଆମ୍ଭର ସଙ୍ଗତରେ ରହ ।
ରଜନୀ ପାଇଲେ ଯିବ ନିଜ ବାସ
କାହାର ତନୟ ତୁମ୍ଭେ ନାମରେ କିସ ।
କେବଣ ବେଦ ଶାଖା କହ ବିପ୍ରବର
କେବଣ ବିଦ୍ୟା ଯେ ମୁଖସ୍ତ ତୁମ୍ଭର ।
ଲକ୍ଷ୍ମଣ ବଚନ ଶୁଣିଣ ହନୁମାନ
କହିଲେ ମୋର କଥା କର ହେ ଶ୍ରବଣ ।
ତୁମ୍ଭର ଆଗରେ ମୋର କହିବି ଯେ ଗତି
ଗୁପତ କଥା ମୋର ଶୁଣ ସଉମିତ୍ରୀ ।
ମୋହର ପିତା ମୋର ଅଟନ୍ତି ତ୍ରିଲୋଚନ
ଦ୍ୱିତୀୟ ପିତା ମୋର ଅଟନ୍ତି ପବନ ।
ତୃତୀୟ ପିତା ମୋର କେଶରୀ ବାନର
ଏରୂପେ ତିନି ବାପ ଅଟନ୍ତି ମୋହର ।

ଶୁଣିଣ ଶ୍ରୀରାମ ମୁରୁକି ହସା ଦେଇ
ଲକ୍ଷ୍ମଣ ବୋଇଲେ ବିପ୍ର ବିପରୀତ କହି ।
ସଉମିତ୍ରୀ କହିଲେ କହ ବିପ୍ରବର
କେଉଁରୂପେ ତିନିବାପ ଅଟନ୍ତି ତୁମ୍ଭର ।
ଜନନୀ ଏକାଟିକି କହ ମୋ ଆଗର
ଶୁଣିଲେ ସନ୍ଦେହ ହୋଇଯିବ ଦୂର ।
ହନୁମାନ ବୋଲଇ ଶୁଣ ମୋର ବାଣୀ
ଜନନୀ ନାମ ମୋର ଅଟେ ପ୍ରଭଞ୍ଜନୀ ।
ଖଡ଼ଗଦ ରାଜାର ଦୁହିତା ସେ ଜାଣ
ସୁନ୍ଦରୀ ଗୁଣବତୀ ଅଟଇ ସେ ପୁଣ ।
ଭଇରବ ଦେଶରେ ଏକଇ ବାନର
କନ୍ଦଳ କେଶରୀ ନାମ ଅଟେ ତାର ।
ସେ ବାନର ପୁତ୍ର ଅଟଇ କେଶରୀ
ତାହାକୁ ଖଡ଼ଗଦ ରାଜା ବରିଲା ଯାଇକରି ।
କନ୍ଦଳକେଶରୀ ପୁତ୍ରକୁ ଆଣିଣ
ତାହାର ଦୁହିତାକୁ ବିଭାଦେଲା ଜାଣ ।
ତାହାର ଦୁହିତାର ପ୍ରଭଞ୍ଜନୀ ନାମ
ସ୍ତିରୀକୁଳେ ସୁନ୍ଦରୀ ଅଟଇ ଅନୁପମ ।
ଦେବତା ମୁନି ହେଲେ ତାହାକୁ ହେବ ଲୋଭୀ
କେଶରୀକି ବିଭାକରି ନିଜ ରାଜ୍ୟେ ଭେଦି ।
ତାର ନିଜ ଦେଶରେ ପ୍ରବେଶ ଯାଇ ହେଲେ
ଏମନ୍ତେ ସମୟର ଷୋଳ ବହିଗଲେ ।
ଅତି ବିପରୀତ କହେ ଶୁଣ ସଉମିତ୍ରୀ
ଈଶ୍ୱର ପାର୍ବତୀଙ୍କର କର୍ପିଳାସେ ସ୍ଥିତି ।
ଏକଦିନେ ପାର୍ବତୀ ସଙ୍ଗେ ଘେନି ଭୋଳା
ବନକୁ ବୁଲିବାକୁ ଗଲେ ହୋଇ ତ୍ୱରା ।
ବୃଷଭ ଉପରେ ବିଜୟ କରି ପୁଣ
ଏକାମ୍ରର ବନରେ ରହିଲେ ସେ ଜାଣ ।
ଦେଖିଲେ ବାନର ସେଥିରେ ଲୀଳାରତି
ପାର୍ବତୀ ବୋଇଲେ ଶୁଣହେ ଶୂଳପତି ।
ବାନର ବାନରୀଙ୍କର ହେଉଛି କ୍ରୀଡାରସ
ଏହାଦେଖି ମୋର ବଳିଲା ମାନସ ।
ଶୁଣିଣ ଈଶ୍ୱର ବାନରରୂପ ଧରି
ପାର୍ବତୀ ଦେବୀ ତହିଁ ହୋଇଲେ ବାନରୀ ।
ଦେଖିଣ ଈଶ୍ୱର ଧରିଣ ରତି କଲେ
ଭାବ ବିନୋଦରେ ବୀର୍ଯ୍ୟ ଖସିବାର ବେଳେ
ସେ ବୀର୍ଯ୍ୟ ପାର୍ବତ୍ୟ ଗର୍ଭରେ ଯାଇଁ ପଡ଼ି
ସମ୍ଭାଳି ନ ପାରିଲା ଅଦ୍ଭୁତ ନାମେ ନାରୀ ।
ଉଛୁଳିଣ ବୀର୍ଯ୍ୟ ପଡ଼ିଲା ଭୂମିଗତ
ଦେଖିଣ ଈଶ୍ୱର ହସ୍ତେ ଧଇଲେ ତ୍ୱରିତ ।

ପବନ ଦେବତାଙ୍କୁ ସୁମରଣା କଲେ
ଈଶ୍ୱର ଛାମୁରେ ପବନ ମିଳିଲେ ।
ଈଶ୍ୱର ବୋଇଲେ ଶୁଣ ମରୁତ ଏବେ
ଏ ବୀର୍ଯ୍ୟ ଘେନିଣ ମୋର ଚଳ ବେଗେ ।
ଯେଉଁଠାରେ ଶୁଦ୍ଧନାରୀ ଦେଖିବୁ ତୁ ପୁଣ
ସେ ନାରୀକି ଏ ବୀର୍ଯ୍ୟ ଦେବୁ ତତକ୍ଷଣ ।
ଶୁଣିଣ ମରୁତ ବୀର୍ଯ୍ୟ ଘେନି ଚଳି
ସେ ବୀର୍ଯ୍ୟ ପବନ ବାଟରେ ଦେଲା ଗିଳି ।
ସେ ବୀର୍ଯ୍ୟ ଗର୍ଭରେ ପଡ଼ିଲା ଯେମନ୍ତ
ଅସମ୍ଭାଳ ହୋଇଲା ମରୁତ ହୃଦଗତ ।
ମନରେ ପବନ ଦେବ ଚିନ୍ତା କଲା
ଈଶ୍ୱର ବୀର୍ଯ୍ୟ ମୋର ହୃଦରେ ରହିଲା ।
ଜଗତ କରତା ଅଟନ୍ତି ଈଶ୍ୱର
ତାଙ୍କ କଥା ଅନ୍ୟଥା କଲି ମୁଁ ପାମର ।
ଏମନ୍ତ ବିଚାରି ଚଳିଲା ଧୀରେ ଧୀରେ
ନୀଳଗିରି ଜଳ ସରୋବରେ ପ୍ରବେଶ ସତ୍ୱରେ ।
ଏଥୁ ଅନନ୍ତରେ ଶୁଣ ହେ ଲକ୍ଷ୍ମଣ
ମୋହର ଜନନୀ ପ୍ରଭଞ୍ଜନୀ ଜାଣ ।
ଶୁଦ୍ଧସ୍ନାନ କରିବା ନିମନ୍ତେ ସେହି ନାରୀ
ସେ ସରୋବର ଭିତରେ ପଶିଲା ଯାଇକରି ।
ସୁଗନ୍ଧି ଚତୁଃସମ ଅଙ୍ଗରେ ବୋଳି ପୁଣ
ଝୀନ ବସନ ପିନ୍ଧି କରଇ ସ୍ନାହାନ ।
ଯାନୁ ଯଉବନ ଫୁଟିଣ ତାର ବିଶେ
ସ୍ନାହାନ ସାରି ନାରୀକୂଳରେ ମିଳେ ତୋଷେ ।
ଏମନ୍ତ ସମୟରେ ପବନ ଦେବତା
ତାହାର ଦେହଗୋଟି କାମରେ ପୀଡ଼ିତା ।
ସୁନ୍ଦରୀ ଯୁବତୀ ଦେଖି ମନରେ ବିଚାରିଲା
ଏ ଯୁବତୀ ସଙ୍ଗେ ପ୍ରୀତି କରିବି ଭାବିଲା ।
ଏମନ୍ତ ବିଚାରି ବ୍ରାହ୍ମଣ ରୂପ ଧରି
ସେ ନାରୀ ପାଶରେ ମିଳିଲା ଯାଇକରି ।
ସେ ନାରୀକି ବୋଇଲା ଶୁଣରେ ସୁନ୍ଦରୀ
ସୁରତି ଦାନ ମୋତେ ଦିଅ ବେଗ କରି ।
ମାହେନ୍ଦ୍ର ଯୋଗ ବେଳ ହୋଇଛି ପ୍ରବେଶ
ମୋହର ବୀର୍ଯ୍ୟ ତୋର ଗର୍ଭେ ଯେ ପ୍ରବେଶ ।
ତୋହର ଗର୍ଭରୁ ଯେଉଁ ପୁତ୍ର ଜନ୍ମ ହେବ
ବଳରେ ବଳବନ୍ତା ହୋଇ ସବୁଙ୍କୁ ଜିଣିବ ।
ସୁର ନର ଅସୁର ଗିରି ଯେ ପର୍ବତ
ଏମାନଙ୍କୁ ଜିଣିଣ ହୋଇବ ସାମରଥ ।
ନାରାୟଣରେ ଭଗତି ହୋଇବ ତୋର ସୁତ
ରାମାୟଣ ଯୁଦ୍ଧରେ କବାଟ ହେବ ସେତ ।

ବାସୁଦେବ ଦେବତାଙ୍କୁ କନ୍ଧରେ ବହିବ
ଗରୁଡ଼ର ବଳ ଯେ ତାକୁ ପ୍ରାପ୍ତ ହେବ ।
କୋଟିଏ ସିଂହର ବଳ ତୋ ପୁତ୍ର ବହିବ
ଚାରିଯୁଗରେ ପୁତ୍ର ଅମର ହୋଇବ ।
ଶୁଣିଣ ପ୍ରଭଞ୍ଜନୀ ତାହାଙ୍କୁ ପଚାରି
ତୁ କେବଣ ଦେବତା କହିଲୁ ଏଡ଼େକରି ।
ମରୁତ ବୋଇଲା ମୁଁ ପବନ ଦେବତା
ଯୋଗବଳେ ତୋର ପାଶେ ପ୍ରବେଶ ବନିତା ।
ପ୍ରଭଞ୍ଜନୀ ବୋଇଲା ତୋ ନିଜ ରୂପ ଦେଖା
ଶୁଣିଣ ପବନ ଅଣଚାଶ ମୂର୍ତ୍ତି ରେଖା ।
ଦେଖିଣ ପ୍ରଭଞ୍ଜନୀ ସୀତକାର କଲା
ପବନ ଦେବତାଙ୍କୁ ଦେହ ଦାନ କଲା ।
ଆନନ୍ଦରେ ମରୁତ ରମଣ ଭୋଗକରି
ଖସିଲା ବୀର୍ଯ୍ୟ ଯେ ଗର୍ଭେ ତା ସମ୍ଭାଳି ।
ସୁରତି ଲୀଳା ସାରିଣ ପବନ ତହୁଁ ଗଲା
ଈଶ୍ୱର ବୀର୍ଯ୍ୟ ପ୍ରଭଞ୍ଜନ ଗର୍ଭରେ ରହିଲା ।
ଆସକ୍ତରେ ଜନନୀ ସେଠାରୁ ଗଲା ଚଳି
ଆପଣାର ମନ୍ଦିରେ ମିଳିଲାକ ବାଳୀ ।
ଦିନକୁ ଦିନ ଗର୍ଭ ହେଲା ତାର ଭାରି
ବାର ବରଷ ସେଥିରେ ଗଲା ଦିନ ସରି ।
ଏକଦିନେ ଜନନୀ ମନରେ ଚିନ୍ତା କଲା
କେଉଁ ପୁରୁଷ ଗର୍ଭରେ ଅଛି ସେ ବୋଇଲା ।
ଗର୍ଭର ଭିତରେ ଥାଇ ଚେତା ମୋ ଶରୀର
ଡାକଦେଲି ଜନନୀ ମନରେ ନ ଭାଳ ।
ପବନ ଦେବତାଙ୍କୁ ସୁମରଣା କର
ତାହାଙ୍କୁ କହିବୁ ତୁ ଈଶ୍ୱର ପୁରେ ଚଳ ।
ବଜ୍ରକାଛଟା ଆଣି ଦେବ ତୋତେ ଜାଣ
ତାହା ତୁହି ଗର୍ଭକୁ ଗିଳିବୁ ତତ୍‌କ୍ଷଣ ।
ତେବେ ମୁଁ ଜନମ ହେବି ତୋ ଗର୍ଭରୁ
ଏମନ୍ତ ବଚନ ଶୁଣି ତାହାଠାରୁ ।
ତେଣୁ ସେ ମରୁତକୁ ସୁମରି କହିଲା
ଈଶ୍ୱରପୁରେ ଯାଇ ମରୁତ ମିଳିଲା ।
ପୁତ୍ରର କଥା ପବନ କହିଲା ବୁଝାଇ
ତ୍ରିଲୋଚନ କାଛଟା ଦେଲେ ତୋଷ ହୋଇ ।
କାଛଟା ଆଣି ମରୁତ ଜନନୀକି ଦେଲା ।
ତକ୍ଷଣେ ଜନନୀ ଗର୍ଭକୁ କ୍ଷେପିଲା ।
ସେ କାଛଟାକୁ ଗର୍ଭରେ ମୁଁ ପିନ୍ଧିଲି ତକ୍ଷଣି
ସେହିକ୍ଷଣି ଜନ୍ମ ଜନନୀ ଗର୍ଭୁ ପୁଣି ।
ସଉମିତ୍ରୀ ବୋଇଲେ ଶୁଣ ମୋ ବଚନ
ଗର୍ଭରେ କାଛଟାକୁ ପିନ୍ଧିଲ କି କାରଣ ।

ମାରୁତି ବୋଇଲେ ଶୁଣ ରାମ ଭାଇ
ମାତୃହରଣ ଦୋଷ ନ ଲାଗିବା ପାଇଁ ।
ସଉମିତ୍ରୀ ବୋଇଲେ ହୋଇଲା ଏଥର
ଗର୍ଭରେ ଚେତା ଯେଣୁ ହୋଇଲା ତୁମ୍ଭର ।
ସେଠାରୁ କିସ ହେଲା କହ ମୋର ଆଗେ
ବିପରୀତ କଥାମାନ କହୁଛତ ଏବେ ।
ମାରୁତି ବୋଇଲେ ମାତା ଗର୍ଭରୁ ଜନ୍ମ ହେଲି
ଜନ୍ମ ହେଲାମାତ୍ରେ ଉଠିଣ ବସିଲି ।
ମାତାଙ୍କୁ ମାଗିଲି ଖାଇବାର ପାଇଁ
ମେଷ ସଂକ୍ରାନ୍ତି ସେଦିନ ଥିଲା ହୋଇ ।
ସୂର୍ଯ୍ୟୋଦୟ ସମୟେ ଜନମ ମୁଁ ହେଲି
ଉଦୟେ ବଳବାନ ସେହିଠାରୁ ହେଲି ।
ମୋହର ବିକ୍ରମ ରୂପ ଜନନୀ ଦେଖିଣ
ବୋଇଲା କୁମର ତୁ ଚଳରେ ତକ୍ଷଣ ।
ଏହି ରଙ୍ଗବର୍ଣ୍ଣ ଫଳ ଶୂନ୍ୟରେ ଦିଶଇ
ତାହାକୁ ଆହାର କର ଯାଇ ତୁହି ।
ତେବେ ତୋର ଭୋକ ଶାନ୍ତ ହୋଇବଇଁ
ଶୁଣିଣ ବିକ୍ରମିଣ ଶୂନ୍ୟକୁ ଗଲି ମୁହିଁ ।
ଅତି ବେଗେ ଯାଇଣ ପ୍ରବେଶ ହେଲି ତହିଁ
କଶ୍ୟପ ନନ୍ଦନକୁ ଲାଙ୍ଗୁଳେ ବାନ୍ଧିଲଇଁ ।
ଇନ୍ଦ୍ରଙ୍କୁ ସୁମରଣା କଲେ ସେ ତ୍ୱରିତ
ଜାଣିଣ ପ୍ରବେଶ ହେଲେ ଶଚିକାନ୍ତ ।
ମୋହର ଅଙ୍ଗେ କଲେ ସେ ବଜ୍ର ପ୍ରହାର
ଅଚେତା ହୋଇଣ ମୁଁ ପଡ଼ିଲି ତହିଁର ।
ଜାଣିଣ ପବନ ନିରୋଧ ଯେ କଲା
ପବନ ସ୍ତମ୍ଭ ହେବାରୁ ସମସ୍ତେ ଆକୁଳା ।
ସକଳ ଜୀବଜନ୍ତୁ ହୋଇଲେ ଆରତ
ଜାଣିଣ ବେଦବର ମିଳିଲେ ତ୍ୱରିତ ।
ହଂସ ବାହନ ଚଢ଼ି ବ୍ରହ୍ମା ବିଜେକଲେ
ବେଦବରଙ୍କ ବାକ୍ୟେ ପବନ ଆସିଲେ ।
ବ୍ରହ୍ମା କହିଲେ ସଂସାର ହେଉଅଛି ନାଶ
କିମ୍ପା ଅବିଚାର କଲ କଶ୍ୟପଙ୍କ ଶିଷ୍ୟ ।
ପବନ ବୋଇଲେ ଇନ୍ଦ୍ର ଅଟେ ମନ୍ଦ
ମୋହର କୁମରକୁ କରିଲେ ସେ ବଧ ।
ତେଣୁ ମୋହର ମନରେ ଦୁଃଖ ଜାତ ହେଲା
ପବନ ସ୍ଥିର ହେଲା ତିରଣ ନ ହଲିଲା ।
ବେଦବର ବୋଇଲେ କାହିଁ ତୋର ସୁତ
ପବନ ବୋଇଲେ ଶୋଇଛି ଆଦିତ୍ୟଙ୍କ ରଥ ।
ଜାଣିଣ ବିଧାତା ସକଳ ଦେବଙ୍କୁ ଘେନି
ଆଦିତ୍ୟଙ୍କ ରଥରେ ପ୍ରବେଶ ହେଲେ ପୁଣି ।

ମୃତ୍ୟୁ ସଞ୍ଜିବନୀ ଜଳ ସିଞ୍ଚିଲେ ମୋ ଅଙ୍ଗ
ପ୍ରାଣ ପାଇ ମୁଁ ବସିଲି ତାଙ୍କ ଆଗ ।
ତେତିଶକୋଟି ଦେବତା ତହିଁ ବର ଦେଲେ
ଚାରିଯୁଗେ ଅମର ହୁଅ ତୁ ବୋଇଲେ ।
କାଳେ କାଳେ ବିଷ୍ଣୁଙ୍କର ହୁଅ ତୁ ଭକତ
ରାମାୟଣ ଯୁଦ୍ଧରେ କବାଟ ହେବୁ ଦୂତ ।
ରାମ ଅବତାରେ ବଦଳ ତୁ ଖଗେଶ୍ୱର
କନ୍ଧରେ ବହିବୁ ତୁହି ତ୍ରୈଲୋକ୍ୟ ଈଶ୍ୱର ।
ତେତିଶକୋଟି ସିଂହର ପ୍ରାକର୍ମ ତୋ ହେଉ
କାଳଯୁଗେ ତୋହର ଯଶ ରହିଥାଉ ।
ଏମନ୍ତ ବର ମୋତେ ଦେଲେକ ତ୍ରିଦଶ
ଜାଣିଣ ଇନ୍ଦ୍ର ମୋତେ ହୋଇଲେ ସନ୍ତୋଷ ।
ଅକ୍ଷତକୁଣ୍ଡଳ ମୁକୁଟ ହାର ଦେଲେ
ସକଳ ଦେବଙ୍କର ପୁତ୍ର ତୁ ବୋଇଲେ ।
ସେଠାରୁ ସକଳ ଦେବତା ଚଳିଗଲେ
ପିତା ମୋତେ ସଙ୍ଗରେ ଘେନିଣ ଅଇଲେ ।
ଜନନୀ ପାଶରେ ଦେଲେକ ମୋତେ ନେଇ
ସକଳ କଥା ମାତାଙ୍କୁ କହିଲେ ବୁଝାଇ ।
କହିଣ ପିତା ଯେ ନିଜ ସ୍ଥାନେ ଗଲେ
ଜନନୀ ପାଶରେ ରହିଲି ମୁଁ ଭଲେ ।
ପିତାମାତା ମୋତେ ସ୍ନେହଭାବରେ ପାଳି
ବନକୁ ଯେତେବେଳେ ଯାଅଇ ମୁଁ ବୁଲି ।
ଋଷିଙ୍କର ମଢ଼ିଆ ଭାଙ୍ଗି ମୁହିଁ ହେଲେ
ବେଦ ପୋଥି ଚୋରାଇଲି ଅଜ୍ଞାନ ପଣରେ ।
ପର୍ବତମାନ ଉପାଡ଼ି ଘରମାନ ଭାଙ୍ଗି
ତେଣୁ ସେ ଋଷିମାନେ ହୋଇଲେ ମୋତେରାଗୀ
ତେଣୁ ଋଷିଏ ବ୍ରହ୍ମାଙ୍କୁ ସୁମରଣା କଲେ
ଜାଣିଣ ବେଦବର ସେ ବନେ ଅଇଲେ ।
କୁଶପାଣି ଆସିବାରୁ ମୁନିମାନେ ଜାଣି
ମୋତେ ସେ ଶାପ ଦେଲେ କ୍ରୋଧଭରେ ପୁଣି
ବୋଇଲେ ନିର୍ବଳ ହୁଅରେ ମାରୁତି
ବିଷ୍ଣୁଙ୍କୁ ଭେଟିଲେ ବଳ ହୋଇବ ପ୍ରକୃତି ।
ଋଷିଙ୍କର ଶାପରେ ମନରେ ମୋର ଭୟେ
ବେଦବରଙ୍କୁ ଯେ ସୁମରଣା କଲେ ମାୟେ ।
ତେଣୁ ସେ କୁଶଧର ମୋ ଆଗେ ପ୍ରବେଶ
ମାତାଙ୍କ ଆଗେ କହିଲି ବୃତ୍ତାନ୍ତ ସର୍ବଶେଷ ।
ଶୁଣିଣ ବେଦବର ଗୁପତେ ମୋତେ କହି
ବିଷ୍ଣୁ ଅବତାର ହୋଇବେ ଆମ୍ଭ ପାଇଁ ।
ଅଯୋଧ୍ୟାରେ ଦଶରଥ ଘରେ ହେବ ଜାତ
ମାନବ ଶରୀର ଧନୁ ଶସ୍ତ୍ର ହସ୍ତ ।

ଲକ୍ଷ୍ମଣ ସୀତା ଘେନି ବନବାସ ଯିବେ
ଗୋଦାବରୀ କୂଳରେ ଭାରିଯା ହରାଇବେ ।
ନ ପାଇଣ ଶ୍ରୀରାମ ବୁଲିବେ ବନେ ବନେ
ଋଷ୍ୟମୂକରେ ସୁଗ୍ରୀ ଥିବ ରାମ ଯିବେ ତେଣେ
ରାମଙ୍କୁ ଦେଖିଣ ସୁଗ୍ରୀ ପଳାଇବ ଡରି
ବାଳୀର ଦୂତ ବୋଲି ମନରେ ବିଚାରି ।
ଋଷ୍ୟମୂକ ପର୍ବତେ ନିଜେ ଛାନେ ଲୁଚି
ଜାଣି ଆସ ବୋଲିଣ ପେଶିବ ଦୂତ ପାଞ୍ଚ ।
ତୁ ଯାଇଣ ଭେଟିବୁ ରାମଙ୍କୁ ଯେତେବେଳେ
ବଳ ପ୍ରାକର୍ମ ବୃଦ୍ଧି ହେବ ତେତେବେଳେ ।
ଏତେ ସମୟ ଯାଏଁ ତୁ ଗୋପ୍ୟ ହୋଇଥାଅ
ଋଷିଙ୍କର ମଢ଼ିଆ ଭାଙ୍ଗିବା ଦୋଷ ପାଅ ।
ଗର୍ବ କରିଣ ତୁ ଯେ କାହାକୁ ନ ମାନିଲୁ
ଋଷିଙ୍କର ଶାପେ ଏବେ ନିର୍ବଳ ହୋଇଲୁ ।
ଏରୂପେ ପ୍ରାକର୍ମପଣ କଲେ ସହିବ କି ମହୀ
ଗ୍ରାମ ପାଟଣା ପୁର ଭାଙ୍ଗୁଅଛୁ ବାଇ ।
ସମୟେକ ଶାନ୍ତି ହୋଇଣ ଦିନ ନିଅ
ନାରାୟଣ ଦର୍ଶନେ ନିଜର ବଳ ପାଅ ।
ଦେବଙ୍କର କାର୍ଯ୍ୟରେ ଅସୁରବଳ ମାର
ତ୍ରେତୟା ଯୁଗପାଇଁ ତୋର ଅବତାର ।
ରାମାୟଣ ଯୁଦ୍ଧରେ ହୋଇବୁ ମହାବଳୀ
ତୋ ନାମରେ ଲଙ୍କାରେ ପଡ଼ିବ ହାଲହୋଲି ।
ଆବର କଥାରେ ତୁରେ ହେତୁକରି
ଇନ୍ଦ୍ର ଦେଲା କୁଣ୍ଡଳ କର୍ଣ୍ଣରେ ଅଛୁ ଭରି ।
ପବନ ଦେବତା ଦେବ ପଲ୍ଲବ ମୁକୁଟ
ଏ ମୋହର ରତ୍ନମାଳା ଥିବ ତୋର କଣ୍ଠ ।
ଦେବ ଦାନବ ନର ଯେ ବାନର
କିନ୍ନରୀ ଦେବୀ ପିଶାଚ ଚଉର୍ଯ୍ୟ କିନ୍ନର ।
କାହାରି ନୟନରେ ନୋହିବ ଯେ ଦୃଶ୍ୟ
ଏକାମାତ୍ର ତାହା ଦେଖିବେ ପୀତବାସ ।
ଦଶରଥ ନନ୍ଦନ ରାମଙ୍କୁ ଦୃଶ୍ୟ ସେ ହୁଅଇ
ଜାଣିବେ ତୋହର ମୁଖକୁ ଅନାଇଁ ।
ଏ କଥା ମନରେ ହେଜି ରଖ କପିବୀର
ସେହିଦିନ ସେବିବୁ ତୁ ଶ୍ରୀରାମ ପୟର ।
ତେବେ ସେ ଯଶଶିରୀ ହୋଇବ ତୋହର
ଯୁଗ ଯୁଗରେ ବଖାଣ ହେବ କଥା ତୋର ।
ଶ୍ରୀରାମ ପ୍ରସନ୍ନରେ ହେବ ଯଶ ତୋର
ଶ୍ରୀରାମ ସଙ୍ଗରେ ଥାଇ ଧ୍ୱଂସିବୁ ଲଙ୍କାପୁର ।
ଏତେ କହିଣ ବିଧାତା ନିଜପୁରେ ଗଲେ
ଯଶୋବନ୍ତୀ ପୁରେ ପ୍ରବେଶ ହୋଇଲେ ।

ସେହିଦିନୁ ମୋହର ତୁଟିଲା ଯେ ବଳ
ବାଳୀ ସୁଗ୍ରୀବ ଦୁହେଁ ଅଟନ୍ତି ମାତୁଳ ।
ତାହାଙ୍କ ସଙ୍ଗରେ ମୁଁ ସେଦିନୁଁ ରହିଲି
ସୁଗ୍ରୀବ ବାଳୀ ଯେ ଘଉଡ଼ିଲା ଦେଖିଲି ।
ମୋତେ ବାଳୀବୀର ନ ଗଲା ବିଶ୍ୱାସତ
ସୁଗ୍ରୀବର ସଙ୍ଗରେ ମୁଁ ରହିଲି ତେଣୁ ତ ।
ଜମ୍ବେବ ସୁଷେଣ ନଳ ନୀଳ ପୁଣ
ମୋର ନାମ ହନୁମନ୍ତ ରହିଲୁଁ ପାଞ୍ଚଜଣ ।
ଋଷ୍ୟମୂକ ପର୍ବତରେ ରହିଲୁଁ ପଳାଇ
ବାଳୀ ନ ଆସଇ ସେ ଋଷି ଶାପ ପାଇ ।
ଦିବସରେ ଲୁଚୁଁ ଯେ ରାତ୍ରେ ବନେ ବୁଲୁଁ
ପୂର୍ବର ଭାଗ୍ୟ ହେଲା ରାମଙ୍କୁ ଦେଖିଲୁ ।
ବାଳୀର ଦୂତ ବୋଲି ଥିଲୁଁ ଭୟକରି
ମୋତେ ପେଶିଲେ ସୁଗ୍ରୀ ମନରେ ବିଚାରି ।
ତେଣୁ କରି ମୁହିଁ ଯେ ଅଇଲି ଏଠାରେ
ମାୟା ରୂପ ଗୋଟି ଧଇଲି ବାଟରେ ।
ବିପ୍ରରୂପ ଧରି ମିଳିଲି ତୁମ୍ଭ ଆଗ
ତେଣୁ ଯେ ମନରେ ତୁମ୍ଭେ ନ ଧର ବିରାଗ ।
କୁଳ ଗୋତ୍ର ମୋର ପଚାରିଲ ଯେ ଆପଣ
ଏକ ଜନନୀ ତିନି ବାପ ମୋର ଜାଣ ।
ଈଶ୍ୱରଙ୍କର ବୀର୍ଯ୍ୟ ପବନ ଅଂଶ ସଙ୍ଗ
ନିଜ ବାପ କେଶରୀ ଅଟଇ ମୋର ଅଙ୍ଗ ।
ମାୟାରୂପ ଧରିଣ ମୁଁ ଉହାଡ଼ରେ ରହି
ଶୁଣିଲି ଜାଣିଲି ତୁମ୍ଭେଟି ବେନି ଭାଇ ।
ତୁମ୍ଭର ନାମ ଶୁଣି ହେତୁ କଲି ମନ
ବିଚାରିଲି ମନରେ କମଳା ରମଣ ।
ନୋହିଲେ କି ଆନ ଏଥକୁ ଯେ ଆସି
ରଜନୀ ଏଠାରେ କେହୁ ପାରେ ବସି ।
ନିଶ୍ଚୟ ଶ୍ରୀରାମ ଅଟନ୍ତି ବୈକୁଣ୍ଠବାସୀ
ବେଦବର ବଚନ ଫଳିଲା ଏବେ ଆସି ।
ଯାହା ବିଧାତା ପୂର୍ବରେ ଥିଲା କହି
ଏହି ସେ ରଘୁନାଥ ମୋହର ଗୋସାଇଁ ।
ଏ ପ୍ରଭୁଙ୍କର ଆଗରେ ଅଛିକି ମୋର ମାୟା
ଏ ରୂପ ଛାଡ଼ିଣ ମୁଁ ଧରିବି ନିଜ କାୟା ।
କିରୀଟି କୁଣ୍ଡଳ ମୋର ଚିହ୍ନିଲେ ପ୍ରତେଯିବେ
ଆଜିଠାରୁ ସେବା ମୋର ହୋଇଲା ଯେ ଭବେ
ଏମନ୍ତ ବୋଲିଣ ପବନ କୁମର
ସଉମିତ୍ରୀଙ୍କି ପୁଣ କହଇ ଉତ୍ତର ।
ଯାହା ଯାହା କଥା ପଚାରିଲ ମୋତେ
ବାଳୀରାଜାର କଥା ଶୁଣ ହେ ସୁଚିତ୍ତେ ।

କପି ଭାଲୁମାନଙ୍କର ଅଟଇ ଅଧିପତି
ଜମ୍ବୁଦ୍ୱୀପ ମଣ୍ଡଳରେ ଲକ୍ଷେକ ଯେ ପୃଥ୍ୱୀ ।
ଅଠରକୋଟି ଗିରିକନ୍ଦର ଏଥିର ଭିତର
ଲକ୍ଷେ ରାଜା ସଂପୂର୍ଣ୍ଣ ଏ ମହୀମଣ୍ଡଳର ।
ଅଠରକୋଟି ଗିରିରେ ନଜ ଯେ ସାଗର
ବାନର ଭାଲୁ ପୂରି ଅଛନ୍ତି ସର୍ବଠାର ।
ଭାଲୁ ବାନରଙ୍କ ପରେ ଲକ୍ଷେକ ବାନର
ନୃପତିପଣେ ସର୍ବେ ଅଟନ୍ତି ପୁଣ ସାର ।
ତାଙ୍କର ପାତ୍ର ମନ୍ତ୍ରୀ ଅଛନ୍ତି ସରଦାର
ସେମାନଙ୍କୁ ଘେନି ସେ ଚଳାନ୍ତି ରାଜ୍ୟଭାର ।
ଖଡଗଦ ନୃପତି ଯେ ବାଳୀରାଜା ବାପ
ବାନର ଭାଲୁ ସାଧ କଲା ସେହି ନୃପ ।
ତେଣୁ ସେ ବାନର ନୃପ ଖଡ୍ଗଦ ବୋଇଲା
ବାନର ବଳ ଘେନି ପୃଥ୍ୱୀ ସାଧ କଲା ।
କାଳେଣ ଖଡ୍ଗଦ ହୋଇଲା ହେ ନାଶ
ଜ୍ୟେଷ୍ଠପୁତ୍ର ବାଳୀ ନୃପତି ବିଶେଷ ।
ବାଳୀବୀର ରାଜା ହୋଇ ବାନର ବଳ ସାଧି
ବଳବନ୍ତ ଲୋକଙ୍କୁ ଦୁଷ୍ଟପଣେ ସାଧି ।
କପିକୁଳରେ ଯେଣୁ ହୋଇଲା ଅଧିପତି
ତେଣୁ ପୁଣ ବାଳୀରାଜା କଲା ଦୁଷ୍ଟମତି ।
ସୁଗ୍ରୀବଙ୍କୁ ନଗ୍ରରୁ ବାହାର କରିଦେଲା
ତାହାର ବିଶ୍ୱାସୀ ଲୋକଙ୍କୁ ରଖିଲା ।
ରୁମା ନାମେଣ ସୁଗ୍ରୀବରର ଯୁବତୀ
ତାହାକୁ ବଳେ ହରିଲା ବାଳୀ ଯେ ନୃପତି ।
ତେଣୁ ସେ ବାଳୀବୀର କଲା ଅବିଚାର
ଅସୁର ନର ବାନର ଡରିଲେ ସକଳ ।
ଭାଇବୋହୂ ବୋଲିଣ ନ କଲା ଓପ୍ରୋଧ
ରମଣ ଶ୍ରଦ୍ଧାରେ ତାକୁକଲା ଭୋଗ ।
ଅତି ଅନ୍ୟାୟ କରିଲା ସେ ଯହୁଁ
ସେ ପୁର ତେଜି ଆମ୍ଭେ ଅଇଲୁଁ ଯେ ତହୁଁ ।
ବନରେ ବନବାସ ଜନ୍ତୁଙ୍କର ସଙ୍ଗେ
ବେନି ସହସ୍ର ବରଷ ବଞ୍ଚୁ ଦୁଃଖଭୋଗେ ।
ତୁମ୍ଭଙ୍କୁ ଦର୍ଶନ ମିଳିଲା ଏତେଦିନେ
ଦଶା ମୋ ଗଲା ମୁଁ ଭାବୁଅଛି ମନେ ।
ଏହି ଯେ ପର୍ବତ ଉପରେ ଷଡଜଣ
ତୁମ୍ଭଙ୍କୁ ଦେଖିଲୁ ଏହି ସ୍ଥାନେ ପୁଣ ।
ତୁମ୍ଭଙ୍କୁ ଦେଖି ଆମ୍ଭେ ଭୟରେ ପଳାଇଲୁଁ
ବାଳୀରାଜା ଦୂତ ବୋଲି ମନରେ ବିଚାରିଲୁଁ ।
ସୁଗ୍ରୀବର ମୋତେ ପେଷିଲାକ କହି
ଏ ବେନିଜଣ କିଏ ବୁଝିଆସ ଯାଇ ।

ସେ ବେନିଜଣ ଏବେ କେଉଁଆଡେ ଯିବେ
ଜାଣି ଆସ ଯାଇ ନିଶ୍ଚିନ୍ତ ହେବା ଏବେ ।
ସେ ମୋର ମାମୁଁ ଯେ ବିଶେଷେ ସ୍ୱାମୀ ତ
ତାଙ୍କର ବୋଲ ମୁଁ ନ ପାରେ ଲଙ୍ଘିତ ।
ତେଣୁ କରି ମୁହିଁ ଯେ ଅଇଛି ତୁମ୍ଭ ପାଶ
ନୁହେଁ ମୁଁ ମନୁଷ୍ୟ ବାନର ପବନର ଶିଷ୍ୟ ।
ପିତା ମୋ ବାନର ଉଭୟ ଦେଶର ଅଧିପତି
ତପ ଭଞ୍ଜନୀ ଅଟଇ ତାହାର ଯୁବତୀ ।
ସେ ମୋର ଜନନୀ ତାହାର ମୁଁ ସୁତ
ଏଣୁ ଯେ ମୋର ନାମ ଅଟଇ ହନୁମନ୍ତ ।
ତୁମ୍ଭଙ୍କୁ ଦେଖିଲି ମୋହର ତପଫଳ
ଆଜହୁଁ ଖଟିବି ସ୍ୱାମୀ ଶ୍ରୀଚରଣ ତଳ ।
ଲକ୍ଷ୍ମଣ ବୋଇଲେ ମୋହର କଥା ଶୁଣ
ଏ ସ୍ଥାନରେ କେଉଁ ଭୟ ନ ରହେ ଜାଣ ପୁଣ ।
ମାରୁତି ବୋଇଲା ଦେବ ସେ କଥା ଏବେ ଶୁଣ
ଶତେକ ଯୋଜନ ବନସ୍ଥ ଅଟେ ପୁଣ ।
ଏ ବନସ୍ତରେ ଅଛନ୍ତି ଅନେକ ଜୀବଜନ୍ତୁ
ପମ୍ପାସରୋବରକୁ ଆସନ୍ତି ଜଳ ହେତୁ ।
ଏକଦିନେ କାଦମ୍ବରୀ ମୁନି ଏଠାକୁ ଆସି
ସରୋବର ତଟରେ ଯୋଗ ସାଧି ବସି ।
ଏ ସରୋବର ଗୋଟି ବିସ୍ତାର ବାରଯୁଣ
ସେଥିରେ ପଦ୍ମଫୁଲ ଫୁଟଇ ଚାରିବର୍ଣ୍ଣ ।
ସେ ମୁନି ସେଠାରେ କରିବାରୁ ତପ
ଜୀବମାନଙ୍କର ତହିଁ ବିଶେଷେ ହେଲା ଧାପ ।
ଉବଜ ହୋଇଣ ମୁନି କ୍ରୋଧ ହେଲେ
ସେ ସ୍ଥାନକୁ ଚାହିଁଣ କ୍ରୋଧେ ଶାପ ଦେଲେ ।
ବୋଇଲେ ବାନର ପଥିକୀ ଜନମାନେ
ରଜନୀ ପ୍ରଥମ ପ୍ରହରେ ରହିବେ ଏ ସ୍ଥାନେ ।
ନିତ୍ୟକର୍ମ ସାରିଣ ଦକ୍ଷିଣ ପାରୁଶେ ରହିବେ
ଅନ୍ୟ ଜୀବମାନେ ଗଲେ ଅନ୍ଧ ସେ ହୋଇବେ ।
ଦ୍ୱୀତୀୟ ପ୍ରହରେ ହସ୍ତୀ ଅଶ୍ୱ ଯେ ବରେହା
ଶୃଗାଳ ସମ୍ବର ହରିଣ ବାହୁଟିଆ ।
ମୃଗ କୁରଙ୍ଗ ଶଶା ଯେତେ ଜୀବମାନ
ଏମାନେ ଜଳ ଖାଇ ଅନ୍ତର ହେବେ ପୁଣ ।
ତୃତୀୟ ପ୍ରହରେ ଶାର୍ଦ୍ଦୂଳ ଆସିବେ
ଜଳପାନ କରିଣ ସେ ଯେଝାସ୍ଥାନେ ଯିବେ ।
ଚତୁର୍ଥ ପ୍ରହରେ ଆସିବେ ସିଂହ ପଲ
ଜଳପାନ କରିଣ ସେ ହୋଇବେ ଅନ୍ତର ।
କେହି କାହାକୁ ଏ ସ୍ଥାନେ ନ ଦେଖିବେ
ଦେଖିଲେ ଅଦୃଶ୍ୟ ଅନ୍ୟୋଅନ୍ୟେ ହେବେ ।

ଏତେ କହିଣ ମୁନି ଏଠାରୁ ଚଳିଗଲେ
ଏକାମ୍ରର ବନରେ ଯାଇଣ ତପକଲେ ।
ସେହିଦିନୁ ପଥୁକୀ ଦକ୍ଷିଣ ପାଶେ ରହି
ଏ ସକଳଜୀବେ ତିନିପାର୍ଶ୍ୱେ ଜଳ ଖାଇ ।
ତୁମ୍ଭେତ ସରୋବର ପଶ୍ଚିମ ପାଶେ ରହି
ତେଣୁ ଯେ ତୁମ୍ଭଙ୍କୁ ମୁଁ କହିଲି ବୁଝାଇ ।
ଲକ୍ଷ୍ମଣ ବୋଇଲେ ଜାଣିଲୁଁ ଏବେ ଆମ୍ଭେ
ପ୍ରମାଣ ଋଷିକଥା ଶାପଦେଲା ଯେବେ ।
ଲକ୍ଷ୍ମଣ ବୋଇଲେ ତୁ ଯେବେ ନୋହୁ ନର
ଦେଖିବା ନିଜରୂପ ପ୍ରକାଶ ତୋହର ।
ଶୁଣିଣ ହନୁମନ୍ତ ନରଦେହ ତ୍ୟାଗୀ
ମର୍କଟ ତନୁ ଧରି ଉଭା ହେଲା ବେଗୀ ।
ମାରୁତିକି ଚାହିଁଣ ରଘୁନାଥ ପୁଛି
ଭିନ୍ନ ଭିନ୍ନ ଗତି ତୋହର ଦିଶୁଅଛି ।
ଦେଖିଣ ଶ୍ରୀରାମ ପରମ ତୋଷ ଚିତ୍ତ
ଦେବତା ପରାଏ ଦିଶେ ପବନର ସୁତ ।
ଶ୍ରୀରାମ ଦେଖିଲେ ତାର କିରୀଟି କୁଣ୍ଡଳ
କଣ୍ଠରେ ଝୁଲୁଅଛି ନବରତ୍ନ ମାଳ ।
ଦେଖିଣ ପଚାରିଲେ କଉଶଲ୍ୟା ସୁତ
ତୁମ୍ଭର ଆୟେମାନେ ଆମ୍ଭଙ୍କୁ ବିପରୀତ ।
ଦେବତାଙ୍କ ରତ୍ନମାନ ତୁମ୍ଭ ହୃଦେ ଅଛି
ଏମନ୍ତ ବଚନ ପୁଛିଲେ ରଘୁବଂଶି ।
ତୁହୋ ହନୁମନ୍ତ ମର୍କଟ ତନୁ ବହୁ
ମୁକୁଟ କୁଣ୍ଡଳ ପାଇଲୁ ଯେ କାହୁଁ ।
ମାରୁତି ବୋଇଲେ ଦେବ ଆଗହୁଁ କହିଲି
ପବନର ହେତୁ ଏମାନ ପାଇଲି ।
ବେଦବର କହିବା କଥା ହେଲା ସତ୍ୟ
ତୁମ୍ଭଙ୍କୁ ଦେଖିଲାବେଳ ହେଲି ମୁଁ ତେଜୋବନ୍ତ ।
ସେ ମୋତେ କହିଲେ ରାମେ ହେବ ଦୃଶ୍ୟ
ସେ ଯେ ପରମବ୍ରହ୍ମ ପୁରାଣ ପୁରୁଷ ।
ସଂଶୟ ତୁଟିଲା ମୋର କରିବି ତୋର ସେବା
ମୁଁ ତୋ ପୁରଦାସ ମୋତେ ଅନୁଗ୍ରହ କରିବା ।
ସେ କଥା ଚେତି ମୋହର ମନରେ ହେତୁ କରି
ଏବେ ତୋତେ ଦେଖିଲି କୋଦଣ୍ଡ ଚାପଧାରୀ ।
ଆବର କଥା ଏକ ବେଦବର କହି
ଶ୍ରୀରାମ ମନରେ ଦୁଃଖରେ ଥିବେ ରହି ।
ବୋଲିବୁ ଯେ ଅସୁର ମାରିବା ନିମନ୍ତେ
ସକଳ ଦେବେ ଜନମ କପିରୂପେ ଏଥେ ।
କପିବଳ ଘେନିଣ ମାରିବେ ରାବଣ
ଚିନ୍ତା ଛାଡ ବୋଲିଣ କହିବୁ ତାଙ୍କୁ ପୁଣ ।

ଏତେ କହିଣ ବିଧାତା ନିଜ ପୁରେ ଗଲା
ସେ କଥା ଆସି ଏବେ ସୁଯୋଗ ମୋର ହେଲା
ବେଦବର ବଚନେ ମୋ ଭ୍ରାନ୍ତି ତୁଟିଲା
ତୋତେ ଦର୍ଶନ କରି ପାପକ୍ଷୟ ଗଲା ।
ମୁହିଁ ତୋର ଚରଣେ ଶରଣ ଗଲି ଆଜ
ଜଗତ ଜୀବନ ଅଟ ହେ ରଘୁରାଜ ।
ଏତେ ବୋଲି ଶ୍ରୀରାମ ଚରଣ ଦୁଇ ଧରି
ଶରଣ ପଶିଲା ନମସ୍କାର କରି ।
ଶ୍ରୀରାମ ଶ୍ରୀକରେ ତୋଳିଲେ ହନୁମନ୍ତ
ଆଶ୍ୱାସନା କଲେ ତାକୁ ଦଶରଥ ସୁତ ।
ତୁ ହନୁମନ୍ତରେ କେବଣ ଦେବତା
କିଅଛି ପାପରେ ତୋତେ ଜନ୍ମକଲା ଧାତା ।
ତୋହର ଯେ ମୋହର ବହୁତ ଅଛି କାର୍ଯ୍ୟ
ଧନ୍ୟ ଦିବସ ମୋତେ ମିଳିଲା ଯେ ଆଜ ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ହନୁମନ୍ତକୁ ପ୍ରସନ୍ନ ହୋଇଲେ ଦାଶରଥି ।
ଏମନ୍ତ ସମୟରେ ସୁଗ୍ରୀବର ପୁଣ
ବୃକ୍ଷର ଉପରେ ଉଠି ଚାହିଁଲା ନିରେକ୍ଷିଣ ।
ଦେଖିଲା ରାମ ସଙ୍ଗରେ ହନୁମନ୍ତର କଥା
ବାଳୀ ଭୟ ମନରୁ ଛାଡ଼ିଲା ତାର ବ୍ୟଥା ।
ଜାମ୍ବେବ ସୁଷେଣ ନଳକୁ ଡାକି ପୁଣି
ବୋଇଲା ତିନିଜଣେ ଚଳ ହେ ତକ୍ଷଣି ।
ହନୁମନ୍ତ ସଙ୍ଗରେ ସେ ବେନିଜଣ କଥା
ତୁମ୍ଭେ ଯାଇ ବୁଝ କେବଣ ବ୍ୟବସ୍ଥା ।
ନାରଦଙ୍କ କଥା ଯେ ଘଟିବ କି ମୋର
ଏତେକାଳେ ସୁଯୋଗ ବିଧାତା କଲା ସାର ।
ଶୁଣିଣ ସେ ତିନିଜଣ ବେଗେ ଚଳିଗଲେ
ଶ୍ରୀରାମଙ୍କ ପାଶେ ପ୍ରବେଶ ହୋଇଲେ ।
ଯେ ଯାହା ନିଜ ରୂପ ଧରିଛନ୍ତି ପୁଣ
ଦେଖିଣ ଶ୍ରୀରାମଙ୍କୁ ହର୍ଷ ହେଲେ ଜାଣ ।
ଶ୍ରୀରାମ ମାରୁତିକୁ ପଚାରନ୍ତି ପୁଣ
ଏ ତିନିଜଣ କାହୁଁ ଆସିଲେକି ଜାଣ ।
ହନୁମନ୍ତ ବୋଇଲା ଶୁଣିମା ଏବେ ହେଉ
ବୃହସ୍ପତି ନନ୍ଦନ ଜାମ୍ବେବ ଅଟେ ଏହୁ ।
ଶ୍ରୀରାମ ବୋଇଲେ ତୁ କହିଲୁ ବିପରୀତ
ଦେବଗୁରୁ ପୁତ୍ର ଏହି ଭାଲୁ ସ୍ୱରୂପତ ।
ଏଥିର କଥା ମୋତେ ବୁଝାଇଣ କହ
ଶୁଣିଲେ ପ୍ରତେ ଯିବି ତୁଟିବ ସନ୍ଦେହ ।
ହନୁମନ୍ତ ବୋଇଲେ ସତ୍ୟର ଯୁଗରେ
ସମୁଦ୍ର ମନ୍ଥନ ଯେ କଲେ ସର୍ବସୁରେ ।

ସକଳ ଦେବତା ସେଠାରେ ରୁଣ୍ଡ ହେଲେ
ଦେବଗୁରୁ ଯାଇ ପଛରେ ବିଜେ କଲେ ।
ଯାନ୍ତେ କର୍କଟି ବନେ ଦେଖିଲେ ଯେ ପୁଣ
ସୁଦମ୍ଭ ଭାଲୁ ଭାରିଯା ସୁଚିତ୍ରା ବୋଲି ଜାଣ ।
ମାନ ସରୋବରରେ କରଇ ଶୁଦ୍ଧ ସ୍ନାନ
ପ୍ରଭାତ ସମୟ ଯେ ହୋଇଅଛି ପୁଣ ।
ସେ ନାରୀ ସୁନ୍ଦରୀ ରମ୍ଭାକୁ ପାରେ ଜିଣି
ତାହାଠାରେ ଦେବଗୁରୁ ମନ ବଳେ ପୁଣି ।
ସେ ନାରୀ ପାଶରେ ମିଳିଲେ ଯାଇକରି
ନିରେଖି ଚାହିଁ କାମତାପେ ହେଲେ ଘାରି ।
ବୃହସ୍ପତି ବୋଇଲେ ଶୁଣ ଆମ୍ଭକଥା
ତୋତେ ଦେଖି ଆମ୍ଭଙ୍କୁ ହେଲା କାମ ବ୍ୟଥା ।
ରମଣରେ ଶରଧା ବଳିଲା ମୋହର
ଦିଅ ତୁ ସୁରତି ଗୋ ବିଳମ୍ବ ନ କର ।
ସୁଚିତ୍ରା ବୋଇଲା ତୁମ୍ଭର ନାମ କିସ
ମୁହିଁତ ପୁତ୍ରକଷ୍ଟୀ ନାହିଁ ମୋର ଅଂଶ ।
ବୃହସ୍ପତି ବୋଇଲେ ଦେବଗୁରୁ ମୁହିଁ
ସବୁଦେବତାଙ୍କର ଆଚାର୍ଯ୍ୟ ଅଟଇ ।
ସୁଯୋଗ ବେଳେ ନାରୀ କର ତୁ ରତିରଙ୍ଗ
ପୁତ୍ରେକ ଜନ୍ମ ହେବ ମୋହର ସଂଯୋଗ ।
ଶୁଣିଣ ସୁଚିତ୍ରା ସନମତ କଲା
ବୃହସ୍ପତି ତା ସଙ୍ଗରେ କାମରେ ମାତିଲା ।
ବଳ ବୀର୍ଯ୍ୟ ଖସିଲା ଦେବଗୁରୁଙ୍କର
ସୁଚିତ୍ରା ଗର୍ଭରେ ରକ୍ତସଙ୍ଗେ ମେଳ ।
ଦଶଦଣ୍ଡ ପର୍ଯ୍ୟନ୍ତେ ସେ ନାରୀଗର୍ଭେ ଧରି
ସମ୍ଭାଳି ନ ପାରିଲା ପୁତ୍ରକୁ ଜନ୍ମକରି ।
ଜନ୍ମହୋନ୍ତେ କୁମର ହୋଇଲା ନବଯୁବା
ଦେଖିଣ ବୃହସ୍ପତି ମନରେ ହେଲେ ଲୋଭା ।
ସୁଚିତ୍ରା ଦେଖିକରି ଆନନ୍ଦ ମନହେଲା
ଭଲଯୋଗେ ପୁତ୍ର ଜନ୍ମକଲୁ ବୋଇଲା ।
କୁମର କହିଲା ମାତା ଶୁଣ ମୋ ବଚନ
ପିତାଙ୍କ ସଙ୍ଗେ ମୁଁ ଯେ ଯାଉଅଛି ପୁଣ ।
ମୋତେ ଯେ କାରଣ ପିତାଙ୍କ ସଙ୍ଗେ ଅଛି
ଅଳପ ଦିନ ରହିଣ ଫେରି ମୁଁ ଆସୁଛି ।
ଶୁଣିଣ ଜନନୀ ହରଷ ହୋଇଲା
ପିତାର ସଙ୍ଗରେ ପୁତ୍ର ଚଳିଗଲା ।
ସାହେର ମନ୍ଥନରେ ପ୍ରବେଶ ପିତାପୁତ୍ର
ବ୍ରହ୍ମା ବିଷ୍ଣୁ ମହେଶ୍ୱର ସୁର ଅସୁର ତ ।
ମନ୍ଦର ପର୍ବତରେ ବାସୁକୀ ରଜ୍ଜୁ ପୁଣ
ମନ୍ଥିଲେ ସାଗରୁ ଜାତ ଧନ ରତ୍ନ ଜାଣ ।
ବିଷ ଯେ ଅମୃତ ଔଷଧି ଜାତ ହେଲା
ମହାଲକ୍ଷ୍ମୀ ଧନରତ୍ନ ଅନେକ ଦ୍ରବ୍ୟ ହେଲା ।
ସୁନା ହୀରା ଅମୂଲ୍ୟ ଅଷ୍ଟରତ୍ନ ସାର
ସକଳ ଜାତ ହେଲା କ୍ଷୀର ଯେ ସାହେର ।
ଲକ୍ଷ୍ମୀଙ୍କି ନାରାୟଣ କୁବେର ନେଲା ଧନ
ଇନ୍ଦ୍ର ନେଲେ ପୁଣ ଅମଳାନ ବସନ ।
ଦେବତାଏ ଅମୃତ ଈଶ୍ୱର ନେଲେ ବିଷ
ଅସୁରଙ୍କୁ ସୁର ଦେଲେ କରିଣ ବିଶ୍ୱାସ ।
ବୃହସ୍ପତିଙ୍କୁ ମହୌଷଧି ଦେଲେ ଯେ ସକଳ
ଏ ରୂପେ ଦ୍ରବ୍ୟ ବାଣ୍ଟି ନେଲେ ଯେ ସକଳ ।
ବେଦବ୍ରହ୍ମା ବୋଇଲେ ଶୁଣ ବୃହସ୍ପତି
ତ୍ରେତାଯୁଗେ ନାରାୟଣ ଜନ୍ମ ହେବେ ପୃଥ୍ୱୀ ।
ଚାରି ରାବଣ ମାରିବାକୁ ହେବେ ଅବତାର
ରାମାୟଣ ଯୁଦ୍ଧେ ପୁତ୍ର ହେବ ମନ୍ତ୍ରୀବର ।
ଏ ଔଷଧଯାକ ତାହାକୁହିଁ ଦିଅ
ଗିରିକନ୍ଦରେ ରୋପି ଚିହ୍ନିଣ ଯେ ଥାଅ ।
ଶୁଣିଣ ବୃହସ୍ପତି ଜମ୍ବେବ ହସ୍ତେ ଦେଲେ
ଘେନିଣ ଜମ୍ବେବ ସତ୍ୱରେ ଚଳିଲେ ।
ତିନିପୁରେ ଔଷଧ ସ୍ଥାପିଲା ଚିହ୍ନମାନ
ଜ୍ୟୋତିମୟ ସ୍ଥାନରେ ପାତାଳେ ମିଳେପୁଣ ।
ସ୍ଥାପିଣ ଫେରିବାର ବେଳରେ ତାହାର
ଜ୍ୟୋତି ନାମେ ରାଜା ଧରିଲାକ କର ।
ଝରାବତୀ ବୋଲିଣ ଦୁହିତା ତାର ଥିଲା
ସେ କନ୍ୟାକୁ ଜମ୍ବେବକୁ ବିଭା କରାଇଲା ।
ସେଠାବରେ ଜମ୍ବେବ ରହିଲା ସତ୍ୟଯୁଗ
ମାତାପିତା ଦେଖିବାକୁ ଅଇଲା ତହୁଁ ବେଗ ।
ମଧପୁରେ ପରବେଶ ହୋଇଲା ଆସିକରି
କର୍କଟୀବନେ ମାତଙ୍କୁ ଦର୍ଶନ କରି ।
ସକଳ ଚରିତ ମଣାଇ କହିଲେ
ଶୁଣିଣ ମାତା ସନ୍ତୋଷ ହୋଇଲେ ।
ବାଳୀ ସେ ପୁରରେ ପ୍ରବେଶ ସମୟେ ଏମନ୍ତ
ମନ୍ତ୍ରୀ ବରିବାକୁ ଆଣିଲା ଜମ୍ବୋବନ୍ତ ।
ଅନେକଦିନ କିଷ୍କିନ୍ଧ୍ୟା କଟକେ ରହିଲା
ସୁଗ୍ରୀକି ବାଳୀବୀର ଘଉଡିଣ ଦେଲା ।
ତେଣୁ ସେ ସୁଗ୍ରୀ ସଙ୍ଗେ ଅଇଲା ଜମ୍ବେବ
ମାତୁଳ ଅଜା ତାର ଅଟଇ ସୁଗ୍ରୀବ ।
ଏରୂପେ ଜମ୍ବେବର ଜନ୍ମ ଅଟେ ସାର
କହିଲି ଜମ୍ବେବ କଥା ଶୁଣିଲ ରଘୁବୀର ।
ଶ୍ରୀରାମ ବୋଇଲେ ହନୁ ମୋହଠାରୁ ଶୁଣ
ସୁଦମ୍ଭ ଭାଲୁ ଯେ କେଣେ ଥିଲା ପୁଣ ।

ହନୁମନ୍ତ ବୋଇଲା ସେ କପିଳାସରେ ଥିଲା
ପୁତ୍ର ହେବା ଆଶାରେ ଶିବଙ୍କୁ ସେବୁଥିଲା ।
ଯେଉଁଦିନ ବୃହସ୍ପତି ଦେଲେ ତାକୁ ପୁତ୍ର
ସେଦିନ ତ୍ରିଲୋଚନ କହିଲେ ନିୟତ ।
ବୋଇଲେ ଭାଲୁରାଜା ବେଗେ ଚଳିଯାଅ
ବୃହସ୍ପତି ଦେଲେ ପୁତ୍ର ତୁ ଦୁଃଖ ନ ପାଅ ।
ଶୁଣିଣ ସୁଦମ୍ଭ ଭାଲୁ ସେଠାରୁ ଅଇଲା
କର୍କଟୀ ବନରେ ପ୍ରବେଶ ହୋଇଲା ।
ସୁଚିତ୍ରାକୁ ପଚାରିଲା ପୁତ୍ରର ସନ୍ଦେଶ
ସେ ନାରୀ ବୋଇଲା ମୋତେ ଗୁରୁଦେଲେ ଶିଷ୍ୟ ।
ସେ ପୁତ୍ରକୁ ଘେନି ଗୁରୁ ଦକ୍ଷିଣକୁ ଗଲେ
ବିଦ୍ୟା ସିଦ୍ଧ କରି ଛାଡ଼ି ଦେବେ ସେ କହିଲେ ।
ଶ୍ରୀରାମ ବୋଇଲେ ଶୁଣିଲୁଁ ତାର କଥା
ସେ ମୋର ହୋଇବ ମନ୍ତ୍ରୀ ବଡ ସାମରଥା ।
ଜମ୍ବେବର ସଙ୍ଗରେ ଅଛଇ ଯେଉଁ ଜନ
ସେ କାହାର ନନ୍ଦନ କହ ହନୁମାନ ।
ହନୁମନ୍ତ ବୋଇଲେ ଶୁଣ ରଘୁରାଣ
ଏହାଙ୍କର ନାମ ଅଟଇ ସୁଷେଣ ।
ରାବଣ ଚଣ୍ଡାଳ ଦୁଷ୍ଟବୁଦ୍ଧି କଲା
ସକଳ ଦେବତାଙ୍କୁ ଧରି ବନ୍ଦି କଲା ।
ଏଣୁ ସେ ଦେବତାଏ ବୈକୁଣ୍ଠପୁର ଗଲେ
ଅନନ୍ତ ନାରାୟଣଙ୍କ ଆଗରେ କହିଲେ ।
ଦେବତାଙ୍କଠାରୁ ଶୁଣିଣ ବାସୁଦେବ
ବୋଇଲେ ସମସ୍ତଙ୍କୁ ମର୍ତ୍ତ୍ୟପୁର ଯିବ ।
ବାନର ଭାଲୁଙ୍କଠାରେ ହୋଇବ ପ୍ରବେଶ
ସେମାନଙ୍କ ସଙ୍ଗରେ କରିବ ରତିରସ ।
ଏକ ଏକ କୁମର କର ତୁମ୍ଭେ ଜାତ
ତେବେ ସେ ଅସୁରେ ହୋଇବେ ପ୍ରାଣେ ହତ
ତାହାଙ୍କୁ ସଙ୍ଗେ ଘେନି ଅସୁର ମୁଁ ମାରିବି
ତେଣୁ ସେ ପୃଥିବୀ ଉଶ୍ବାସ କରିବି ।
ଶୁଣିଣ ଦେବତାଏ ବେଗେ ଗଲେ ଚଳି
ନଉସାଗର ବାନର ଭାଲୁଙ୍କ ସଙ୍ଗେ ମିଳି ।
ବାନର ଭାଲୁଙ୍କ ସଙ୍ଗେ କଲେ ରତିଲୀଳା
ନଉସାଗର ପର୍ଯ୍ୟନ୍ତ ଜାତହେଲେ ବଳା ।
ପଛନ୍ତେ ଅଶ୍ୱିନୀକୁମାର ଚଳିଗଲେ
ବଦରୀ ବନରେ ପ୍ରବେଶ ହୋଇଲେ ।
ସୁଗନ୍ଧା ନାମରେ ଏକଇ ବାନର
ତାହାର ଘରଣୀ ରୂପରେଖା ସାର ।
ସେ ନାରୀ ସଙ୍ଗରେ ଅଶ୍ୱନୀ କୁମାର
ରତି ରହସ୍ୟଲୀଳା କଲେକ ଅପାର ।
ବଳବୀର୍ଯ୍ୟ ଖସନ୍ତେ ସେ ନାରୀ ଗର୍ଭେଧରି
ଅଶ୍ୱିନୀକୁମାର ସ୍ୱର୍ଗକୁ ଗଲେ ଚଳି ।
ଦଶମାସ ସଂପୂର୍ଣ୍ଣରେ କୁମର ଜନ୍ମ ହେଲା
ଏକୋଇଶା ଦିନ ଅଶ୍ୱିନୀକୁମାର ଅଇଲା ।
ପୁତ୍ରର ନାମଗୋଟି ଦେଲା ସେ ସୁଷେଣ
ବ୍ୟାଧି ଭଲ କରିବୁ ଔଷଧି ଚିହ୍ନିଣ ।
ସୁଷେଣ ବୈଦ୍ୟ ବୋଲି ନାମ ହେଉ ତୋର
ରାମାୟଣ ଯୁଦ୍ଧେ ଯଶ ଲଭ ତୁ ଅପାର ।
ଏତେ କହି ଅଶ୍ୱିନୀକୁମାର ଚଳିଗଲେ ।
ନିଜସ୍ଥାନେ ସ୍ୱର୍ଗରେ ପ୍ରବେଶ ହୋଇଲେ ।
ପିତାମାତା କୋଳରେ ବଢ଼ିଲେ ସୁଷେଣ
କାଳେଣ ନବଯୁବା ହୋଇଲେ ସେ ପୁଣ ।
ଔଷଧି ଚିହ୍ନିଣ ସେ ବୈଦ୍ୟପଣ କଲା
କିଷ୍କିନ୍ଧ୍ୟା ରାଜ୍ୟରେ ବୈଦ୍ୟ ବୋଇଲା ।
କାଳେ ବାଳୀ ବୀର ଦେହରେ ବ୍ୟାଧି ହେଲା
ଜମ୍ବେବ କହିବାରୁ ଦୂତ ସେ ଭେଦିଲା ।
ସୁଷେଣ ଆସିଣ ଅଉଷଧି ଦେଲା
ତତକ୍ଷଣେ ବାଳୀବୀର ଦେହ ସୁସ୍ଥ ହେଲା ।
ସେହିଦିନୁ ବାଳୀ ସୁଷେଣକୁ ରଖିଲା
ଏବେ ବାଳୀ ସୁଗ୍ରୀବର ଅପଡ଼ ହୋଇଲା ।
ସୁଗ୍ରୀ ସଙ୍ଗେ ପାଞ୍ଚଜଣ ଘଉଡିଣ ଦେଲା
ସେଦିନୁ ଏ ପାଞ୍ଚଙ୍କର ଋଷ୍ୟମୁକେ ଶାଳା ।
ତେଣୁ କରି ସୁଗ୍ରୀବର ସଙ୍ଗେ ଅଛୁ ରହି
ଫଳମୂଳ ଖାଇଣ ଦୁଃଖରେ ଦିନ ନେଇ ।
ଶ୍ରୀରାମ ପଚାରିଲେ କପି ନାମ କିସ
ଚାରିଜଣ ଦିଶୁଛତ ଦେବତାଙ୍କ ଅଂଶ ।
ମୁକୁଟ କୁଣ୍ଡଳ ହାର ତୁମ୍ଭ ଦେହେ ଅଛି
ଦେବତା ଦେଲାପ୍ରାୟେ ଏହା ମୁଁ ମଣୁଛି ।
ତୋତେ ପବନ ଦେଲା ଜମ୍ବେବକୁ ବୃହସ୍ପତି
ସୁଷେଣକୁ ଅଶ୍ୱିନୀକୁମାର ଦେଇଛନ୍ତି ।
ନଳବୀର କାହାଠାରୁ ପାଇଲା ରତ୍ନଥାଏ
ଏ କଥା ବୁଝାଇ କହ ପବନ ତନୟେ ।
କରଯୋଡି ମାରୁତି କହଇ ବଚନ
ଲବଣ ସମୁଦ୍ରକୁ ନଉନିଧି ବନ ।
ସେ ବନ ନଉନିଧି ବାନର ଘର
ସେ ବନ କପିଙ୍କ ପରେ ସେହି ନୃପବର ।
କେଶରୀ ବାନରର ଭୟେଣୀ ମୋ ପିଉସୀ
ତାର ନାମ ଚନ୍ଦ୍ରରେଖା ଅଟେ ଶୁଭ୍ରକେଶୀ ।
ସେ କନ୍ୟାକୁ ବିବାହ ହୋଇଲା ସେ ପୁଣ
ସହସ୍ରେ ବରଷ ଯାଏଁ ଖଟିଲା ଚରଣ ।

ପୁତ୍ରପୁତ୍ରୀ କିଛି ତାହାର ନୋହିଲା
ଚନ୍ଦ୍ରରେଖା ନାରୀ ମନରେ ଚିନ୍ତାକଲା ।
ଏକଦିନେ ସ୍ୱାମୀକୁ କହିଲା ସେ ପୁଣ
ଆଜିଯାଏ ମୋର ନୋହିଲା ସନ୍ତାନ ।
ଆଉ ଏକ ନାରୀ ହୁଅ ତୁମ୍ଭେ ବିଭା
ପୁତ୍ର ଉପୁଜିଲେ କୁଳ ହେବ ଶୋଭା ।
ଶୁଣି ନଉନିଧି ବାନରେଶ୍ୱର କହି
ଦେବତା ସମାନେ ତୋର କୁମର ହୋଇବଇଁ ।
ବେନିପୁତ୍ର ବେନିନାରୀ ଗର୍ଭରୁ ହେବ ଜାତ
ଅଷ୍ଟବକ୍ର ଋଷି ମୋତେ କହିଣ ଗଲେ ତ ।
ଚନ୍ଦ୍ରରେଖା ବୋଇଲା ଶୁଣ ପ୍ରାଣନାଥ
ଅଷ୍ଟାବକ୍ରଙ୍କୁ ତୁମ୍ଭେ କାହିଁ ଭେଟିଲ ତ ।
ନଉନିଧି ବୋଇଲା ସେ ବନେ ଆସିଥିଲେ
ଦେଖିଣ ତାଙ୍କୁ ମୁହିଁ ମାନ୍ୟକଲି ଭଲେ ।
ଅମୃତ ସମାନେ ଫଳ ତାଙ୍କୁ ଦେଲି ଆଣି
ଭୁଞ୍ଜିଣ ସନ୍ତୋଷ ହେଲେ ତପିମଣି ।
ପ୍ରସନ୍ନ ହୋଇଣ ସେହୁ ବର ଦେଲେ
ବେନି ପୁତ୍ର ବେନି ନାରୀ ଜାତ ହେଲେ ଭଲେ ।
ଏକଇ କୁମର ଦେବଅଂଶ ହେବ
ଏକଇ କୁମର ତୋର ନିଜର ହୋଇବ ।
ମୁଁ ବୋଇଲି କେଉଁ ଦେବତା ଅଂଶ ପୁଣ
ପ୍ରଥମ ଗର୍ଭେ ପୁତ୍ର ଜନ୍ମ ହେବ ଜାଣ ।
ସେ ବୋଇଲେ ଅସୁର ମାରିବାକୁ ହରି
ଜନମ ହୋଇବେ ମନୁଷ୍ୟ ଦେହଧରି ।
ତେଣୁକରି ସକଳ ଦେବଅଂଶେ ଜାଣ
ନଉସାଗର କପି ଜନ୍ମହେବେ ପୁଣ ।
ବାନର ଭାଲୁ ଘେନି ମନୁଷ୍ୟ ରୂପ ଧରି
ରାମାୟଣ ଯୁଦ୍ଧରେ ଅସୁର ବଳ ମାରି ।
ତେଣୁ ତୋର ପତ୍ନୀକୁ ହରିବ ବିଶ୍ୱକର୍ମା
ପୁତ୍ରେକ ଉପୁଜିବ ସର୍ବଗୁଣ ସୀମା ।
ସେ ପୁତ୍ର ନାମ ଯେ ଚାରିଯୁଗେ ସାର
ଛୁଇଁଲେ ପଥର ଭାସିବ ଜଳର ।
ଏତେ କହି ଶୂନ୍ୟପଥେ ଚଳିଗଲେ ମୁନି
ସେହିଦିନୁ ମୁହିଁ ସେ ମୁନିଙ୍କର କଥା ମାନି ।
ଆକୁଳ ଚିତ୍ତ ନୋହି ଶୁଣ ଗୋ ଭବାନୀ
ଅତି ରହସ୍ୟ କୌତୁକ ହୋଇବ କାହାଣୀ ।
ଶୁଣିଣ ଚନ୍ଦ୍ରରେଖା ନିବର୍ତ୍ତ ହୋଇଲା
ଏମନ୍ତେ କିଛିଦିନ ସେଥିରେ ବହିଗଲା ।
ଏକଦିନେ ନଉନିଧି ବାନରେଶ୍ୱର କହି
କେଶରୀ ବାନର ପୁରକୁ ଗଲା ସେହି ।
କେଶରୀ ପୁରରେ ପକ୍ଷେକ ରହିଲା
ପଚରା ସଙ୍ଖୋଳା ହୋଇ ବାନରେଶ୍ୱର ଗଲା ।
ଏମନ୍ତ ସମୟେ ଚନ୍ଦ୍ରରେଖା ରଜସ୍ୱଳା
ପାଞ୍ଚଦିନରେ ଶୁଦ୍ଧ ସ୍ନାହାନ ସେ କଲା ।
ରଜନୀ କାଳରେ ଗୃହଗୋଟି ସାଜିକରି
କର୍ପୂର ଚନ୍ଦନ ରଖିଲା ଗୋଳିକରି ।
ଆୟ ଅଳଙ୍କାର ଲଗାଇ ସୁବେଶ ହୋଇଲା
ପଲଙ୍କ ସୁପାତି ଯତନେ ପାଡିଲା ।
ଅମୃତ ସମାନରେ ଫଳମୂଳ ଆଣି
ମାଣିକର ଦ୍ୱୀପ ଜାଳି ବସିଲା କାମିନୀ ।
ବୀର ବିକ୍ରମ ବିଶ୍ୱକର୍ମାଙ୍କୁ ସ୍ମରିଲା
ବିଶ୍ୱକର୍ମା ଅମରପୁରରେ ଜାଣିଲା ।
ତତକ୍ଷଣେ ସୁବେଶ ହୋଇଲା ଚିତ୍ରକାର
ଶୋଭାପଣେ ସୁନ୍ଦର ଅଟେ ସୁକୁମାର ।
ନଉନିଧି ନବରେ ଯାଇ ହେଲା
ଚନ୍ଦ୍ରରେଖା ପୁରରେ ତ୍ୱରା ହୋଇ ମିଳିଲା ।
ଦେଖିଣ ଚନ୍ଦ୍ରରେଖା ପଲଙ୍କରୁ ଉଠି
ଶୋଭା ସୁନ୍ଦର ଦେଖି ଚରଣରେ ଲୋଟି ।
ନମସ୍କାର କରିଣ କରଯୋଡି କହି
ତୁମ୍ଭର ନାମ କିସ କହ ହେ ବୁଝାଇ ।
ଚିତ୍ରକାର କହିଲେ ମୁଁ ଅଟେ ବିଶ୍ୱକର୍ମା
ତୋହର ପୁରକୁ ବିଜେକଲି ଏବେ ବାମା ।
ଚନ୍ଦ୍ରରେଖା ବୋଇଲା ଶୁଣ ଦେବରାଜ
ପୁତ୍ରେକ ଜାତ କର ହୋଇବ ତୁମ୍ଭେ ପୂଜ୍ୟ ।
ତୁମ୍ଭ ନାମ ମୋର ନାମ ଯୁଗେ ଯୁଗେ ଥିବ
ବିଶ୍ୱକର୍ମା ଚିତ୍ରରେଖା ପ୍ରୀତି ଯେ ଦୁର୍ଲ୍ଲଭ ।
ଶୁଣିଣ ବିଶ୍ୱକର୍ମା ବୋଇଲେ ସତ୍ୟ ମୋର
ରମଣରେ ସୁଖ ଦେବୁ ନାରୀବର ।
ତେବେ ତୋହର କଥା ନିଷ୍ଫଳ ନୋହିବ
ଶୁଣି ଚନ୍ଦ୍ରରେଖା ତାଙ୍କଠାରେ ଭାବ ।
ରମଣ ରସ ଯେ ଲୀଳା ନାନା ଗତି
ବିଶ୍ୱକର୍ମା ମନରେ ହୋଇଲା ତୃପତି ।
ବଳବୀର୍ଯ୍ୟ ଖସିଲା ମାହେନ୍ଦ୍ର ଯୋଗବେଳେ
ଗର୍ଭରେ ସମ୍ଭାଳିଲା ଚନ୍ଦ୍ରରେଖା ଭଲେ ।
ମନର ହରଷରେ ଚନ୍ଦ୍ରରେଖା ଉଠି
ବିଶ୍ୱକର୍ମା କହିଣ ସ୍ୱର୍ଗକୁ ଗଲେଟି ।
ନବ ଦିନରେ କୁମର ଜନମ ହୋଇଲା
ଜନ୍ମନ୍ତେ କୁମର ନବଯୁବା ହେଲା ।
ଦେଖିଣ ଚନ୍ଦ୍ରରେଖା ମନରେ ଭୟ କଲା
ବିଶ୍ୱକର୍ମାଙ୍କୁ ସେ ସୁମରଣା କଲା ।

ଜାଣିଣ ବିଶ୍ୱକର୍ମା ସେଠାରେ ପ୍ରବେଶ
ଦେଖିଣ ଚନ୍ଦ୍ରରେଖା ମନରେ ହରଷ ।
ବୋଇଲା କୁମର ଜୟନ୍ତେ ନବଯୁବା
ତୁମ୍ଭର ସ୍ୱରୂପ ସଦୃଶ ଅଟେ ଶୋଭା ।
ଏ ପୁତ୍ରକୁ ତୁମ୍ଭେ ନିବର୍ତ୍ତି କରି ଚଳ
ଶୁଣି ବିଶ୍ୱକର୍ମା ହୋଇଲେ ଶୀତଳ ।
କିରୀଟି କୁଣ୍ଡଳ ରତ୍ନହାର ଦେଲେ
ପୁତ୍ରକୁ ବୁଝାଇ କହି ସ୍ୱର୍ଗକୁ ଚଳିଲେ ।
ଏଥୁ ଅନନ୍ତରେ ଶୁଣ ଶାକମ୍ଭରୀ
ବିଶ୍ୱକର୍ମା ବୀର୍ଯ୍ୟରେ ନଳ ଅବତରି ।
ତେଣୁ ସେ ବଳବାନ ହୋଇଲା ପ୍ରବଳ
ଲକ୍ଷେ ସିଂହର ବଳ ପ୍ରାକର୍ମ ହେଲା ଠୁଳ ।
ଶାର୍ଦ୍ଦୁଳ ସିଂହ ବରେହା ବହୁ ଜନ୍ତୁ ମାରି
ଦୁଷ୍ଟପଣ କରିଣ ବିହରେ ବହୁ ଗିରି ।
ବନଗିରି ପର୍ବତ ବୁଲନ୍ତେ ହୋଇ ଶ୍ରମ
ସମୁଦ୍ରକୂଳେ ଦେଖି ଋଷିଙ୍କ ଆଶ୍ରମ ।
ଋଷିଙ୍କର ଆଶ୍ରମରେ ପ୍ରବେଶ ହୋଇଲା
ସ୍ୱାହା ପ୍ରୋକ୍ଷଣୀ ବେଦପୋଥି ବଳେ ନେଲା ।
ସମୁଦ୍ର ଭିତରେ ପକାଇଲା ନେଇକରି
ଦେଖିଣ ଏ ରୀତି ଶାପଦେଲେ ତପଚାରୀ ।
ବୋଇଲେ ଆଏଦାଏ ବେଦ ପୋଥିମାନ
ଜଳେ ନେଇ ପକାଉ ଅଟୁ ଦୁଷ୍ଟଜନ ।
ଆଜିଠୁଁ ଯେ ଦ୍ରବ୍ୟ ଛୁଇଁ ଜଳେ ପକାଇବୁ
ପାଷାଣ ହେଲେ ସୁଦ୍ଧା ଭାଷିବ ସେ ସବୁ ।
ବଳହୀନ ହେବୁ ସମୟ ପରିଯନ୍ତେ
ଶ୍ରୀରାମଙ୍କୁ ଭେଟପାଇଲେ ମିଳିବ ବଳତୋତେ ।
ଗତର ବଳ ତୋତେ ପ୍ରାପତ ହୋଇବ
ବାସୁଦେବ ଉପକାର ଦେବକାର୍ଯ୍ୟ ହେବ ।
ସେହିଦିନରୁ ନିର୍ବଳ ଏ ନଳ ଶରୀର
ଏତେକାଳେ ଭେଟ ମିଳିଲେ ରଘୁବୀର ।
ଶୁଣିଣ ଶ୍ରୀରାମ ପରମ ତୋଷ ହେଲେ
ମୁକୁଟ କୁଣ୍ଡଳ ତୁମ୍ଭର ଦେଖନ୍ତୁ ଭଲେ ।
ନିଜବଳ ତୁମ୍ଭଙ୍କୁ ହେଉ ପରାପତ
ଏମନ୍ତେ ସୁପ୍ରସନ୍ନ ହେଲେ ରଘୁନାଥ ।
ରଘୁନାଥ ପ୍ରସନ୍ନରେ ଚାରିଜଣ ତେଜ
ମୁକୁଟ କୁଣ୍ଡଳ ହାର ଦେଖିଲେ ସର୍ବ ସଜ ।
ଆନନ୍ଦରେ ଚାରିଜଣ ନମିଲେ ଚରଣ
ପ୍ରସନ୍ନ ହୋଇଣ ରାମ କହନ୍ତି ବଚନ ।
ବୋଇଲେ ପମ୍ପା ସରୋବର ଚାରିଦିଗକୁ ଯିବ
ପିତା କହିଲା କଥାମାନ ପରଖିବ ।

ଶୁଣିଣ ଚାରିଜଣ ସେଠାରୁ ଗଲେ ଚଳି
ପମ୍ପା ସରୋବର ପାଶେ ଚାରିଜଣ ମିଳି ।
ପୂର୍ବରେ ନଳ ଯେ ପଶ୍ଚିମେ ହନୁମନ୍ତ
ଉତ୍ତରେ ସୁଷେଣ ଦକ୍ଷିଣେ ଜାମ୍ବୋବନ୍ତ ।
ପ୍ରଥମେ ନଳ ପାଷାଣ ଘେନି ଚଳିଗଲା
ପମ୍ପା ସରୋବର ଜଳରେ ପକାଇଲା ।
ଭାସିଲା ପଥର ଦେଖିଲା ନଳବୀର
ପ୍ରାକର୍ମ ବଳ ଠୁଳ ହେଲା ଅଙ୍ଗେ ତାର ।
ପୂର୍ବଭାଗରେ ଯେଉଁ ପର୍ବତ ପୁଣ ଥିଲା
ସେ ଗିରିକି ଧରିଣ ନଳ ଉପାଡ଼ିଲା
ଷୋଳ ଭେଳା ପ୍ରାୟେ ତାକୁ ଲାଗିଲାକ ପୁଣ ।
ବିଚାରି ସନ୍ତୋଷ ନଳର ମନେ ପୁଣ ।
ନିଶ୍ଚୟ ରାମ ରାଣ ଅଟନ୍ତି ନାରାୟଣ
ଋଷିଙ୍କର ବଚନ ଭେଟିଲି ଏବେ ପୁଣ ।
ପଶ୍ଚିମ ଦିଗରେ ହନୁମନ୍ତ ଥିଲା
ହୁଁକାର ଶବଦ କରି ବେଗେ ଚଳିଗଲା ।
କେଶରୀ ଶାର୍ଦ୍ଦୁଳ ମାରିଲା ବନେ ଖୋଜି
ହସ୍ତୀ ବରେହାଙ୍କୁ ଦଳିଲା ଗଳଗାଜି ।
ଦଣ୍ଡପାଟ ବନରେ ପ୍ରବେଶ ଯାଇ ହେଲା
ଶତେକ ଗିରିବର ଦଣ୍ଡକେ ଉପାଡ଼ିଲା ।
ବିଚାରିଲା ରାମଚନ୍ଦ୍ର ଅଟନ୍ତି ନାରାୟଣ
ମୁନିମାନଙ୍କର କଥା ଘଟିଲା ଏବେ ପୁଣ ।
ପାର୍ବତୀ ବୋଇଲେ ହେ ତ୍ରିଲୋଚନ ଶୁଣ
ସୁଷେଣ ଜମ୍ୱେବ ସେଠି କି କରିଲେ ପୁଣ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ନଳ ହନୁମନ୍ତର ପରୀକ୍ଷା ସରିଲାଟି ।
ସେଠାରୁ ଜମ୍ୱେବ ସେ ବନରେ ବୁଲେ
ଯେଉଁ ଔଷଧ ରୁପିଲା ମନେ ବିଚାରିଲେ ।
କେଉଁ ଔଷଧ ସୁଷେଣ କ୍ଷୁଦ୍ର ଜୀବରେ ଦେଲା
ସେ ଔଷଧ ଚିହ୍ନିଣ ସୁଷେଣ ଆଣିଲା ।
ପୋଥି ଫେଡ଼ିଣ ସେ ଦେଖିଣ ନାମ ପାଇ
ସୁଷେଣ କରରେ ଦେଲାକ ବେଗେ ନେଇ ।
ଦେଖିଣ ସୁଷେଣ ଜମ୍ୱେବ ପଚାରିଲା
ଔଷଧ ବୃକ୍ଷ ଏବେ ଚିହ୍ନିଲୁ ବୋଇଲା ।
ତୋହର ପୂର୍ବବର କଲୁ କି ପରୀକ୍ଷା
ଶୁଣିଣ ଜମ୍ୱେବ ଚଳିଲା ପ୍ରତୀକ୍ଷା ।
ବନଗିରି ବୁଲିଣ ପର୍ବତ ଉପାଡ଼ିଲା
ସାତ ପାଞ୍ଚ ଟାଳିଣ ସେ ସ୍ଥାନରୁ ଥଇଲା ।
ବିଚାରିଲା ନିଶ୍ଚୟେ ଅଟନ୍ତି ବାସୁଦେବ
ଅସୁର ମାରିବାକୁ ଅବତାର ଭାବ ।

ଦୁର୍ବାସା ଋଷିଙ୍କ ଘଟିଲା ଏବେ ମୋର
ଏମନ୍ତ ବିଚାରି ଚଳିଗଲା ଧୀର ଧୀର ।
ସୁଷେଣର ପାଶରେ ହୋଇଲା ପ୍ରବେଶ
ବୋଇଲା ମୋର ସଙ୍କେତ ହୋଇଲା ପ୍ରକାଶ ।
ଶୁଣିଣ ସୁଷେଣ ବେଗେ ଚଳିଗଲା
ମରିବା କେଶରୀ ହସ୍ତୀକି ଯୋଡ଼ିଲା ।
ଗଣ୍ଡି ମୁଣ୍ଡକୁ ଯୋଡ଼ିଣ ଔଷଧ ରସ ଦେଲା
ଅଳପ ସମୟ ଚାହିଁଣ ରହିଲା ।
ତତକ୍ଷଣେ ବେନି ଜୀବ ଜୀଇ ଛିଡା ହେଲେ
ସୁଷେଣକୁ ଦେଖିଣ ଡରିଣ ପଳାଇଲେ ।
ଦଣ୍ଡକା ଅରଣ୍ୟର ଭିତରେ ଲୁଚିଲେ
ଏହିପରି ଅଉଷଧି ପରୀକ୍ଷା ସେ କଲେ ।
ସେ ଯିବାରୁ ସୁଷେଣ ସେ ଜଳରେ ପଶନ୍ତି
ମେରୁ ଗିରି ଉହାଡେ ହୋଇଣ କ୍ରୋଧମତି ।
ଦଶ ବିଂଶ ଉପାଡି ମନରେ ବିଚାରିଲା
ପୂର୍ବକାଳ ବଳ ମୋତେ ପ୍ରାପ ତ ହୋଇଲା ।
ଔଷଧି ଭେଟିଲା ମୋର ଶାପ ହେଲା ପାର
ନିଶ୍ଚୟ ଜାଣିଲି ରାମ ବ୍ରହ୍ମାଣ୍ଡ ଠାକୁର ।
ଏମନ୍ତ ଭାବି ପମ୍ପା ସରୋବରରେ ମିଳି
ଚାରିଦିଗରୁ ଚାର ଆସିଲେକ ଫେରି ।
ସରୋବର ଜଳରେ ଚାରିହେଁ ସ୍ନାନ କଲେ
ଯବ ତିଳ ତର୍ପଣ ସେଠାରେ ସାରିଲେ ।
ସେଠାରୁ ଉଠି ବନରେ ପଶିଲେ
ଅମୃତ ସମାନରେ ଫଳ ମୂଳ ଆଣିଲେ ।
ଶ୍ରୀରାମ ଛାମୁରେ ଆସି ହେଲେ ଭେଟ
ନିଜ ରୂପ ନିଜ ବଳ ହୋଇଛି ପ୍ରକଟ ।
ଦେଖିଣ ଶ୍ରୀରାମ ବିଚାରି ମନରେ
ମୋର କାର୍ଯ୍ୟ ନିମନ୍ତେ ଜନ୍ମ ଏ ମର୍ତ୍ତ୍ୟରେ
ଦେବଙ୍କର ଅଂଶରେ ଜନ୍ମ ହେବା ସତ
ବାନର ଭାଲୁ ରୂପ ହୋଇଛି ପ୍ରକାଶିତ ।
ନିଶ୍ଚୟ ଅସୁର ବଳ ନାଶ ଯିବେ
ଏଣେ ଯଶ ମୋର ଅଛି ଦେବଙ୍କର ଭାବେ ।
ନିଶ୍ଚୟ ଜାନକୀ ମିଳିବ ମୋହର
ଏମନ୍ତ ବିଚାର କଲେ ରଘୁବୀର ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ଶ୍ରୀରାମ ଦର୍ଶନେ ବଳ ବପୁ ପ୍ରାପ୍ତି ହେଲା ।
ସେଠାରୁ ଚାରିଜଣ ଶ୍ରୀରାମ ଲକ୍ଷ୍ମଣ
କିସ କଲେ ମୋତେ କହ ତ୍ରିଲୋଚନ ।
ଈଶ୍ୱର ବୋଇଲେ ଶୁଣ ଶାକମ୍ଭରୀ
ଶ୍ରୀରାମ ଆଜ୍ଞା ଦେଲେ ଯାଅ ବେଗକରି ।
ସୁଗ୍ରୀବକୁ ମୋର ଛାମୁକୁ ଘେନି ଆସ
ଶୁଣିଣ ଚାରିଜଣ ହୋଇଲେ ହରଷ ।
ଲକ୍ଷ୍ମଣ ତୁମ୍ଭେ ବେଗେ ଯାଅ ବୋଲିକହି ।
ବାଳୀକୁ ଭୟେ ନାହିଁ ସୁଗ୍ରୀକୁ ଆଣ ଯାଇ ।
ବିଧାତା ଋଷିମାନେ କହିଣ ଥିଲେ ତଦ୍ଧୁ
ଏବେ ତ ପୂର୍ବର ବଳ ପାଇ ହେତୁ ।
ଶ୍ରୀରାମଙ୍କ ଆଜ୍ଞାରେ କୁଶଳ ସବୁ ପରା
ଶୁଣିଣ ଲକ୍ଷ୍ମଣ ମନେ ଭାବି ହେଲା ତ୍ୱରା ।
ଏବେ ସୁଗ୍ରୀବକୁ ଘେନିଆସ ଯାଇ
ତାହାର ଶତ୍ରୁ ବାଳୀକୁ ନିଶ୍ଚେ ମାରିବଇଁ ।
ଶୁଣିଣ ଚାରିଜଣର ପୁଲକ ଶରୀର
ଶ୍ରୀରାମଙ୍କ ଚରଣେ କଲେ ନମସ୍କାର ।
ବିଚାରିଲେ ମନରେ ବିଧାତା କଥା ହେଲା
ଶ୍ରୀରାମଙ୍କ ଆଜ୍ଞାରେ କୁଶଳ ଘଟିଲା ।
ଲକ୍ଷ୍ମଣଙ୍କୁ ନମସ୍କାର କରି ଗଲେ ଚଳି
ଋଷ୍ୟମୁଖ ପର୍ବତ ଉପରେ ଯାଇ ମିଳି ।
ବିମ୍ବର ଦ୍ୱାରରେ ଡାକିଲେ ସେ ଯାଇ
ଆହେ ସୁଗ୍ରୀବ ବେଗେ ଆସ କିନା ଧାଇଁ ।
ଯେତେ କଷ୍ଟ ପାଇଲୁ ଆଜହୁଁ ସବୁ ଗଲା
ବୈକୁଣ୍ଠ ନାରାୟଣ ଏବେ ଦେଖିତ ମନେକଲା
ଆସ ଆସ ରାଜନ ନ କର ଆଉ ହେଳା
ତୋତେ ପ୍ରବେଶ ଆସି ହେଲା ଧର୍ମବେଳା ।
ଶୁଣିଣ ସୁଗ୍ରୀବର ମନରେ ଆନନ୍ଦ
ମୁଖ ତାର ବିକଶିଲା ପୂର୍ଣ୍ଣିମାର ଚାନ୍ଦ ।
ବିମ୍ବରୁ ବାହାର ହେଲା କପିରାଜ
ଚାରିଜଣ ଦେଖିଲା ଦିଶନ୍ତି ବଡ଼ ତେଜ ।
ମୁକୁଟ କୁଣ୍ଡଳ ହୃଦରେ ହାରମାନ
ଦେଖିଣ ବିପରୀତ ବିଚାରେ ରାଜନ ।
ମୁକୁଟ କୁଣ୍ଡଳ ହାର ଏବେ ପାଇଲେ କାହୁଁ
ଗଲାବେଳେ ତେଜବନ୍ତ ନ ଦିଶେ ତ ଏହୁ ।
କେବଣ ଚରିତ ଏ ଯେ ଜାଣିବା କେମନ୍ତେ
ଏମନ୍ତ ବିଚାର ସୁଗ୍ରୀ କରଇ ହୃଦଗତେ ।
ପଚାରଇ ଚାରିଜଣ ଗଲ ତୁମ୍ଭେ ତେଣେ
ସେ ଦୁଇଜଣ କିଏ ପଚାରିଲ କି ଏଣେ ।
ମାରୁତି ବୋଇଲା ରାମ ଲକ୍ଷ୍ମଣ ବେନିଜଣ
ଜାମୁଗଛ ମୂଳରେ ବସିଅଛନ୍ତି ପୁଣ ।
ଆମ୍ଭେ ଚାରିଜଣ ଭେଟ ହେଲୁଁ ଯାଇ
ପଚାରେ କୁଳ ଗୋତ୍ର ଆମ୍ଭର ସେ ଯେ ନାହିଁ
ସକଳ କଥା ଆମ୍ଭେ ବୁଝାଇ କହିଲୁ
ତାଙ୍କ କୁଳ ଗୋତ୍ର ଆମ୍ଭେ ପଚାରିଲୁ ।

ସେ ବୋଇଲେ ଆମ୍ଭର ଅଯୋଧ୍ୟା ଦେଶେଘର
ଶ୍ରୀରାମ ଲକ୍ଷ୍ମଣ ଆମ୍ଭେ ଦଶରଥଙ୍କ କୁମର ।
ଅସୁର ମାରିବାକୁ ହୋଇଅଛୁ ଜାତ
ଦେବତାଙ୍କର କୃଚ୍ଛ ପିତାଙ୍କର ସତ୍ୟ ବାଣୀତ ।
ତେଣୁ ବନକୁ ଅଇଲୁଁ ଆମ୍ଭେ ତିନିଜଣଟି
ଗୋଦାବରୀ କୂଳରେ ରହିଲୁ ପଞ୍ଚବଟୀ ।
ସେଠାରୁ କେହୁ ନେଲା ମୋହର ଯୁବତୀ
ଖୋଜିଣ ନ ପାଇଲୁ ବିକଳ ଜଟି ମତି ।
ବାଟରେ ପକ୍ଷୀଚଟା ବାରତା କହିଲା
ତୋହର ଘରଣୀକି ରାବଣ ଘେନିଗଲା ।
ରାବଣର ଘର ନ ଜାଣୁଁ କେଉଁ ଦେଶ
ଏଥିର ନିମନ୍ତେ ଆମ୍ଭେ ବୁଲୁ ଦେଶ ଦେଶ ।
ଏତେ କହି ଆମ୍ଭଙ୍କୁ ଆଜ୍ଞା ଦେଲେ ପୁଣ
ବୋଇଲେ ଅଦୃଶ୍ୟ କିମ୍ପା ତୁମ୍ଭର ଆୟେମାନ ।
ତାଙ୍କର ବଚନ କହିଲୁ ଆମ୍ଭେ ପୁଣ
ଋଷିଙ୍କ ଶାପରେ ଗୋପ୍ୟ ଆମ୍ଭର ଭୂଷଣ ।
ସେ ବୋଇଲେ ସେମାନେ କିସ କହିଛନ୍ତି
ସେ କଥା ମୋର ଆଗେ କହ ମନେ ଚିନ୍ତି ।
ଆମ୍ଭେମାନେ କହିଲୁ କହିଲେ ମୁନି ପୁଣ
ନାରାୟଣଙ୍କୁ ଭେଟିଲେ ମେଣ୍ଟିବ ଶାପ ଜାଣ
ସେ ବୋଇଲେ ସେ କଥା ସୁଫଳ ଏବେ ପରା
ଭୂଷଣ ଦୃଶ୍ୟ ହେଉ ଦିଶ ତୁମ୍ଭେ ତ୍ୱରା ।
ତାଙ୍କର ବଚନେ ଉଜ୍ଜ୍ୱଳ ଆମ୍ଭେ ହେଲୁ
ମାଳ ଚୁଳ କୁଣ୍ଡଳ ଉଜ୍ଜ୍ୱଳ ଦେଖିଲୁ ।
ତେଣୁ ସେ ଜାଣିଲୁ ଏ ଅଟନ୍ତି ନାରାୟଣ
ଦଇବ କହିବା କଥା ସତ୍ୟ ହେଲା ଜାଣ ।
ତେଣୁ କର ଯୋଡ଼ିଣ କହିଲୁ ତାହାଙ୍କୁ
ବାଳୀବୀର ଘଉଡ଼ି ଦେଲା ସୁଗ୍ରୀବଙ୍କୁ ।
ତେଣୁ ସେ ସୁଗ୍ରୀ ସଙ୍ଗେ ଦୁଃଖରେ ଆମ୍ଭେ ରହି
ବାଳୀର ଭୟେ ଆମ୍ଭେ କେଣିକି ନ ଯାଇ ।
ଶୁଣି ସେ କହିଲେ ଭୟ ଏବେ ଛାଡ଼
ବାଳୀ ବାନରକୁ ମୁଁ ମାରିବି ଯେ ମାଡ ।
ଏବେ ସେ ଘେନି ଆସ ସୁଗ୍ରୀବକୁ ଯାଇ
ବାଳୀର ଭୟ ହୃଦରୁ ଛାଡ ବାନରସାଇଁ ।
ଶୁଣିକରି ତୁମ୍ଭପାଶେ ଆସିଲୁ ଯେ ପୁଣ
ଗୁପତ କଥାମାନ ଲଭିଲୁଁ ଆମ୍ଭେ ଜାଣ ।
ସୁଗ୍ରୀବର ବୋଇଲା ଏ ବିପରୀତ କଥା
କେବଣ ପ୍ରକାରେ ହରିବେ ମୋର ବ୍ୟଥା ।
ଅମୃତ ସମାନରେ କହ ମୋ ଆଗେ ବାଣୀ
ଚାତକକୁ ଦେଲ କି ଆକାଶ ଜଳ ଆଣି ।
ତେହ୍ନେ ବଂଶଜାତ ହୋଇଲି କିରେ ବାବୁ
ତୁମ୍ଭର ଉପାୟରେ ଭଲ କି ହେବ ସବୁ ।
ହନୁମନ୍ତ ବୋଇଲା ଶୁଣ ତୁ କପିରାଜ
ଯେବଣ ବେନି ଯତୀଙ୍କି ଦେଖିଣ ଭୟେ ଭେଜ ।
ସେ ଯେ ରଘୁବଂଶରେ ଦଶରଥ ସୁତ
ଶ୍ରୀରାମ ଲକ୍ଷ୍ମଣ ଅଟନ୍ତି ବେନିଭ୍ରାତ ।
ସାବତ ଜନନୀ ତାଙ୍କୁ କଲା ଯହୁଁ ହିଂସା
ତେଣୁ କରି ରଘୁନାଥ ବନରେ କଲେ ବସା ।
ସୀତୟା ନାମ ଯେ ଜନକ ଦୁହିତା
ସେ ନାରୀ ଶ୍ରୀରାମଙ୍କର ଅଟନ୍ତି ବନିତା ।
ପିତାଙ୍କ ବଚନ ପାଳି ବନକୁ ଆସିଲେ
ତେର ବରଷ ବେନିମାସ ବନରେ ବଞ୍ଚିଲେ ।
ପଞ୍ଚବଟୀ ବନରେ ହରାଇଲେ ସୀତା
ଜଟାୟୁଷ କହିଲା ତାଙ୍କୁ ବାଟରେ ବାରତା ।
ଲଙ୍କାର ରାବଣ ଆସି ଘରଣୀ ତୋର ନେଲା
ଶୁଣିଣ ଶ୍ରୀରାମ ଅନେକ ଚିନ୍ତା କଲା ।
ଲକ୍ଷ୍ମଣ ନାମରେ ତାହାର ସାନଭାଇ
ବୋଇଲା ଖୋଜି ମାରିବା ରାବଣକୁ ଯାଇ ।
ରଘୁନାଥକୁ ଶାନ୍ତି କରିବା ନିମନ୍ତେ
ସଉମିତ୍ରୀ ସଙ୍ଗରେ ଅଛନ୍ତି ତହିଁ ଅର୍ଥେ ।
ତୋହର ଭାଗ୍ୟହେଲା ରାମଚନ୍ଦ୍ର ଆସିଲେଟି
ତୋର କଥା କହିବାରୁ ଆନନ୍ଦ ହେଲା ସେଟି ।
ବୋଇଲା ସୁଗ୍ରୀବକୁ ଘେନି ଆସ ଯାଇ
ଶ୍ରୀରାମଙ୍କ ଆଜ୍ଞାରେ ଆସିଲୁ ତୋତେ ନେବା ପାଇଁ ।
ଆମ୍ଭଙ୍କୁ ଦେଖିଣ ସେ ଆନନ୍ଦ ହୋଇଲେ
ସୁଗ୍ରୀବକୁ ଘେନିଆସ ବୋଲିଣ ବୋଇଲେ ।
ଆମ୍ଭେ ତାଙ୍କୁ ବୋଇଲୁଁ ବାଳୀର ଭୟେ ପୁଣ
ଅଲଗା ଠାବେ ନ ଯାଏ ତାହାକୁ ଡରିଣ ।
ଅଲଗା ସ୍ଥାନ ତାକୁ ବାଳୀର ପ୍ରାୟେ ଦିଶେ
ତେଣୁ ସେ ରାଜନ ଭୟରେ ନ ଆସେ ।
ଯେଉଁଦିନ ମନହୁଏ ଆସେ ସରୋବରେ
ଦିବସେ ନ ଆସଇ ଆସଇ ରଜନୀରେ ।
ବାଳୀ ରାଜାକୁ ତାର ଅଟଇ ବଡ ଭୟେ
କେମନ୍ତେ ଆସିବ ସେ କହ ଦେବରାଏ ।
ଶ୍ରୀରାମ ବୋଇଲେ ତାକୁ କହ ତୁମ୍ଭେ ଯାଇ
ସହସ୍ରେ ବାଳୀ ଆସିଲେ ତାକୁ ମୁଁ ମାରିବଇଁ ।
ତିନିଦିନେ ବାଳୀ ମରିବ ନିଶ୍ଚେ ଜାଣ
କର୍ଣ୍ଣରେ ଶୁଣିନାହୁଁ ମାନଧାତାର ଗୁଣ ।
ଦୁଷ୍ଟଲୋକ ଦେଖିଲେ କରୁ ଆମ୍ଭେ ନାଶ
ପାପୀ ଲୋକ ରହିଲେ ଧର୍ମ ଯିବ ନାଶ ।

ପାପଭାରା ନିବାରଣେ ଜନ୍ମ ହେଲି ମୁହିଁ
ଅନ୍ୟାୟ ହେଲେ ଦେବତାହେଲେ ମୁଁ ମାରଇ
ସୁଗ୍ରୀବର ଶତ୍ରୁକୁ କରିବି ନିଶ୍ଚେ ନାଶ
ତେବେ ଏ ପୁରକୁ ଧର୍ମ ହେବ ତୋଷ ।
ମୋର ଶତ୍ରୁ ପଛେ କରିବି ନିବାରଣ
ଏତେ ବୋଲି ଶ୍ରୀରାମ ହୋଇଲେ କ୍ରୋଧ ମନ ।
ବୋଇଲେ ତୁମ୍ଭେ ଯାଇ ଘେନିଣ ଆସତ
ଦେଖିବା କେତେ ବଳ ବାଳୀର ଅଛିତ ।
ତାଙ୍କଠାରୁ ଆମ୍ଭେ ଶୁଣି ଆସିଲୁ ବହନ
ଏବେ ଚାଲ ଯିବା ଶ୍ରୀରାମ ପାଶେଣ ।
ଶୁଣିଣ ବାନରେଶ୍ୱର ହସ ହସ ହେଲା
ହନୁମନ୍ତକୁ ଚାହିଁ ସୁଗ୍ରୀବ କହିଲା ।
ତୁମ୍ଭେ ଚାରିଜଣ ଅଟ ମୋର ପ୍ରାଣ
ତୁମ୍ଭେମାନେ ଭେଟାଇଲ ଶ୍ରୀରାମଙ୍କୁ ଜାଣ ।
ସୁଦୟା କରିଣ ମୋତେ ଯଦ୍ୟପି କହିଲ
ତେଣୁ ସୁଖୀହୋଇ ମୋତେ ନେବାକୁ ଅଇଲ ।
ମୁହିଁ ଯିବାକୁ ବାବୁରେ କରିଥିଲି ଭୟେ
ତିନି ଭୁବନରେ ବାଳୀ ବଳିୟାର ହୁଏ ।
ତାହାର ମହିମା ତୁମ୍ଭେ ପ୍ରତ୍ୟକ୍ଷ ଅଛ ଜାଣି
ମୁହିଁ ଦିବସେ ଯିବାକୁ ଭୟ କରେ ପୁଣି ।
ତୁମ୍ଭେ ଚାରିଜଣ ଯାଇ ଘେନିଆସ ତାଙ୍କୁ
ଯେମନ୍ତେ ଆସିବେ ସେହୁ ଆଣ ଯେ ଏଠାକୁ ।
ଯାଇଣ ତୁମ୍ଭେମାନେ ତାଙ୍କୁ ବୁଝାଇଣ
ବେଗେ ଆଣ ଏଠାକୁ ଜାନକୀ ରମଣ ।
ଶ୍ରୀରାମ ଚରଣେ ଯାଇଣ କର ସେବା
ବସ୍ତ୍ର ଅଳଙ୍କାର ଅକ୍ଷତ ଦେବି ପ୍ରଭା ।
ଆମ୍ଭେତ ନ ଜାଣୁ ସୀତା ରାବଣ ଘେନିଗଲା
ଗଗନ ମାର୍ଗରେ ରଥ ସେଦିନ ବାହିନେଲା ।
ଅନ୍ତରୀକ୍ଷରେ ଯୁବତୀ କରଇ ରୋଦନ
ଶ୍ରୀରାମ ଲକ୍ଷ୍ମଣ ସୁମରେ ନାରୀ ପୁଣ ।
ଆମ୍ଭଙ୍କୁ ଦେଖିଣ ଶାଢ଼ୀ ଅଳଙ୍କାର ଫିଙ୍ଗି
ବିବିଧ ଗହଣା ବାନ୍ଧି ଶାଢ଼ୀର ସଙ୍ଗି ।
ତାଙ୍କର ରତ୍ନବସ୍ତ୍ର ମୁଁ ସାଇତି ରଖିଅଛି
ଏବେ ତୁମ୍ଭେ ଯାଅ ପବନଙ୍କ ବଚ୍ଛି ।
ଶୁଣିଣ ହନୁମନ୍ତ ଚାରିଜଣ ଗଲେ
ଶ୍ରୀରାମ ଲକ୍ଷ୍ମଣଙ୍କୁ ଯାଇଣ ଭେଟିଲେ ।
ଯେତେ ଦୂରକୁ ଦିଶେ ଚାପ କୁଳର ଗୋତ୍ର
ପାଏ ପଡି ଚାରିଜଣ ଶୋଇଲେ ତ୍ୱରିତ ।
ଉଭାହୋଇ ଚାରିହେଁ ନମସ୍କାର କଲେ ପୁଣ
କରମାନ ଯୋଡ଼ିଣ ନିକଟେ ମିଳିଲେ ଜାଣ ।
ପ୍ରଦକ୍ଷିଣ କରି ସେ କଲେ ନମସ୍କାର
ଲକ୍ଷ୍ମଣଙ୍କୁ ଚାରିହେଁ କଲେ ନମସ୍କାର ।
ଶ୍ରୀରାମ ଛାମୁରେ କହିଲେ ଚାରିଜଣ
ହେ ରଘୁନନ୍ଦନ ଅଯୋଧ୍ୟା ରାଜା ଶୁଣ ।
ସୁଗ୍ରୀବର ଆଗରେ କହିଲୁ ତୁମ୍ଭ କଥା
ଶୁଣିଣ କପିବର ମନରେ ପାଏ ବ୍ୟଥା ।
ବାଳୀକୁ ଭୟ କରିଣ ସେ ଆସି ନ ପାରେ
ଆମ୍ଭର ଆଗରେ ନ୍ୟୁନ ବହୁତ ପ୍ରକାରେ ।
ବୋଇଲା ଶ୍ରୀରାମଙ୍କୁ ବେଗ ଯାଇ ଆଣ
ବାଳୀ ରାଜା ଜାଣିଲେ ନେବ ମୋର ପ୍ରାଣ ।
ତାହାର ଭୟେ ଆମ୍ଭେ ପାରୁନ୍ତୁ ଯାଇ
ସୁଗ୍ରୀବର ବୋଲେ ଡରେ ଯାଇ ନ ପାରଇ ।
ସେ ଯେବେ ମୋହର ଫେଡିବେ ଅପମାନ
ତେବେ ସେ ପ୍ରଭୁ ମୋର ମୁଁ ତାଙ୍କ ଦାସଜାଣ ।
ଏ ଭୟରୁ ମୋତେ ଯେବେ କରିବେ ସେପାର
ତେବେ ସିନା ଜାଣିବି ଶ୍ରୀରାମ ଠାକୁର ।
ବାଳୀବୀର ମଲେ ସଲ ଯାଏ ମୋର ଜାଣ
ଯେଉଁଠାକୁ ପେଶିବେ ଯିବି ମୁଁ ପ୍ରମାଣ ।
ବାଳୀକି ମାରିଣ ଯେ ନୃପତି ସେ ହୁଅନ୍ତୁ
ଦାସ କରିଣ ମୋତେ ସଙ୍ଗତେ ରଖନ୍ତୁ ।
ତାହାଙ୍କର ଘରଣୀ ଜନକ ଦୁଲଣୀ
ଯେତେବେଳେ ରାବଣ ରଥରେ ଗଲା ଘେନି ।
ଗିରିଶୃଙ୍ଗ ଉପରେ ମୁହିଁ ବସିଥିଲି
ଶୂନ୍ୟରେ ରୋଦନ ତାଙ୍କର ଶୁଣିଲି ।
ସେତେବେଳେ ଉପରକୁ ଚାହିଁଲି ମୁଁ ପୁଣ
ଅଳଙ୍କାର ଶାଢ଼ି ନାରୀ ଫୋପାଡି ତକ୍ଷଣ ।
ସେ ଶାଢ଼ୀ ଅଳଙ୍କାର ସାଇତି ଅଛି ମୁହିଁ
ଅଇଲେ ଶୁଣିବେ ପୁଣି ରଘୁକୁଳ ସାଇଁ ।
ଏତେ ବୋଲି ଆମ୍ଭଙ୍କୁ ପେଶିଲେ ତୁମ୍ଭ ପାଶ
କହିଲୁ ତୁମ୍ଭରେ କହିଲା କଥା କିସ ।
ତୁ ଦେବ ଭକତବତ୍ସଳ ମୁରାରି
ଅପାର ମହିମା ତୋର କେହୁ ଜାଣିପାରି ।
ଉଠ ଉଠ ଚାପଧାରୀ ଯିବା ସୁଗ୍ରୀ ପାଶ
ଶୁଣିଣ ଶ୍ରୀରାମ ହୋଇଲେ ହସ ହସ ।
ଲକ୍ଷ୍ମଣଙ୍କୁ ଚାହିଁଣ ବୋଲନ୍ତି ବଚନ
ବିପରୀତ କଥା ଶୁଣ ଭାଇ ପୁଣ ।
ଶତ୍ରୁକୁ ଶତ୍ରୁ ଭୟେ ଯେମନ୍ତେ କରେ ଜାଣ
ଯେହୁ ନେଲା ଜାନକୀ ଯେ ଅଟଇ ଏ ପ୍ରମାଣ
ଏତେବେଳେ ଆମ୍ଭଙ୍କୁ ବିପତ୍ତି ପଡ଼ିଅଛି
ମୋତେ ସୁଖ କହିଲେ ଦୁଃଖ ମୁଁ ମଣୁଛି ।

ଆମ୍ଭର କାର୍ଯ୍ୟ ହେବ ନ ଗଲେ ନ ଚଳଇ
ଆଗର କଥା ପଛକୁ ନ ରହିଲା ଭାଇ ।
ଧନୁଭଗ୍ନ ମିଥିଳା ବିଶ୍ୱାମିତ୍ର ଯାଗ
ପର୍ଶୁରାମ ଜିଣିବାର ହୋଇଲା ବିଭଙ୍ଗ ।
ବିଧାତାର ଲିଖନ କେ କରିପାରେ ଆନ
କେତେବେଳେ ବଡ଼ ଯେ କେତେବେଳେସାନ
ନୋହିଲେ ସୁଗ୍ରୀବର ଲୋଡ଼ଇ ତାର ପାଶ
ଜାନକୀ କଲା ଏହା କହିବି ମୁଁ କିସ ।
ସେତେବେଳେ ଯାହାରେ ସହିବାର ତାହା
ଏମନ୍ତ ବଚନ କହିଲେ ରଘୁନାହା ।
ଲକ୍ଷ୍ମଣ ବୋଇଲେ ଦେବ ସେକଥା ନ ବିଚାର
ଯେତେବେଳେ ଯାହା ତାହା କରିବା ପ୍ରଚାର ।
ମେଘ ବରଷଇ ସମୁଦ୍ର ଆଣି ପାଣି
ନଦୀ ପୋଖରୀ ପୂରିଣ ବହଇ ବେଳ ଜାଣି ।
ତେତେବେଳେ ଶକଟ ନାବ ପରେଯାଇ
ଜଳ ଶୁଖିଲେ ନାବ ଶକଟେ ଚଳଇ ।
ପର୍ଶୁରାମ ଋଷି ସପତପୁର ସାଧି
ଏ କାର ସାଧ କଲା କ୍ରୋଧ କରି ବୁଦ୍ଧି ।
କାଳେ ସେ ବିଧାତା ତାହାକୁ ବାମ ହେଲା
ତୁମ୍ଭ ଆଗେ ଧନୁକୁ ସମର୍ପିଣ ଦେଲା ।
ଯେଉଁ ଜାନକୀ ଚରଣେ ଖଟନ୍ତି ଲକ୍ଷେ ନାରୀ ।
ସେ ଜାନକୀ ବନରେ ବୁଲିଲା ଆସିକରି
ପୁଣି ତା କର୍ମରେ ବିଧାତା ଲେଖିଥିଲା ।
ଅସୁର ପୁରେ ଯାଇ ବନ୍ଦିରେ ରହିଲା ।
ଶ୍ରୀରାମ ବୋଇଲେ ଭାଇ କହିଲ ବିପରୀତ
କେହୁ ଘେନିଗଲା ତାକୁ ନ ପାଇଲି ତଥ୍ୟ ।
ଅସୁର ବନ୍ଦିକଲା ହରିଲା ମୋର ନାରୀ
ନ ପୁଣ ଜାନକୀ ତାର ହୋଇଲା ମନୋହାରୀ ।
ବନସ୍ତରେ ବୁଲିଣ ହେଉଥିଲା ଦୁଃଖିତ
ସୁଖଭୋଗ ଦେଖିଣ ରମିଲା ତାହାକୁ ତ ।
କି ଅବା ନେଲାବେଳେ ମନରେ ଛଳ କଲା
ରଥରୁ ଡେଇଁକରି ସମୁଦ୍ରେ ବୁଡିମଲା ।
କି ଅବା ଦେହ ଧରିଅଛି ମୋର ନାରୀ
ମୋତେ ଆଶା କରିଣ ରହିଛି ଚତୁରୀ ।
ନେଲାଲୋକ ମୋର ଆଗେ ପଡିବ ନିଶ୍ଚେ ଆଗ
ତୁଳାପ୍ରାୟେ ଭିଣିବି ମୁହିଁ ତାର ଅଙ୍ଗ ।
ଏମନ୍ତ କୁହାକୁହି ବେନିଭାଇ ହେଲେ
ଦଇବର ଦୁର୍ଯ୍ୟୋଗ ମନରେ ସୁମରିଲେ ।
କଳାକାର ଦାସ ସେବଇ ଚରଣ
ରାମ ଲକ୍ଷ୍ମଣ ବିନୁ ମୋହର ନାହିଁ ଆନ ।

ଏଥୁ ଅନନ୍ତରେ ପାର୍ବତୀ ପଚାରି
ବେନିଭାଇ ବିଚାର କଲେ ପାଞ୍ଚକରି ।
ସେଠାରୁ କିସ କଲେ କହ ତ୍ରିଲୋଚନ
ଶୁଣିବାକୁ ଶରଧା ହେଉଅଛି ମନ ।
ଈଶ୍ୱର ବୋଇଲେ ଶୁଣ ଶାକମ୍ଭରୀ
ରାମ ଲକ୍ଷ୍ମଣ ଭାଇ ବେନିକଥା ଯେ ବିଚାରି ।
ହନୁମନ୍ତ କହିବାରୁ ପୂର୍ବକଥା ପୁଣ
ସେଠାରେ ବେନିଭାଇ ବିଚାର କଲେ ମନ ।
ବୋଇଲେ ଅସମ୍ଭାଳ ହୋଇଛି ଏତେବେଳେ
ଯିବା ଚାଲ ସୁଗ୍ରୀବର ପାଶେ ଆମ୍ଭ ବଳେ ।
ଏତେବୋଲି ଶ୍ରୀରାମ ମନରେ ଆନନ୍ଦିତ
ହନୁମନ୍ତ କହିବାରୁ ହେଲେ ହୃଦସିତ ।
ମାରୁତିକି ଚାହିଁଣ କହିଲେ ରଘୁନାଥ
ଶୁଣ ତୁ ହନୁମନ୍ତ ପବନର ସୁତ ।
ଯେତେବେଳେ ଯାହାର ଆକଟ ପଡ଼ଇ
ସେତେବେଳେ ବାବନାଭୂତ ସରି ମତି ହୋଇ
ସେହିପରି ଆମ୍ଭେ ଯେ ହୋଇଅଛୁଁ ଜାଣ
ସତ ନ ପାଇଲା ସେ ଯେ ସୁଗ୍ରୀବ ରାଜନ ।
ଲକ୍ଷ୍ମଣ ବୋଇଲେ ଦେବ ଶୁଣ ମୋର ବାଣୀ
ବାବନାଭୂତ କି କଲା କହ ତାହା ପୁଣି ।
ଶ୍ରୀରାମ ବୋଇଲେ ଶୁଣରେ ସାନୁଜ
ଭୂତଙ୍କର ଉପରେ ବାବନାଭୂତ ରାଜ ।
ଦିନେକ ପଶ୍ଚିମକୋଣ କନେଷ୍ଟା କେଶର
ଜମ୍ବୁଦ୍ୱୀପ ମଣ୍ଡଳେ ଶମନ ନାମେ ପୁର ।
ଧୃତିରାଷ୍ଟ୍ର ବୋଲିଣ ସେ ଗ୍ରାମର ବନ
ବାଉଳି ନାମେ ଭୁବନର ନିଜ ସ୍ଥାନ ।
ଲକ୍ଷେ ଭୂତ ସେ ବନେ ଅଛନ୍ତି ବାସକରି
ବାବନାଭୂତ ନିମନ୍ତେ କାଳରେ ତାକୁ ବରି ।
ଚାରି ଦିଗରେ ଚାରି ରାଜା ଅଟେ ଭୂତ
ଚାରି ରାଜାଙ୍କୁ ଅଟନ୍ତି ବାଆନ କୋଟି ସେତ
ଚାରିଦିଗ ଖୋଜିଣ ଆସିଲା ଜାତି ଲୋଡ଼ି
ତିନିଦିନ ପର୍ଯ୍ୟନ୍ତେ ଭୋଜନ ଦେଲା ବଡୀ ।
ଷଡରସ ଭୋଜନ କରିଣ ଭୂତମାନେ
ବାବନାକୁ ପ୍ରଶଂସା କରନ୍ତି ରହି ତେଣେ ।
ଏମନ୍ତ ସମୟେ ସେ ଦେଶ ନୃପତିଟି
ଜଗତେଶ୍ୱର ବୋଲି ଅଟେ ତା ନାମଟି ।
ଦିନେକ ରାଜନ ଉତ୍ତର ଦିଗେ ଗଲା
ଗଙ୍ଗା ଯମୁନା ସରସ୍ୱତୀ ନଦୀକୁ ଦେଖିଲା ।
ପ୍ରୟାଗ ତୀର୍ଥରେ ଶ୍ୟାମଳ ବଟମୂଳେ
ପ୍ରଣାମ କଲା ରାଜା ରହିଣ ସେହିଠାରେ ।

ଯେଣୁ ତୁ ବାଞ୍ଛାବଟ ସଂସାରେ ଅଟୁ ସାର
ପ୍ରମାଣ କଥା ଭେଟେ କହିଲେ ତୋ ଆଗର
ତେଣୁ ତ ବାଞ୍ଛାବଟ ବୋଲାଉ ସଂସାରରେ
ମୁହିଁ ବାଞ୍ଛା କଲିଟି ଶୁଣନ୍ତୁ କର୍ଣ୍ଣରେ ।
ଅଷ୍ଟବେତାଳ ବୋଲି ଯେବଣ ଅଟେ ସାର
ସେ ମୋହର ଆୟତ୍ତ ହୋଇବେ କେବଳ ।
ଏତେ ବୋଲି ଗଙ୍ଗା ଯମୁନା ସରସ୍ୱତୀ
ତିନିଧାର ମଧ୍ୟରେ ରାଜା ଝାସେ ସେଥି ।
ତେଜୋବନ୍ତ ହୋଇଣ ସ୍ନାହାନ ତହିଁ କଲା
ସ୍ନାହାନ ସାରିଣ ବଟକୁ ଓଲଗିଲା ।
ଶୂନ୍ୟରୁ ଶବଦେକ ମିଳିଲା ସେଠାରେ
ବଣରା ନଦୀ ପାର ହୁଏ ନୃପବରେ ।
ଅଷ୍ଟବେତାଳ ସେଠି ଅଟେ ତାଙ୍କ ଘର
ସେଠାରେ ଭେଟ ହୋଇ ତାହାଙ୍କୁ ଯାଇ ଧର ।
ଶୁଣିଣ ଜଗତେଶ୍ୱର ରଥରେ ବସିଲା
ବଣରା ନଦୀକୂଳେ ବେତାଳ ଦେଖିଲା ।
ସେ ବେତାଳ ମାନଙ୍କୁ ନମସ୍କାର କଲା
ପ୍ରସନ୍ନ ହୁଅ ବୋଲି ତାହାଙ୍କୁ କହିଲା ।
ଶୁଣିଣ ଅଷ୍ଟବେତାଳେ ପ୍ରସନ୍ନେ ବର ଦେଲେ
ଯେତେବେଳେ ସୁମରିବୁ ତୁମ୍ଭ ତୁଲେ ।
ଶୁଣିଣ ଜଗତେଶ୍ୱର ଫେରିଣ ଅଇଲା
ନିଜପୁରେ ଯାଇଣ ପ୍ରବେଶ ହୋଇଲା ।
ଏମନ୍ତ କିଛିଦିନ ଗଲା ତହିଁ ବହି
ବାବନାଭୂତ ନିମନ୍ତେ ସକଳଭୂତେ ତହିଁ ।
ଯେତେବେଳେ ବେତାଳ ରାଜାରେ ବରଦେଲେ
ବେତାଳ ମନ୍ତ୍ରଗୋଟି ରାଜାଙ୍କୁ ସମର୍ପିଲେ ।
ସେ ମନ୍ତ୍ର ପଢ଼ି ବେତାଳ ରାଜା ସିଦ୍ଧ କଲା
ଭୂତ ବେତାଳ ସେଠି ସେ ସାଧିଲା ।
ବେତାଳ ସାଧିବାରୁ ସକଳ ସିଦ୍ଧି ତାର
ଶୂନ୍ୟରେ ଯାନ ଚଢ଼ି ଗମଇ ନୃପବର ।
ତିନିପୁରେ ପ୍ରତାପୀ ହୋଇଲା ରାଜନ
ତେଣୁ ତାର ଶୂନ୍ୟରେ ଚଳିଲା ବିମାନ ।
ବାଞ୍ଛାବଟ ପ୍ରସନ୍ନରେ ସର୍ବାଙ୍ଗ ହେଲା ଜାଣ
ସକଳ କଥା ତାକୁ ଜଣାଯାଏ ପୁଣ ।
ଏକଦିନେ ରଜନୀରେ ବସିଛି ନିଜ ଆଳେ
ରଜନୀ ଅନ୍ଧାର ଘୋଟିଲା ଆସି ବେଳେ ।
ଉଜ୍ୱଳ ନ ଜଳିବାରୁ ମନେ ସେ ବିଚାରି
ପଚାରିଲା ଉଜ୍ୱଳ ନାହିଁ କି ଆମ୍ଭ ପୁରୀ ।
ଦାସୀମାନେ ଜଣାଇଲେ ଶୁଣ ହେ ମହାପ୍ରଭୁ
ଅଭଙ୍ଗ ନ ମିଳିଲା ନ ଦେଲେ ଯେ ସବୁ ।

ଶୁଣିଣ ନୃପତିବର ମନରେ କ୍ରୋଧ ହେଲା
ସକଳ କୁଳିଙ୍କି ଧରାଇ ଆଣିଲା ।
ବୋଇଲା ମୋର ଅଭଙ୍ଗ ନ ଦେଲ କାହିଁପାଇଁ
ସେ ବୋଇଲେ ତୁମ୍ଭେ ଶୁଣ ହେ ନରସାଇଁ ।
ଯାହା ପରେ ଯେଉଁ ବେଉସାମାନ ଥିଲା
ହରଣ କରି ପୁଣ କେହୁ ଘେନିଗଲା ।
ସାବଧାନେ କାତର ହୋଇଣ ବସିଛନ୍ତି
ଆମ୍ଭଙ୍କୁ ଦଣ୍ଡ ତୁମ୍ଭେ ନ ଦିଅ ପ୍ରଭୁ ଏଥି ।
ଶୁଣିଣ ନୃପବର ପ୍ରସନ୍ନକୁ ଚାହିଁ
ଜାଣିଲେ ଭୂତମାନେ ହରିନେଲେ ତହିଁ ।
ଜାଣିଣ ରାଜନ ବେତାଳଙ୍କୁ ସୁମରିଲେ
ଅଷ୍ଟବେତାଳେ ଆଗରେ ସତ୍ୱରେ ମିଳିଲେ
ଜାଣିଲେ ବାବନାଭୂତ ନିମିତକୁ ପୁଣ
ସକଳ ଗ୍ରାମୁଁ ବେଉସା ହରିନେଲେ ଜାଣ ।
ଏମନ୍ତ ବୋଲି ରାଜା ମନ ମଧ୍ୟେ ଭାଳି
ଦେଖିଲା ଏକଠାବେ ସକଳ ଭୂତ ମିଳି ।
ବେତାଳଙ୍କୁ ବୋଇଲା ଚଳରେ ବହନ
ଭୂତମାନେ ରାଜ୍ୟରୁ ବେଉସା ହରେ ପୁଣ ।
ତୁମ୍ଭେ ଯାଇ ଭୂତ ବାନ୍ଧରେ ସମସ୍ତ
ଶୁଣିଣ ବେତାଳମାନେ ଚଳିଲେ ତ୍ୱରିତ ।
ଭୂତମାନଙ୍କୁ ଯାଇଣ ବେତାଳ ବାନ୍ଧିଲେ
ରାଜାର ଆଜ୍ଞାରେ ନିରୋଧ ସେ କଲେ ।
ବେତାଳଙ୍କୁ ଦେଖି ଭୂତେ ତାଟକା ହୋଇଲେ
ମେଳ ହୋଇ ଯାଇ ରାଜାଙ୍କୁ କହିଲେ ।
ରାଜାଙ୍କୁ କହିବାରୁ ବେତାଳେ ହେଲେ ତ୍ୱରା
ବେତାଳଙ୍କୁ ଦେଖି ଭୂତ ରାଜାଙ୍କୁ ନମେ ପରା ।
ବୋଇଲେ ରାଜନ କିମ୍ପା ଆଣୁ ଧରି
ଭୂତଜାତି ଆମ୍ଭେ ଅଦୃଶ୍ୟ ବିହରି ।
ଫଳମୂଳ ବେଉସା ବିରି ଦୁଧ ଖାଉଁ
ରସର ସାରମାନ ରାଜ୍ୟରୁ ଆମ୍ଭେ ନେଉ ।
ରାଜନ ବୋଇଲେ ଯେବେ ତୁମ୍ଭେ ନେବସାର
ସକଳ ଜୀବଜନ୍ତୁ ଆମ୍ଭରେ ଅସାର ।
ତୁମ୍ଭେମାନେ ଦେବଙ୍କ ଉପରେ ଅଟ ସାର
ଆମ୍ଭେମାନେ ପ୍ରଜାର ଲେଖା ସାର ତୁମ୍ଭର ।
ତୁମ୍ଭେ ସାର ଖାଇବ ଆମ୍ଭେ ଖାଇବୁଁ ଅସାର
କେତେ ବଳ ବହ ଆଜ ଦେଖିବା ତୁମ୍ଭର ।
ଯେବେ ତୁମ୍ଭେ ବଳରେ ଜିଣିବ ଭୂତଗଣ
ତେବେ ଏ ରାଜ୍ୟର ସାର ନେବାର ପ୍ରମାଣ ।
ବେତାଳଙ୍କୁ ବୋଇଲେ ମାରରେ ଭୂତଙ୍କୁ
କେଡ଼େ ବଳବାନ ଏ ଯେ ଦେଖିବା ଏହାଙ୍କୁ ।

ଶୁଣିଣ ବେତାଳଗଣ ଭୂତଙ୍କୁ ମାଇଲେ
ମାଡ଼ର ପ୍ରଭାବେ ଭୂତ ରଖ ହେ ବୋଇଲେ ।
ସାରସ୍ୱତ ନ ନେବୁ ହେଉ ଶତେଗୁଣ
ଦନ୍ତରେ ତିରଣ ଧରି କହିଲେ ଭୂତଗଣ ।
ଜଗତେଶ୍ୱର ରାଜା ବୋଲେ ଶୁଣ ଭୂତ
ଅଖଣ୍ଡଳ ହରି କିମ୍ପା ଦେଲେ ଏ ଜଗତ ।
ସେ ଭୂତ ବୋଇଲେ ଦେବ ରାଜାର ନିମିତ
ସେଥିର ସକାଶେ ବେଉସା କଲୁଁ ଯେ ଆୟତ ।
ରାଜନ ବୋଇଲେ ଏବେ ଅଖଣ୍ଡଳ ଦିଅ
ଶ୍ମଶାନ ଭୂଇଁରେ ତୁମ୍ଭେମାନେ ରହ ।
ଶୁଣିଣ ଭୂତମାନେ ସୀଉକାର କଲେ
ଆଜିଠାରୁ ଅଖଣ୍ଡଳ ନ ନେବୁଁ ବୋଇଲେ ।
ଗ୍ରୁଣେ ନେଇଅଛୁଁ ଆମ୍ଭେ ଶତେଗୁଣ ଦେବୁ
ଗୋଟିଏ ଭରଣ ରାଶି ଭଣ୍ଡାରେ ପୂରାଇବୁ ।
ଶୁଣିଣ ରାଜନ ବେତାଳେ ଆଜ୍ଞା ଦେଲେ
ଭୂତଙ୍କୁ ଛାଡ଼ିଦିଅ ବୋଲିଣ ବୋଇଲେ ।
ଗଲାବେଳେ ରାଜନଙ୍କୁ କହିଲା ଗଲେ ପୁଣ
କାଲି ନେଲୁଁ ଆମ୍ଭେ ଭାବିବ ତୁମ୍ଭେ ଜାଣ ।
ପରଦିନ ରଜନୀରେ ବେଉସା ଦେବୁ ଆଣି
ନିରୋଳା ରାଶି ଗୋଟିଏ ଭରଣ ଦେବୁ ଗଣି ।
ଶୁଣିଣ ରାଜନ ହରଷ ମନ ହେଲେ
ଆନନ୍ଦରେ ମହାରାଜା ନିଜପୁରେ ଗଲେ ।
ଏଥୁଅନନ୍ତରେ ଶୁଣରେ ଲକ୍ଷ୍ମଣ
ଭୂତଙ୍କର ରାଜା ଯେ ଅଟଇ ବାବନ ।
ତାହାର ଆଗରେ ସକଳ କଥା କହି
ଶୁଣିଣ ବାବନେଶ୍ୱର ମନରେ କ୍ରୋଧ ହୋଇ ।
ବୋଇଲା ମୋହର ପରେ ଅଟେ କେ ବଳିଆର
ମୋତେ ଛାଡି କିମ୍ପାରେ ଅନ୍ୟ ରାଜ୍ୟକୁ ଡର ।
ବୋଇଲା ମୋ ବୋଲେ ନ ଦିଅ କିଛିଟି
ସେ ରାଜାକୁ ମୁହିଁ ବଳରେ ଜିଣିବିଟି ।
ରାଜାର ବଚନେ ଭୂତେ ଉଲ୍ଲାସ ହୋଇଲେ
ପାଞ୍ଚଦିନ ପରିଯନ୍ତେ ବେଉସା ନ ଦେଲେ ।
ପାଞ୍ଚଦିନ ଯିବାରୁ ବେତାଳେଶ୍ୱର ଜାଣି
ବାବନାଭୂତ ମନକଲା ଏବେ ଶୁଣି ।
ଅଷ୍ଟବେତାଳ ଘେନିଣ ରାଜା ଚଳିଗଲା
ରେରେକାର ବନରେ ପ୍ରବେଶ ହୋଇଲା ।
ବାବନାଭୂତକୁ ଧରିଲାକ ପୁଣ
ବେତାଳଙ୍କୁ ବୋଇଲା ମାର ୟାଙ୍କୁ ଟାଣ ।
ଭୂତଙ୍କୁ ମନା କଲା ମୋ ଆଜ୍ଞା ମେଣ୍ଟିଲା
ମୋର ରାଜ୍ୟେ ରହିଣ ମୋର ଶତ୍ରୁ ହେଲା ।

ଶୁଣିଣ ବେତାଳେ ଧଇଲେ ଗାଢ଼କରି
କଣ୍ଠାଛାଟ ଧରିଣ ପିଟିଲେ ଆଣ୍ଟକରି ।
ମାଡ଼ ଦେଖି ବାବନାଭୂତ କହେ ବାଣୀ
ତୋହର ହିତେ ମୁଁ ଯେ ଅଛଇଁ ନୃପମଣି ।
ନ ମାର ମୋତେ ଆଉ କହଇ ତୋତେସାର
କୋଟିଏ ଭରଣ ରାଶି ଦେବି ମୁଁ ନିକର ।
ସମସ୍ତ ଚୋପାଛଡା ନଥିବ ଚୋପା ପୁଣ
ଆଜି ରଜନୀରେ ଦେବି ମୁଁ ଆଣିଣ ।
ଶୁଣିଣ ରାଜନ ତାହାକୁ ଛାଡ଼ିଦେଲା
ବେଳ ଥାଉଁ ବାବନାଭୂତ ଚଳିଗଲା ।
ରଜନୀରେ ଚୋପାଛଡା ଗୋଟିଏ ଭରଣ ରାଶି
ରାଜାର ଭଣ୍ଡାରେ ଦେଲା ବାବନାଭୂତ ଆସି ।
ତେତେବେଳେ ରାଜାଙ୍କୁ ବାବନାଭୂତ ଦରଶନ
କରିଣ ଚଳିଗଲା ନିଜସ୍ଥାନେ ପୁଣ ।
ଶୁଣିଲୁ ଲକ୍ଷ୍ମଣ ବାବନାଭୂତ କଥା
ବାବନାଭୂତ ସମାନେ ଆମ୍ଭଙ୍କୁ ହୁଏ ବ୍ୟଥା ।
ସୁଗ୍ରୀବର ମୋର ଆଜ୍ଞାକୁ ମେଣ୍ଟିଲା
ପ୍ରଥମ ଯୁଦ୍ଧରେ ସେ ହାରିବ ଜଣାଗଲା ।
ବଳକୃତେ ମୁଁ ନିଶ୍ଚେ ମାରିବି ଯେ ବାଳୀ
ତାହାର ଘରଣୀ ମୋତେ ହୋଇବ ଜଞ୍ଜାଳି ।
ପ୍ରାନ୍ତରେ ବୟାଳିଶ ବରଷ ପରିଯନ୍ତେ
ବାଳୀକୁ ଅଭୋଗ ହୋଇବ ପୁଣ ମୋତେ ।
ବାଳୀକୁ ନ ମାରିଲେ ତ ନ ରହେ ସଂସାର
ଯେଉଁ କଥାରୁ ଦୁଷଣ ବାଳୀର ବେଭାର ।
ହନୁମନ୍ତ ବୋଲେ ନ କରିବା ଆମ୍ଭେ
ବେଳରେ ଦୁଃଖ ଆମ୍ଭଙ୍କୁ ମିଳିବଟି ଏବେ ।
ଏତେ ବୋଲି ଶ୍ରୀରାମ ଲକ୍ଷ୍ମଣେ ବୁଝାଇ
ଯିବାପାଇଁ ସଜ ହୋଇଲେ ବେନି ଭାଇ ।
ଶୁଣ ତୁରେ ମାରୁତି ପବନର ଚାଟ
କେବଣ ଦିଗେ ଯିବା କହ କପି ବାଟ ।
ଶୁଣିଣ ବାଟ କଢ଼ାଏ ପବନର ବତ୍ସ
ଶ୍ରୀରାମ ଲକ୍ଷ୍ମଣ ବେନି ଚାଲନ୍ତି ତାଙ୍କ ପଛ ।
ଅଗମ୍ୟ ବନସ୍ତରେ ପଥ ବହିଯାନ୍ତି
ଋଷିମୁଖ ପର୍ବତର ଉପରେ ମିଳନ୍ତି ।
ବାବୁ ସେ ବନସ୍ତକୁ ନାହିଁ ପଟାନ୍ତର
ଅଗର ଚନ୍ଦନ ବୃକ୍ଷ ଅଛନ୍ତି ଅପାର ।
ମଉଷଧିମାନଙ୍କର ତଦନ୍ତ ନ ଜାଣି
ଜୀବଜନ୍ତୁମାନଙ୍କୁ ପାରିବ କେହୁ ଗଣି ।
ନାନା ପକ୍ଷୀମାନେ ତହିଁ କ୍ରୀଡା କରି
ମଧୁକର ଚୁମ୍ବଇ ପୁଷ୍ପମାନଙ୍କୁ ଧରି ।

କାବେରୀ ନଦୀତଳେ ବହଇ ନିର୍ଝର
ନାନାଜାତି ପୁଷ୍ପ ଯେ ବହୁତ ଜଳଚର ।
କି ଅବା ବସନ୍ତ ସଜାଇ ତହିଁ ଥାଇ
ମନରେ ଯାହା ପାଞ୍ଚିବ ତାହା ପାଇ ।
ଅଷ୍ଟରତ୍ନ ସଦୃଶରେ ଦିଶଇ ସେହି ଗିରି
ତମ୍ବା ରୁହା ସ୍ଫଟିକ ପ୍ରାୟେ ଜ୍ୟୋତି ଧରି ।
ତାମ୍ବୁଳ ବୃକ୍ଷ ତହିଁରେ ଅଛଇ ବହୁତ
ଖଜୁରୀ ସଙ୍ଗରେ ଦ୍ରାକ୍ଷା ଅଛି ଶତ ଶତ ।
ପିପ୍ପଳୀ ଲତାରେ ପିପ୍ପଳୀ ଫଳିଛନ୍ତି
ଫୁଟନ୍ତି ପଡ଼ନ୍ତି ଝଡ଼ନ୍ତି ଝଟତି ।
ବରଦୁରି ଗଛ ବହୁତ ସେଥି ଘୋଟି
ଇନ୍ଦ୍ର ନନ୍ଦନ ବନ ପ୍ରାୟ ଦିଶଇଟି ।
ଶୁକ ଶାରିମାନେ ସେଥିରେ ଯୂଥ ଯୂଥ
କେବଣଠାରେ ପାରୁଆ ହେଉଛନ୍ତି ମତ ।
ଶ୍ୱେତ ନକୁଳ ସେଥିରେ ଖେଦି ଖେଦି ହୋଇ
ଭୂମି ଲତା ଖୋଜନ୍ତି ଆହାରର ପାଇଁ ।
ଉଇଟାଙ୍କୁ କେଉଁଠାରେ ଖାଆନ୍ତି ଖିରଙ୍ଗ
କେଉଁଠାରେ ଭଦଳିଆ ହୋଇଛନ୍ତି ସାଙ୍ଗ ।
କେଉଁଠି ଅଜଗର ଖାଉଛି ପବନ
କେଉଁଠି ହସ୍ତୀମାନେ କରନ୍ତି ଗର୍ଜନ ।
ମାଟଙ୍କ ଫଳ ପାଚି କେଉଁଠାରେ ପଡେ
କେଉଁଠାରେ ଶୁଖିଲା ପତ୍ରମାନ ଉଡ଼େ ।
କେଉଁଗଛରେ ଲାଗେ କୋରିଆନାମେପୋକ
ବଟବୃକ୍ଷ ଉପରେ ବସିଅଛି ବକ ।
ଶିମୂଳି ଗଛ ଫୁଲ ତାକୁ କେ ଲେଖା କରେ
କେତେ ବନ ତଳରେ ମଞ୍ଜାରୀ ଶଶା ମାରେ ।
କାଠଖୁମ୍ପା ଚଢେଇ ହାଣଇ ଆଣ୍ଟେ ଗଛ
ପଳାଇ ଜମ୍ବୁକ ଚାହିଁଇ ଆଗ ପଛ ।
ବେଣୁ ଲତା ଉହାଡ଼ରେ ମୟୂର ବୋବାନ୍ତି
ଚ୍ୟୁତ ଡାଳରେ ବସି କୋକିଳ ରାବ ଦ୍ୟନ୍ତି ।
ସିଂହର ଖୋଜମାନ କେଉଁଠାରେ ପଡ଼ି
କେଉଁଠାରେ ଡାଳିମ୍ବ ପଡିଅଛି ଝଡି ।
ଦେଖିଣ ରଘୁନାଥ କରନ୍ତି ପ୍ରଶଂସା
କେହୁ ଆସି ଚନ୍ଦନ ବନରେ କରେ ହିଂସା ।
ଏ ପର୍ବତର ମହିମା ଅଟଇ ଧନ୍ୟ ସେତ
ହନୁମନ୍ତ କହଇ ଶୁଣ ହେ ରଘୁନାଥ ।
ପୂର୍ବରେ ଦୁର୍ବାସା ଋଷିଙ୍କର ଏ ଆଶ୍ରମ
ଦୁର୍ବାସା ଋଷି ଏଠାରେ ଥିଲେଟି ଶ୍ରୀରାମ ।
ସେ ଋଷି ବନକୁ ଇଚ୍ଛାକରି ରୋପିଲେ
ସତ୍ୟଯୁଗ ପରିଯନ୍ତେ ଏଥିରେ ବସାକଲେ ।
ଏ ପୁଣ୍ୟ ଚରିତ ଆପଣା ନାମ ସେ ଦେଇ
ତେଣୁ ସେ ଋଷିମୁକ ପର୍ବତ ବୋଲାଇ ।
ପବିତ୍ର ସ୍ଥାନ ଏ ଯେ ତପର ସୁଧାନାମ
ତପୀଙ୍କର ଆଶ୍ରାମାନ ଅଟଇ ଉତ୍ତମ ।
ଏଥୁ ଅନନ୍ତରେ ସେ ଯେ ପଥ ବହିଗଲେ
ସୁଗ୍ରୀବର ନିକଟରେ ପ୍ରବେଶ ହୋଇଲେ ।
ଚାରିଜଣ ଭେଦିଣ ଆଦିତ୍ୟର ସୁତ
ନିଜକୁ ଘେନି ବିମ୍ବରେ ହୋଇଛି ଗୁପତ ।
ଶ୍ରୀରାମଚନ୍ଦ୍ର ଯାଇ ବିମ୍ବର ଦ୍ୱାରେ ମିଳି
ନୀଳକୁ ଘେନିଣ ସୁଗ୍ରୀବର ଭାଳି ।
ଏସନ ସମୟେ ହନୁମନ୍ତ ମିଳିଲା
ଉଚ୍ଚସ୍ୱରେ ସୁଗ୍ରୀବଙ୍କୁ ଡାକିଲା ।
ବିମ୍ବର ଭିତରେ ଲୁଚିଛ କାହିଁପାଇଁ
ଆବର ଭୟ ତୋର ବାଳୀକି କିମ୍ପାଇଁ ।
ଈଶ୍ୱର ବେଦବର ଚିନ୍ତନ୍ତି ଯାହାକୁ
ଯୋଗିଜନମାନେ ଧାଉଛନ୍ତି ଯାକୁ ।
ସେ ପ୍ରଭୁ ଆସିଛନ୍ତି ତୋହର ଦୁଃଖ ଫେଡ଼ି
ଦର୍ଶନ କର ଆସି ଚରଣତଳେ ପଡ଼ି ।
ଯେବଣ ସ୍ୱପନ ଦେଖିଲୁ ଗଲା ନିଶି
ତହିଁର ଫଳ ତୋତେ ପ୍ରାପ୍ତ ହେଲା ଆସି ।
ନାରଦ କହିବା କଥା ହେଲା ଏବେ ସତ
ତପୀଜନମାନେ ନ କହନ୍ତି ମିଥ୍ୟା ତ ।
ଆବର ବିମ୍ବରେ ତୁ ଲୁଚିବୁ କାହିଁପାଇଁ
ଅମୃତ ମିଳିଲା ଶୁଚିବନ୍ତ ହୋଇ ।
ପରଂବ୍ରହ୍ମ ମୂର୍ତ୍ତିଙ୍କି ତୁ ଦର୍ଶନ ଆସି କର
ପାପ କ୍ଷୟ ହେଉ ଯାଉ ଦଶା ତୋର ।
ଶୁଣିଣ ସୁଗ୍ରୀବର ପରମ ତୋଷ ଚିତ୍ତ
ନୀଳକୁ ବୋଇଲେ ଅଇଲେ ହନୁମନ୍ତ ।
ଏତେବୋଲି ସୁଗ୍ରୀବର ହରଷିତ ହୋଇ
ବିମ୍ବର ଭିତରୁ ବାହାର ସେ ହୋଇ ।
ନୀଳ ହସ୍ତ ଧରିଣ ଖଡ୍ଗଦସୁତ ଆସିଲାଟି
ଶ୍ରୀରାମ ଚରଣେ ଦର୍ଶନ କରେ ସେଟି ।
ଜମ୍ବେବ ସୁଷେଣ ନଳ ନୀଳ ଜାଣ
ହନୁମନ୍ତକୁ ଘେନିଣ ପାଞ୍ଚଜଣ ପୁଣ ।
ଶ୍ରୀରାମ ଲକ୍ଷ୍ମଣଙ୍କୁ ଦେଖି କପିକୁଳପତି
ଆନନ୍ଦରେ ଉସତ ପରମ ତୋଷମତି ।
ପଳାଶ ଡାଳେକ ଭାଙ୍ଗିଣ ଆଣିଦେଲା
ଏଥିରେ ଶ୍ରୀରାମ ବସ ହେ ବୋଇଲା ।
ଶୁଣି ରାମଚନ୍ଦ୍ର ସାନୁଜ ଘେନି ବସନ୍ତି
ଆସନ ପାଇ ବେନି ପରମ ତୋଷମତି ।

ସୁଷେଣ ନଳ ନୀଳ ଜୟେବ ସୁଗ୍ରୀବର
ଶତେବାର ପରିଯନ୍ତେ ନମେ ଶ୍ରୀପୟର ।
ଲକ୍ଷ୍ମଣଙ୍କୁ ସେହିରୂପେ ମାନ୍ୟଧର୍ମ କଲା
କରଯୋଡ଼ି ସୁଗ୍ରୀବର ଆଗରେ ବସିଲା ।
ଶ୍ରୀରାମଚନ୍ଦ୍ରଙ୍କୁ ପଚାରେ ସୁଗ୍ରୀବର
କେବଣ କାରଣେ ତୁମ୍ଭେ ପଶିଲ ଏ ବନର ।
ରଘୁବଂଶେ ଉତପତି ଦଶରଥଙ୍କ ସୁତ
ପୂର୍ବର କୀରତି ଜଗତେ ବିଖ୍ୟାତ ।
ସତ୍ୟବନ୍ତ ପୁରୁଷ ତୁମ୍ଭେ ବିଖ୍ୟାତ ଏ କ୍ଷିତି
ସାଧୁଜନମାନେ ମୁଖରେ ବଖାଣନ୍ତି ।
କିମ୍ପାଇଁ ଦାଶରଥି ଅଇଲ ଘୋରବନ
ମହାରାଜପଣକୁ ତୁହି ସେ ଭାଜନ ।
ଶ୍ରୀରାମ ବୋଇଲେ ସୁଗ୍ରୀବର ଶୁଣ
ଯାହା ସେ ବୋଇଲେ କପିକୁଳ ରାଣ ।
ପିତା ଦଶରଥ ଅପୁତ୍ରିକ ହେଲେ
ଋଷ୍ୟଶୃଙ୍ଗମୁନି ଆସିଣ ଭେଟିଲେ ।
ଯାଗ କରିଣ ଚରୁ କଲେକ ଭିଆଣ
ଚରୁରେ ଦୃଶ୍ୟ ହେଲେ ସ୍ୱୟଂ ନାରାୟଣ ।
ତେଣୁକରି ଋଷ୍ୟଶୃଙ୍ଗ ସଙ୍କେତ ଜାଣିଲେ
ନାରାୟଣ ଅବତାର ହୋଇବେ ଜାଣିଲେ ।
ସେ ଚରୁ ଆଣି ଦଶରଥ ହସ୍ତେ ଦେଲେ
ଦଶରଥ ହରଷ ହୋଇ ଚଳିଗଲେ ।
ଶ୍ରେଷ୍ଠରାଣୀ କୌଶଲ୍ୟା କୈକେୟୀ ସୁମିତ୍ରା
ତିନିରାଣୀଙ୍କି ଚରୁ ବାଣ୍ଟିଣ ଦେଲେ ପିତା ।
ତେଣୁ ସେ ଚାରିପୁତ୍ର ହୋଇଲୁଁ ଆମ୍ଭେ ଜାତ
କୌଶଲ୍ୟା କୈକେୟୀ ସୁମିତ୍ରା ତିନି ମାତ ।
ଜ୍ୟେଷ୍ଠ ମୁହିଁ ରାମ କନିଷ୍ଠ ଶତୃଘନ
ଭରତ ଲକ୍ଷ୍ମଣ ଅଟନ୍ତି ମଧମାନ ।
ତିନିରାଣୀରୁ ଜାତ ଚାରିପୁତ୍ର ପୁଣ
ବିଧାତା ଭିଆଣ କେ କରିପାରେ ଆନ ।
ଚାରିପୁତ୍ର ଦେଖି ଦଶରଥ ମନ ସୁଖୀ
ଯତନେ ଜନନୀମାନେ ପାଳିଲେ ଆନନ୍ଦେଟି ।
ଏକୋଇଶ ଦିନେ ପିତା ନାମକରଣ କଲେ
ବଶିଷ୍ଠ ଗୁରୁ ଚାରିନାମ ବାଛି ଦେଲେ ।
ସପତ ବରଷେ ପିତା କଲେ ବେଦଧ୍ୱନି
ଢଳ ପବିତ୍ର ପଇତା ଦେଲେକ ଆର୍ଯ୍ୟମୁନି ।
ନବ ବରଷେ ବିଶ୍ୱାମିତ୍ର ଆମ୍ଭଙ୍କୁ ଘେନିଲେ
ବାର ବର୍ଷେ ବିଶ୍ୱାମିତ୍ର ଯୁଦ୍ଧ ଶିକ୍ଷା ଦେଲେ ।
ରେରେକାର ବନରେ ତାଡ଼କୀ ଆମ୍ଭେ ମାରି
କଉଶିକ ବନରେ ଋଷି ଯାଗକୁ ରକ୍ଷା କରି ।

ଗଙ୍ଗାକୂଳେ ଅହଲ୍ୟା ପାଷାଣ ରୂପେ ଥିଲା
ମୋହର ଚରଣ ଲାଗନ୍ତେ ନିଜରୂପ ହେଲା ।
ଗୌତମ ଋଷି ଆସିଣ ଘେନିଗଲେ
ଅନେକ ଆୟୁଷ ମୋତେ ସେ ବାଞ୍ଛା କଲେ ।
ସେଠାରୁ ବିଶ୍ୱାମିତ୍ର ଘେନି ମୋତେ ଚଳି
ମିଥିଳାରେ ପ୍ରବେଶ ହୋଇଲୁଁ ଯାଇକରି ।
ମିଥିଳା ନଗ୍ରରେ ଜନକ ନୃପତି
ସୀତା ନାମେ ତାହାର ଅଟଇ ଦୁହିତୀ ।
ଶିବଧନୁ ରଖି ସତ୍ୟ କରିଥିଲେ
ଏ ଧନୁ ଭାଙ୍ଗିବ ଝିଅ ଦେବି ଯେ ବୋଇଲେ ।
ମୁହିଁ ଧନୁ ଆମଞ୍ଚିଲି ମୋତେ ସୁଖ ହେଲା
ଜନକ ଦୁହିତା ମୋତେ ଆସିଣ ବରିଲା ।
ଉର୍ମିଳା ନାମେ ତାର କନିଷ୍ଠ ଦୁହିତା
ଲକ୍ଷ୍ମଣଙ୍କୁ ବିଭା କଲା ସେ ଦୁହିତା ।
କୁଶଧ୍ୱଜ ବୋଲି ତାଙ୍କ ସାନଭାଇ
ଭରତ ଶତୃଘନଙ୍କୁ କଲେ ସେ ଜୁଆଁଇ ।
ମାଳିନୀ ସୁମାଳିନୀ ସେ କନ୍ୟାଙ୍କର ନାମ
ସୁନ୍ଦରପଣେ ସେହୁ ଅଟନ୍ତି ଉତ୍ତମ ।
ଚାରିଭାଇ ବିଭା ହୋଇ ଆସିଲୁ ଦେଶେତ
ବାଟରେ ଗୋଳକଲେ ଯମଦଗ୍ନି ସୁତ ।
ତାହାଙ୍କୁ ତୋଷ କରିଣ ଅଯୋଧ୍ୟା ଆସିଲୁଁ
ବେନି ବର୍ଷ ପର୍ଯ୍ୟନ୍ତ ସୁଖରେ ରହିଲୁଁ ।
ପିତା ଦଶରଥ ଗୁରୁମନ୍ତ୍ରୀ ଘେନି ଭାଳି
ମୋତେ ରାଜା କରି ଦେବାକୁ ମହୀଆଳି ।
ସାବତ ଜନନୀ ଅଟନ୍ତି ଭ୍ରତ ଆଇ
ଦଇବ ବିଚାରେ ମୋତେ ଆବିଳ ବିଚାରଇ ।
ପିତାଙ୍କୁ ସେହି ରାତ୍ରେ ସତ୍ୟ କରାଇଲେ
ଚଉଦ ବରଷ ରାମ ବନ ଯାଉ ବୋଇଲେ ।
ଭ୍ରତ ରାଜା ହୋଇଣ ପାଳିବ ଏହୁ ଦେଶ
ଅଭିଷେକ ହୋଇବେ ପୂରିଲେ ଚୌଦବର୍ଷ ।
ଶୁଣିଣ ପିତା ମୋର ତାହାଙ୍କୁ ପଚାରିଲେ
ମାୟା କିମ୍ପା କଲେ ବୋଲିଣ ବୋଇଲେ ।
ଜନନୀ ବୋଇଲେ ଶୁଣ ନୃପବର
ରାମଠାରେ ଦେବଙ୍କର କାର୍ଯ୍ୟ ଯେ ଅପାର ।
ବନକୁ ଗଲେ ସେ ମାରିବେ ଅସୁର
ପୃଥ୍ୱୀଦେବୀର ଚିନ୍ତା ସାରିବେ ରଘୁବୀର ।
ମୁହିଁ ଜ୍ୟେଷ୍ଠା ଭାରିଯା ତୁମ୍ଭର ଅଟଇ
ପ୍ରଥମେ ମୋର ପୁତ୍ର ଏ ରାଜ୍ୟେ ରାଜା ହୋଇ ।
ନୋହିଲେ କାଳଯୁଗେ ଧରା ନ ରହିବ
ଯେହୁ ବଳବାନ ହେବ ସେ ରାଜା ହୋଇବ ।

ଏମନ୍ତ ବଚନ କଏକୟା କହି
ଶୁଣିଣ ଦଶରଥ ମନଦୁଃଖେ ରହି ।
ପିତା ମୋତେ କହିଲେ ଏମନ୍ତ ଚରିତ
ପିତାର ସତ୍ୟ ନିମେନ୍ତ ବନେ ମୁଁ ଉପଗତ ।
ସଙ୍ଗରେ ସୀତୟା ଲକ୍ଷଣ ଘେନି ଆସି
ବନକୁ ଅଇଲି ଶୁଣ ଆଦିତ୍ୟର ଶିଶି ।
ବାରଦିନେ ପିତା ନ ଦେଖି ନାଶଗଲେ
ଭ୍ରତ ଭାଇ ମୋର ଅଜାଘରେ ଥିଲେ ।
ମନ୍ତ୍ରୀ ଗୁରୁ ବିଚାରି ତାଙ୍କୁ ଅଣାଇଲେ
ତୋର ମାତା ଦୋଷରୁ ପିତା ନାଶଗଲେ ।
ହୁଅ ଏବେ ରାଜା ପିତା ହେବେ ଭସ୍ମ
ଶୁଣିଣ ଭରତ ନୋହିଲେ ସନ୍ତୋଷ ।
ବୋଇଲେ ଶ୍ରୀରାମର ଅଟଇ ରାଜପଣ
ମୁହିଁ ତାଙ୍କ ଦାସ ଲଙ୍ଘିବି କେହ୍ନେ ପୁଣ ।
ଏତେ ବୋଲି ଭ୍ରତ ସକଳ ଲୋକ ଘେନି
ଚିତ୍ରକୂଟେ ପ୍ରବେଶ ହୋଇଲା ଆସି ପୁଣି ।
ବାରତା କହି ମୋତେ ଭକତି ସେ କଲା
ବୁଝାଇ କହିବାରୁ ଲେଉଟି ପୁଣ ଗଲା ।
ରାଜା ସେ ନୋହିଲା ଅଯୋଧା ରାଜ୍ୟରେ
ତପ କରି ବସିଲା ମଉନ ଭାବରେ ।
ମୋହର ସାବତ ଜନନୀ ଲୀଳାବତୀ
ରାଜ୍ୟର ଭଲମନ୍ଦ ବୁଝିଲେ ସେ ସତୀ ।
ମୋହର ପାଦୁକା ଭରତ ନେଇଥିଲା
ସେ ପାଦୁକା ଅଯୋଧାରେ ରାଜନ ହୋଇଲା ।
ପାଦୁକା ରାଜା ବୋଲି ସମନ୍ତେ ମାନି ରହି
ସେ ପାଦୁକାକୁ ପୂଜା ଭରତ କରଇ ।
ଦଶବର୍ଷ ପର୍ଯ୍ୟନ୍ତେ ରହିଲୁଁ ନାନା ବନ
ଅଗସ୍ତି ମୁନିଙ୍କି ଦେଖି କହିଲି ଏମାନ ।
ତେଣୁ ସେ ମୁନିବର ହୋଇଲେ ପ୍ରସନ୍ନ
ବୋଇଲେ ଶ୍ରୀରାମ ଶୁଣ ମୋ ବଚନ ।
ଭଲ ସ୍ଥାନ ଅଟଇ ଗୋଦାବରୀ କୂଳର
ସ୍ୱର୍ଗର ଗନ୍ଧର୍ବେ ରହନ୍ତି ସେଠାର ।
ଦଣ୍ଡକା ଅରଣ୍ୟ ପଞ୍ଚବଟୀ ବନ
ସେ ବନରେ ରହ ହେ ରଘୁ ନନ୍ଦନ ।
ତାଙ୍କଠାରୁ ଶୁଣିଣ ପଞ୍ଚବଟୀରେ ରହି
ତିନିବରଷ ଏକମାସ ସେଠାରେ ଗଲା ବହି ।
ଏକ ଦିନେ ବେନିଭାଇ ମୃଗ ମାରିଗଲୁଁ
ଅରଣ୍ୟ ଭିତରେ ମୃଗକୁ ମାରିଲୁଁ ।
କେହୁ ମୋର ଘରଣୀକି ଘେନିଗଲା ରାଇ
ଆସିଣ ଦେଖିଲୁଁ ଘରଣୀ ଘରେ ନାହିଁ ।
ତେଣୁ ଦୁଃଖୀ ହୋଇଣ ବୁଲୁଛୁଁ ବନସ୍ତ
ଲୋଡ଼ି ନ ପାଇଲୁଁ ମିଳିଲୁ ଆସି ଏଥ ।
ଆମ୍ଭ ଆଗେ ହନୁମନ୍ତ କହିଲା ତୁମ୍ଭ କଥା
ଶୁଣିଣ ଆମ୍ଭାକୁ ମୋର ଲାଗିଲା ବହୁ ବ୍ୟଥା ।
ପଛନ୍ତେ ତିନିଜଣ ଯାଇଣ ଭେଟ ହେଲେ
ତୁମ୍ଭର କଥା ମୋତେ ବହୁତ କହିଲେ ।
ତେଣୁ କରି ତୁମ୍ଭକୁ ଦେଖିଣ ଅଇଲି
ତୁମ୍ଭେ ଦୁଃଖି ଆମ୍ଭେ ଦୁଃଖି ଭେଟ ଏଥି ହେଲି
ମୁଁ ଅଟେ ବଡ଼ ଦୁଃଖି ତୁମ୍ଭେ ଅତି କଷ୍ଟୀ
ଯୋଗରେ ବିଧାତା କଲା ଏକ ଗୋଷ୍ଠୀ ।
ତୁମ୍ଭେ ଆଦିତ୍ୟ କୁଳ ସୂର୍ଯ୍ୟକୂଳେ ଜାତ
ତୁମ୍ଭେ କିଷ୍କିନ୍ଧ୍ୟାଧିପତି ମୁଁ ଅଯୋଧାନାଥ ।
ଜ୍ୟେଷ୍ଠ ଭାଇ ତୁମ୍ଭର ଭୁଞ୍ଜଇ ବିଭୂତି
ଧର୍ମକୁ ନ ମାନି ସେ କଲାକ ଅନୀତି ।
ମୋଠାରେ କୋପକଲେ ସାବତ ଜନନୀ
ବନରେ ବୁଲିଲି ଆସି ଭାଇ ଭାରିଯା ଘେନି ।
ତୁମ୍ଭେ ବନେ ପଶିଲ ପାତ୍ରମନ୍ତ୍ରୀ ସଙ୍ଗେ
ତୁମ୍ଭ ଘରଣୀକି ବରିଲା ବାଳୀ ରାଗେ ।
ମୋହର ଘରଣୀକି କେବଣ ଚୋର ନେଲା
ତୁମ୍ଭର ମୋହର ଦଶା ସମାନ ହୋଇଲା ।
ଏଣୁ ତୁମ୍ଭେ ମଇତ୍ର ହୋଇଲ କପିରାଜା
ତୁମ୍ଭ ବଇରୀକି ମାରି ତୁମ୍ଭଙ୍କୁ କରିବି ରାଜା ।
ଏତେ ବୋଲି ଶ୍ରୀରାମ ଧନୁଶସ୍ତ୍ର ଥୋଇ
ସୁଗ୍ରୀବରକୁ ରାମ କୋଳ କଲେ ଯାଇ ।
ଭୟକରି କପିବୀର ଯୋଡ଼ଇ ବେନିକର
ଲକ୍ଷ୍ମଣକୁ ବୋଲି ସୁଗ୍ରୀ ତୁମ୍ଭେ କୋଳ କର ।
ଶୁଣିଣ ବାନରେଶ୍ୱର ଲଜ୍ଜିତ ଯେ ହୋଇ
ଶ୍ରୀରାମଙ୍କୁ କୋଳ କଲେ ପରମ ତୋଷ ହୋଇ ।
ସଉମିତ୍ରୀ ଚତୁର୍ବେଦ କଲେକ ଆଧାନ
ଧନୁଧରି କାଢ଼ିଲେ ଅଗ୍ନି ହୁତାଶନ ।
ହନୁମନ୍ତ ଆଣିଲା ବୃକ୍ଷରୁ ପୁଷ୍ପତୋଳି
ମାଳା ଗୁନ୍ଥି ବେନିଜନ ଗଳାରେ ନେଇ ଭରି
ସୁଷେଣ ବୈଦ୍ୟ ପଢ଼ନ୍ତି ମଙ୍ଗଳ ଆରେପଣ
ବୋଲଇ କପିକୁଳ ଆଜହୁଁ ହେଲୁ ଧନ୍ୟ ।
ଜମ୍ବେବ ମନ୍ତ୍ରୀ ନେଇଣ ଚନ୍ଦନ ଲେପଇ
ସୁଗ୍ରୀବର ରାମ ଦୁହେଁ ଅଗ୍ନିମୁଖ ଚାହିଁ ।
ହୁତାଶନକୁ ବୋଇଲେ ଶ୍ରୀରାମ ସୁଗ୍ରୀବର
ସାକ୍ଷୀ ହୋଇଥାଅ ତୁମ୍ଭେ ଦେବ ବୈଶ୍ୱାନର ।
ଆଜଠାରୁ ଯେତେଦିନ ପ୍ରାଣଥିବ ଆମ୍ଭ ଦେହ
କଦାଚିତେ ନ ଛାଡ଼ିବୁଁ ଆମ୍ଭର ଏ ସ୍ନେହ ।

ଧନ ଶିରୀ ପ୍ରାଣ ଯେ ଆମ୍ଭରି ଏକ ପ୍ରାୟେ
ତଥାପି ବାଇମନ ନ ଧରୁ ଆମ୍ଭ କାୟେ ।
ଏକର କାର୍ଯ୍ୟ ଯେବେ ଆରେକ ନ କରିବୁ
ନୌଚେତନ ଅନଳ ମୁଖରେ ଭସ୍ମ ହେବୁଁ ।
ଆମ୍ଭ ସତ୍ୟ ତୁମ୍ଭେ ଜାଣିଥାଅ ହୁତାଶନ
ରାମ ସୁଗ୍ରୀବରଙ୍କର ଏମନ୍ତ ନିୟମ ।
ସ୍ୱର୍ଗର ଦେବତାଏ ଦେଖନ୍ତି ସ୍ୱର୍ଗରେ
ପାରିଜାତ ପୁଷ୍ପ ବର୍ଷନ୍ତି ସେ ସ୍ଥାନରେ ।
ଦେବତା ସକଳେ ଦେଖି ବିଧାତା ସୁମରିଲେ
ଜାଣିଣ ବେଦବର ସେ ସ୍ଥାନେ ମିଳିଲେ ।
ମେଳ ହୋଇ ଶୂନ୍ୟରେ କରନ୍ତି ବିଚାର
କେତେକାଳ କଷ୍ଟ ଯେ ସରିବ ଆମ୍ଭର ।
ରାମ ସୁଗ୍ରୀବରଙ୍କର ଦେଖିଲେ ଯହୁଁ ପ୍ରୀତିଭାବ
କାର୍ଯ୍ୟସିଦ୍ଧ ହୋଇଲା ଭାବିଲେ ଦଇବ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ରାଘବ ବାନରେଶ୍ୱର ହେଲେ ଯହୁଁ ପ୍ରୀତି ।
ହନୁମନ୍ତ ବୋଇଲା ଶ୍ରୀରାମ ମୁଖ ଚାହିଁ
ଏଇ ସୁଗ୍ରୀବର କିଷ୍କିନ୍ଧ୍ୟାର ସାଇଁ ।
ତୁମ୍ଭର ଶରଣ ପଶିଲା ଦାଶରଥି
ଯେପରି କପିରାଜା ପାଇବେ ସଦଗତି ।
ସେ କଥାକୁ ନିକଟ ବିଧାତା କଲା ଆଣି
ନୋହିଲେକି ଏଠାକୁ ଆସନ୍ତେ କମ୍ବୁପାଣି ।
ହନୁମାନ ବଚନେ କହନ୍ତି ଲକ୍ଷ୍ମଣ
ଶ୍ରୀରାମ ସଙ୍ଗରେ କେହି ସାହା ନାହିଁ ଜାଣ ।
କେମନ୍ତ ବଚନ କହ ହନୁ ଅମଡ଼ା ମାଡ଼ିଣ
ଲକ୍ଷ୍ମଣର ବଚନେ କହନ୍ତି ହନୁମାନ ।
ଏକା ଶ୍ରୀରାମଙ୍କୁ ସରି ନୋହିବେ ତ୍ରିଭୁବନ
ଏକା ଦେଖି ଲକ୍ଷ୍ମଣ ମଣୁଛି କି ସାନ ।
ଏହି ସେ ରଘୁନାଥ ଦେବଙ୍କ ମୋକ୍ଷପାଳ
ଜନ୍ମ ହୋଇଅଛନ୍ତି ଦଶରଥଙ୍କ କୋଳ ।
ରଘୁନାଥ ତିଳକ ଅଯୋଧ୍ୟାର ନାଥ
ଅନେକ ନିଧି ଯେ ଅଛଇଁ ତାଙ୍କ ହସ୍ତ ।
ବହୁତ ଯଶ ସୁଗ୍ରୀବକୁ ପ୍ରାପତ ଏବେ ହେଲା
ଯହୁଁ ସେ ରଘୁନାଥରେ ଶରଣ ପଶିଲା ।
ଦିବ୍ୟପୁର ଭୋଗ କରିବ ଖଡ଼ଗଦ ରାଜାପୁଅ
ଯେତେ ଦୁଃଖ ପାଇଥିଲା ସମୟେ ଯାର ଦେହ ।
ଦେବତାମାନେ ଯାହାକୁ ସ୍ୱାମୀ ବୋଲି କହି
କର୍ମର ଅବଳେ ଦେବ ଏଥକୁଆସିଲଇଁ ।
ଏତେ ବୋଲି ହନୁମନ୍ତ କହଇ ବଚନ
ଶୁଣହେ ଲକ୍ଷ୍ମଣ ଜଣାଗଲା ଯେ ପୁଣ ।

ଶ୍ରୀରାମ ତ୍ରୈଲୋକ୍ୟର ଅଟନ୍ତି ଅଧିକାରୀ
ଅବତାର ହୋଇଲେ ଅସୁରନ୍ତ ମାରି ।
ଏହା ମୋତେ ମୋର ପିତା ପବନ କହିଗଲେ
ଏତେକାଳେ ସ୍ୱାମୀ ଭେଟ ଯେ ହୋଇଲେ ।
ଯେବଣ ଦିନ ରାବଣ ସୀତାଙ୍କୁ ନେଲା ହରି
ଆକାଶରେ ରଥ ଚଳାଇ ବେଗକରି ।
ଦକ୍ଷିଣ ଦିଗକୁ ରଥ ଚଳାଇ ଘନଘନ
ସେ ରଥ ଉପରେ ଏକ ଯୁବତୀ ବସିଣ ।
ଏକା ବସିଛନ୍ତି ତା ସଙ୍ଗେ କେହି ନାହିଁ
ନିର୍ଧୂମ ଅଗ୍ନି ଜଳି ପ୍ରାୟେ ତାର ଦେହୀ ।
ଉଚ୍ଚରେ ରୋଦନ କରଇ ସେହୁ ଜାଣ
ଶ୍ରୀରାମ ନାମ ଧରି କରଇ କ୍ରନ୍ଦନ ।
ସେ ରଥ ତଳପୀଢ଼େ ରାବଣେଶ୍ୱର ବସି
ଦଶଗୋଟି ମୁଣ୍ଡ ତାର ଆମ୍ଭଙ୍କୁ ଯେ ଦିଶି ।
ତାର ତଳ ପୀଢ଼ରେ ସାରଥି ବେନିଜନ
ଅତି ଖରେ ରଥକୁ ବାହୁଛନ୍ତି ପୁଣ ।
ରାମଲକ୍ଷ୍ମଣ ନାମକୁ ସୁମରେ ସେହି ନାରୀ
ଶୁଣିଣ ବନଜୀବ ହୋଇଲେ ଆକୁଳି ।
ଏମନ୍ତ ବଚନ ହନୁମନ୍ତ କହି
ମଉନ ହୋଇବାରୁ ସୁଗ୍ରୀବ ଜଣାଇଁ ।
ଶୁଣ ଦେବ ଲକ୍ଷ୍ମଣ ମୋହର ବଚନ
ଯେଉଁଦିନ ସତୀଙ୍କୁ ନେଲା ଦଶାନନ ।
ବିଜୁଳିର ତେଜପ୍ରାୟ ଦିଶେ ତା ଶରୀର
କଳାମେଘେ ଯେସନେ ଦିଶେ ଦିବାକର ।
ରାବଣ ବସିଅଛି ସତୀର ତଳପୀଢ଼େ
ଉପରେ ଅଗ୍ନିର ପ୍ରାୟେ ନାରୀର ତେଜବଢ଼େ ।
ସେ ତେଜ ଦେଖିଣ ମୁଁ ଚାହିଁଲି ଉର୍ଦ୍ଧ୍ୱଗତି
ଦେଖିଲି ସତୀ ରଥରେ ରୋଦନ କରୁଛନ୍ତି ।
ଆମ୍ଭଙ୍କୁ ଚାହିଁଣ ସତୀ ବହୁତ ଶୋକକଲା
ମୁହିଁ ଶ୍ରୀରାମର ଘରଣୀ ବୋଲିଣ ଡାକଦେଲା ।
ଦଶରଥ ରାଜାର ମୁଁ କୁଳବଧୂ ଅଟଇ
ମୋତେ ଘେନି ବନବାସ କଲେ ରଘୁସାଇଁ ।
ତିନିବରଷ ଆମ୍ଭେ ରହିଲୁ ପଞ୍ଚବଟୀ
ଅପୂର୍ବ ଦେଖିଲି ମୁଁ କନକ ମୃଗଗୋଟି ।
ସ୍ୱାମୀ ଦିଅର ମୋରଗଲେ ମୃଗମାରି
କପଟେ ରାବଣ ମୋତେ ନେଉଅଛି ଧରି ।
ଏତେ ବୋଲି ଦେବୀ ଅଳଙ୍କାର କାଢ଼ି
ଆବର କାଢ଼ିଲେ ଅମଳାଣ ଶାଢ଼ୀ ।
ସେ ଶାଢ଼ୀରେ ସେହି ବାନ୍ଧିଲେ ଆଏମାନ
ତଳକୁ ପକାଇଲେ ସୁମରି ରଘୁନନ୍ଦନ ।

ସେ ବସ୍ତ୍ର ଅଳଙ୍କାର ଏଠାରେ ଆସି ପଡ଼ି
ଶବଦ କରିବାରୁ ଦେଖିଲୁ ଆମ୍ଭେ ଫେଡ଼ି ।
ଚୂଡ଼ି ବିଦ ବାହୁଟି ରତ୍ନହାରମାନ
ପାହୁଡ ଝୁଣ୍ଟିଆ ନୁପୁର ଅଛି ପୁଣ ।
କାନଫୁଲ ମଲ୍ଲୀକଢ଼ ଫାସିଆ ସିନ୍ଧୁଫଳ
ଅଳଙ୍କାର ମାନଙ୍କରେ ବିରାଜେ ତେଜ ହାର ।
ସେ ବସ୍ତ୍ର ଅଳଙ୍କାର ଥୋଇଅଛି ମୁହିଁ
ତୁମ୍ଭେ କହିବାରୁ ଜାଣିଲି ଗୋସାଇଁ ।
ଏତେ କହି ସୁଗ୍ରୀବର ବିମ୍ବରେ ଯାଇ ପଶି
ବସ୍ତ୍ର ଅଳଙ୍କାର ଘେନି ବାହାର ହୋଇ ଆସି ।
ଶ୍ରୀରାମଙ୍କ ଛାମୁରେ ଦେଲାକ ନେଇ ତାହା
ଉଠିଣ ଦେଖିଲେ ରଘୁକୁଳ ନାହା ।
ଫେଡ଼ିଣ ଅଞ୍ଚଳ ଦେଖିଲେ ରଘୁରାଜ
ସକଳ ଅଙ୍ଗ ଭୂଷଣ ହୋଇଛି ସଂଯୋଗ ।
ବେନି ଖଡୁ କେବଳ ଚୂଡ଼ିର ସଙ୍ଗେ ନାହିଁ
ମଥାମଣି କେବଳ ନ ଦେଲା ବଇଦେହୀ ।
ମଳିଣ ଶାଢ଼ୀ ଗୋଟି ଦେଇନାହିଁ ପୁଣ
ଦେଖିଣ ଚିହ୍ନିଲେ ରଘୁକୁଳ ରାଣ ।
ହିଆରେ ଲଗାଇ ସ୍ୱାମୀ କୋଳ କଲେ
କମଳଲୋକ ଲୋଚନୁଁ ଅଶ୍ରୁଜଳ ଗଲେ ।
ଜାନକୀ ଜାନକୀ ବୋଲି ରୋଦନ କରନ୍ତି
ଧରଣୀରେ ପଡ଼ିଣ ଅସମ୍ଭାଳ ହୋନ୍ତି ।
କାହିଁଗଲୁ ମୋର ପଞ୍ଚପ୍ରାଣ ଗୋଟି
ପିଣ୍ଡ ଥୋଇ ପ୍ରାଣକୁ ସଙ୍ଗରେ ନେଲୁଟି ।
ନିରାଶ କରିଣ ସଖି ଛାଡ଼ିଗଲୁ ମୋତେ
ଆଉ କାହୁଁ ପୁଣ ପାଇବି ମୁହିଁ ତୋତେ ।
ଅରଣ୍ୟ ମାଳତୀ ପ୍ରାୟ ହୋଇଣ ତୁ ଗଲୁ
ଦୁଃଖ କାଳରେ ମୋତେ ଛାଡି ପଳାଇଲୁ ।
ଆବର ଅଳଙ୍କାର ବସନ ଫିଙ୍ଗି ଦେଲୁ
ବିଭୂଷଣ ହୋଇଣ କାହାର ସଙ୍ଗେ ଗଲୁ ।
ଅମଳାଣ ଶାଢ଼ୀ ପିନ୍ଧିବୁ କାହାଠାରୁ
ଜାଣିଲି ନିର୍ଦ୍ଦୟା ଭାବଇ ତୋହଠାରୁ ।
ମନରୁ ମୂଳ ନୁହଇ ଦେଖିଲି ତୋର ଚିହ୍ନ
ଏବେ ସଖି ମୋର ହଜିଲା ଜୀବନ ।
ଗଲୁ ବୋଲିଣ ତୋତେ ଥିଲି ମୁଁ ମନୁ ମୁଛି
ଆୟ ଅଳଙ୍କାର ଦେଖି ବୁଦ୍ଧି ନ ଦିଶେ କିଛି ।
ଶିରୀଷ ଫୁଲରୁ କୋମଳ ତୋର ଅଙ୍ଗ
ରୂପ ଦେଖିଲେ କର ଯୋଡଇ ଅନଙ୍ଗ ।
ଶୁଦ୍ଧ ସୁବର୍ଣ୍ଣ ପ୍ରାୟେ ତୋର ଶରୀର ଜ୍ୟୋତି
ନୀଳରତ୍ନ ଲୋଚନା ମୁକୁତା ଦନ୍ତ ପନ୍ତି ।

ସର୍ବଗୁଣେ ସୁନ୍ଦର ବାଉନିବି କିସ
କଳା ଚାମରକୁ ଜିଣିବ ତୋ କୁଟିଳ କେଶ ।
ମତ୍ତଗଜଗମନୀ କୋକିଳ ସ୍ୱନବାଣୀ
ଏକା କରିଗଲୁ ମୋତେ ସଙ୍ଗାତୁଣୀ ।
ଏ ଜନ୍ମେ ଆବର ତୋତେ ପାଇବିକି ଭେଟ
ବାବୁ ବିଧାତା ମୋତେ ବିହିଲୁ ଏତେ କଷ୍ଟ ।
ଅଳଙ୍କାର ଫେଡ଼ିଣ ଦେଖନ୍ତି ପୁଣ ପୁଣି
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ପରାୟେ ତେଜ ଜାଣି ।
ଅଳଙ୍କାର ମାନ ଦିଶେ ନବରତ୍ନ ଜ୍ୟୋତି
ଶ୍ରୀକରେ ଧରି ରାମ ହୃଦରେ ଲଗାନ୍ତି ।
କାପ ତାଡ଼ କି ଏ ସୀମନ୍ତି ମୋତିମାଳି
ମଥାମଣି କଟିସୂତା ବସଣୀ ମେଖଳୀ ।
ତାଡ଼ ସରଳ ସେ ଯେ ବାହୁଟି କଙ୍କଣ
ନୂପୁର ମୁଦ୍ରିକା ଯେତେ ଆଭରଣ ।
ଶିଙ୍କୁଳୀ ବିଦମାଳି ଯାବଳି ସୁନାସୁତା
ପଦକ ଭିନ୍ନ ଭିନ୍ନ ଦୋସରି ମୁକୁତା ।
ନୀଳାର ମାଣିକ୍ୟ ଅଟଇ ପୁଞ୍ଜି ପୁଞ୍ଜି
କି ଜାଣି ଦିଶଇ ଚନ୍ଦ୍ରର ଜ୍ୟୋତି ଗଞ୍ଜି ।
ଅଙ୍ଗୁଷ୍ଠିର ଝୁଣ୍ଟିଆରେ କି ନବଗ୍ରହ ମଣ୍ଡି
ସୀତୟା ରୂପେ ଭେଦିଣ ଶ୍ରୀରାମ ଆଉଣ୍ଡି ।
ଅଶ୍ରୁଜଳ ଗଳିଣ ଶରୀର ତିନ୍ତଇ
ପଦେ ପଦେ ଅଳଙ୍କାର ହୃଦରେ ଲଗାଇ ।
ସୁଗ୍ରୀବର ବୋଇଲେ ଶୁଣ ରଘୁନାଥ
ଶୋକ କରିବାର ଅଟଇ ବିଅର୍ଥ ।
ଦାରା ବଇରୀକି କେବେ ମାରିବ ପ୍ରାଣେ ପୁଣ
ତେବେ ସେ ହୃଦୟ ବ୍ୟଥା ଯାଇ ରଘୁରାଣ ।
ସ୍ତିରୀ ଚୋରୀ କଲା ଲୋକ ଅବଶ୍ୟ ମରଇ
ଧର୍ମ ହିଁ ଛାଡଇ ତାକୁ ବୁଦ୍ଧି ନ ସ୍ଫୁରଇ ।
ଯେତେ ଉପାୟ କଲେ ନ ରହେ ତା ଆୟୁଷ
ଧର୍ମରେ ସେହି ଉଦିତ ପାପେ ଯାଏ ନାଶ ।
ସୋଦର ଭାଇ ମୋତେ ବାହାର କରିଦେଲା
ଧର୍ମକୁ ଲଙ୍ଘି ମୋର ଘରଣୀକି ହରିଲା ।
ପର ନୁହେ ସୋଦର ଅଟଇ ମୋହର
ଭାଇବୋହୂ ହରିଲା ଚାଣ୍ଡାଳ ଦୁରାଚାର ।
ମୋର ସଙ୍ଗରେ କିମ୍ପା ପୀରତି ନ ହେଲା
ମରିବାର କାଳ ଯେ ତାହାକୁଖୋଜିଲା ।
ଏକଖଣ୍ଡ ପିନ୍ଧିଣ ମୁଁ ଆସିଲି ପଳାଇ
ବନ୍ୟ ଜନ୍ତୁଙ୍କ ସଙ୍ଗେ ଫଳମୂଳ ଖାଇ ।
ଫଳମୂଳ ଖାଇକରି ରଖିଅଛି ପ୍ରାଣ
ମୋର ସଙ୍ଗେ ପାଞ୍ଚଜଣ ଆଉ ନାହିଁ ଆନ ।

କାଳ ଅପଚୟେ ଏଥିରେ ଅଛି ରହି
ଭାଳିଲେ ରଘୁନାଥ ମରନ୍ତି ହାଦେ ମୁହିଁ ।
ଅଭିମାନ ଘେନି ମୁଁ ଯେ କରନ୍ତି ଯେବେଯୁଦ୍ଧ
ବାଳୀର ହସ୍ତରେ ମୁଁ ହୁଅନ୍ତି ପ୍ରାଣେ ବଧ ।
ଧର୍ମକୁ ଆଶ୍ରା କରି ଅଛଇଁ ମୁଁ ଯେ ଏଥ
କେଉଁବାଗେ ଧର୍ମ ତାକୁ କରିବ ପୁଣ ହତ ।
ଏବେ ଜଣାଗଲା ଏ ଧର୍ମ ହିଁ ଉଦେ ହେଲା
ରଘୁବଂଶ ଠାକୁର ମୋଠାରେ ସୁଖ କଲା ।
ବାଳୀକି ଯେବେ ମାରିବେ ରଘୁନାଥ
ତେବେ ତୁମ୍ଭ ଶତ୍ରୁକୁ ମାରିବି ନିୟତ ।
ସାତ ଦ୍ୱୀପ ସାତ ସମୁଦ୍ରେ ଥିଲେ ଯିବି
ନଉସାଗର କପି ତୋହର ସଙ୍ଗେ ଦେବି ।
ତୁ ଯେବେ ରଘୁନାଥ ମନରେ ଚିନ୍ତା କରୁ
ଏହିକ୍ଷଣି ସୀତାକୁ କି ପାଇବୁ ବିଚାରୁ ।
ବେନିସମ୍ବ ବରଷ ମୁଁ ନିର୍ଲ୍ଲଜପଣେ ବଞ୍ଚି
ଏବେ ବିଧାତା ଭେଟ କଲା ଆଣି ପାଞ୍ଚି ।
ତୋହର ହସ୍ତରେ ମରିବ ବାଳୀ ବୀର
ମୋ ହସ୍ତରେ ତୋର ଶତ୍ରୁ ହୋଇବ ନିର୍ମୂଳ
ଅଳପ ଦିନେ ଜାନକୀ ମିଳିବ ତୁମ୍ଭର
ନାରଦ କହିଲେ ମୋହର ଆଗର ।
ତେରମାସ ସରିଲା ଆହୁରି ବେନିମାସ
ଏଥିର ଭିତରେ ଜାନକୀ ଭେଟ ପାଶ ।
ଏମନ୍ତ ବଚନ ଶ୍ରୀରାମ ଆଗେ କହି
ସୁଗ୍ରୀବର ବଚନ ଶୁଣିଣ ରଘୁସାଇଁ ।
ଶୁଣିଣ ଶାନ୍ତମୂର୍ତ୍ତି ହୋଇଲେ ରଘୁମଣି
ଶୋକ ସମ୍ଭାଳିଣ ରାମ ଥୟ ହେଲେ ପୁଣି ।
ବସ୍ତ୍ର ଅଳଙ୍କାର ଲକ୍ଷ୍ମଣ ସାଇତିଲେ
ସୁଗ୍ରୀବକୁ ଚାହିଁଣ ଶ୍ରୀରାମ କହିଲେ ।
ମଇତ୍ର ହେ ବାଳୀ ଅଟଇ ତୁମ୍ଭ ବୈରୀ
ତାହାକୁ ଆଗକରି ପେଶିବି ଯମପୁରୀ ।
ତୁ ପୁଣିନିକି ଭାଇ ଅର୍ଥେ ଶୋକକରୁ
ପଛନ୍ତ କାଳରେ ନ ପୁଣ ଆନ ଧରୁ ।
ଯେମନ୍ତେ ପ୍ରତେ ଯିବା କର ଏବେ ନିୟମ
ତୁମ୍ଭେ ମଇତ୍ର ଅଟ ମୋହର ପ୍ରାଣ ସମ ।
ଏ ତୁମ୍ଭର ମାନ ଉଦ୍ଧାରିବି ଜାଣ
କୋଦଣ୍ଡ ଛୁଇଁଣ ବୋଇଲେ ରାମରାଣ ।
ପଛେ ମୋର ଶତ୍ରୁକୁ ମାରିବି ମିତ୍ର ପୁଣି
ତିନିପୁରେ ଲୁଚିଲେ ପକାଇବି ହାଣି ।
ଜଳ ସ୍ଥଳରେ ଯେ ଲୁଚିଲେ ସେହୁ ଯାଇ
କୋଦଣ୍ଡ ତେବେ ବହିବ ତେଜପୁର ହୋଇ ।

ଲବଣ ସମୁଦ୍ର ଏକ ଘଡ଼ିକେ ଶୁଖିଯିବ
ବରୁଣ ରାଜାର ଜମ୍ବୁଦ୍ୱୀପକୁ ସେ ଦିଶିବ ।
ଶୁଣିଣ ସୁଗ୍ରୀବର ହୋଇଲେ ଉସତ
ନିଜ ମୂର୍ଦ୍ଧନୀରେ ସେ ଯେ ଯୋଡଇ ବେନିହସ୍ତ ।
ଶ୍ରୀରାମ ଚରଣରେ କରଇ ନମସ୍କାର
ବେଳୁଁ ବେଳ ସେ ଯୋଡ଼ଇ ବେନିକର ।
ତୁମ୍ଭେ ଯେବଣ ବଚନ ବୋଇଲ ରଘୁମଣି
ମନ ସନ୍ତୋଷ ହୋଇଲା ଏହିକଥା ଶୁଣି ।
କୋଦଣ୍ଡ ଛୁଇଁଣ ଯେ କର ପରମାଣ
ମୋତେ ବୋଇ ତୁମ୍ଭେ ନିୟମ କର ପୁଣ ।
ବାଳୀ ଭାଇମଲେ ମୋର ହୃଦରେ ନାହିଁ ଚିନ୍ତା
ଏଥିକି ସାକ୍ଷୀ ହେଲେ ହେବେ ମୋର ପିତା
ଭାଇ ମଲେ ମୁଁ ଯେବେ ଏଥିକି କରିବାକାରଣ
ଏଥିକି ସାକ୍ଷୀ ମୋର ଅଟନ୍ତି ନାରାୟଣ ।
ବାଳୀ ମଲେ ଯେବେ ହେବଟି ମୋର କ୍ଷୋଭ
ଏଥିକି ସାକ୍ଷୀ ମୋର ତ୍ରିଲୋଚନ ଦେବ ।
ଭାଇମଲେ ମୁଁ ଯେବେ ନୋହିବି ସାମରଥା
ବେଳେ ଶାଖା ନୋହୁ ମୋତେ ଜାତକଲାର ବିଧାତା ।
ବାଳୀଭାଇ ମରିବ ତା ଘରଣୀ ନେବ ଆନ
ତେବେ ମନୋରଥ ମୋର ହୋଇବ ସଂପୂର୍ଣ୍ଣ ।
ଏତେ ବୋଲି ବୈଶ୍ୱାନର ଛାମୁରେ ସୁଗ୍ରୀକହି
ଶୁଣିଣ ଶ୍ରୀରାମ ହରଷ ମନ ହୋଇ ।
ପାର୍ବତୀ ବୋଇଲେ ଶୁଣ ମୋ ବଚନ
ଶ୍ରୀରାମର ନିୟମ ସୁଗ୍ରୀର ପ୍ରମାଣ ।
ବେନିଜନ ଏମନ୍ତ ଭାବେ ପ୍ରୀତି ହେଲେ
ପୁଣି କେତେ ଦିନରେ ବାଳୀକି ସେ ନାଶିଲେ ।
ଶ୍ରୀରାମ ଆଗରେ ସୁଗ୍ରୀ କିସ କହେ ପୁଣ
ସେ କଥା ବୁଝାଇ ମୋତେ କହ ତ୍ରିଲୋଚନ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ଶ୍ରୀରାମ ଆଗରେ ଯାହା କହିଲେ ଉମାପତି ।
ଶ୍ରୀରାମ ବଚନେ କହେ ଆଦିତ୍ୟର ସୁତ
ତୁମ୍ଭଠାରୁ ଶୁଣି ମୁଁ ହୋଇଲି ତୋଷଚିତ୍ତ ।
ବୋଇଲେ ବାଳୀକି କରିବ ନିଶ୍ଚେ ନାଶ
ଜଗତେ ବଳୀଆର ବାସବର ଶିଷ୍ୟ ।
ବଳବନ୍ତ ପଣରେ ତାହାକୁ ସରି ନୋହି ।
କୋଟିଏ ସିଂହର ବଳ ରଷି ତାକୁ ଦେଇ ।
ସେ ବାଳୀର ମହିମା ଶୁଣ ସାବଧାନେ
ଶୁଣିଲେ ବିଚାରି କାର୍ଯ୍ୟ କରିବ ରଘୁନାନେ ।
ବାଳୀବୀର ମହିମା ଅଟଇ ଅଗୋଚର
ତାହାକୁ ସରି ନୋହିବେ ନରଅସୁର ବାନର ।

ଦେବତାଏ ବଳେ ରହିଲେ ପୁଣ ଘୁଞ୍ଚି
ତେଣୁ ସେ ବାଳୀବୀର ବଳ ନୋହେ ପାଞ୍ଚି ।
ସନ୍ଧ୍ୟା ତର୍ପଣ କରିବାକୁ ସେ ପ୍ରଭାତେ
ପୂର୍ବର ସୁମଦ୍ରକୁ ଚଳଇ ତ୍ୱରିତେ ।
ସ୍ନାନସାରି ତହିଁ କରି ନିତ୍ୟକର୍ମମାନ
ଉତ୍ତର ସୁମଦ୍ରକୁ ଚଳଇ ସେ ପୁଣ ।
ସମୁଦ୍ରେ ପଶିଣ ତର୍ପଣ ସନ୍ଧ୍ୟାକର୍ମ କରେ
ସ୍ନାନ ସାରିଣ ସେହୁ ଚଳଇ ଯେ ଘରେ ।
ସେଠାରୁ ପଶ୍ଚିମ ସୁମଦ୍ରେ ଚଳିଯାଏ
ତହିଁରେ ସ୍ନାହାନ କରଇ ବାଳୀରାଏ ।
ସନ୍ଧ୍ୟା ତର୍ପଣ କରେ ନିତ୍ୟକର୍ମ ପୁଣ
ଯେ ବିଧି ବିଧାନ ସାରଇ ତକ୍ଷଣ ।
ଦକ୍ଷିଣ ସମୁଦ୍ର ତୀରେ ହୁଅଇ ଯାଇ ବେଗ
ସ୍ନାହାନ ସଉଚ କରଇ ବାଳୀ ଆଗ ।
ସନ୍ଧ୍ୟା ତର୍ପଣ ନିତ୍ୟକର୍ମମାନ ସାରି
ସେଠାରେ ପିତୃଙ୍କୁ ଓଳଗି ହୋଇକରି ।
ଲେଉଟି କିଷ୍କିନ୍ଧ୍ୟା କଟକେ ଯାଇ ହୁଏ
ଆଦିତ୍ୟଙ୍କୁ ସେତେବେଳେ ଦୁଇଦଣ୍ଡ ହୁଏ ।
ଭୋଦେବ ବାଳୀର ମହିମା ଏସନକ
ବାଳୀର ବଳ ଜାଣନ୍ତି ତିନି ଯେ ତୈଲୋକ୍ୟ ।
ଶ୍ରୀରାମ ବୋଇଲେ ଶୁଣ କିଷ୍କିନ୍ଧ୍ୟାର ସାଇଁ
ପ୍ରଭାତେ ଚାରି ସମୁଦ୍ରେ ବାଳୀବୀର ଯାଇ ।
ଯାନରେ ଚଳଇ କି ପାଦରେ ଯାଏ ଚଳି
ସେ କଥା ମୋର ଆଗେ କହ ତଥ୍ୟ କରି ।
ଶୁଣିଣ କରଯୋଡ଼ି କହଇ ସୁଗ୍ରୀବର
ବାଳୀର ବାସବ ଅଟଇ ପିଅର ।
ସେ ସୁର ରାଜା ଯେ ପୁତ୍ରକୁ ଦୟାକରି
ଦିଗଦହନ ରଥ ଦେଲା ଆଣିକରି ।
ସେ ରଥରେ ବାଳୀ ବସି ହୋଇଲା ବଳବାନ
ତେଣୁ ସେ ତିନିପୁର ସାଧ କଲା ଜାଣ ।
ସେ ଯାନ ଚଢ଼ିଣ ବାଳୀ ଚାରିଦିଗକୁ ଯାଇ
ଚାରି ସମୁଦ୍ରେ ସ୍ନାନ ପ୍ରଭାତେ କରଇ ।
ଘଡ଼ିଏ ବେଳ ସମୟରେ ବୁଲଇଂ ଚାରିଦିଗ
ନିଜ ରାଜ୍ୟେ ପ୍ରବେଶ ହୁଅଇ ଆସି ବେଗ ।
ଶ୍ରୀରାମ ବୋଇଲେ ଶୁଣ ବାନର ଅଧିପତି
ତିନିପୁରେ ବାଳୀ ଯେବେ ପ୍ରତାପୀ ଅଟନ୍ତି ।
ଯୁଦ୍ଧକରି ଜିଣିଲା କି ନିଉନେ ହେଲା ଭକ୍ତି
ସେ କଥା ମୋର ଆଗ କହ ଭୁମାପତି ।
ସୁଗ୍ରୀବର ବୋଇଲା ଯୁଦ୍ଧକରି ଜିଣି
ସେ କଥା ମୋରଠାରୁ ଶୁଣ ରଘୁମଣି ।

ପିତା ଖଦ୍ୱଗଦ ନୃପତି ମାରିବାରୁ ପୁଣ
ବାନରଭାଲୁ ମାନିଲେ ବାଳୀକି ତୁମ୍ଭେ ମଣ ।
ନ ମାନିବାରୁ ମର୍କଟେ ବାଳୀ କ୍ରୋଧ କଲା
ବାନର ପ୍ରଭୁଙ୍କ ସଙ୍ଗେ ଯୁଦ୍ଧ କଲା ।
ଇନ୍ଦ୍ରର ଗଦା ଯେ କରରେ ଧରି ପୁଣ
ମାରନ୍ତେ ବାନର ଭାଲୁ ସାଦର ଦେଲେ ଜାଣ ।
ଲକ୍ଷେ ବାନର ରାଜା ଅଟନ୍ତି ଜମ୍ବୁଦ୍ୱୀପେ
ସବୁଙ୍କୁ ସାଧିଲା ବାଳୀ ଗଦାର ପ୍ରତାପେ ।
ଲକ୍ଷେ ବାନର ରାଜା ପରେ ପାଞ୍ଚ ସରଦାର
ମଉଡ଼ମଣି ଅଟନ୍ତି ବାନର ରାଜା ପର ।
ସେମାନେ ମୁରାଟିଲେ ବାଳୀକି ଯାଇ ଭଳେ
ବାଳୀର ସଙ୍ଗେ ଯୁଦ୍ଧ କରନ୍ତି ରହି ବଳେ ।
ପ୍ରଥମେ କେଶରୀ ବାଳୀର ଭିଣୋଇ
ମଇରେ ଗଦାଧରି ବାଳୀକି ସେ ମାରଇ ।
ଇନ୍ଦ୍ରର ଗଦାଧରି ବାଳୀ ପିଟେ ପୁତା
ଗଦାଯୁଦ୍ଧ ଲାଗିଲା ବରଷେ ପର୍ଯ୍ୟନ୍ତା ।
ବଳରେ ବାଳୀକି କେଶରୀ ସରି ନୁହେଁ
ଗଦାଛାଡି ବାହୁଡି ବେନି ଜନ କିଏ ।
ବାହୁ ଯୁଦ୍ଧେ ବରଷେ ରହିଲେ ବେନିଜନ
କେଶରୀ ନିର୍ବଳ ହେଲା ବାଳୀ ଜିତେ ପୁଣ ।
କେଶରୀକି ବାଳୀ ଯହୁଁ କଲା ଅପଘାତ
ଉତ୍ତାନରେ କେଶରୀ ପଡିଲା ଭୂମିଗତ ।
ଦେଖିଣ ପ୍ରଭଞ୍ଜନୀ ପୁତ୍ରକୁ ତା'ର କହି
ପିତାକୁ ମାରେ ମଉଳା ବିଚାର କିସ ହୋଇ ।
ବାପ ସିନା ସୋଦର ମଉଳା ଅଟେ ପର
ମଉଳାକୁ ମାରରେ ମରୁ ଦୁଷ୍ଟ ଛାର ।
ଜନନୀ ବଚନ ଶୁଣି ହନୁମନ୍ତ
ବୋଇଲା ଜନନୀ ମୋରଠାରୁ ଶୁଣ ବାତ ।
ଭାଇମଲେ ଅଭିମାନ କରିବୁ ଗୋ ମାତା
ତୋହର ଉତ୍ପ୍ରୋଧରେ ମଲା ମୋର ପିତା ।
ଶୁଣିଣ ଜନନୀ ପୁତ୍ରକୁ କହେ ବାଣୀ
ମାର ମାର ଭାଇକି ଶୋଚନା ନାହିଁ ପୁଣି ।
ସାବତ ଭାଇ ମୋର ବାଳୀ ସୁଗ୍ରୀବର
ଏମାନେ ମଲେ ନୁହଇ ହୃଦୟ ବ୍ୟାକୁଳମୋର ।
ଜନନୀର ବଚନରେ ହନୁମନ୍ତ କ୍ରୋଧ
ବଡିଶ ଯୁଣରେ ହୋଇଲା ଗୁରୁ କ୍ରୋଧ ।
ବୋଇଲା ବର୍ଣ୍ଣଶଙ୍କର ଅଟୁରେ ବାଳୀଟି
ପିତା ଖଦ୍ୱଗଦ ତୋତେ ଆଣିଲା ସାଉଁଟି ।
ଇନ୍ଦ୍ରଦେଲା ବଳ ତୋତେ ଶରୀରେ ଅଛୁବହି
ଆଜ ଦେଖିବା କେଉଁ ବାପ ରଖିବଟି ।

ଏତେ ବୋଲି ହନୁମନ୍ତ ଚରଣ ତୋଳିଧରି
ବୁଲାଇ ଫିଙ୍ଗିଦେଲା ବାଳୀକି ଶୀଘ୍ରକରି ।
ତେତେବେଳେ ବାଳୀ ତିନି ସମୁଦ୍ର ଡେଇଁଗଲା
ଦଧି ସମୁଦ୍ରରେ ତାର ମୁର୍ଚ୍ଛନୀ ପଡ଼ିଲା ।
ଚେତାପାଇ ବାଳୀବୀର ଅଇଲା ସେଠାରୁ
ରଣଭୂମିରେ ପ୍ରବେଶ ହେଲା ହନ୍ତକାରୁ ।
ଗଦାଧରି ହନୁମନ୍ତକୁ ପ୍ରହାରିଲା
ଦେଖିଣ ହନୁମନ୍ତ କାଖରେ ଯାକି ନେଲା ।
ଲବଣ ସମୁଦ୍ରରେ ବୁଡାଇଲା ନେଇ
ବାଳୀର ହୃଦୟରେ ଛିଡ଼ା ପବନତନୟୀ ।
ମହାଘୋର ସିନ୍ଧୁଜଳେ ଉତ୍ତାନେ ପଡ଼ି ବାଳୀ
ଉଠିବାକୁ ସକ୍ଷ୍ୟ ନାହିଁ ହନୁ ପାଦେ ଦଳି ।
ଏମନ୍ତ ଷତମାସ ସେଥିରେ ବହିଗଲା
ଜଳରେ ବୁଡି ବାଳୀର ପ୍ରାଣ ହତ ହେଲା ।
ଜାଣିଣ ବାସବ ସକଳ ଦେବ ଘେନି
ହନୁକୁ ପ୍ରଶଂସା କଲା ଇନ୍ଦ୍ର ପୁଣି ।
ଦେବତାଙ୍କ ବଚନରେ ହନୁମନ୍ତ ଧୀର।
ବାଳୀକି ସମୁଦ୍ରୁ ଆଣେ କେଶରୀର ବଳ। ।
ଦେଖିଣ ବାସବ ଜୀବନ୍ୟାସ କଲା
ଜୀବ ପାଇ ବାଳୀ ଭୂମିରୁ ଉଠିଲା ।
ଉଠିଣ ଗର୍ଜ୍ଜନ କରଇ ବାଳୀବୀର
ବାସବ ବୋଇଲା ବାଳୀ ଏ କେଉଁ ବେଭାର ।
ତୋର ପ୍ରାୟେ ଦଶ ବିଂଶ ବାଳୀ ହେଲେ ଜାଣ
ମାରୁତିକୁ ଯୁଦ୍ଧରେ ନ ଜିଣିବେ ପୁଣ ।
ତେତିଶକୋଟି ସିଂହର ବଳ ବହେ ହନୁ
ସେ ତୋତେ ମାରିବଟି ନିଶ୍ଚୟ ଜାଣ ଏଣୁ ।
ଶୁଣିଣ ବାଳୀବୀର ସ୍ତମ୍ଭୀଭୁତ ହେଲା
ଏହି ହନୁମନ୍ତକୁ କୋଳରେ ଧଇଲା ।
ବୋଇଲା ନ ଜାଣିରେ ପିତାକୁ ତୋର ମାରି
ମୁହିଁ ପିତା ସମାନେ ନ କର ତୁ କଳି ।
ଶୁଣିଣ ମାରୁତି ଇନ୍ଦ୍ରଙ୍କୁ ଚାହିଁ କହି
କେଶରୀ ବାନରକୁ ଜୀଆଇ ଦିଅ ଯାଇ ।
ଶୁଣିଣ ବୃହସ୍ପତି ବେଗେ ଚଳିଗଲେ
କେଶରୀ ବାନର ପାଶେ ପ୍ରବେଶ ହୋଇଲେ ।
କେଶରୀ ଦେହେ ସିଞ୍ଚିଲେ ମୃତ ସଞ୍ଜୀବନୀ ପାଣି
ଜୀବନ ପାଇ କେଶରୀ ଉଠିଲା ତକ୍ଷଣି ।
ବୋଇଲା ବାଳୀବୀର କେଉଁଆଡେ ଗଲା
ବୃହସ୍ପତି ବୋଇଲେ ହୋ କୁମର ମାଇଲା ।
ସିନ୍ଧୁଜଳେ ନେଇଣ ବୁଡାଇ ଛ'ମାସ
ତେଣୁ ସେ ବାଳୀରାଜା ହୋଇଲା ବିନାଶ ।

ବାଳୀ ମରିବାରୁ ସ୍ୱର୍ଗର ସୁରରାଜା
ସେଠାରେ ମିଳି ଦେବଗଣଙ୍କୁ କଲା ପୂଜା ।
ତୋ ପୁତ୍ରକୁ ବୋଧକରି ବାଳୀକି ଜୀଆଇଲା
ତେଣୁ ସେ ଖଡଗଦସ୍ତୁତ ଜୀବନ ପାଇଲା ।
ଇନ୍ଦ୍ର କହିବାରୁ ତୋର ପୁତ୍ରରେ ସନମାନ
ମୁଁ ଏବେ ଆସି ତୋତେ ଦେଲି ଜୀବଦାନ ।
ଶୁଣିଣ କେଶରୀ ହରଷ ହୋଇଲା
ଭଲା ମୋର କୁମର ପିତୃରଣ ସୁଝିଲା ।
ଏତେ କହି ବୃହସ୍ପତି ସଙ୍ଗରେ ଚଳିଗଲା
ସମୁଦ୍ରକୂଳରେ ଯାଇ ପୁତ୍ରକୁ ଭେଟିଲା ।
ସେଠାରୁ ବାପ ପୁଏ ଗଲେ ନିଜ ଘର
ସେହିଦିନୁ ହନୁକୁ ଡରଇ ବାଳୀବୀର ।
ସେହିଠାରୁ ହନୁମନ୍ତ ହୋଇଲା ପ୍ରବଳ
ରାମଙ୍କ ସଙ୍ଗେ ରହି ମାରିବ ଅସୁର କୁଳ ।
ନାନା ଅନ୍ୟାୟ କରି ଋଷିଙ୍କ ଘର ଭାଙ୍ଗି
ଋଷିମାନେ ଶାପଦେଲେ ହନୁହେଲା ରୋଗୀ ।
ସେଠାରୁ ଦେବତାଏ ସ୍ୱର୍ଗପୁର ଗଲେ
ହନୁ ନିର୍ବଳ ହୋଇ ବାଳୀପୁରେ ରହିଲେ ।
ଜାଣିଲା ବାଳିବୀର ନିର୍ବଳ ହେବାର
ତେଣୁ ସେ ବିକ୍ରମରୂପ ଅଟଇ ବାଳୀର ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ହନୁମନ୍ତ ନିର୍ବଳ ବାଳୀ ଚିନ୍ତାକଲା ମନ ।
ସେଠାରୁ କିସ ହେଲା କହ ପଞ୍ଚମୁଖ
ସେ କଥା ଶୁଣିବାକୁ ମନରେ ମୋର ସୁଖ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ସୁଗ୍ରୀବକୁ ଶ୍ରୀରାମ ପଚାରିଲେ ସେଥି ।
ବୋଇଲେ ବାଳୀବୀର ସେଠାରୁ କିସ କଲା
ସୁଗ୍ରୀବର କର ଯୋଡି ରାମଙ୍କୁ କହିଲା ।
ବୋଇଲା ବାଳୀବୀର ପାଦରେ କପି ଭାଲୁ
ସମସ୍ତେ ସେବିଲେ ହୋଇ ତେଣୁ ଓଲୁ ।
ଲକ୍ଷେକ ନୃପତି ବାନର ଭାଲୁ ପୁଣ
ସମସ୍ତେ ବଶ ହେଲେ ବାଳୀକି ତୁମ୍ଭେ ଜାଣ ।
ପଞ୍ଚମ ମଉଡମଣି ସାର କେବଳ
କେଶରୀ ସମାନ ହେବାରୁ ସେହୁ ଭଲ ।
ଅଠର ମଉଡମଣିକି ବାଳୀରାଜା ଯାଇ
ସନମାନ ହୋଇ ତାଙ୍କୁ ସାଦର କଲା ତହିଁ ।
ସେଠାରୁ ନଉନିଧି ବାନର ପାଶେ ଗଲା
ଆଡଚିରା ମାରି ବାଳୀ ସଙ୍ଗେ ରିପୁ କଲା ।
ଦେଖିଣ ନଉନିଧି ବାନର ହେଲା କ୍ରୋଧ
ବୋଇଲା କେଉଁଠାରୁ ଅଇଲୁ ବିବୁଧ ।

ସେ ବୋଇଲା ଜାଣୁକି ମୁହିଁ ସେ ବାଳୀବୀର
ବାନର ଭାଲୁ ସାଧ କଲି ଏ ମହୀମଣ୍ଡଳ ।
ପିତା ମୋର ଆଗେ ତୁମ୍ଭଙ୍କୁ ସାଧ କଲା
ପିତା ମରିବାରୁ ମୋର ମୋତେ ନ ମାନିଲା ।
ତେଣୁ ମୁଁ ଦିଗବିଜେ କରିଣ ଅଇଲି
ଲକ୍ଷେକ ବାନର ଭାଲୁ ରାଜାଙ୍କୁ ସାଧ କଲି ।
ପଞ୍ଚାଶ ମଉଡମଣି ଉଣିଶ ଯେ ଜଣ
ସାଧ କଲି ଜାଣ ଶୁଣ ମୋ ବଚନ ।
ତୋର ସଙ୍ଗେ ମୋର ହୋଇବ ଯେ କଳି
ନ ହେଲେ ଭାବୁସି ହୁଅ ବେଗକରି ।
ଶୁଣିଣ ନଉନିଧି ବୋଇଲା ବଚନ
କେତେ ବଳବନ୍ତ ଏବେ ଅଛୁ ପୁଣ ।
ଏତେ ବୋଲି ବାଳୀଆଗେ ନଉନିଧି ମିଳିଲା
ଦେଖି ଆଜି ବାହୁଯୁଦ୍ଧ କରିବା ବୋଇଲା ।
ଏତେ ବୋଲି ବେନିଜଣ କଲେ ବାହୁରଣ
ତିନିମାସ ପର୍ଯ୍ୟନ୍ତ ବହିଗଲା ଦିନ ।
ଗଡ଼ାଗଡି ପଡାପଡି ହୋଇଲେ ବେନିଜନ
ତିନିଯୁଣ ପର୍ଯ୍ୟନ୍ତେ କନ୍ଦର ହେଲା ଚୂର୍ଣ୍ଣ ।
କାଠ ପାଷାଣ ସେଠାରେ ହୋଇଲେ ସମତୁଲ
ସ୍ୱର୍ଗର ଦେବତାଏ ଦେଖନ୍ତି ତାଙ୍କ ଗୋଳ ।
ସେଠାରୁ ବେନିଜନ ଗଦା କରେ ଧରି
ଇନ୍ଦ୍ର ବିଶ୍ୱକର୍ମା ଗଦା ଧରିଣ ଯୁଦ୍ଧ କରି ।
ଗଦାଯୁଦ୍ଧେ ତିନିମାସ ପୁଣି ବହିଗଲା
ଗଦାକୁ ଗଦା ବାଜିଣ ଅଗ୍ନି ବାହାରିଲା ।
କେତେବେଳେ ନଉନିଧି କ୍ରୋଧରେ ଗଦାପିଟି
ବାଳୀବୀର ଭୂମିରେ ପଡ଼ିଲା ଯେ ଲୁଟି ।
ଦେଖିଣ ନଉନିଧି ଗାଢ଼େଣ ତାଙ୍କୁ ବାନ୍ଧି
ଦୁଇଚରଣ ବେନିହସ୍ତ ନିବିଡ଼େ ତାର ଛନ୍ଦି ।
କେଶ ଧରି ବାଳୀକି ଘୋସାରି ଘେନିଗଲା
ମଣ୍ଡା କାଇଁଚ ବୃକ୍ଷରେ ନେଇଣ ବାନ୍ଧିଲା ।
ବିକଳେ ବାଳୀବୀର କରଇ ରୋଦନ
ଜାଣିଣ ସୁର ରାଜା ନାରଦେ କହେ ପୁଣ ।
ଗଉତମ ଋଷିଙ୍କ ପାଶେ ତୁମ୍ଭେ ଯିବ
ପୁତ୍ର ବନ୍ଦୀ ପଡ଼ିଅଛି ବୋଲିଣ କହିବ ।
ଶୁଣିଣ ନାରଦ ବେଗେ ଗଲେ ଚଳି
ଗଉତମ ଋଷିଙ୍କର ଆଶ୍ରମରେ ମିଳି ।
ଦେଖିଣ ଗଉତମ ନମସ୍କାର କଲେ
ମୋହର ଭାଗ୍ୟ ଆଜି ବୋଲିଣ ବୋଇଲେ ।
ନାରଦ ବୋଇଲେ ମୁନି ଶୁଣ ମୋ ବଚନ
ପାଳକ ପୁଅ ବାଳୀ ପଡ଼ିଛି ବନ୍ଧନ ।

ନୌନିଧି ବନକୁ ତୋ କୁମର ବାଳୀ ଗଲା
ଷଡମାସ ପରିଯନ୍ତେ ଗୋଳ [illegible]ହିଁ କଲା ।
କର୍ମର ଅବଳେ ବାଳୀ ତାହା[illegible] [illegible]ରିଲା
ତେଣୁକରି ନଉନିଧି ତାହାଙ୍କୁ ବାନ୍ଧିଲା ।
ମଣ୍ଡା କାଇଁଚ ବୃକ୍ଷରେ ନେଇ ଉକୁଟିଛି
ନିରାଶ୍ରୟ ଭାବରେ ସେହିଠାରେ ଅଛି ।
ବାରଦିନ ହେଲା ବାଳୀ ଶୂନ୍ୟରେ ରହେଜାଣ
ରୋଦନ କରଇ ବିକଳ ହୋଇଣ ।
ସୁର ରାଜା ଜାଣି ମୋତେ ଯେ କହିଲେ
ଗୌତମମୁନି ଆଗେ କହ ଯା ବୋଇଲେ ।
ତାଙ୍କଠାରୁ ଶୁଣି ମୁଁ ତୁମ୍ଭର ଆଗେ ମିଳି
ଯାଇଣ ବାଳୀକି ଆଣ ହେ ଉଦ୍ଧାରି ।
ଶୁଣି ଗଉତମ ନାରଦ ସଙ୍ଗେ ଗଲେ
ନଉନିଧି ବନରେ ପ୍ରବେଶ ହୋଇଲେ ।
ଦେଖିଲେ ନଉନିଧି ବାନରକୁ ପୁଣ
ବୋଇଲେ ଅନ୍ଧବୁଦ୍ଧି କଲୁ କିମ୍ପା ଜାଣ ।
ହାରିବା ଜିଣିବା ସବୁଠାରେ ଅଛି
ହାରିବା ଲୋକକୁ କିମ୍ପା ଦଣ୍ଡ ଦେଉ ଏଥି ।
ବାଳୀ ତ ହାରିଲା ଛାଡି ଦିଅ ଏବେ
ଶୁଣିଣ ନୌନିଧି ବାନର ତୋଷଭାବେ ।
ବାଳୀକି ବନ୍ଧନରୁ ଫିଟାଇଣ ଦେଲା
ଗୌତମଙ୍କ ଆଗରେ ଘେନିଣ ମିଳିଲା ।
ଦେଖିଣ ଗୌତମ ପରମ ତୋଷ ହେଲେ
ନୌନିଧି ବାନରକୁ ପ୍ରଶଂସା ସେ କଲେ ।
ସେଠାରେ ବାଳୀରାଜା କହିଲା ବଚନ
ମୋତେ ବଳିଲା ଯେ ନୋହିଲା ସମାନ ।
ସନମାନ ରହୁ ପୁତ୍ରକୁ ଯାର ଦେଉ
ମୋର ଥାଟ ଉପରେ ସେନାପତି ହେଉ ।
ଶୁଣିଣ ନଉନିଧି ପରମ ତୋଷ ହେଲା
ନଳ ଆଣିଣ ବାଳୀକି ସମର୍ପିଲା ।
ବାଳୀ ବୋଇଲା କୁମର ଶୀଘ୍ରେ ତୁହି ଚଳ
କିଷ୍କିନ୍ଧ୍ୟା କଟକରେ ଯାଇଣ ବେଗେ ମିଳ ।
ଆଉ ଚାରିଜଣ ମଉଡମଣି ଛନ୍ତି
ଏହାକୁ ସାଧି ମୁଁ ଯିବଇଁ ନିଜ ପୃଥ୍ୱୀ ।
ଶୁଣିଣ ନଳ ଯେ କିଷ୍କିନ୍ଧ୍ୟା ଚଳିଗଲା
ବାଳୀରାଜା ବେନି ଋଷିଙ୍କି କହିଲା ।
ଶୁଣିଣ ବେନିଋଷି ତହୁଁ ଗଲେ ଫେରି
ସେଠାରୁ ବାଳୀରାଜା ଚଳିଲାକ ଧାରି ।
କୁସୁମ ବନରେ ଯାଇ ହୋଇଲା ପ୍ରବେଶ
କୁମୁଦ ବାନରକୁ ଭେଟିଲା ଇନ୍ଦ୍ର ଶିଷ୍ୟ ।

ଦେଖିଣ କୁମୁଦ ରାଜା ଆନନ୍ଦ ହୋଇଲା
ଫଳମୂଳ ଦେଇଣ ବାଳୀକି ପୂଜାକଲା ।
ବାଳୀରାଜା ବୋଲେ ହେଉ ତୁ ଉଲ୍ଲୁସି
କୁମରକୁ ଦିଅ ଥାଟେ ସେନାପତି ହେଉଛି ।
ଶୁଣିଣ କୁମୁଦେଶ୍ୱର ପୁତ୍ରକୁ ଡକାଇଲା
ବାଳୀର ଛାମୁରେ ଆଣି ସୁଷେଣକୁ ଦେଲା ।
ବାଳୀରାଜା ବୋଲେ ବେଗେ ଚଳରେ କୁମର
କିଷ୍କିନ୍ଧ୍ୟା ନଗ୍ରରେ ଯାଇ ମିଳିବୁ ସତ୍ୱର ।
ଶୁଣିଣ ସୁଷେଣ କିଷ୍କିନ୍ଧ୍ୟା ଚଳିଗଲା
ବାଳୀରାଜା ଭୋଜନ ବହନ ସାରିଲା ।
ସେଠାରୁ ବାଳୀରାଜା ନୀଳବନେ ମିଳିଲା
କରୁଣାବତୀ ବାନର ଆସିଣ ମିଳିଲା ।
ଦେଖିଣ ବାଳୀରାଜା ପରମ ତୋଷ ହେଲା
ଉଲ୍ଲୁସି ହେଲୁକିରେ ବୋଲିଣ ପଚାରିଲା ।
କରୁଣାବତୀ ବୋଲେ ଶୁଣ ବାଳୀବୀର
ତୋର ବାପ ମୋତେ ଅର୍ଜିଛି ପୂର୍ବର ।
ତେଣୁ ତୋର ମୋର ନାହିଁ କଳିଦ୍ୱନ୍ଦ
ଶୁଣିଣ ବାଳୀବୀର ହୃଦରେ ସାନନ୍ଦ ।
ବୋଇଲା ତୋର ପୁତ୍ର ନୀଳକୁ ମୋତେ ଦିଏ
ଶୁଣି କରୁଣାକର ପୁତ୍ରକୁ ଦେଲା ସ୍ନେହେ ।
ଦେଖିଣ ବାଳୀରାଜା ନୀଳକୁ କହେ ପୁଣ
ଚଳ ତୁ କିଷ୍କିନ୍ଧ୍ୟା ବେଗ ଯେ ହୋଇଣ ।
ଶୁଣିଣ ନଳ ବେଗେ କିଷ୍କିନ୍ଧ୍ୟାକୁ ଗଲା
ସେଠାରୁ ବାଳୀରାଜା ତୁରିତେ ଚଳିଲା ।
ମୟ ଦୈତ୍ୟ ବାନରପୁରେ ଯାଇ ମିଳି
ଦେଖିଣ ମୟ ବାନର ଆସିଲା ସଙ୍ଖୋଳି ।
ସନମାନ କରିଣ ବାଟରୁ ଘେନିଗଲା
ଆପଣା ନବରେ ଯାଇ ହରଷେ ମିଳିଲା ।
ସେ ବାନର କୁମାରୀ ଯେ ଅଟଇ ତାର ପୁଣ
ସୁନ୍ଦର ଦେଖି ସତୀ ବରିଲା ଆସିଣ ।
ପଞ୍ଚରତ୍ନମାଳା ଦେଇ ବାଳୀକି ବରିଲା
ତେଣୁ ସେ ବାଳୀବୀର ହରଷ ମନ ହେଲା ।
ଚାରିଦିଗକୁ ବାଳୀ ବରଗିଲା ଦୂତ
ବାନର ଭାଲୁ ବଳ ଅଇଲେ ତୁରିତ ।
ପାଞ୍ଚଶ ମଉଡମଣି ଲକ୍ଷେକ ନୃପତି
କଉଶିକ ବନେ ଠୁଳ ହୋଇଲେ ଝଟତି ।
ତେଣୁ ସେ ବାଳୀରାଜା ଉଛବେ ବିଭା ହେଲା
ସ୍ୱର୍ଗ ଶଚୀପ୍ରାୟେ ତାରା ତୋରା ଯେ ଦିଶିଲା ।
ବିଭାଘର ସରନ୍ତେ ରମିଲା ବାନର
ଦୁହିତା ଘେନି ପ୍ରବେଶ ହୋଇଲା ସେଠାର ।
ଦୁହିତା ଗୋଟି ତାର ପାର୍ବତୀ ପ୍ରାୟ ଶୋଭା
ଦେଖିଣ ବାଳୀ ବୋଇଲା ଭାଇ ହେଉ ବିଭା ।
ଶୁଣିଣ ରୁମାବାଳୀ ମୋ କଣ୍ଠେ ମାଳାଦେଲା
ସେହି ନବରେ ମୋତେ ବିଭା ସେ ହୋଇଲା ।
ସେଠାରୁ ବେନିଭାଇ ଥାଟ ବଳ ଘେନି
ନିଜ ରାଜ୍ୟେ ପ୍ରବେଶ ହୋଇଲୁ ଆସି ପୁଣି ।
ବେନି ନବର କରିଣ ରହିଲୁଁ ବେନିଭାଇ
ବାଳୀ ନୃପତି ମୁଁ ଯୁବରାଜା ହୋଇ ।
ସେଠାରୁ ବାଳୀବୀର ମନରେ ବିଚାରିଲା
ବାନର ଭାଲୁବଳ ମୋତେ ସାଧ ହେଲା ।
ଆନନ୍ଦରେ କିଷ୍କିନ୍ଧ୍ୟାରେ ରହିଲୁଁ ଯେ ପୁଣ
ନାନା ଭୋଗ ବିଳାସରେ ଘେନି ନାରୀଗଣ ।
ଶ୍ରୀରାମ ବୋଇଲେ ସେଠାରୁ କିସ ହେଲା
ସୁଗ୍ରୀବର ବୋଲେ ଶୁଣ ଦଶରଥ ବଳା ।
କିଛିଦିନ ଅନ୍ତେ ବାଳୀ ମନରେ ବିଚାରି
ପ୍ରଜାଗଣ ସାଧିଲେ ହୋଇବ ମହାବଳୀ ।
ଏମନ୍ତ ବିଚାରି ଥାଟ ଘେନିଗଲା
ବାଳୀବୀର ବୁଲି ଜମ୍ବୁଦ୍ୱୀପକୁ ଜିଣିଲା ।
ମଉଡମଣିମାନଙ୍କ ସଙ୍ଗରେ କରେ ମେଳ
କେଉଁଠାରେ ସନମାନ କେଉଁଠାରେ ଗୋଳ ।
ଦକ୍ଷିଣ ଦିଗରେ ଘୁଝୁରୀ ନାମେ ଦେଶ
ସେ ଦେଶରେ ମଉଡମଣି ନରହଂସ ।
ତାର ରାଜ୍ୟେ ମିଳନ୍ତେ ରାଜା କଲା କଳି
ଲାଗିଲା ରଣଗୋଳ ମାଡ଼ ମରାମରି ।
ଗଦାକୁ ଗଦା ପରିତାଳ ବାହୁଯୁଦ୍ଧ ପୁଣ
ଟମକ ଭୁଡୁଙ୍ଗ ଯେ ବାଜଇ ନିଶାଣ ।
ରଣଗୋଳ ଦେଖିଣ ସେ ରାଜା ରଥ ଚଢ଼ିଲା
ରଣଗୋଳ ମଧରେ ଆସିଣ ମିଳିଲା ।
ବାନରଙ୍କର ମାଡ଼ ସେ ରାଜା ଦେଖିଣ
ଅଗ୍ନିଶର ବୃଷ୍ଟି କଲା ବାନର ଅଙ୍ଗେ ପୁଣ ।
ଦେଖିଣ ବାନରବଳ ଭୟରେ ଘୁଞ୍ଚିଗଲେ
ଆଗରେ ବାଳୀବୀର ମିଳିଲା ତାର ଭଲେ ।
ଗଦାଶକ୍ତି ଢେଲ ପଥର ମାଇଲା
ସେ ରାଜାର ଥାଟକୁ ଦଳି ପକାଇଲା ।
ଦେଖିଣ ବାନର ଭାଲୁ ହେଲେ ମେଳ
ଦେଖିଣ ସେ ରାଜା ଧଇଲା ମୂଷଳ ।
ବଜ୍ରଶର ମାରନ୍ତେ ବାନର କ୍ଷୟ ନୋହି
ଦେଖି ନରହଂସ ମନ୍ତ୍ରୀକି ପଚାରଇ ।
ବଜ୍ରଶର କିମ୍ପା ନ କାଟେ ଯାଙ୍କ ଦେହେ
ଏଥିର କଥା ମୋତେ ଅସମ୍ଭବ ହୁଏ ।

ଶୁଣିଣ ମନ୍ତ୍ରୀବର ବୋଇଲା ବଚନ
ବାସବର ପୁତ୍ର ଅଟଇ ବାଳୀ ପୁଣ ।
ତେଣୁକରି ଇନ୍ଦ୍ରର ଶର ନ କାଟଇ
ମନଭେଦୀ ଶର ମାର ନରସାଇଁ ।
ଶୁଣିଣ ରାଜନ ମନଭେଦୀ ପେଶଇ
କପିଭାଲୁ ସୈନ୍ୟ ଭୂମିରେ ଲୋଟଇ ।
ଦେଖିଣ ବାଳୀରାଜା ମନରେ ବିଚାରିଲା
ଏ ରାଜା ସଙ୍ଗରେ ଅଯଶ ହେବ ଭଲା ।
ଏମନ୍ତ ବିଚାରି ବାଳୀ ଇନ୍ଦ୍ରଙ୍କୁ ସୁମରିଲା
ଜାଣି ସୁରମଣି ଅଙ୍ଗାରପନଙ୍ଗ ଭେଦିଲା ।
ଅଙ୍ଗାର ପନଙ୍ଗ ସ୍ୱର୍ଗରୁ ଅଇଲେ
ନରସିଂହ ରାଜା ପାଶେ ପ୍ରବେଶ ହୋଇଲେ ।
ବୋଇଲେ ସୁର ରାଜା ଭେଦିଲା ଆମ୍ଭକୁତ
ତୁମ୍ଭରେ କହିବୁ ସକଳ ବୃତ୍ତାନ୍ତ ।
ବାଳୀକୁ ନ ମାର ତୁମ୍ଭେ ହେଉ ସନମାନ
ଶୁଣିଣ ନରହଂସ ପରମ ତୋଷ ମନ ।
ସେଠାରୁ ସୁରରାଜା ପୁତ୍ର ଚଳିଗଲେ
ବାଳୀର ଆଗରେ ପ୍ରବେଶ ହୋଇଲେ ।
ବୋଇଲେ ଏ ରାଜାକୁ ନ ପାରିବୁ ଜିଣି
ଈଶ୍ୱର ଅଂଶରେ ଜାତ ଏ ମଉଡ଼ମଣି ।
ଏ ରାଜାଙ୍କୁ ଅକ୍ଷତ ଦେଇଣ ଯେ ବୋଧ
ନୋହିଲେ ବଳବପୁ କରିବ ଏ ସାଧ ।'
ଶୁଣିଣ ବାଳୀବୀର ରଥରୁ ଓହ୍ଲାଇଲା
ଅକ୍ଷତ ଦେଇ ରାଜାକୁ ସନମାନ କଲା ।
ତେଣୁ ସେ ନରହଂସ ଜୀବନ୍ୟାସ ଶର
ବିନ୍ଧନ୍ତେ ସକଳ ଥାଟ ଉଠିଲେ ବାଳୀର ।
ସେଠାରୁ ବାଳୀବୀର ବେଗେ ଚଳିଗଲା
ସମଲ ଗଉରୀପୁରେ ପ୍ରବେଶ ହୋଇଲା ।
ସେ ରାଜ୍ୟରେ ପଶିଣ ତୁର କଲା ପୁଣ
ସକଳ ଜନ ପ୍ରଜା କହିଲେ ସେ ରାଜନ
ଶୁଣିଣ ମଉଡ଼ମଣି କ୍ରୋଧରେ ଜର୍ଜର
କଙ୍କଧନ ରାଜନ କହଇ ମନ୍ତ୍ରୀ ତାର ।
ବେଗେଯାଇ ମାର କେ ଆସିଲା ମୋ ରାଜ୍ୟକୁଟି
ସରସନ ମନ୍ତ୍ରୀ କହେ ଶୁଣ ରାଜନଟି ।
ବାନରେଶ୍ୱର ଅଟେ ବାଳୀରାଜା ପୁଣ
ସୁର ରାଜା ଅଂଶରେ ହୋଇଅଛି ଜନ୍ମ ।
ତାର ଅଂଶରେ ମୁହିଁ ଯୁଝି ନ ପାରିବି ପୁଣ
କଙ୍କଧନ ରାଜନ ଗଲାକ ଶୁଣିଣ ।
ଗଉରୀ ସମଲ ଆଗରେ କହିଲା
ସମଲାଇ ଦେବୀ ସିଂହ ଚଢ଼ିଣ ବାହାରିଲା ।

ରଣଭୂମିରେ ଦେବୀ ହୋଇଲା ପରବେଶ
ଅକ୍ଷୟ ତ୍ରୋଣ ଘେନିଣ ଟଙ୍କାର ବିଶେଷ ।
ଭୟାନକ ମୂର୍ତ୍ତି ଦେଖି ବାନର ପଳାଇଲେ
ଦେବୀ ଯାଇଣ ସତ୍ୱରେ ବାଳୀକି ଭେଟିଲେ ।
ଦେଖିଣ ବାଳୀବୀର ପଚାରେ ଜାମ୍ବବକୁ
ଏ ରାଜ୍ୟର ରାଜାକି ଅଇଲା ଯୁଝିବାକୁ ।
ଜାମ୍ବବ ବୋଇଲା ରାଜା କର୍ମହୀନ
ପାର୍ବତୀ ଅଇଲା ଏବେ ତା ସଙ୍ଗେ ଯୁଝ ମନ ।
ଏ ଘାନ୍ତି ନିଶ୍ଚୟ ପଡ଼ିଲା ବିପତ୍ତି
ଆଜି ନିଶ୍ଚେ ପାଞ୍ଜି ପୋଛିଲା ଜନ୍ତୁପତି ।
ଶୁଣିଣ ବାଳୀବୀର ମନରେ ବିରସ
ବୋଇଲା ଏ ରାଜ୍ୟେ ଦେବୀ ରାଜପଣେ ବିଶେଷ
ଜାମ୍ବବ ବୋଇଲା ରାଜାର ଦେବ ଅଟେଶ୍ରେଷ୍ଠ
ତାହାର ଆଗରେ ଯେବେ ମିଳଇ ବଳିଷ୍ଠ ।
ତେବେ ସେ ରାଜନ ଦେବୀଙ୍କି ଯାଇ କହି
ଦେବୀଙ୍କି କହିଲେ ରାଜାର କିଛି ଚିନ୍ତା ନାହିଁ
ସେ ଦେବୀ ମାରଇ ଦେବତା ହେଲେ ବଳେ
ଈଶ୍ୱର ଘରଣୀ ସେ ଅଟଇ ଯୁଗାନ୍ତରେ ।
ଶୁଣିଣ ବାଳୀବୀର ରଥରେ ଛିଡ଼ାହେଲା
କରଯୋଡ଼ି ଦେବୀଙ୍କି ନମସ୍କାର କଲା ।
ଗଉରୀ ସମଲେଇ ବୋଇଲେ ରେ ବାନର
ରଣ କରିବା ଲୋକ ନମୁଁ ମୋ ପୟର ।
ବାଳୀ ବୋଇଲା ତୁ ମୋର ଜନନୀ ଅଟୁପୁଣ
ମାତା ପିତାରେ ରଣ କେଉଁଠାରେ ଜାଣ ।
ଗୌରୀ ବୋଇଲେ ତୁ ଯେ କେଉଁ ଅଂଶେଜାତ
ବାଳୀ ବୋଇଲେ ମୁଁ ଇନ୍ଦ୍ରର ଅଟେ ପୁତ୍ର ।
ସମଲାଇ ବୋଇଲେ ତୁ ବାନର ରୂପ ଧରୁ
କେବଣ ପ୍ରକାର କଥା କହୁ ହନ୍ତକାରୁ ।
ବାଳୀରାଜା ବୋଇଲା ଶୁଣ ଗୋ ଜନନୀ
ଖଡ଼ଗଦ ନୃପତି ବାନରୀ ପୁତ୍ର ପୁଣି ।
ସେ ଖଡଗଦ ନୃପତି ଏକଦିନେ ଜାଣ
ପାର୍ବତୀଙ୍କ ବନରେ ପଶିଲା ଯାଇଣ ।
ପାର୍ବତୀ ବନରେ ପଶନ୍ତେ ସ୍ତିରୀ ହେଲା
ପାର୍ବତୀ ପ୍ରାୟେ ତାର ଶୋଭା ବିକାଶିଲା ।
ଏମନ୍ତ ସମୟେ ଇନ୍ଦ୍ର ଆଦିତ୍ୟ ପୁଣ
ଶୂନ୍ୟରେ ଗମନ ଦକ୍ଷିଣ ଦିଗେ ଜାଣ ।
ସେ ବନେ ସେ ସ୍ତିରୀକି ଦେଖିଲେ ଶୂନ୍ୟପଥେ
ବୀର୍ଯ୍ୟ ଉଚ୍ଛୁଳିଲା ଚାହିଁବାର ମାତ୍ରେ ।
ସେ ବୀର୍ଯ୍ୟ ସେ ସ୍ତିରୀ ବାନରୀ ହୃଦେ ପଡ଼ିଲା
ତେଣୁକରି ବେନି ବାଳକ ଜାତ ହେଲା ।

ସେ ବାଳକ ଘେନି ସ୍ତିରୀ ସେଠାରୁ ଚଳିଗଲା
ପାର୍ବତୀ ବନରୁ ଯାନ୍ତେ ପୁରୁଷ ରୂପ ହେଲା ।
ତେଣୁ ସେ ବାନର ରୂପ ଧଇଲେ ବେନିବାଳ
ବାଳୀ ସୁଗ୍ରୀବର ନାମ ତାଙ୍କର ଯେ ମୂଳ ।
ଗଉତମ ଋଷି ତାଙ୍କୁ ଦୟା କଲେ
ଲକ୍ଷେ ସିଂହର ପରାକର୍ମ ଆଣିଦେଲେ ।
ତେଣୁ ଯେ ମୁହିଁ କିଷ୍କିନ୍ଧ୍ୟା ରାଜା ହେଲି
ବାନର ଭାଲୁଙ୍କୁ ବଳରେ ସାଧିଲି ।
ଏବେ ମୁଁ ନରରାଜାଙ୍କୁ ଜିଣିବାର ପାଇଁ
ମର୍ତ୍ତ୍ୟପୁରେ ବୁଲଇ ଶୁଣ ମହାମାୟୀ ।
ଚାରିଦିଗ ବାନର ସକଳ ସାଧ ହେଲେ
ଚାରିଜଣ ବାନର ମୋ ସଙ୍ଗେ କଳିକଲେ ।
ରଣରେ ଜିଣିବାରୁ ମୁଁ ତାଙ୍କୁ ହେଲି ନମ୍ର
ରାଜାଗଣ ଜିଣିଲି ଲକ୍ଷେକ ପ୍ରମାଣ ।
ଚାରିଦିଗେ ଆଠରାଜା ମୋତେ ନ ମାନିଲେ
ତେଣୁ ଦିଗ ବିଜେ ମୁଁ କରିଅଛି ଭଲେ ।
ଗୌରୀ ବୋଇଲେ ଏ ରାଜା ଅଟଇ ତୋରଭାଇ
ତୁହି ଦେବଙ୍କ କୁମର ସେ ଦେବୀଙ୍କ ତନୟୀ
ବାଳୀ ବୋଇଲା ମୋତେ ଭେଟାଅ ନେଇପୁଣ
ସନମାନ ହୋଇଣ ଏଥୁଁ ମୁଁ ଯିବି ଜାଣ ।
ଶୁଣିଣ ଗଉରୀ କ୍ରୋଧେ ବୁକୁ ରାଇ
ଭେଟ ହୋନ୍ତେ ବେନିଜନ ଭାବ ହେଲା ତହିଁ ।
ସେଠାରୁ ବାଳୀରାଜା ବେଗେ ଚଳିଗଲା
ଧ୍ରୁବଦଗରେ ଯାଇ ପ୍ରବେଶ ହୋଇଲା ।
ଓଡ଼ରାଷ୍ଟ୍ର ବିରଜାମଣ୍ଡଳ ଦେଶେ ପୁଣ
ପ୍ରବେଶ ହୋଇଲା ବାଳୀ ହରଷ ମନେଣ ।
ରଥରୁ ଓହ୍ଲାଇ ବାଳୀ ବେତରଣୀକ ଗଲା
ବେତରଣୀ ଜଳରେ ସାହାନ ସେ କଲା ।
ଏ ସମୟରେ ବିରଜା ମଣ୍ଡଳ ରାଜା ପୁଣ
ପାରିଧିକି ଯାଇଥିଲା ମିଳିଲା ସେ ସ୍ଥାନ ।
ବାନର ଭାଲୁକୁ ଦେଖିଣ ମନ୍ତ୍ରୀ ପଚାରିଲା
ଗୁଣସାଗର ଦେବୀଙ୍କ ମନ୍ତ୍ରୀ ବଝାଇଲା ।
ବୋଇଲା ଏ ରାଜା ଅଟଇ ବାଳୀବୀର
ଯୁଦ୍ଧ କରିବାକୁ ସେ ଆସିଛି ନିକର ।
ଶୁଣି ଗୁଣସାଗର କ୍ରୋଧ ହେଲା
ବାହାନାଦ କରିଯାଇ ବାଳୀକି ଧଇଲା ।
କାଖରେ ଯାକିନେଲା ସେ ଗୁଣସାଗର
ତର୍ପଣ ସନ୍ଧ୍ୟାକଲା ବିରଜା ନଦୀର ।
ଅମଳାଣ ଶାଢ଼ୀ ବାନ୍ଧିଲା ଯେତେବେଳେ
ବାଳୀ ଖସି ପଡ଼ିଲା କାଖରୁ ସେତେବେଳେ ।

କରଯୋଡ଼ି ବାଳୀ ଆଗରେ ଠିଆ ହେଲା
ଗୁଣସାଗର ଦେଖିଣ ଭରସା ତାକୁଦେଲା ।
ସନମାନ ହୋଇଣ ବାଳୀବୀର ଗଲା
କାମଚଣ୍ଡୀ ଦେଶରେ ପ୍ରବେଶ ହୋଇଲା ।
କାଳକେତନ ସେ ଦେଶରେ ଜାଣ
ଦାଣ୍ଡରେ ବିହରନ୍ତି ସେ ଦେଶ ସ୍ତିରୀଗଣ ।
ବାଳୀରାଜା ତାହାଙ୍କୁ ଦେଖିଣ ମୋହଗଲା
ଜାମ୍ବବ ମନ୍ତ୍ରୀ ରଥରେ ପକାଇ ଘେନିଗଲା ।
ଶିବରାଜା ଆଗରେ ମିଳିଲା ଖବର
ବାଜି ଚଢ଼ି ବେଗେ ଅଇଲା ନୃପବର ।
ବାନର ଭାଲୁ ଦଳ ଭିତରେ ପଶିଲା
ବାଳୀକି ଚୁଟି ଧରିଣ ଘେନି ତହୁଁ ଗଲା ।
ସିଂହଦ୍ୱାରେ ଅରୁଣ ଖମ୍ବର ଉପରେ
ଉକୁଚି ଦେଲା ବେନି ଗୋଡ଼ ରହିଲା ଉପରେ ।
ତଳକୁ ମୁଣ୍ଡ ତାର ରହିଲା ଯେ ଜାଣ
ସେଠାରୁ ଶିବରାଜା ନଗରେ ଗଲା ପୁଣ ।
ସେ ସମୟେ ସନ୍ଧ୍ୟା ହୋଇଲା ପ୍ରବେଶ ତ
ବିରଞ୍ଚିନାରାୟଣ ଦର୍ଶନେ ଅଇଲେ ଦଇବତ ।
ନାରାୟଣ ଦର୍ଶନ କରିବାର ବେଳେ
ବାଳୀ ରାଜାର ରୋଦନ ସେଠାରେ ଶୁଣିଲେ ।
ଶିବରାଜାଙ୍କୁ ଡକାଇ ବାଳୀକୁ ଫେଡିଦେଲେ
ପରମହଂସ ଚଢ଼ିଣ ନିଜପୁରେ ଗଲେ ।
ବାଳୀ ଶିବ ରାଜାର ସେଠାରୁ ପ୍ରୀତି ହେଲା
ଶିବରାଜାଙ୍କୁ ବହି ବାଳୀ ସେଠାରୁ ଗଲା ।
ଛିରାଟ ଦେଶରେ ବାଳୀ ପ୍ରବେଶ ହୋଇଲା
ସେପୁର ଗୋଟି ଧର୍ମରେ ଆତଯାତ ଦେଖିଲା
ନିମିରାଜା ଯାଗ କରଇ ସେ ପୁରେ
ଗୌତମ ଆଚାର୍ଯ୍ୟ ହୋଇଛନ୍ତି ସେଠାରେ ।
ମନ୍ତ୍ରୀଙ୍କି ପଚାରିଣ ବାଳୀ ଚଳିଗଲା
ଯଜ୍ଞସ୍ଥାନେ ଯାଇଣ ପ୍ରବେଶ ହୋଇଲା ।
ଗୌତମ ଋଷିଙ୍କି କଲା ନମସ୍କାର
ଦେଖିଣ ଗୌତମ ଠାରିଦେଲେ କର ।
କର ଠାରିଦେବାରୁ ବାଳୀ ପଳାଇଲା
ଯାନ ବଳ ଘେନିଣ ସେଠାରୁ ଚାଲିଗଲା ।
ପଶ୍ଚିମ ଦିଗରେ ହୋଇଲା ପ୍ରବେଶ
ହରଦ୍ୱାର ଦେଖିଣ ମନରେ ହେଲା ତୋଷ ।
ଦିହୁଡି ଦେଶର ରାଜା ପୁରେ ପ୍ରବେଶ ହୋଇଲା
ପଞ୍ଚାନନ ବେଶ ଯେ ସେଥିରେ ଦେଖିଲା ।
ବାଇଲ ଉପରେ ସର୍ବେ ଯାନ୍ତି ଚଢ଼ିକରି
ବାଇଲ ବାହନ ସେ ଦେଶେ ସବୁଙ୍କରି ।

ଈଶ୍ୱର ଅଂଶ ବୋଲିଣ ବାଳୀ ଲେଉଟିଲା
ଅମଳାନ ନଗ୍ରରେ ପ୍ରବେଶ ହୋଇଲା ।
ଦେଖିଲା ସେ ରାଜ୍ୟରେ ଫଳପୁଷ୍ପ ପୁଣ
ମଳିନ ନୁହନ୍ତି କେହି ବିକାଶେ ସେ ଫୁଲେଣ ।
ସେ ରାଜ୍ୟରେ କେତେକ ଜନ ପ୍ରଜାଥାନ୍ତି
ସମସ୍ତେ ଅମଳାନ ପିନ୍ଧିଣ ବିହରନ୍ତି ।
ଦେଖିଣ ବାଳୀରାଜା ମନରେ ବିଚାରିଲା
ଚାରିଦିଗକୁ ଏ ପୁର ଉଜ୍ଜ୍ୱଳ ଦିଶିଲା ।
ସେ ରାଜ୍ୟର ଜନଙ୍କୁ ପଚାରେ ବାଳୀବୀର
ଏ ଦେଶରେ ରାଜା କିଏ କହ ମୋ ଆଗର ।
ଶୁଣିଣ ରାଜ୍ୟର ପ୍ରଜାଜନ କହି
ସତ୍ୟଶୀଳ ରାଜା ଯେ ଏଥିରେ ଅଛଇଁ ।
ସତ୍ୟଶୀଳ ରାଜ୍ୟ ଏ ବୋଲନ୍ତି ସତ୍ୟଭାଷ
ଏ ଦେଶରେ ମିଥ୍ୟା ଆସି କହଇ ଯେ ପୁରୁଷ ।
ଟାଣ କଲେ ରହେ ନାହିଁ ଚକ୍ଷୁଯାଏ ଫୁଟି
ଯୁଦ୍ଧକଲେ ମୂର୍ଦ୍ଧନୀ ଭୂମିରେ ଯାଏ ଲୋଟି ।
ମିଛ କହିଲେ ବାହୁ ଛିଡଇ ବହନ
ବାନର ଏ ପୁରକୁ ନ ଆସେ ଶୁଣ ଶୁଣ ।
ବଳାତ୍କାରେ ଆସିଲେ ଚରଣ ଲୀନ ହୋଇ
ଶୁଣିଣ ବାଳୀରାଜା ସେଠାରୁ ପଳାଇ ।
ନିଜରାଜ୍ୟ କିଷ୍କିନ୍ଧ୍ୟାରେ ମିଳିଲା ଯାଇକରି
ନଗ୍ରରେ ଆଠ ମଉଡ଼ମଣିଙ୍କି ଗଲା ହାରି ।
ନର ବାନର ଭାଲୁ ଏମାନଙ୍କୁ ସାଧ କଲା
ମୃତ୍ୟୁପୁର ଜମ୍ବୁଦ୍ୱୀପ ବୁଲିଣ ଅଇଲା ।
ଏଥିରେ ଅନେକଦିନ କିଷ୍କିନ୍ଧ୍ୟାରେ ରହି
ବେନିହସ୍ର ବରଷ ଏଥିରେ ଗଲା ବହି ।
ଅଚିନ୍ତାରେ ରାଜ୍ୟ ବାଳୀରାଜା କଲା
ତାର ପ୍ରତାପ ଶୁଣି ଦଶରଥ ବଳା ।
ଶ୍ରୀରାମ ବୋଇଲେ ସେଠାରୁ କିସ ହେଲା
ଶୁଣ ହେ ଦେବ ସୁଗ୍ରୀବର ବୋଇଲା ।
ଏକଦିନେ ଜଗତୀରେ ବସି ବାଳୀବୀର
ବିଚାରିଲା ଦେଖିବା ଏବେ ସ୍ୱର୍ଗପୁର ।
ଏମନ୍ତ ବିଚାରି ରଥ ଚଢ଼ିଗଲା
ଜାମ୍ବବ ସୁଷେଣଙ୍କୁ ସଙ୍ଗତରେ ନେଲା ।
ହିମଗିରି ଉପରେ ଉଠିଲା ଯାଇକରି
ହିମଲାଗି କୁମୁଦ ଶରୀର ତାହାରି ।
ଗନ୍ଧର୍ବେ ଓଗାଳିଲେ ଆସିଣ ଆଗେ ପଥ
ବାଳୀରାଜା ନ ମାନି ଗଲାକ ସ୍ୱର୍ଗପଥ ।
ଅଙ୍ଗାରପନଗ ଚିତ୍ରସେନ ଆସି ଭେଟି
ଦେଖିଣ ବାଳୀରାଜା ତାହାଙ୍କୁ ନମିଲାଟି ।
ଏମନ୍ତ ସମୟେ କିନ୍ନରଗଣ ମିଳି
ବାଳୀକି ବୋଇଲେ ତୁ ନ ଯାଅ ସ୍ୱର୍ଗପୁରୀ ।
ଦେବତାଏ କୂଟ ଜାଣନ୍ତି ଅପାର
ତୋତେ ଦେଖି ଅପସରି ବାହୁନେ ଶରୀର ।
ଇନ୍ଦ୍ରରାଜା ପୁତ୍ରପ୍ରାୟେ ନ ମାନିବେ ତୋତେ
ବାଳୀ ବୋଇଲା ସ୍ୱର୍ଗକୁ ଯିବି ମୁଁ ନିଶ୍ଚିନ୍ତେ
ନ ମାନି କିନ୍ନରଙ୍କୁ ସ୍ୱର୍ଗକୁ ଚଳିଗଲା
ଦେବତାମାନଙ୍କ ପୁର ବୁଲିଣ ଦେଖିଲା ।
ସକଳ ଦେବତାଙ୍କୁ କରଇ ମାନ୍ୟଧର୍ମ
କାହାର ଚରଣେ ପଡ଼େ କାହାକୁ ନମେ ପୁଣ
ଦେବନାରୀ ଅପସରୀମାନଙ୍କ ନମସ୍କାର
ଦୁଷ୍ଟବୁଦ୍ଧି ସ୍ୱର୍ଗରେ ନ କଲା ବାଳୀବୀର ।
ତେବେ ସେ ବାଳୀବୀରକୁ ଦେବେ ସୁଖ ପାଇ
ତେତିଶକୋଟି ଦେବତାଙ୍କ ପୁର ସେ ଦେଖଇ
ଗନ୍ଧର୍ବ କିନ୍ନର ଅପସରାଗଣ
ସମସ୍ତଙ୍କୁ ମାନ୍ୟଧର୍ମ କଲା ସେ ଦେଖିଣ ।
ଦେବଋଷି ପୁରେ ପ୍ରବେଶ ହୋଇଲା
ଋଷିମାନଙ୍କୁ ଦେଖି ଚରଣେ ଲୋଟିଲା ।
ସୁଧର୍ମା ସଭା ତଳରେ ହୋଇଲା ପ୍ରବେଶ
ଓଳଗି ମେଲାଇଲା ଖଡଗ ରାଜା ଶିଷ୍ୟ ।
ଦେବୀମାନଙ୍କୁ ଦେଖିଣ ଚରଣେ ନମିଲା
ଋଷିଆଣୀମାନଙ୍କୁ ନମସ୍କାର କଲା ।
ସକଳ ଦେବତାଏ ହୋଇଲେ ତୋଷମନ
ଦେବୀମାନେ ବାଳୀଠାରେ ସନ୍ତୋଷ ହେଲେ ପୁଣ
ଦୁଷ୍ଟପଣ କଲେ ସିନା ସମସ୍ତେ ହୋନ୍ତେ ସଳ
ସ୍ୱର୍ଗପୁର ଦେବତାଏ ବୋଇଲେ ତାକୁ ଭଲ ।
ବୁଲି ସକଳ ସ୍ଥାନ ଦେଖି ବାଳୀ ଯେ ଦେଖିଲା
ଇନ୍ଦ୍ରଙ୍କ ଭୁବନେ ଯାଇ ପ୍ରବେଶ ହୋଇଲା ।
ସୁର ରାଜାଙ୍କୁ ଦେଖି ଶତେକ ପ୍ରଣମିତ
କରଯୋଡି ଆଗେ ଉଭା ଖଡଗଦର ସୁତ ।
ସୁର ରାଜା ପଚାରିଲେ ଶୁଣରେ କୁମର
ଅମରମଣ୍ଡଳେ କିମ୍ପା ଅଇଲୁ କହ ସାର ।
ବାଳୀରାଜା ବୋଇଲା ଶୁଣିମା ହେଉ ଦେବ
ଅମରପୁର ଦେଖିବାକୁ ମୋହର ସଦଭାବ ।
ତେଣୁ ମୁଁ ଅମରମଣ୍ଡଳକୁ ଅଇଲି
ସକଳ ଦେବତା ଦେବୀଙ୍କୁ ଦେଖିଲି ।
ତୁମ୍ଭଙ୍କୁ ଦର୍ଶନ କଲି ଯୋଗବଳେ
ଜନନୀଙ୍କି ଦେଖିଲେ ଯିବି ମମ ଆଳେ ।
ଶୁଣିଣ ସୁର ଇନ୍ଦ୍ର ବୋଇଲେ ବଚନ
ଭିତର ପୁରେ ଯାଇଣ ଦେଖ ତୁ ତ୍ରିଲୋଚନ ।

ଈଶ୍ୱର ପାର୍ବତୀଙ୍କି ଦର୍ଶନକର ତହିଁ
ମାତାଙ୍କୁ ଦେଖ ତୋର ପ୍ରସନ୍ନ ମୁଖ ହୋଇ ।
ଶୁଣି ବାଳୀରାଜା ବେଗେ ଚଳିଗଲା
ଈଶ୍ୱର ପାର୍ବତୀଙ୍କି ଭିତରେ ଦେଖିଲା ।
ଦର୍ଶନ କରିଣ ସେଠାରୁ ପୁଣ ଚଳି
ଶଚୀଦେବୀଙ୍କର ଆଗରେ ସେ ମିଳି ।
ଶତେବାର ପର୍ଯ୍ୟନ୍ତ ଚରଣେ ଲୋଟିଲା
କରଯୋଡି ଆଗରେ ଯାଇଣ ଛିଡା ହେଲା ।
ଦେଖିଣ ଶଚୀଦେବୀ ସଖୀଙ୍କି ପଚାରି
ମନଭ୍ରମଣୀ ନାରୀ ହୋଇ ଫେଡ଼ିକରି ।
ବୋଇଲା ଏ ବାନର ଅଟେ ତୁମ୍ଭର ବଳା
ବାନରୀ ସଙ୍ଗରେ ତୁମ୍ଭ ସ୍ୱାମୀ କଲା ଲୀଳା ।
ଶଚୀଦେବୀ କହିଲେ ସେଥିର ଗତି କହ
ମନଭ୍ରମଣୀ ନାରୀ କହେ ଶୁଣଗୋ ସନ୍ଦେହ ।
ଏକଦିନେ ଆଦିତ୍ୟ ସ୍ୱାମୀ ସଙ୍ଗ ହୋଇ
ମୃତ୍ୟୁପୁରକୁ ଗମନ କରିଲେ ସେ ଦୁଇ ।
ପାର୍ବତୀ ବନରେ ବାନରୀ ନାରୀ ଦେଖି
ବେନି ଦେବଙ୍କର ବୀର୍ଯ୍ୟ ଉଚ୍ଛୁଳିଲା ସେଠି ।
ତେଣୁ ବେନି ପୁତ୍ର ତାହାରୁ ଜାତ ହେଲେ ।
ଶଚୀଦେବୀ ବୋଇଲେ କୁମର ଏବେ ଶୁଣ
ମୃତ୍ୟପୁର ଚଳ ବାବୁ ନ ରହି ଏଥିପୁଣ ।
ଏ ପୁରେ ଦେବକୂଟ ଦେବତା ମାନଙ୍କର
ବେଗେ ଚଳ ବାବୁରେ ନ ରହ ଏ ପୁର ।
ଶୁଣିଣ ବାଳୀରାଜା ସେଠାରୁ ଚଳିଗଲା
କପିଳାସ ପୁରେ ପ୍ରବେଶ ହୋଇଲା ।
ଈଶ୍ୱର ପାର୍ବତୀଙ୍କୁ ସେଠାରେ ଦେଖିଣ
ଶତେବାର ନମସ୍କାର କଲାକ ଚରଣ ।
ଈଶ୍ୱର ବୋଇଲେ ବାଳୀବୀର ଶୁଣ
ଅଧର୍ମକୁ ନ ଯିବୁ ଧର୍ମରେ ଥିବୁ ପୁଣ ।
ଅନ୍ୟଥା କଲେ ମୃତ୍ୟୁ ହୋଇବ ବୀରମଣି
ଏହା ତୁ ମନରେ ହେତୁ ରଖିଥିବୁ ପୁଣି ।
ଯେବେ ତୁ ଦିଗବିଜେ କରିବୁ ବାଳୀବୀର
ତୋର ସଙ୍ଗେ ମେଳ ହେଲେ ଯୁଦ୍ଧ ତୁ ନକର ।
ବଳବନ୍ତ ପଣ କଲେ ହୋଇବୁ ଆଗୁସାର
ଏ କଥାକୁ ମନେ ରଖିଥିବୁ ବୀର ।
ଶୁଣିଣ ବାଳୀବୀର ସେଠାରୁ ଲେଉଟିଲା
ନାରକାସୁର ପୁରେ ପ୍ରବେଶ ହୋଇଲା ।
ଦେଖିଣ ନାରକାସୁର ଛାମୁରେ ହେଲେ ଭେଟେ
ପାଦପୂଜା କରନ୍ତେ ଖଡ୍ଗଗଦସୁତ ଲେଉଟେ ।
ସମ୍ବରଦୈତ୍ୟପୁରେ ପ୍ରବେଶ ଯାଇ ହେଲା
ଶୁଣିଣ ସମ୍ବର ବେଗେ ସେ ଅଟକିଲା ।

ବୋଇଲା ବାଳୀବୀର ତୋତେ ନୋହେ ସରି
ଫେରିଯାଅ ମୋର ସଙ୍ଗେ ନ କର ଯେ କଳି ।
ଶୁଣିଣ ବାଳୀବୀର ସେଠାରୁ ଚଳିଗଲା
ଲବଣ ନଉନିଧି ଅରୁଣ ସେ ଦିଶିଲା ।
ମୃତ୍ୟୁପୁର ଅସୁରଙ୍କୁ ସାଧିଣ ବୀର ଆସି
ଗଣ୍ଡା ଗୟଳ ଅସୁରଙ୍କୁ ବାଟରେ ସେ ଦେଖି ।
ଜାଣିଣ ବାଳୀବୀର ଦୁହିଁଙ୍କି ଆଗୁଳି
ସେ ଦୁହେଁ ବୋଇଲେ ତୋତେ ନ ମାରିବୁ ବାଳୀ ।
ସେଠାରୁ ବାଳୀବୀର ବେଗେ ଚଳିଗଲା
ନିଜ ରାଜ୍ୟେ ଆସିଣ ପ୍ରବେଶ ହୋଇଲା ।
ଏମନ୍ତେ ସହସ୍ରେ ବର୍ଷ ଗଲା ବହି
ବାଳୀରାଜା ନିଜ ରାଜ୍ୟେ ନିଶ୍ଚିନ୍ତେ ବିହରଇ ।
ଏକ ଦିନେ ନାରଦ ବାଳିପୁରେ ମିଳି
ଦେଖିଣ ବାଳୀବୀର ନମସ୍କାର କରି ।
ଚରଣ ଧୋଇ ମୁନିଙ୍କ ପାଦ ପୂଜାକଲା
ରତ୍ନ ସିଂହାସନେ ନେଇଣ ବସାଇଲା ।
ନାରଦ ବୋଇଲେ ଏବେ ସାଧିଲୁ ସ୍ୱର୍ଗପୁର
ମୃତ୍ୟୁପୁର ସାଧିଲୁ ଖଡଗଦ କୁମର ।
ମୃତ୍ୟୁପୁରେ ଏ ମନ ଅସାଧ ତୋତେ ହୋଇ
ବାଳୀରାଜା ବୋଇଲା କେ ଅସାଧ ଅଟଇ ।
ସେ କଥା ଫିଟାଇ କହ ମୁନିବର
ନାରଦ ବୋଇଲେ ଯେ ରେଣୁକା କୁମର ।
ଯମଦଗ୍ନି ସୁତ ପର୍ଶୁରାମ ନାମ
ତାହାକୁ ଜିଣିବାକୁ ନାହିଁ କେ ଅନୁପମ ।
ସୈନ୍ୟବଳ ସଙ୍ଗେ ନାହିଁ ଏକ କରେ ଯୁଦ୍ଧ
ଶୁଣିଣ ବାଳୀବୀର ହୋଇଲା ପ୍ରମୋଦ ।
ଆଡ଼ଚିରା ମାରିଣ ବେଗେ ଚଳିଗଲା
କୌରବ ବନରେ ଯାଇ ପ୍ରବେଶ ହୋଇଲା ।
ପର୍ଶୁରାମ ଋଷିଙ୍କ ଦେଖିଲା ସେହି ଗିରି
ଆଗରେ ଛିଡ଼ା ହୋଇ ବାହାନାଦ କରି ।
ପର୍ଶୁରାମ ପଚାରିଲେ କିସ ନାମ ତୋର
ମୋର ଆଗେ ଦେଖାଉ ପ୍ରବଳ ରୂପ ତୋର ।
ଏତେ ବୋଲି ପର୍ଶୁରାମ କୁଠାର କରେ ଧରି
ବୁଲାଇ ପିଟନ୍ତେ ବାଳୀଭୂମିରେ ଲୋଟେଗଡ଼ି ।
ଯମଦଗ୍ନି ସୁତ ଦେଖିଲା ପଡ଼ିବାର
କୁଠାର ମଡ଼ାଇ ବୀର ଚଳିଗଲା ଖର ।
ସେ ଆଶ୍ରମ ତେଜିଣ ବଦରୀଶ୍ରମେ ଗଲା
ଅଚଳ କୁଠାର ବାଳୀ ହୃଦରେ ରହିଲା ।
ପର୍ଶୁରାମ ଯିବାରୁ ସୁରରାଜା ପୁଣ
ସକଳ ଦେବତା ଘେନି ମିଳିଲେ ସେ ସ୍ଥାନ ।

ତ୍ରିଦଶ ଦେବତା କେଭେ ତୋଳି ନ ପାରିଲେ
ଈଶ୍ୱର ବେଦବର ଆସିଣ ମିଳିଲେ ।
ଝଟଳେ ଧରନ୍ତେ ସେ ଯେ ତୋଳି ନ ପାରିଲେ
ଲଜ୍ଜିତ ହୋଇଣ ସର୍ବେ ଅପସରି ଗଲେ ।
ସକଳ ଦେବତା ହୋଇଣ ଏକ ମେଳ
ରେରେକାର ବନରେ କରନ୍ତି ବିଚାର ।
ଏମନ୍ତ ସମୟରେ ପର୍ଶୁରାମ ଜାଣି
କଉମୋଦୀ ଗଦାଧରି ଅଇଲା ବୀରମଣି ।
ଦେବତାଙ୍କୁ ଦେଖିଣ ବୋଇଲା କର ମେଳି
ଯମଦଗ୍ନି ସୁତ ଯେ ଗଦାମାଡ଼ କରି ।
ଈଶ୍ୱର ବଜ୍ରଧର ବେଦବରଙ୍କୁ ମାଡ଼
ଦେଖିଣ ଦେବତାଏ ପଳାନ୍ତି ସ୍ୱର୍ଗପୁର ।
ସୁରରାଜା ଈଶ୍ୱର ବେଦବର ଗଲେ
ପର୍ଶୁରାମ କ୍ରୋଧରେ ରହି ନ ପାରିଲେ ।
ଜାଣିଣ ନାରଦ ଗୌତମଙ୍କୁ କହି
ତୋ ପୁତ୍ର ବାଳୀକି ପର୍ଶୁରାମ ଯେ ମାରଇ ।
ଶୁଣିଣ ଗୌତମ ବେଗେ ଚଳିଗଲେ
ରେରେକାର ବନରେ ପ୍ରବେଶ ହୋଇଲେ ।
ବୋଇଲେ ପର୍ଶୁରାମ ଅନ୍ୟାୟ କିମ୍ପା କରୁ
ବ୍ରହ୍ମା ଶିବ ନ ମାନିଲୁ କେବଣ ବେଭାରୁ ।
ପର୍ଶୁରାମ ବୋଲେ ସର୍ବ ଦେବତା ଅଧର୍ମୀ
ନିର୍ବଳ ଲୋକକୁ ବଳ ଦେଉଛନ୍ତି ପୁଣି ।
ବଳବନ୍ତ ଲୋକକୁ ସେ ବଳପଣେ ସେବି
ବିପତ୍ତି ପଡ଼ିଲେ ନାରାୟଣଙ୍କୁ ଭାବି ।
ଦେବତାଙ୍କୁ ମାଇଲେ ସକଳ ହେବେ ଭଲ
ଦେବକୂଟ ଭାଗିଲେ ନୋହିବ କଳିଗୋଳ ।
ଗଉତମ ବୋଇଲେ ଏ ବାଳୀକି ଛାଡ଼ିଦିଅ
ତୋ'ର ହସ୍ତେ ନ ମରଇ ବାନର ଜାଣିଥାଅ ।
ଏ ବାଳୀକି ମାରିବେ ଶୟନ ନାରାୟଣ
ପର୍ଶୁରାମ କୁଠାର ଛାଡ଼ିଲେ ଶୁଣିଣ ।
ପଳାଇଲା ବାଳୀବୀର ଏକମୁଖା ହୋଇ
କିଷ୍କିନ୍ଧ୍ୟା କଟକରେ ଆସିଣ ମିଳଇ ।
ସେହି ଦିନୁଁ ବାଳୀ ପର୍ଶୁରାମକୁ ଡରି
ବାଳୀ ଜମ୍ବୁଦ୍ୱୀପ ଯେ ସାଦର ହେଲାପରି ।
ଏମନ୍ତ ପ୍ରକାର ବାଳୀ ଏ ପୁର ସାଧି
କାହାକୁ ନ ଡରିଣ ଧର୍ମରେ କଲା ବୁଦ୍ଧି ।
କୋଟିଏ ସିଂହର ବଳ ବାଳୀର ଦେହେ ପୁଣ
କେମନ୍ତେ ତାକୁ ପାରିବ ଆହେ ରଘୁରାଣ ।
ଭୋ ଦେବ ବାଳୀ ବୀର ଯେ ମହିମା ଅନେକ
ବାଳୀର ବଳ ଜାଣନ୍ତି ତିନି ଯେ ତ୍ରୈଲୋକ୍ୟ ।
ପର୍ବତ ପକାଇ ସେ ଯେ ପାତଇ ଯେ ମୁଣ୍ଡ
ଦେହରେ ପଡ଼ି ପର୍ବତ ହୁଅଇ ନବଖଣ୍ଡ ।
ଏ ମହୀମଣ୍ଡଳେ ଦେବ ବାଳୀକି ସମ ନାହିଁ
ବିଚାରିଣ କାର୍ଯ୍ୟ ଯେ କରିବା ରଘୁସାଇଁ ।
ଦୁନ୍ଦୁଭୀ ବୋଲିଣ ଦୈତ୍ୟେକ ପୂର୍ବେ ଥିଲା
ଜଗତରେ ବଳୀୟାର ଅଟଇ ସେହୁ ଭଲା ।
ତାହାକୁ ସରିସମ ନାହିଁ ଆନ କେହି
ପର୍ବତ ସମାନରେ ଅଟଇ ତାର ଦେହୀ ।
ସେ ଦୈତ୍ୟକୁ ବାଳୀ ଯେ ହେଳେଣ ନାଶକଲା
ତିନିପୁର ଜୟ ଜୟ ଶବଦ ଶୁଭିଲା ।
ପଶ୍ଚିମ ଦିଗରେ ଯେଉଁ ଧବଳ ପର୍ବତ
ସବୁ ଗିରି ଉପରେ ଉଚ୍ଚମୋଟ ଦିଶୁଛି ତ ।
ଭୋ ରଘୁନାଥ ଅଟେ ଦୁନ୍ଦୁଭୀର ହାଡ଼
ବିଚାର ମନରେ ଦେବଦୈତ୍ୟ କେତେ ଗାଢ଼ ।
ସେ ଦୈତ୍ୟ ମାରିଣ ବାଳୀ ଅସ୍ଥିକି ଅଛିଥୋଇ
ତିନିଯୁଗ ପରିଯନ୍ତେ ରହିଲା ଅସ୍ଥି ତହିଁ ।
ସେଠାରୁ ବାଳୀବୀର ଆଣିଲା ତୋଳିକରି
ଏ ଥାନରେ ଆଣି ବାଳୀ ରଖିଛି ତାକୁ ଡେରି
ତରୁ ଲତା ତାର ପରେ ମାଡ଼ିଛି ଦେଖ ରାମ
ଏଡ଼େ ବଳବାନ ଯେ ବାଳୀର ପରାକର୍ମ ।
ଏ ଅସ୍ଥିକି ଯେବେ ତୋଳିପାରିବୁ ରଘୁବୀର
ତେବେ ତାକୁ ମାରିବାକୁ ସମର୍ଥ ତୋହର ।
ଏ ମୋହର ବଚନ ଶୁଣ ହେ ଚାପଧାରୀ
ଯେତେଲୋକ ଥାଇ ଆମ୍ଭେ ବାଳୀକି ନୋହୁସରି
ଯଦ୍ୟପି କପିବୀର ପାଇବ ସେ ବାରତା
କୋପ କରିବ ସେ ଯେ ଅଙ୍ଗଦର ପିତା ।
ଏ ପର୍ବତରେ ଆମ୍ଭେ ଥାଉ ଯେତେ ଦିନ
ଜାଣିକରି ଆସିଲେ ସେ ଯେ କରଇ ନିଧନ ।
ତାହାକୁ ଡରିଣ ମୁଁ ଯେ ଅଛଇ ଦେବ ଏଥି
ବାଳୀ ମହିମା କହିଲେ ଅସଂଖ୍ୟ ହେବ ପୋଥି
ଶୁଣିଣ କୋପ ମନ ହେଲେ ଶ୍ରୀରାମର ଭାଇ
ବାଳୀ ଯଶ ତୁମ୍ଭେ ଆମ୍ଭର ଆଗେ କହି ।
ନ ଜାଣକି ସୁଗ୍ରୀବର ଶ୍ରୀରାମ କୀରତି
ଦେଖିଣ ନ ଚିହ୍ନିଲକି ପରଂବ୍ରହ୍ମ ମୂର୍ତ୍ତି ।
ବାଳୀକି ଲକ୍ଷ୍ମଣକୁ ଡରରେ କିସପାଇଁ
କିମ୍ପାଇଁ କହୁଅଛୁ ଯେ ଥରହର ହୋଇ ।
ସ୍ୱର୍ଗପୁରେ ପଶିଣ ଦେବଙ୍କୁ ସେ ଡରିଲା
ମର୍ତ୍ତ୍ୟପୁରେ ତେରଜଣକୁ ହାରିଣ ସେ ଅଇଲା ।
କେଉଁ ପାରିବାର ପଣ ଯେ ହେଲା ତାର
ତିନିପୁର ଜିଣିବାକୁ କେହି ଯେ ନାହିଁ ବୀର ।

ଏକା ପର୍ଶୁରାମ ଯେ ସପତପୁର ଜିଣି
ସୈନ୍ୟବଳ ସଙ୍ଗେ ନାହିଁ ସାଧିଲା ସେ ମେଦିନୀ ।
ଦେବତା ବ୍ରହ୍ମା ବିଷ୍ଣୁ ଯେ ମହେଶ୍ୱର ପୁଣ
ନର ବାନର ଅସୁର ଡରିଲେ ସର୍ବଜନ ।
ସେ ପର୍ଶୁରାମକୁ ହେଳେ ଜିଣିଲେ ଦାଶରଥି
ବିଚାରି ପର୍ଶୁରାମ ଯେ ନିକ୍ଷତ୍ରୀ କରିଥିଲା ପୃଥ୍ୱୀ
ଯାହାର ରଣରେ ଯେ କାନ୍ଦିଲେ ଦେବନାରୀ
ଗାୟତ୍ରୀ ସାବିତ୍ରୀ ଯେ ପାର୍ବତୀ ଆଦିକରି ।
ଶଚୀଦେବୀ ଛାୟା ମାୟା ରୋହିଣୀ ଆଦିକରି
ଏମାନେ ଶୋକ କଲେ ପର୍ଶୁରାମକୁ ଡରି ।
ଏହି ରାମ ଅନନ୍ତ ଶୟନପୁରେ ଥିଲେ
ପର୍ଶୁରାମକୁ କମଳା ବନ୍ଦାପନା କଲେ ।
ଏଡ଼େ ବଳବନ୍ତକୁ ରାମ ଯେ ବାଟେ ଜିଣି
ତୁ ବୋଲୁ ବାଳୀବୀର ଯେ ପାରିବାର ପୁଣି ।
ଯାହାର ବିଚାରରେ ତୈଲୋକ୍ୟ ହୁଏ ବଣା
ସପତପୁର ଚଉଦ ବ୍ରହ୍ମାଣ୍ଡ ଯା କରୁଣା ।
କୋଟି କୋଟି ବ୍ରହ୍ମାଣ୍ଡ ଯାର ରୁମମୂଳେ ଅଛି
ଲୀଳାର ପାଇଁ ଦେଇ ଅବତାର ଶ୍ରୀବତ୍ସୀ ।
ସୁଗ୍ରୀବର ବୋଇଲା ଯେବେ ଅଟନ୍ତି ଏଡ଼େପ୍ରଭୁ
ବାତୂଳ ପ୍ରାୟ କଥା କହନ୍ତି ସେ ଯେ ସବୁ ।
ସଉମିତ୍ରୀ ବୋଇଲେ ଘୋଟିଛି ଅଜ୍ଞାନ
ଚୌଦମାସ ପର୍ଯ୍ୟନ୍ତ ଅଛଇ ପ୍ରମାଣ ।
ମରତ ଋଷିର ଶାପ୍ୟ ମୋଚନ ନ ଗଲା
ଯେଣୁ ସେ ନାରାୟଣ ଅଧର୍ମ ବୁଦ୍ଧି କଲା ।
ସୁଗ୍ରୀବର ବୋଇଲା ମୁଁ ଯେ ଏ ମାନବ ଜାଣଇ
ବାଳୀମଲେ ଜାଣିବି ନାରାୟଣ ଏହି ।
ନ ଜାଣିବା କଥା ମୋତେ କିମ୍ପାଇ କହ ପୁଣ
ଶୁଣିବାର କଥାମାନ ଅଟେ ମିଛ ଜାଣ ।
କଥା ସିନା ଶରୀରକୁ ସତ ଦେଖିବାର
ତୁମ୍ଭେ ଯେ ସନ୍ୟାସୀ ବେଶ ମୁହିଁ ଯେ ଶବର ।
ଶୁଣିଲେ ଶ୍ରୀରାମ ଯେ ହସିଲେ ମନେ ପୁଣ
ବୋଇଲେ ଏ କଥା ମିତ ଅଟଇ ପ୍ରମାଣ ।
ଆମ୍ଭେ ଯେବେ ବଡ଼ହେଲୁ ଦେଖିବାକୁତ ସାନ
ବନବାସ କରିବାରୁ ଋଷିର ସଙ୍ଗେ ଗଣ୍ୟ ।
ବେଳରେ ସୁଗ୍ରୀବର ହୋଇଥିଲୁ ବଡ଼ ଭଲ
ବନରେ ରହିବାରୁ ବନର ଜନ୍ତୁ ତୁଲ୍ୟ ।
ଶୁଣିଣ ସୁଗ୍ରୀବର ଶିରରେ କର ଦେଲା
ନିର୍ଲଜ ରୂପ ଆମ୍ଭର ସଲ୍ଲଜେ ତୋଷ ହେଲା ।
ଆମ୍ଭ ଦେହେ ଯେବେ ଯେ ଥାଉଥାଉ ପୁଣ
ଅର୍ଦ୍ଧଅଙ୍ଗ ପରାଣ ହରିଲା ନେଇ ଜାଣ ।

ଶୁଣିଣ ଶ୍ରୀରାମର ନେତ୍ରରୁ ବହେ ନୀର
ସଉମିତ୍ରୀ ବୋଲେ ଚିନ୍ତା ନ କର ରଘୁବୀର ।
ଶ୍ରୀରାମ ବୋଇଲେ ମୁଁ କୋଇଲି ପ୍ରାଏ ହେଲି
ଶାର୍ଦ୍ଦୂଳ ହୋଇ ମୁଁ ଯେ ଶୃଗାଳ ଆଶ୍ରେକଲି ।
ସୁଗ୍ରୀବର ବୋଇଲା ଏ ଦୁହିଁଙ୍କ କଥା କହ
ଶ୍ରୀରାମ ବୋଇଲେ ଶୁଣ ଖଡଗଦର ପୁଅ ।
କୋଇଲି ସଙ୍ଗେ ତା'ର ଘରଣୀ ଲୀଳା କଲା
ସ୍ୱାମୀ ସଙ୍ଗେ ପ୍ରୀତି ହୋଇ ସୁରତି ଭାବକଲା ।
ତେଣୁ ସେ ଡ଼ିମ୍ବରୁ ଦୁଇ ଉଛୁରି ନ ପାରିଲା
ବାୟସ ପକ୍ଷୀ ବସାରେ ନେଇ କରି ରଖିଲା ।
ବାୟସର ଡିମ୍ବକୁ ରଖିଲା ଯତ୍ନକରି
ତଳକୁ ଫୋପାଡ଼ି ଦେଲା ମନେ ହିଂସା ଧରି ।
କୋଇଲି ଘର ଡିମ୍ବ ଦୁଇ ରଖିଦେଲା ଯତ୍ନକରି
ତେଣୁ ସେ କୋଇଲି ପରି ଦୋଷରୂପ ଧରି ।
ବାଳକ ହତ୍ୟା ଦୋଷ ତା ଠାରେ ପ୍ରବେଶିତ
ହତ୍ୟା ଦୋଷରେ ସେହୁ ହୋଇଲା ଦଣ୍ଡିତ ।
ତେଣୁ ସେ ନାରୀ ଯେ ବିଟପୀ ତଳେ ଲେଖା
କାକ ବିଟାଳିଆ ବୋଲି ଜଗତେ ହେଲା ଡକା ।
କଜ୍ଜ୍ୱଳ କି କଳା ରୂପବତୀ ସୁନ୍ଦର
କେଡ଼େ ପବିତ୍ର ଜନ୍ତୁ କାକର ସଙ୍ଗେ ମେଳ ।
ସେହି ପ୍ରକାରେ ମୋର କଥା ଯେ ହେଲା
ମୋହର ଘରଣୀକି ଆନ ଯେ ଘେନିଗଲା ।
ମୁଁ ଯେବେ ବନଚାରୀ ନୁହନ୍ତି ଏ ବନରେ
ଭିତରପୁରେ ଘରଣୀ ନିଶ୍ଚନ୍ତେ ଥାନ୍ତାମୋରେ ।
ଯେ ବଳବନ୍ତ ହୋନ୍ତା ମୋ ସଙ୍ଗେ ଯାଇଯୁଝନ୍ତା
ତାହାକୁ ମାରିଲେ କ୍ଷତ୍ରୀକୁଳରେ ପ୍ରସିଦ୍ଧା ।
ବେନିଭାଇ ରଖି ନ ପାରିଲୁ ଏକ ନାରୀ
ତେଣୁ ତୁ ସୁଗ୍ରୀବର ନିର୍ବଳ ଯେ ବିଚାରି ।
ସୁଗ୍ରୀବର ବୋଇଲା ଏ କଥା ଅଟେ ସାର
ଶାର୍ଦ୍ଦୂଳ ଶୃଗାଳ କଥା କହ ମୋ ଆଗର ।
ଶ୍ରୀରାମ ବୋଇଲେ ସେ କଥା ଏବେ ଶୁଣ
ଶାର୍ଦ୍ଦୂଳ ସିଂହର ଯୁଦ୍ଧ ଯେ ହେଲା ପୁଣ ।
ସିଂହ ତ ଜିଣିଲା ଶାର୍ଦ୍ଦୂଳ ଗଲା ହାରି
ଶାର୍ଦ୍ଦୂଳର ଶରୀର ସିଂହ ଦେଲା ଦଳି ।
ସିଂହର ମାଡ଼ରେ ଶାର୍ଦ୍ଦୂଳ ପଡ଼ି ରହେ
ଉଠିବାକୁ ସମର୍ଥ ତାହାର ପୁଣ ନୋହେ ।
ଏମନ୍ତ ସମୟେ ଶୃଗାଳ ମିଳିଲା ଆସିକରି
ଶାର୍ଦ୍ଦୂଳକୁ କ୍ଷୁଧା ଅନଳ ତେଜ କରି ।
ଶାର୍ଦ୍ଦୂଳ ଡାକ ଦେଲା ଶୃଗାଳ ଭାଇ ଶୁଣ
ଯେବେ ମୋର ଜୀବନ ରଖି ପାରିବୁରେ ପୁଣ ।

ମୋହର ଶତ୍ରୁ କେଶରୀ ମୋତେ ସେ ପାଞ୍ଚି ଗଲା
ନିର୍ବଳ କରିଣ ମୋତେ ଦଳି ପକାଇଲା ।
ଆହାର ଜଳ ଦେଇ ରଖ ମୋର ପ୍ରାଣ
ଧର୍ମ ବିଚାରିଲା ଯେ ଶୃଗାଳ ଶୁଣିଣ ।
ତେଣୁ ସେ ଶାର୍ଦ୍ଦୂଳକୁ ଓଟାରି ଘେନିଗଲା
ନିର୍ଝର ଜଳରେ ତାକୁ ପକାଇଲା ।
ଜଳଖାଇ ଶାର୍ଦ୍ଦୂଳ ଯେ ହୋଇଲାକ ଧୀର
ତେଣୁ ଶାର୍ଦ୍ଦୂଳବୋଇଲା ମୋତେ ଦେଆହାର ।
ଶୁଣିଣ ଶୃଗାଳ ଯେ ବେଗେ ଚଳିଗଲା
ସାନ ଜୀବ ମାରିଣ ଯେ ଶୃଗାଳ ଆଣିଦେଲା ।
ଶାର୍ଦ୍ଦୂଳ ଭକ୍ଷିଲାକ ବେଳେ ସେ ଆହାର
ପିଣ୍ଡକୁ ସୁସ୍ଥ କଲା ବଳ ନେଇ ହେଲା ତାର ।
ପଡ଼ିବା ଠାବରୁ ଶାର୍ଦ୍ଦୂଳ ଉଠି ବସିଲାଟି
ବୋଇଲା ଶୃଗାଳରେ ଅନ୍ୟାୟ କଲୁ ତୁଟି ।
ତୋହର ଉଚ୍ଛିଷ୍ଟ ଯେ ମୋତେ ଭୁଞ୍ଜାଇଲୁ
ଏ କଥାରେ ଦୁର୍ଗୁଣ ମୋ ରହିଲା ଜାଣିଲୁ ।
ଶୃଗାଳ ବୋଇଲା ଯେବେ ଜୀବନ ଯାଇ ଥାନ୍ତା
ଦୁର୍ଗୁଣ କଥା କା ହୃଦରେ ପଶନ୍ତା ।
ଏ ଦୁର୍ଗୁଣ ସାରିଣ ଶତ୍ରୁକୁ ଯାଇ ମାର
ତେବେ ସେ ପୁଣି ରହିବ ମନଧାର୍ଯ୍ୟ ତୋର ।
ଶୁଣିଣ ଶାର୍ଦ୍ଦୂଳ ଯେ ସନ୍ତୋଷ ହୋଇଲା
ଭଲକଥା କହିଲୁରେ ବୋଲିଣ ବୋଇଲା ।
ସେଠାରୁ ବେନିଜନ ଯେ ଯାହା ସ୍ଥାନେ ଗଲେ
ସେ କଥା ମୋତେ ଏବେ ଭେଟିଲା ଏତେକାଳେ ।
ମୋହର ବିପତ୍ତି ବେଳେ ତୋତେ ମୁଁ ଭେଟିଲି
ତୋ କାର୍ଯ୍ୟ ଆଗେ ମୁହିଁ କରିବି ବୋଇଲି ।
ତେବେ ମୋର କାର୍ଯ୍ୟ ଯେ ହୋଇବ ସୁଫଳ
ଏଥିର ସକାଶେ ଛଳ ନାହିଁ ମୋ ଶରୀର ।
ଲକ୍ଷ୍ମଣ ବୋଇଲେ ସୁଗ୍ରୀ ଶୁଣିଲଟିକି କଥା
କେତେ ବଳବନ୍ତ ଯେ ଖଡଗରାଜ ସୁତା ।
ଶ୍ରୀରାମକୁ ସାମାନ୍ୟ ଯେ ସଂଗ୍ରାମ ନୁହଇ
ଛାମୁରେ ରହିଣ ସେ ଯେବେ ଯୁଦ୍ଧ କରଇ ।
ଦେବତା ଦାନବ ଯେ ଗନ୍ଧର୍ବ ନର ଯକ୍ଷ
ଦଶରଥସୁତ ସଙ୍ଗେ ହେବେ କି ସମକକ୍ଷ ।
ଶ୍ରୀରାମ ମାନବରୂପ ଦେଖିଲୁ କିରେ କପି
ଏହି ରାମ ଅବତାର ମାନବରୂପେ ବ୍ୟାପୀ ।
ସଦାଶିବ ପୁରନ୍ଦର ବ୍ରହ୍ମା ଯେ ନୋହେ ସରି
ନିରୋଳା ଲୋଚନେ ଦେଖିଲୁ ଶ୍ରୀହରି ।
ଏ ନାରାୟଣ ଅଟନ୍ତି ହୃଦରେ ମାୟା ନାହିଁ
ତୁ ତାହା ନୀରବରେ ସାବଧାନ ହୋଇ ।

ଯାହାର ନାରାଚରେ କମ୍ପଇ ତିନିପୁର
ଯେବଣେ ପ୍ରତେଯିବୁ ତୋତେ ତୁ ପ୍ରତେକର ।
କଥା ନ ବୁଝିଣ ବଖାଣ ଯେ କିମ୍ପା ହେଉ
ତୁ ଯାହା ବୋଲିବୁ ତାହା କରିବେ ରାମରାହୁ ।
ଜାଣୁ ତ ଯମଦଗ୍ନି ସୁତ ପର୍ଶୁରାମ
କୁଠାର କାଢ଼ିବାରୁ ପଳାଇ ଆସିଲେ ପୁଣ ।
ଯୁଗକେ ପର୍ଯ୍ୟନ୍ତ ବିମ୍ବରେ ଲୁଚିଲେ
ଅଗସ୍ତି ରାଜା କହିବାରୁ ଏ ରାଜ୍ୟ ରାଜାହେଲେ ।
ସେ ପର୍ଶୁରାମ ତପୀ ରାମକୁ ଦେଖି ପୁଣ
ତପସ୍ୱୀ ହୋଇଲା ଯେ ଧନୁଶର ଛାଡ଼ିଣ ।
ଶୁଣିଣ ସୁଗ୍ରୀବର ଯେ କହଇ ବଚନ
ଯାହା ତୁମେ ବୋଇଲ ସୁମିତ୍ରା ନନ୍ଦନ ।
କହିବି ଏ କଥା ସାବଧାନରେ ଶୁଣ
ଏ ଯେ ଦିଶୁଅଛି ସପତ ଶିଳା ପୁଣ ।
ଏକକୁ ଆରେକ ସେ ଯେ ବକ୍ର ହୋଇଅଛି
ସଳଖରେ ରହିନାହିଁ ସପ୍ତବାଙ୍କେ ରହିଅଛି ।
ଏଥିରୁ ତିନିଗଛ ବାଳୀ ଯେ ଲାଖ କଲେ
ସୁର ରାଜା ପରେ ଗଛେ ଫୁଟାଇ ନ ପାରିଲେ ।
ଅବିଶ୍ବାସୀ ଗଛ ଏ ଯେ ବଜ୍ରରୁ ନିରାଟ
ସକଳ ତରୁବର ରୂପେ ଯେ ଅଟଇ ଶ୍ରେଷ୍ଠ ।
ବାଳୀ ଜନ୍ମିଲା ଦିନରୁ ଏ ବୃକ୍ଷ ଜାତ ହୋଇ
ଏକଦିନେ ଆଦିତ୍ୟ ମୋହର ଆଗେ କହି ।
ତୁହି ମୋର ସୁତ ନ ଭାଳ ଏବେକିଛି
କିଷ୍କିନ୍ଧ୍ୟା କଟକେ ତୋତେ ନୃପତିପଣ ଅଛି ।
ଏବେ ତୁ କୁମରେ ନୁହ ତୁ ବିମୁଖ
ସଂସାରେ ଲାଗିଅଛି ସଭିଙ୍କ ଦୁଃଖ ସୁଖ ।
ମୋହ କଥାକୁ ତୁରେ ଥିବୁଟି ହେତୁକରି
ଯେବଣ ଦିନେ ତୋତେ ପ୍ରାପତ ରାଜଶିରୀ ।
ସେଦିନ ଛେଦନ ହୋଇବ ସପ୍ତଶାଳା
ବାଳୀତ ମୃତ ହେବ ଶୁଣରେ ମୋର ବଳା ।
ବିଧାତା ଉପାୟରେ ଅଛି ନିର୍ଭାଇ
ସପ୍ତଶାଳା ଛେଦନ ନିକଟରେ ହୋଇ ।
ସପତ ଦିଗରେ ଅଟଇ ତରୁ ସାର
ସପ୍ତମେରୁ ସମାନ ନୁହନ୍ତି ତୁ ବିଚାର ।
ଏ ତରୁ ଯେ ଛେଦିବ ସେ ଜିଣିବ ସାତଦ୍ୱୀପ
ତାକୁ ସମାନ ନୋହେ ସୁରପୁର ନୃପ ।
ବାଳୀର ଆତ୍ମା ଯେ ପରମ ଆତ୍ମା ବେନି
ଏ ବୃକ୍ଷ ହୋଇଲେ ଯେ ପଦଚ୍ୟୁତ ବେନି ।
ଜନ୍ମକରି ତାହାକୁ ଜୀବ ବୃକ୍ଷରେ ସଞ୍ଚରଇ
ଏକଗୋଟି ପ୍ରାଣୀ ମଲେ ଗୋଟିଏ ମରଇ ।

ସୃଷ୍ଟି କରତା ବେଦବର ହେ ଅଛି ସଞ୍ଚି
ଅଧେ ତରୁ ଅଧେ ପିଣ୍ଡ ସେ କରିଣ ରଞ୍ଚି ।
ବାଳୀର ପିଣ୍ଡ ପ୍ରାଣ ବେନି ଭାଗ ଯେ କଲା
ଅଧକେ ନେଇ ବୃକ୍ଷ କରିଣ ସେ ରଖିଲା ।
ଏକ କରିଣ ସେ ଯେବେ ଥୋଇଣଥାନ୍ତାଦେହ
ଏ ପୁର ଥିର ହୋଇ ନ ରହନ୍ତାଟି ପ୍ରିୟ ।
ତେଣୁ ସେ ବିଧାତାଟି କଲା ଯେ ଭିନ୍ନ ଭିନ୍ନ
ସପତଶାଳା ଗଛେ ଅଟେ ବାଳୀର ଜୀବନ ।
ଆପଣ ଛେଦନ କରି ପାରିବେ ଯେବେ ଏହା
ଯୋଗୀଜନ ଲେଖାଏ ବସନ୍ତି ପୁଣ୍ୟ ଦେହା ।
ଦୁର୍ବାସା ମୁନି ତାଙ୍କୁ ପୂର୍ବେ ଯେ କହିଗଲେ
ଏ ସପ୍ତଶାଳା ବୃକ୍ଷ ଯେ ଜୀବନ ବୋଇଲେ ।
ଏହାକୁ ନାରାଚରେ ଛେଦନ ଯେବେ କରୁ
ନିଜ ଆତ୍ମା ସାଧିଲେ ତୁଯେ ବୋଲାଇବୁମେରୁ ।
ପରମ ଯୋଗୀ ଜନରେ ତୁ ହୋଇବୁ ଗଣିତା
ସଂସାରେ ତୋତେ ବୋଲିବେ ଜଗଦ୍‌ଜିତା ।
ଛେଦି ପାରିଲେ ତୁଯେବେ ଏତକ କରିବୁ
ଯେ ତରୁ ଛେଦିବ ସେ ଯେ ବଇରୀ ତୁଜାଣିବୁ ।
ତାହାର ନାରାଚେ ତୁ ଯେ ହରାଇବୁରେ ପ୍ରାଣ
ଏକଥା ବାଳୀ ତୁରେ ତଥ୍ୟକରି ଜାଣ ।
ତେଣୁ ସେ ବୃକ୍ଷକୁ ଛେଦି ମନ ଯେ କରଇ
ତିନି ଗଛ ଫୁଟାଇ ଆଉ ଯେ ନ ପାରଇ ।
ତେଣୁ ପ୍ରାପତ ତାକୁ ନାହିଁକି ଅମର
ତେଣୁ ସେ ବୃକ୍ଷମାନ ରହିଲେକ ନିଶ୍ଚଳ ।
ଏକଥା ମୋତେ କହିଗଲେ ଦିନକେ ଯେନାଥ
ପିତାର ବଚନ ମୁଁ ଯେ ମଣିଣ ଅଛି ତଥ୍ୟ ।
ଏକଥା ପିତା ମୋର ପ୍ରସନ୍ନେ କହିଲେ
ଏକଥା ଜାଣି ନିଶ୍ଚୟ ଥାଆରେ ବୋଇଲେ ।
ସେ କଥା ମାନି ମୁଁ ଯେ ଅଛଇ ଦୁଃଖ ସହି
ଏତେକାଳେ ତୋତେ ମୁଁ ଭେଟିଲି ରଘୁସାଇଁ
ସେ ସାତ ଶାଳ ଯେବେ ଛେଦିପାର ରାମ
ତେବେ ସେ ଜାଣିବା ତୋହର ପରାକ୍ରମ ।
ତେବେ ସେ ବାଳୀବୀର ହୋଇବେ ଆପେନାଶ
ସଙ୍କୁନ ପାଇଲି ମୁଁ ଏବେ ଆସ ।
ତୁମ୍ଭେ ରାମ ଭାଇ ଯେ ଏତକ ଏବେକର
ପରୀକ୍ଷା ଦେଖାଇ ମୋତେ ଉଦ୍ଧାରିଣ ଧର ।
ସୁଗ୍ରୀବର ମୁଖରୁ ଏସନ ବାଣୀ ଶୁଣି
ହସିଣ ବୋଇଲେ ସେ ଯେ ରଘୁକୁଳମଣି ।
ଭୋ ମଉତ୍ର ତୁମ୍ଭେ ଯେ ଅଟବେନିଭାଇ
କିମ୍ପାଇଁ କଳି କଲେ ସେ କଥା ଶୁଣିମାଇଁ ।

ବେନିଗୋଟି ପିଅର ଯେ ଦେବତା ଶୁଣି ହୁଏ
ଗୌତମ ଋଷି ଯେ ପାଳିଣ ଜତେ ନ୍ୟାୟେ ।
ଖଦ୍‌ଗଦ ନୃପତି ଯେ ଅଟଇ ତୁମ୍ଭ ପିତା
ଜନନୀ ଏକ ତୁମ୍ଭର ଶୁଣ ହେ ରବିସୁତା ।
କେବଣ ଅର୍ଥେ ଧାତା ଅନ୍ୟ ଯେ ଅନ୍ୟକଲା
ସେ କଥା ମୋର ଆଗେ ଫେଡ଼ିଣ କୁହ ଭଲା ।
ସୁଗ୍ରୀବର ବୋଇଲା ଶୁଣିବା ରଘୁବୀର
ଯେବଣ କାର୍ଯ୍ୟରେ ଦ୍ୱନ୍ଦ ହୋଇଲା ଆମ୍ଭର ।
ସେ କଥା ତୁମ୍ଭ ଆଗେ କହଇ ତଥ୍ୟକରି
ଏକମନେ ଶୁଣ ତୁମ୍ଭେ କହେ ଚାପଧାରୀ ।
ଯେବଣ ଦିନରେ ଧାତା ପାର୍ବତୀ ବନେ ଗଲା
ଗୁପତ ହୋଇଣ ତହିଁ ଅନେକ ତପ କଲା ।
ସଙ୍ଗରେ ଶାଖା ତାର ଅନ୍ୟ ଯେ କେହି ନାହିଁ
ଏକାନ୍ତ ହୋଇଣ ତପ କରଇ ବିହି ତହିଁ ।
ରୀକ୍ଷ ନୃପତି ଖଡଗ ବାରତା ସେ ପାଇଲା
ବ୍ରହ୍ମାଙ୍କୁ ଯାଇଣ ସେ ଯେ ଅନେକ ତପକଲା ।
ଦକ୍ଷ ରାକ୍ଷସ ପଡ଼ି ବାନର ସେ ମୂରତି
ବନଜନ୍ତୁମାନଙ୍କର ଅଟେ ଆଦିପତି ।
କଶ୍ୟପର ଅଂଶେ ସେ ଯେ ଅଟଇ ଅବତାର
ମାତା ଗୁଣ ଘେନି ସେ ଯେ ହୋଇଲା ତତ୍‌ପର ।
ଉର୍ବଶୀକି ଦେଖି ଛାଡ଼ିଲା ସେ ଯେ ରେତ
ତଳେ ପକାଇଲା ସେ ଲଜ୍ୟା ଭାବି ଚିତ୍ତ ।
ମଦନା ଅପସରୀ ସେ ଯେ ସେକଥା ଦେଖିହସି
ତେଣୁ ଶତେ ହୋଇଲେ ତିନିଜଣ ମିଶି ।
ସେ କଥା ମନେ ଗୁଣି ବିଧାତା ସେ ସୁମରି
ସଂସାର ମାୟା ବୋଲି ହସିଲେ କୁଶଧାରୀ ।
ସେ କଥା ବାସବ ନାରୀ ଯେ ହାସ୍ୟ ମଣିଲା
ସୁନ୍ଦର ହସ ତାଙ୍କର ବିପରୀତ ମଣିଲା ।
ସେଠାରୁ ମଦନା ଯେ ଅପସରି ଗଲା
ସୁଧର୍ମା ସଭାତଳେ ପ୍ରବେଶ ହୋଇଲା ।
ସୁରପତିଙ୍କୁ ଦେଖିଣ ହାସ୍ୟ କଲା ନାରୀ
ଦେଖିଣ ସୁରପତି କ୍ରୋଧ ମନରେ ଧରି ।
କୋପକରି ଶାପ୍ୟ ଦେଲାକ ସୁରପତି
ମର୍କଟ ପରାଏ ମୁଖ ତୋର ହେଉରେ ଯୁବତୀ ।
କିମ୍ପା ତୁ ହସିଲୁ ଯେ କେବଣ ଗୁଣ ପାଇଁ
ଜାଣିଲି ଜ୍ଞାନ ଯେ ଗୋଚର ତୋର ନାହିଁ ।
ଏ ଦେବ ସ୍ୱଭାବେ ଅଟଇ ସିଂହାସନ
ତୁ ପୁଣି ହସିବାକୁ ହୋଇଲୁ ଭାଜନ ।
ପୂର୍ବରେ ବାନରୀ ତୁଯେ କାବେରୀ ବନେଥିଲୁ
ପାପନାଶିନୀ ଜଳରେ ଯାଇଣ ବୁଡ଼ିଲୁ ।

ସେ ତୀର୍ଥରେ ସ୍ନାନ କରନ୍ତେ ପାପ ଗଲା
ତେଣୁ ନିଜରୂପ ତୋର ପ୍ରକାଶ ହୋଇଲା ।
ଜାତି ନ ଛାଡ଼ିଲୁ ଏବେ ଗରବ ବହିଲୁ
ମୋହର ସୁଖବେଳେ ହାସ୍ୟ ଯେ ଆସିକଲୁ ।
ଯାଅ ଏଥର ବେଗେ ନିଜ ରୂପ ଧର
ବାନରୀ ସ୍ୱରୂପ ହେଉ ପ୍ରକାଶ ଯେ ତୋହର ।
ମାନସରୋବର କୂଳରେ ଯେ ତୁ ଥିବୁ
ହାସ୍ୟକଲା ଫଳ ତୁ ଯେ ନିଶ୍ଚୟ ପାଇବୁ ।
ଶୁଣିଣ ସୁନ୍ଦରୀ ସେ ଯେ ଯୋଡ଼ଇ ବେନିକର
ଏ ମୋହର ଦୋଷ ହୋଇଲା ବେଦବର ।
ଏଥକୁ ଅନୁକ୍ରମେ ପାଇଲି ମୁଁ ଗୋ ଶାସ୍ତି
ଏବେ ମୋହଠାରେ ଦୟା କର ହେ ସୁରପତି ।
ଶାପ୍ୟ ଦେଇ ମୋତେ ଯେ କଲେକ ଅଗତି
ଶାପ୍ୟରୁ ମୁକ୍ତ କଲେ ପାଇବି ମୁକତି ।
ଇନ୍ଦ୍ର ବୋଇଲେ ଦେବୀ ସମୟ ଭୋଗକର
ମୋକ୍ଷ ହୋଇଲା କାଳେ କଶ୍ୟପ ବୀର୍ଯ୍ୟଫଳ ।
ଜଳ ସଙ୍ଗତରେ ତୁ ଯେ ଅଜ୍ଞାନେ ପିଇବୁ
ଗର୍ଭବାସ ହୋଇଣ ତୁ ନିଜପୁରକୁ ଯିବୁ ।
ପୁତ୍ର ଉପୁଜାଇ ତୁ ନିଜସ୍ଥାନେ ଆସ
ଅପସରୀ ମୋକ୍ଷପାନ ହୋଇଣ ସ୍ୱର୍ଗେ ବସ ।
ତକ୍ଷଣେ ସୁନ୍ଦରୀ ରୂପ ଛାଡ଼ିଣ ବାନରୀ
ମାନ ସରୋବର କୂଳେ ମିଳିଲା ଯାଇକରି ।
ସମୟେକ ସେଥିରେ ଯାଇଣ ରହିଲା
କାଳେ ସରୋବରକୁ ସେ ଯେ ଜଳ ପିଇଗଲା ।
ମଦନ ଅପସରୀ ତୃଷାରେ ହୋଇ ଖର
ସରୋବର ନିକଟରେ ମିଳିଲା ଯାଇ ତର ।
କଶ୍ୟପ ଋଷିର ବୀର୍ଯ୍ୟ ସେଥିରେ ଥିଲା ରହି
ଜଳ ସଙ୍ଗେ ଭକ୍ଷନ୍ତେ ବାନରୀ ଗର୍ଭ ହୋଇ ।
ଗର୍ଭରେ ପ୍ରବେଶ ହୋନ୍ତେ ଧଇଲା ନିଜସ୍ଥାନ
ସେଦିନ ବାନରୀର ଅଟଇ ଋତୁସ୍ନାନ ।
ସେଥିସକାଶେ ମେନକା ଗର୍ଭ ଯେ ବାସହେଲା
କୂଳରେ ପ୍ରବେଶ ହୋନ୍ତେ ପୁତ୍ର ଜନମିଲା ।
କୁମର ଜାତକରି ସେ ଯେ ସ୍ୱର୍ଗପୁର ଗଲା
ପୂର୍ବର ବିଧାନେ ଯାଇ ଇନ୍ଦ୍ର ସେ ସେବିଲା ।
ଯେବଣ କୁମର ସେ ଯେ ଗଲାକ ଉପୁଜାଇ
କଶ୍ୟପ ବୀର୍ଯ୍ୟରୁ ଜାତ ସେ କୁମର ହୋଇ ।
ସୂର୍ଯ୍ୟର କିରଣ ଜିଣି ଶରୀର ବର୍ଦ୍ଧମାନ
ଆହାର କଲାକ ସେ ଯେ ମଳୟ ପବନ ।
[illegible] ଶବର ଶବରଣୀ ଯେ ପୁଣ
ସ୍ନାନ କରିବାକୁ ଚଳିଲେ ମାନସରୋବର ଜାଣ ।

ଶବର ଶବରଣୀ ଚଳନ୍ତେ ସେହି ସ୍ଥାନ
କର୍ଣ୍ଣପଥେ ଶୁଣିଲେ ବାଳକ ରୋଦନ ।
ଶବର ଶବରଣୀ ଦେଖିଲେ ତାକୁ ଯାଇ
ଉସତ ହୋଇଲେ ସେ ଯେ ପରମପୁତ୍ର ପାଇ ।
ଅପୁତ୍ରିକ ଅଟନ୍ତି ଯେ ପୁଣି ସେ ବେନିଜନ
କୁମର ଦେଖିବାର ପରମ ତୋଷମନ ।
ସେଠାରୁ ବେନିଜନ ଘେନିଣ ଚଳିଗଲେ
ବାନର ମୁଖଗୋଟି ନର ଶରୀରଧାରୀ ଭଲେ ।
ଅତି ଯତ୍ନରେ ସେ ଯେ ପାଳିଲେ ତାକୁ ନେଇ
ସମୟେ ପାଳିଲେ ପୁଣି ଆନନ୍ଦିତ ହୋଇ ।
କିଛିଦିନ ଅନ୍ତରେ କୁମର ନବଯୁବା
କଶ୍ୟପର ତେଜରେ ରୂପ ଦିଶେ ଶୋଭା ।
ହସ୍ତେ ଧନୁଶର ସେ ଘେନି ବୁଲେ ବନ
ତେଜରେ ପ୍ରତାପୀ ଯେ ହୋଇଲା ରାଜନ ।
ଦିନୁଦିନ ବଳରେ ଯେ ବଳବାନ ଅଟଇ
ଏକଦିନେ ବେଦବର ଅଇଲା ଯେ ଧାଇଁ ।
ଧାମକ ପଣ ଦେଖି ବ୍ରହ୍ମା ଅଭିଷେକ କଲେ
ରୀକ୍ଷ ନୃପତି ବୋଲିଣ ନାମ ତା ରଖିଲେ ।
ତହିଁ ସେ କୁମର ଅରଣ୍ୟେ ହେଲା ରାଜା
ବନଜୀବମାନେ ଯେ କଲେକ ପାଦପୂଜା ।
କେତେଦିନ ଅନ୍ତରରେ ସେ ଯେ ଜଗତପିତା
ପାର୍ବତୀ ବନକୁ ଗଲେ ମନରେ କରି ପୂଜା ।
ଏମନ୍ତ ସ୍ଥାନ ଦେଖି ବିଧାତା ତପ କଲା
ରୀକ୍ଷ ନୃପତିକି ବାରତା ବାନର ହସ୍ତେ ଦେଲା ।
ଶୁଣିଣ ନୃପବର ଯେ ମନ କରିଣ ଗଲା
ବେଦବର ଚରଣେ ଦର୍ଶନ ଯାଇ କଲା ।
ଦେଖିଲେ ପିତାମହ ହୋଇଲେ ସନ୍ତୋଷ
ଗଉରବ କରିଣ ତାକୁ ରୁହାଇଲା ପାଶ ।
ଫଳମୂଳ ପ୍ରତିଦିନ ରୀକ୍ଷକ ପତିଟି
ସେବା କରି ରହିଲେ ବିଧାତା ବରଣେଟି ।
ଦିନକେ ବେଦବର ରାଇଣ ତିଆରିଲା
ପଶ୍ଚିମ ଦିଗକୁ ନ ଯିବ ବୋଲିଣ ବୋଇଲା ।
ଉତ୍ତର ଦକ୍ଷିଣ ଦିଗକୁ ତୁରେ ଯିବୁ
କଶ୍ୟପର ନନ୍ଦନ ତୁରେ ମୋ ବୋଲ କରିବୁ ।
ଏଥୁଅନନ୍ତରେ ସେ ଯେ କେତେ ଦିନ ଯାଇ
ଧାତାକୁ ସେବା କରିଣ ନୃପତିପାଶେ ଥାଇ ।
ଫଳମୂଳ ବନରୁ ସେ ଆଣଇ ଖୋଜିକରି
ବିଧାତାର ପାଖରେ ଥାଇ ଯେ ଅନୁସରି ।
ଦିନେ କପିରାଜା ବିଚାର କରେ ମନେ
ଆପେ ଯେ ଧାତା ମୋତେ ପଶ୍ଚିମମନା ତେଣେ ।

କେବଣ କାରଣ ଯେ ଅଛଇ ଅବା କହି
ଅବଶ୍ୟ କଲେ ମୁଁ ଯେ ଦେଖିଣ ଜାଣିବଇଁ ।
ଏମନ୍ତ ବିଚାରି ମନେ ରାଜା ପଶ୍ଚିମଦିଗେ ଗଲା
ପାର୍ବତୀ ବନରେ ଯାଇ ପ୍ରବେଶ ହୋଇଲା ।
ମନେ ବିଚାରିଲା ଏହା କାହିଁପାଇଁ କଲି
ବିଧାତାର ବୋଲ ମୁଁ ଯେ ମେଣ୍ଟଣ ଅଇଲି ।
କେଉଁଆଡ଼େ ଯିବି ମୁଁ କରିବି ପୁଣି କିସ
କର୍ମରେ ଅଛି ପୁଣି ଏମନ୍ତ ଭବିଷ୍ୟ ।
ନିସଖା ହୋଇ ମରିବି ଯିବି ଯେ କିସ ପାଇଁ
କାହାର ମୁହଁ ଚାହିଁବି ଏଥିରୁ ମୁଁ ଯାଇ ।
ପୂର୍ବରୁ କାହାକୁ ମୁଁ ଯେ କେଉଁ ଦୋଷକଲି
ତହିଁର ଫଳ ମୁଁ ଯେ ଏଥିରେ ଭୋଗ କଲି ।
କେ ମୋତେ ରକ୍ଷାକରିବ ଏଥେ ବୋଲି
ବିଧାତାର ବୋଲ ଭାଙ୍ଗିଣ ଅଇଲି ।
କେମନ୍ତେ ଜାଣେ ବିଧାତା ମୋର ଅବସ୍ଥା
କେ ଯାଇ ଦଇବକୁ କହିବ ଏ ବାରତା ।
ଏମନ୍ତ ବିଚାରି ରାଜା କରଇ ରୋଦନ
ନୟନୁ ଅଶ୍ରୁଜଳ ବହଇ ଘନଘନ ।
କେବଣ ବିପୁଣ୍ୟ ଯେ କାହାର ସେ ରହିଲା
ଏ ବନେ ପୁରୁଷ ସ୍ତିରୀ ହୁଅନ୍ତି ପାଞ୍ଚିଲା ।
ଏତକ ବିଚାରି ସେ ଯେ ଭାବିଲାକ ବସି
ବିଷାଦ ଚିତ୍ତରେ ଭୂମିରେ ମଥା ପୋତେ ବସି ।
ପାର୍ବତୀ ବୋଇଲେ ଦେବ ଶୁଣ ହେ ଈଶାନ
କଶ୍ୟପଠାରୁ ଜାତ ଯେ ଖଡ଼୍‌ଗଦ ରାଜନ ।
ସେ ଖଡ଼୍‌ଗ ରାଜାକୁ ଶବରୁଣୀ ପାଳି
କଶ୍ୟପର ବୀର୍ଯ୍ୟରେ ହୋଇଲା ମହାବାଳୀ ।
ତେଣୁ ସେ ବନରେ ବିଧାତା ରାଜା କଲା
ବିଧାତା କହିବା କଥା ଆନ ନୃପତି କଲା ।
ବାନର ଭାଲୁଠାରୁ ହେଲା ମହାବଳୀ
ତେଣୁ ସେ ବାନରେଶ୍ୱର ବୋଲାଏ ନୃପତି ।
ବିଧାତାର ବଚନକୁ କିମତ ପ୍ରାୟେ ମଣି
ତେଣୁ ଏ ଦଶା ଲଭେ ବାନର ଶୂର ପୁଣି ।
ସେଠାରୁ କିସ ହେଲା କହ ହେ ବୁଝାଇ
ଈଶ୍ୱର ବୋଇଲେ ତୁମ୍ଭେ ଶୁଣରେ ପ୍ରାଣସହୀ ।
ସେଠାରୁ ଶ୍ରୀରାମ ଯେ ସୁଗ୍ରୀବକୁ ପଚାରିଲେ
ସେ ବନରେ ବାନର ନୃପତି କିସ କଲେ ।
ସୁଗ୍ରୀବର ବୋଇଲା ସେ ବନରେ ଯେ ସେହୁ
ମଥାପୋତି ରୋଦନ କରେ ବାନର ଶୂର ତହୁଁ ।
ଏସନକ ସମୟେ ବାସବ ସେ ଆଦିତ୍ୟ
ବ୍ରହ୍ମାର ଦର୍ଶନେ ସେ ଯେ ଚଳଇ ତୁରିତ ।

ଅତି ଉତ୍ସବରେ ଗଗନେ ସେ ଚଳନ୍ତି
ଯେ ଯାହା ବାହନ ସେ ଚଢ଼ିଣ ବିକ୍ରମନ୍ତି ।
ଶୂନ୍ୟରେ ଚଳିଯାନ୍ତେ ତଳକୁ ସେ ଦୃଷ୍ଟିଦେଲେ
ଋକ୍ଷପତିକି ଦେଖିଣ ଆନନ୍ଦ ସେ ଯେ ହେଲେ ।
ପାର୍ବତୀ ସଦୃଶ ତାହାର ସ୍ୱରୂପତ
ଦେଖିଲେ କନ୍ଦର୍ପ ପୁଣ ନ ରହେ ସମ୍ଭାଳିତ ।
ସୁବର୍ଣ୍ଣ କୁମ୍ଭ ପ୍ରାୟେକ ବେନି ଯେ ଯଉବନ
ଜାନୁ ଯୁଗଳ ଦେଖିଣ ଦେବତା ହେଲେ ଛନ୍ନ ।
ଚାହିଁଣ ଆଦିତ୍ୟ ଯେ ଇନ୍ଦ୍ରତ ମୋହ ଯାଇ
କାମଭର ହୋଇ ବୀର୍ଯ୍ୟ ଯେ ଉଚ୍ଛୁଳଇ ।
ଉଚ୍ଛୁଳିଣ ବୀର୍ଯ୍ୟ ଯେ ପଡ଼ିଲା ଭୂମିତଳେ
ବେନି ଦେବତାର ବୀର୍ଯ୍ୟ ପଡ଼ିଲା ଏକାବେଳେ ।
ଇନ୍ଦ୍ରର ବୀର୍ଯ୍ୟ ଯେ ନୃପତି ବାଳେ ପଡ଼ି
ଶରୀରୁ ଯାଇଣ ସୂର୍ଯ୍ୟର ବକ୍ଷସ୍ଥଳି ।
ଏଠାରେ ବେନିଜନ ବୀର୍ଯ୍ୟ ତେଜ୍ୟାକଲେ
ଲୋକାଲୋକି ଗିରିପରେ ବ୍ରହ୍ମାଙ୍କୁ ଭେଟିଲେ ।
ଲୋକନାଥ ବୋଲି ବ୍ରହ୍ମା ପାଷାଣରୁଦ୍ର ଥୋଇ
ପୂଜାକଲେ ଧାତା ଯେ ବିନୟ ଭାବ ହୋଇ ।
ପାରେଶ୍ୱର ବୋଲିଣ ଏକଇ ବିଷ୍ଣୁଶିଳା
ଏ କଷଣୁ ପାରିକର ବୋଲିଣ କହେ ପରା ।
ଶିବରେ କୋପକରି ଛେଦିଲେ ମୋର ଶିର
ମୋହକଥା ଏବେ ଯେ ନୋହିଲା ନିଶ୍ଚଳ ।
ତେଣୁ ମୁଁ ସେବା କରେ ପ୍ରସନ୍ନ ମୋତେ ହୁଅ
ବିପତ୍ତି ବିନାଶନ ବୋଲାଅ କମଳାର ପ୍ରିୟ ।
ଏବେ ଶଙ୍କର ବୋଇଲେ ବ୍ରହ୍ମହତ୍ୟା ଦୋଷ
ମୋତେ ସର୍ବଦେବ ଯେ କରିବେ ପାରିହାସ୍ୟ ।
ଏସନକ ବୋଲିଣ କରଇ ସେ ଜଣାଣ
ପ୍ରସନ୍ନ ହୋଇଲେ ତେଣୁ ବିଷ୍ଣୁ ଯେ ଶିଳା ପୁଣ ।
ବୋଇଲେ ବେଦବର ଅନ୍ୟାୟ ତୁ ଯେ କଲୁ
ଗରବରେ ପଦ୍ମମୁଖ ତୋହର ଜାତକଲୁ ।
ଜାଣୁ ତ ଈଶ୍ୱରର ଅଟଇ ପଦ୍ମମୁଖ
ତୋତେ ଦେଖି ଈଶ୍ୱରକୁ ଲାଗିଲା ବଡ଼ ଦୁଃଖ ।
ବିଚାରିଲା ମୋର ପଦ ନେବ ଏ ନିଶ୍ଚୟେ
ତେଣୁ କୋପାନଳ ମୂର୍ତ୍ତି ତ୍ରିଲୋଚନ ହୁଏ ।
ବାମ କରେ ତୋହର ମୁଣ୍ଡ ଛେଦି
ଉଦେ ହେଲା ଶିରକୁ ରଖିଲେ ବିବୁଧି ।
ଆରବେଳେ ଶିବରେ ତୁ ଯେ ନୋହିବୁଗର୍ବିତ
ଗର୍ବିତ ହେଲେ ଶରୀର ହୋଇବସେ ଗର୍ବିତ ।
ଏବେ ତିନିପୁରେ ନ ପାଇବୁ ପୂଜା
କେହି ନ ଭାବିବେ ତୋତେ ହୋଇବ ରହିତୁଜା ।

ଶିବ ନାରାୟଣ ସେ ସକଳ ସ୍ଥାନେ ମାନି
ଶୁଣିଣ ବ୍ରହ୍ମାର ଗର୍ବ ଯେ ଗଲା ପୁଣି ।
ଏଥୁଅନନ୍ତରେ ଶୁଣ ହେ ରାମରାଣ
ଇନ୍ଦ୍ର ଯେ ଆଦିତ୍ୟ ଲୋକାଲୋକରେ ମିଳେ ପୁଣ ।
ବ୍ରହ୍ମାକୁ ଯାଇଣ ଦର୍ଶନ ବେଗେ କଲେ
ମାନ୍ୟଧର୍ମ କରିସେ ଯେ ଆଗରେ ଛିଡ଼ାହେଲେ ।
ତିନିଦେବେ ସେ ସ୍ଥାନେ କୁଶଳ ପୃଚ୍ଛାପୁଛିହୋତି
ନାନା କଥାମାନ ଯେ ବିଚାରକ ସେ କରନ୍ତି ।
କେତେବେଳେ ତାଙ୍କର ସରିଲା ଭାଳେଣି
ବାହୁଡି ଗଲେ ପୁଣି ଦୀନ ଇନ୍ଦ୍ରମଣି ।
ପାର୍ବତୀ ବନରେ ସେ ଯେ ଦେଖିଲେ ଯାଇ
ବେନିପୁତ୍ରେ ଖେଳୁଛନ୍ତି ଯୁବତୀ ସଙ୍ଗେ ରହି ।
ଆଶ୍ଚର୍ଯ୍ୟହୋଇଣ ସେଯେବାହୁଡି ବେଗେ ଗଲେ
କୁଶପାଣି ଛାମୁରେ ଯାଇଣ ମିଳିଲେ ।
ବେନି ଦେବଙ୍କୁ ଦେଖି ପୃଚ୍ଛା କରନ୍ତି
ପଦ୍ମଯୋନି କିମ୍ପାଇ ଲେଉଟିଲ ଭାଷନ୍ତି ।
କର ଯୋଡ଼ିଣ ବୋଲନ୍ତି ବେନି ଦେବ
ଯୁବତୀଏ ଦେଖିଲୁ ଯେ ହୋଇଛି ଅସମ୍ଭବ ।
ଭୋ ପିତାମହ ତୁମ୍ଭେ ଶୁଣ ହେ ସେହିକଥା
ପଛରେ ଦେଖିଲୁ ଆମ୍ଭେ ଏକଇ ବନିତା ।
ହେଠମାଥ ହୋଇଣ ଅଛଇ ନର ବସି
ଆସିଲାବେଳକୁ ଆମ୍ଭେ ଦେଖିଲୁ ତାହାକୁଟି ।
ତୁମ୍ଭର ଆଗରେ ତାହା ନ କହିଲୁ ପୁଣି
ଭ୍ରାନ୍ତିମନେ ଲାଗିଲା ଶୁଣହେ କୁଶପାଣି ।
ଏବେ ଯେ ବାହୁଡିଣ ଯାଆନ୍ତେ ସେହି ପଥ
ଦେଖିଲୁ ଯୁବତୀକି ପାର୍ବତୀ ବନସ୍ଥେ ତ ।
ବାଳକ ବେନିଗୋଟି ତା ପାଶରେ ଖେଳେ
ତାହାକୁ ଦେଖି ଅମ୍ଭେ ଲେଉଟି ଯେବେଳେ ।
ଜନଜନ୍ତୁ ସେଥିରେ ଆଉ ଯେ କେହି ନାହିଁ
କେବଣ ପ୍ରକାର ନାରୀ ସେ ବନରେ ରହି ।
ଶୁଣିଣ ବିଧାତା ଯେ ଜଗଇ ବେଳ ଘେନି
ଜାଣିଲେ କୁଶପାଣି ସେ କଥାକୁ ଶୁଣି ।
ହସିଣ ବୋଇଲେ ସେ ଯେ ନୁହଇ ତରୁଣୀ
କମ୍ୟ ପରଶୁ ଯେ ମଦନା ଅଂଶେ ଜନ୍ମି ।
ବାନର ସୁର ନୃପତି ଯେ ପଶ୍ଚିମ ବନେଗଲା
ପାର୍ବତୀ ବନେ ଯୁବତୀ ସେ ଯେ ହେଲା ।
ଆଗେ ମୁଁ ତିଆରିଲି ଅନେକ ଯତ୍ନ କରି
ମୋର କଥା ନ ମାନି ସେ ଗଲା ଦଣ୍ଡଧାରୀ ।
ବେନି ପୁତ୍ର ଖେଳେ ବୋଲି ଯାହା ଦେଖିଲଟି
ସେ ବେନି ତୁମ୍ଭ ପୁତ୍ର ଅଟନ୍ତି ସେ ପ୍ରକାରଟି ।

ଇନ୍ଦ୍ର ଯେ ଆଦିତ୍ୟବୋଲେ ବ୍ରହ୍ମାର ବଚନେ
ତୁମ୍ଭର ଆଗରେ ଯେ କଥା କହିଲୁ ଯେ ଏଣେ ।
ଆସିବାର ବେଳରେ ଦେଖିଲୁ ଯେ ଏକନାରୀ
ଏବେ ବେନିପୁତ୍ର ପାଶରେ ତାରଛନ୍ତି ମିଳି ।
ମର୍କଟ ମୁଖ ସେ ଯେ ନରଙ୍କର ବିପରୀତ
ଅତି ସୁକୁମାର ଯେ ଅଟନ୍ତି ସେ ସୁତ ।
ଆସ ଆସ ପିତାମହ ଦେଖିବା ତାକୁ ଯାଇ
ଶୁଣିଣ ପିତାମହ ଗଲେ ମେଳ ହୋଇ ।
ଆଦିତ୍ୟ ବାସବ ଯେ ଏମନ୍ତେ ତିନିଜଣ
ପ୍ରବେଶ ହୋଇଲେ ପାର୍ବତୀର ବନ ।
ଭୟ କରିଣ ସେ ଯେ ବନେ ନ ଗଲେ
ଗଗନମାର୍ଗେ ଥାଇ ବଚନ ସେ କହିଲେ ।
ଦେବଇନ୍ଦ୍ର ବୋଇଲେ ଶୁଣରେ ଯୁବତୀ
ମୋହର ବୀର୍ଯ୍ୟରୁ ଯେଉଁ କୁମର ଉପତ୍ତି ।
ସେ କୁମରଗୋଟି ବଳବନ୍ତ ହୋଇବ
ଖଡଗେ ନ ଛିଡିବ ଅଗ୍ନିରେ ନ ପୋଡିବ ।
ନିୟତି ପୂରିବ ଯେବେ ଅଧର୍ମ କରିବ
ତିନିପୁର ଜିଣିବ ବଳରେ ବଳବନ୍ତ ଯୋଦ୍ଧା ।
ଇନ୍ଦ୍ରସ୍ୱର୍ଗ ଯିବା ଆଦିତ୍ୟ ଦେବ କହି
ମୋର ବୀର୍ଯ୍ୟେ ଯେଉଁ ପୁତ୍ର ଜନ୍ମ ଥିଲା ହୋଇ
ସେ କୁମର ଗୋଟି ମୋର ବିଷ୍ଣୁର ଭକତ
ସ୍ୱୟଂ ନାରାୟଣ ତାହାକୁ ଦୟାଗତ ।
ଅସୁର ମାରିବାକୁ ଶ୍ରୀହରି ଜାତ ହେବେ
ଏକ ମୂର୍ତ୍ତିରୁ ଚତୁର୍ଥା ଗୁପ୍ତ ଯେ ସମ୍ଭବିବେ ।
ରାମ ଅବତାରେ ଯେ ରାବଣ ମାରିବାକୁ
ଶ୍ରୀରାମ ଲକ୍ଷ୍ମଣ ଭେଟିବେ ଏ ମୋର କୁମରଙ୍କୁ
ସେ ରାମ ହସ୍ତରେ ନାରୀ ବାସବ କୁମର ।
ଆଗହୁଁ ଅଧର୍ମ କରିଥିବେ ସେ ଅପାର ।
ଏତେ କହି ରବି ସ୍ୱର୍ଗପୁରେ ଗଲେ
ଏକା ବେଦବର ସେ ସ୍ଥାନେ ରହିଲେ ।
ଶୂନ୍ୟରେ ଥାଇ ବ୍ରହ୍ମା ବୋଇଲେ ଋକ୍ଷରାଜ
ମୋର ବୋଲ ନ କରିଲୁ ଏବେ ଆଶ୍ରା ହେଜ ।
ଏବେ ପୁତ୍ର ବେନି ଘେନିଣ ବେଗେ ଆସତ
ସେ ବନକୁ ମୁହିଁ ନ ଯିବି କହିଲିତ ।
ପୂର୍ବମୁଖ ହୋଇ ଆସନରେ ନୃପଧାରୀ
ମୁଁ ତୋତେ ଦେଖିଲି କରିବି ଏଥିପାରି ।
ଶୁଣିଣ ଋକ୍ଷ୍ୟଗ୍ର ଏବେ ଯେ ପୁତ୍ର ଘେନି
ଲୋକାଲୋକ ପର୍ବତକୁ ବେଗେ ସେ ଗଲାପୁଣି ।
ତାକୁ ବେଦବର ସେ ଭାବରେ କହି
ଆମ୍ଭ ବୋଲ ନ ମାନିବାରୁ ସ୍ତ୍ରୀରୂପ ହେଲୁତୁହି ।

ଋକ୍ଷ୍ୟରାଜ କରଯୋଡ଼ିଚରଣେ ଶୁଅଇ
ଜନ୍ମରୁ ପାରି ମୋତେ କର ବେଦବର ତୁହି ।
ଶୁଣିଣ ବେଦବର ଯୁବତୀରେ ଯେ କହି
ଆମ୍ଭର ବୋଲ କଲେ ଏ କଷ୍ଟରୁ ପାରିହୋଇ ।
ରୀକ୍ଷ ନୃପତିଙ୍କୁ କହି ବେଦବର ବହ
ଅଜ୍ଞାନରେ ଗଲୁ ଯେ ନାହିଁ ତୋହର ଦ୍ରୋହ ।
ତିଆରିଲା ବୋଲ ମୋର ମେଣ୍ଟିଣ ଗଲା
ତହିଁର ଫଳ ଏବେ ସାକ୍ଷାତେ ପାଇଲା ।
ମୋତେ ଆଗ ସେବା ଯେ କଲୁ ଋକ୍ଷନାଥ
ତେଣୁ ସେ ଅଜ୍ଞାନ ତୋର ହରିବି ଯଥାର୍ଥ ।
ଏବେ ମୋର ବୋଲ ପୂର୍ବର ରୂପ ଧର
ତକ୍ଷଣେ ଖଡ଼ଗର ଯୁବତୀ ରୂପ ଦୂର ।
ଋକ୍ଷ କପିକୁ ଚାହିଁ ବୋଇଲେ ବେଦବର
ଇନ୍ଦ୍ର ସେ ବୀର୍ଯ୍ୟ ତୋର ପଡ଼ିଲା ବାନର ।
ତେଣୁ ସେ ବାଳୀନାମ ହେଉ ସେ ତାହାର
ପିତା ଦେଲା ବର ଯେ ପ୍ରାପ୍ତ ଏ ନାରୀର ।
ଦୀନକର ବୀର୍ଯ୍ୟ ଯେ ତାର ଉପରେ ପଡ଼ିଲା
ସେ ବୀର୍ଯ୍ୟରୁ ସାନପୁତ୍ର ତୋହର ହୋଇଲା ।
ତକ୍ଷଣେ ବେନିପୁତ୍ର ହୋଇଲେ ତୋର ଜାତ
ଶୁଣିଣ ତୋଷ ହେଲେ କଶ୍ୟପର ସୁତ ।
ଆଦିତ୍ୟ ବାସବର ତୋ ମୁଖକୁ ଚାହିଁ ହସି
ସଙ୍କୋଚରେ ତୁହି ମଥା ପୋତି ବସି ।
ଏବେ ତୋର ସୁଫଳ ହୋଇଲା ଆସିଣ ଦିନ
ଆଜିଠାରୁ ତୋର କଷ୍ଟ ଗଲା ପୁଣ ।
କିଷ୍କିନ୍ଧ୍ୟା କଟକେ ଏ ଅଧିପତି ହୋଇବ
ଋକ୍ଷ ମର୍କଟ ଏହାଙ୍କର ପଦରେ ଖଟିବ ।
ତୋ ଖଡ଼ଗ ନ ଫେରିବ ଯେ କିଷିନ୍ଧ୍ୟାରରାଏ
କର୍ମହୀନ ଯେ ତୋର ନୋହିଲା ତନୟେ ।
ପୂର୍ବେ ତୋହର ପାଇଁ ଯେ ଅଛଇ ମୁହିଁ କହି
ଏବେ ଏ ପୁତ୍ରକୁ ତୁ ଯେ ସମ୍ଭାଳ ନେଇ ।
ତୁ ରାଜା ପଶିଲୁ ପାର୍ବତୀ ବନେ ଯାଇ
ଯୋଗେ ଜାତ ହୋଇଲେ ଏ ନନ୍ଦନେ ଦୁଇ ।
କାନନରେ ବେନିଜନ ଯେ ବହୁଲୀଳା କଲେ
ବିନୋଦନ ସରିଲାରୁ ପାର୍ବତୀ ବୋଇଲେ ।
ସେହିକ୍ଷଣି ଯୁବତୀ ସ୍ୱରୂପ ସେ ହୋଇବ
ଏ ମୋହର ବଚନ ଯେ ଅନ୍ୟଥା ନୋହିବ ।
ଏ ବଚନ ଅନ୍ୟଥା କେବେ ଜାଣ ନୋହୁ
ଏତେ ବୋଲି କପିଳାସ ଗଲେ ସେହୁ ।
ସେ କାଳର କଥା ଅଛଇ ଏବେ ରହି
ଈଶ୍ୱର ପାର୍ବତୀ ଆଜ୍ଞା ମେଣ୍ଟିବ ପୁଣ ତ କହି ।

ତେଣୁ ତୁ ରୀକ୍ଷ ରୀକ୍ଷ ରାୟ ହେଲୁ ଯୁବତୀ
ମୋହରି ପ୍ରସନ୍ନରେ ଫିଟିଲା ତୋର ଦୁର୍ଗତି ।
ଏବେ ସେ ବନର କତିକି ତୁ ନ ଯିବୁ
ଏ ମୋହର ବଚନ ଯେ ପ୍ରତିପାଳିଥିବୁ ।
ଏ ପୁତ୍ର ବେନିକୁ ବେଗ ତୁ ଘେନିଆସ
ଦଣ୍ଡକା ଅରଣ୍ୟରେ ଛାଡ଼ିଣ ତୁ ଆସ ।
ଏହି ଦଣ୍ଡକାରେ ହୋଇବ ନୃପବର
ପୁରାଣେ କୀରତି ଯେ ରହିବ ଏହାଙ୍କର ।
ଆଦିତ୍ୟ ଇନ୍ଦ୍ର ଯେ ହେଲେ ପିତାମାତା
ଏମନ୍ତ ବଚନ ଯେ କହେ ପୁଣି ବିଧାତା ।
ଅସମୟ କାଳରେ ଏ ପୁତ୍ରକୁ ଯେ ପୁଣି
ଇନ୍ଦ୍ର ଆଦିତ୍ୟ କରିବେକ ଜାଣ ।
ଏହାଙ୍କରେ ଦେବକାର୍ଯ୍ୟ ହୋଇବ ବହୁତ
ନିଜ ସ୍ଥାନକୁ ଆମ୍ଭର ବୋଲେତ ।
କୁଶପାଣିଠାରୁ ଶୁଣି ଖଡଗ ନୃପତି
ନମସ୍କାର କରିଣ ଉଠିଲା ଝଟତି ।
ରୀକ୍ଷ ରାୟ ଦଣ୍ଡକା ଅରଣ୍ୟେ ଚଳିଗଲା
ସଙ୍ଗତରେ ବେନିପୁତ୍ର ଘେନି କଶ୍ୟପର ବଳା ।
ଗୌତମ ଋଷିଙ୍କ ମଢ଼ିଆ ନିକଟେ
ଗୋଦାବରୀ କୂଳକୁ ଯେବଣଇଁ ବାଟେ ।
ମଢ଼ିଆର ନିକଟେ ପ୍ରବେଶ ଯାଇଣ
ସେଠାରେ ଗୁପତ କଥା ମନରେ ବିଚାରିଣ ।
ଏଠାରେ ଋଷି ନ ଜାଣି ପୁତ୍ର ଛାଡ଼ିଯିବି
ପଶ୍ଚାତେ ଆସି ପୁଣି ଋଷିଙ୍କଠାରୁ ନେବି ।
କୋମଳ ପତ୍ର ପାରିଣ ଶୁଆଏ ବେନିପୁତ୍ର
ସେଠାରୁ ବାହୁଡି ଯେ ଇଲା ତ୍ୱରିତ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋର ବାଣୀ
କଥାର ପରମସନ୍ଧି ରହିଲାକ ଦେବ ପୁଣି ।
ରୁକ୍ଷ କପି ରାଜା ଯେ ମୋହର ବନେ ଗଲା
ନ ଜାଣିବା ପଣରେ ଯୁବତୀ ଗୋଟି ହେଲା ।
ବେଦବର କହିବାରୁ ନିର୍ଜନେ ଦେହ ପାଇ
ଇନ୍ଦ୍ର ଆଦିତ୍ୟ ବୀର୍ଯ୍ୟ ଯେ ବାନରରୂପ ହୋଇ ।
ସେ କିମ୍ପା ଯୁବତୀ ନୋହିଲେ ସେ ବନରେ
ଦେବତାଏ ଡରିଣ ନ ଆସେ ଏ ବନରେ ।
ସେ କଥା ଦେବ ମୋତେ କହ ହେ ବୁଝାଇ
ଶୁଣିଲେ ମୋର ମନ ସନ୍ତୋଷ ହେବଇଁ ।
ଶୁଣିଣ ସଦାଶିବ କହିଲେ ହରଷେ
ଶୁଣ ଗୋ ଭଗବତୀ ସେ କଥା ବିଶେଷେ ।
ଶ୍ରୀରାମ ଆଗରେ ତାହା ସୁଗ୍ରୀବର କହି
ସେଠାରେ ଶ୍ରୀରାମ ଯେ ସୁଗ୍ରୀବକୁ ପଚାରଇ ।

ବୋଇଲେ କୁମର କିମ୍ବା ବାଳିକା ନୋହିଲେ
ସେ ବନରେ କିମ୍ବା ପୁରୁଷ ଦେହ ଧରିଲେ ।
ଏ କଥା ପ୍ରମାଣିତ ନୋହିଲା ସେ ବନର
ପାର୍ବତୀ କଥା କିମ୍ବା ହୋଇଲା ଅନ୍ତର ।
ଯୋନିରୁ ଜନ୍ମ ନୋହିବାରୁ ନୋହେ ସ୍ତିରୀ
ଦେବକାର୍ଯ୍ୟ ନିମନ୍ତେ ବୀର୍ଯ୍ୟ ଯେ ରୂପ ଧରି ।
ପୂର୍ବର ଅନୁକ୍ରମେ ଦେବତା ସେଥି ଗଲେ
ମାୟା ସ୍ତିରୀ ଦେଖିଣ ବୀର୍ଯ୍ୟ ସେଠି ଦେଲେ ।
ଏଣେ ଦେବକାର୍ଯ୍ୟ ତେଣେ ଅଜ୍ଞାନ ଏକାଳ
ସେଥି ସକାଶେ ପୁଣ ନୋହିଲା ଶାପ୍ୟଫଳ ।
ଯେତେବେଳେ ପାର୍ବତୀ ସେ ବନକୁ ଯେ କହି
ଜ୍ଞାନୀବନ୍ତ ଲୋକ ଯେ ଯୁବତୀ ରୂପ ହୋଇ ।
ଅଜ୍ଞାନେ ଯେଉଁ ଜୀବ ଏଥିରେ ହେବ ଜାତ
ତାହାଙ୍କୁ ଶାପ୍ୟ ମୋର ନୋହିବ ପ୍ରାପତ ।
ସେ ବୀର୍ଯ୍ୟ ସ୍ତିରୀଅଙ୍ଗ କେବେହେଁ ନୋହିବ
ଅଜ୍ଞାନ ବୀର୍ଯ୍ୟ ପୁଣି ପୁରୁଷ ରୂପ ହେବ ।
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ହୋଇଲେ
ପୂର୍ବରେ ପାର୍ବତୀ କହି ଅଛନ୍ତି ବୋଇଲେ ।
ସେ ଶ୍ରୀରାମ ଚରଣେ ବର୍ଣ୍ଣେ ରାମଦାସ
ଶରଣ ପଶିଲା ସେ ଯେ କରିଣ ତାକୁ ଆଶ ।
ସେହି ରାମ ଲକ୍ଷ୍ମଣ କଳି ଯୁଗରେ ପୁଣ
ନୀଳଗିରିରେ ବିଜେ କରି ଅଛନ୍ତି ଜାଣ ।
ଜଗନ୍ନାଥ ଠାକୁର ବଡ଼ ଯେ ବେନିମୂର୍ତ୍ତି
ମଧରେ ଜାନକୀ ସୁଭଦ୍ରା ରୂପେ ସ୍ଥିତି ।
ଏଥୁ ଅନନ୍ତରେ ପାର୍ବତୀ ଦେବୀ କହି
ଶ୍ରୀରାମ ଆଗରେ ସୁଗ୍ରୀ କେମନ୍ତେ ଭ୍ରମଇ ।
ସେ କଥା ମୋର ଆଗେ କହ ତ୍ରିଲୋଚନ
ଶୁଣିଣ ସଦାଶିବ କହନ୍ତି ବଚନ ।
ସେଠାରେ ଶ୍ରୀରାମ ସେ ସୁଗ୍ରୀକୁ ପଚାରି
ସେ ବେନି କୁମର ଯେ ଜନ୍ମ ହୋଇ ଖେଳି ।
ଗୌତମ ଆଶ୍ରମକୁ ପିତା ଯେ ଘେନିଗଲା
କୋମଳ ପତ୍ର ତୋଳିଣ ସେଠାରେ ଶୁଆଇଲା ।
ଏ କଥା ମୋତେ ଶୁଣି ଅସମ୍ଭବ ଲାଗି
ଶୁଣିଣ ସୁଗ୍ରୀବର କହଇ ପୁଣି ବେଗି ।
ଶୁଣିଣ ରଘୁନାଥ ସେଥିର ସନ୍ଧି କଥା
ଯେତେବେଳେ ବିଧାତା କହିଲା ସେ ବ୍ୟବସ୍ଥା ।
ସେତେବେଳେ ଖଡ୍‌ଗ ନୃପତି କହେ ବାଣୀ
ଏ ବେନି କୁମରଙ୍କର ଚାଳିବାର ଯେ ପୁଣି ।
ତେଣୁ ବେଦବର ଖଡ୍‌ଗେ ଆଜ୍ଞା ଦେଲା
ଗୌତମ ଆଶ୍ରମରେ ମିଳିବୁ ବୋଇଲା ।

ତେତେବେଳେ ବେନିକାଳ ହୋଇବେ ଅଜ୍ଞାନ
ବୃକ୍ଷମୂଳେ ଶୁଆଇବୁ ନ ଜାଣେ ମୁନି ପୁଣ ।
ତୁ ଅଇଲେ ସେ ମୁନି ଯେ ତାଙ୍କୁ ଘେନିଯିବେ
ଉତ୍ତମ କରିଣ ତାଙ୍କୁ ଯେ ପାଳିବେ ।
ଶୁଣିଣ ନୃପତି ଯେ ବେଗେ ଚଳିଗଲା
ଗୌତମ ଆଶ୍ରମରେ ନେଇଣ ଶୁଆଇଲା ।
ବେଦବର ଛାମୁରେହୋଇଲା ପ୍ରବେଶ
ଶୁଣିଣ ଶ୍ରୀରାମ ଯେ ମନରେ ହରଷ ।
ଏଥୁ ଅନନ୍ତରେ ଦେବୀ ଶୁଣ ଗୋ ପାର୍ବତୀ
ଶ୍ରୀରାମ ଆଗେ ସୁଗ୍ରୀ ପୂର୍ବ ବିଧି କହନ୍ତି ।
ବେନି ପୁତ୍ରଙ୍କୁ ଖଡ୍‌ଗ ନୃପତି ଶୁଆଇ ଗଲା
ନଦୀକୁ ଆସନ୍ତି ଋଷି ବାଟରେ ସେ ଦେଖିଲା ।
ଜଳ ଘେନିକରି ଋଷି ଗଲେ ନିଜ ସ୍ଥାନ
କିଛି ନ କହିଲେ ସେ ଘରଣୀ ଆଗେ ପୁଣ ।
ମୁନି ଆସିବାରୁ ଚଳିଲା ଶୁଭ୍ରକେଶୀ
ବାଟରେ ଯାଉ ଯାଉ ଭେଟିଲା ସେ ବେନିଶିଶି ।
ବାହୁଡିଣ ମୁନି ଛାମୁରେ କହେ ଯାଇ
ଅପୂର୍ବ କଥାଗୋଟି ଶୁଣହେ ଗୋସାଇଁ ।
ମଣିଷ ଶରୀର ଯେ ମର୍କଟ ବଦନ
ବୃକ୍ଷମୂଳେ ଶୋଇ ଅଛନ୍ତି ଦେଖିଣ ।
ଶୁଣି ମହାମୁନି ଅହଲ୍ୟା ସଙ୍ଗେ ଘେନି
ବେନିଜନ ଗମନ କଲେକ ପୁଣି ।
ଖଣ୍ଡେ ଦୂର ଯାନ୍ତେ ଦେଖନ୍ତେ ପୁତ୍ର ବେନି
କୋମଳ ପତ୍ରେ ଶୋଇଛନ୍ତି ପୁଣି ।
ମୁନି ବିଚାରିଲେ ଏ ଯେ କେବଣ ପ୍ରକାର
ମୁଖଗୋଟି ମର୍କଟ ମନୁଷ୍ୟ ଶରୀର ।
ଏମନ୍ତ ଅପୂର୍ବରୂପ ଦେଖିଲତ ନାହିଁ
ଏତେ ବୋଲି ଧ୍ୟାନରେ ବସିଲେକ ଯାଇଁ ।
ଯୋଗରେ ଜାଣିଲେ ତ ଅଯୋନି ସମ୍ଭୂତ
ଇନ୍ଦ୍ର ଆଦିତ୍ୟ ଋକ୍ଷ କପି ମାତ ।
ବେଦବର ଆଜ୍ଞାରେ ସେ ଏଥିରେ ଥୋଇଗଲା
ଦେବକାର୍ଯ୍ୟ ନିମନ୍ତେ ବେଦବର ବିଚାରିଲା ।
ପ୍ରଚ୍ଛନ୍ନେ ଖଡ୍‌ଗ ନୃପତି ଆସି ନେଇ
ବେନି ବାଳକେ ହୋଇବେ କିଷ୍କନ୍ଧ୍ୟାର ସାଇଁ ।
ଅହଲ୍ୟା ଛାମୁରେ କହିଲେ ମହାଯତି
ଶୁଣିଣ ବୋଇଲେ ସେ ଯେ ସନନ୍ତେ ଦୁହିତୀ ।
ଭୋ ମୁନି ବେନି ପୁତ୍ର ସମ୍ଭାଳିବା ନେଇ
ପଛେ ହୁଅନ୍ତୁ ଯାଇ କିଷ୍କିନ୍ଧ୍ୟାର ସାଇଁ ।
ମନରେ ସରାଗ ହୋଇ ଅଇଲା ତରୁଣୀ
ଆଣିଲେ ବେନିପୁତ୍ର ପାଳିଲେ ସେ ପୁଣି ।

ଏମନ୍ତେ ତିନିବର୍ଷ ସେଠାରେ ଚଳିଗଲା
ବାଳକଙ୍କ ତେଜ ଯେ ପ୍ରବଳ ହୋଇଲା ।
ଆଦିତ୍ୟ ବାସବ ପ୍ରାୟେ ସେ ଦିଶିଲେ
ତାଙ୍କର ତେଜରେ ଯେ ରଜନୀ ଲୁଚିଲେ ।
ଏଥୁ ଅନନ୍ତରେ ଶୁଣ ହେ ଦାଶରଥି
ଲୋକାଲୋକ ପର୍ବତ କି ସେ ଯେ ଆଣିଛନ୍ତି ।
ସେଠାରେ ଯଜ୍ଞ ତପ ସମ୍ପୂର୍ଣ୍ଣ ବ୍ରହ୍ମା କଲେ
ପରମହଂସ ଚଢ଼ିଣ ନିଜସ୍ଥାନେ ଗଲେ ।
ଗଲାବେଳେ ଖତଗ ନୃପତି ଯେ କହି
କିଷ୍କିନ୍ଧ୍ୟା ଯାଅ ତୁରେ ଏଠାରେ ନ ରହି ।
ଏତେ କହି ଦେବବର ବେଗେ ଚଳିଗଲେ
ଯଶୋବନ୍ତୀ ପୁରେ ଯାଇ ପ୍ରବେଶ ହୋଇଲେ ।
ସଦାଶିବ କ୍ରୋଧରୁ ହୋଇଲେ ପାର ପୁଣ
ଆଜ୍ଞା ଦେଲେ ନାରାୟଣଗଲା କାଳେ ଯେ ଶୁଣ ।
ସେଠାରୁ ଖତଗ ନୃପତି ଚଳିଗଲା
କିଷ୍କିନ୍ଧ୍ୟା କଟକରେ ଯାଇ ପ୍ରବେଶିଲା ।
ପାଞ୍ଚସାତ ବରଷ ଯେ ନବରେ ରହି ପୁଣ
ପ୍ରଜାମାନଙ୍କୁ ପାଳଇ ଯେ ଉତ୍ତମ ।
ଏକଦିନେ ପୁଣ ଯେ କିଷ୍କିନ୍ଧ୍ୟାର ସାଇଁ
ମୃଗୟା ବିନୋଦେ ଯେ ବନେ ବୁଲେ ଯାଇ ।
ସଙ୍ଗରେ ଋକ୍ଷକପି ଅଛନ୍ତି ବହୁତ
ଖତଗ ନୃପତି ଯେ ଚଢ଼ିଣ ମୟେ ମତ ।
ଯାଇଣ ମିଳିଲେ ଯେ ଗୋଦାବରୀ ତଟ
ଗୌତମ ମୁନିଙ୍କ ଆଶ୍ରମ ନିକଟ ।
ଖଗ ପିଠିରୁ ଉତୁରି ସେ ଖତଗ ନୃପତି
ବ୍ରହ୍ମ ମୁନିପାଦରେ କଲା ପୂଜା ଝଟତୀ ।
ନମସ୍କାର କରିଣ ସେଯେ ଯୋଡଇ ବେନିକର
ଦେଖି ମହାମୁନି ହର୍ଷ ହୋଇଲେ ମନର ।
ଗୌତମ ଋଷି ବୋଲନ୍ତି ଶୁଣ ହେ ନୃପବର
କେଉଁ କାର୍ଯ୍ୟେ ଆଗମନ ଅଟଇ ତୋହର ।
ମୃଗୟା ବିନୋଦେ ଅଇଲି ଏତେଦୂର
ବୋଇଲି ଏ ବନରେ ହୋଇଲି ଅସ୍ଥିର ।
ସେ ରାଜାକୁ ବସାଇ ମୁନି ଯେ ଶାନ୍ତି କଲେ
ବ୍ରହ୍ମାର ତନୁଜ ଯେ କୁଶଳ ପୁଚ୍ଛା କଲେ ।
ରାଜ୍ୟ ପ୍ରଜାମାନଙ୍କର କି କୁଶଳଛନ୍ତି
ସାଧିଲା ରାଜାମାନେ ତୋତେ କି ଶଙ୍କୋଳନ୍ତି ।
ଭାଲୁ ମର୍କଟ ବଳ ଅଛନ୍ତି ଭଳତ ତୋର
ଅଧର୍ମ ନ କରି ରାଜା ରହିଛୁ କି ଧର୍ମର ।
ତୋର ସଙ୍ଗେ ଶତ୍ରୁପଣ କାହାର ଏବେ ନାହିଁ
ଅକଣ୍ଟକ ରାଜ୍ୟ ତୋର ନିଶ୍ଚିନ୍ତ କି ରହି ।
ବେଳ କାଳ ଜାଣି ଇନ୍ଦ୍ର ବରଷେ କି ପାଣି
ସମୟରେ ଶସ୍ୟମାନେ ଫଳନ୍ତି କି ଜାଣି ।
ଶୁଣିଣ ଖତଗ ରାଜା କରଯୋଡି କହି
ତୁମ୍ଭର ଦୟାରେ ମୋର ସକଳ ସୁଖ ହୋଇ ।
କେବଳ ପୁତ୍ର ନାହିଁ ଶୁଣ ହେ ମୁନିବର
ବାରଲକ୍ଷ ବର୍ଷ ଯେ ରାଜ୍ୟରେ ନୃପବର ।
ଗୌତମ ଋଷି ବରେ ନୃପତି ଶିଖର
ତୋହର ବାହୁବଳେ ତପସ୍ୟା ମୋହର ।
ଆମ୍ଭ ମୁନିମାନଙ୍କର ତୁମ୍ଭ ବନେ ତପ
ତେଣୁ କରି ଦୁଷ୍ଟଜନେ ନ କରନ୍ତି ଧାପ ।
ଏମନ୍ତ କହି ମୁନି ରାଜାଙ୍କୁ ବୋଧ କଲେ
ପୁତ୍ର ଦୁହିତା ତୋର ନାହିଁ କି ବୋଇଲେ ।
କରଯୋଡି ଖତଗ ନୃପତି କହେ ପୁଣ
ଦୁହିତା ଗୋଟିଏ ମୋର ଅଛଇ ତୁମ୍ଭେ ଜାଣ ।
ଅନେକ ତପରେ ମୁହିଁ ଦୁହିତାଏ ପାଇ
କେଶରୀ ନୃପତିକି ବିଭାଏ ଦେଇ ।
ନାମ ତାର ଅଟଇ ପ୍ରଭଞ୍ଜନୀ ଜାଣ
ଦେବନାରୀ ସମାନ ଯେ ରୂପରେ ଅଟେ ପୁଣ ।
ଦୁହିତା ଗୋଟି ଅନ୍ୟ ଯେ ମୋର ନାହିଁ
ସେହିଦିନୁ ରାଣୀ ମୋର ବନ୍ଧ୍ୟ ଯେ ରହି ।
ତୁମ୍ଭେ ଯେବେ ସୁଦୟା କରିବ ବ୍ରହ୍ମଚାରୀ
ମୋହର ବଂଶରକ୍ଷା ହୋଇବ ତେଣୁକରି ।
ଦିଅ ମୋତେ ପୁତ୍ରଦାନ କପିକୁଳ ରାହୁ
ଏ ତୋହର ମହିମା ଯୁଗେ ଯୁଗେ ଥାଉ ।
ଏସନକ ସମୟରେ ଦେବୀପୁତ୍ର ଆସି
ମୁନିଙ୍କି ଓଳଗି ହୋଇ କୋଳେ ଯେ ବସି ।
ଦେଖିଣ ଖତଗ ଯେ ବୋଲଇ କରଯୋଡ଼ି
ଭୋ ମୁନି ବେନିପୁତ୍ର ଅଟନ୍ତି କି ତୁମ୍ଭରି ।
ଏ କୁମର ବେନିଙ୍କର ବିପରୀତ ରୂପ
ମନୁଷ୍ୟଙ୍କ ଶରୀର ଏ ଯେ ବାନରଙ୍କ ରୂପ ।
ଗୌତମ ଋଷି କହେ ଶୁଣ ହେ ନୃପମଣି
ଏ ବେନି ଅଟନ୍ତି ଇନ୍ଦ୍ର ଆଦିତ୍ୟ କୁମର ।
ବେଦବର ସେବାରେ ଗଲୁ ନୃପମଣି
ପାର୍ବତୀ ବନରେ ଯାଇ ପଶିଲ ନ ଜାଣି ।
ତେଣୁ ନୃପତି ଯେ ସେ ବନେ ନାରୀ ହେଲୁ
ସନ୍ଧ୍ୟାରେ ଇନ୍ଦ୍ର ଆଦିତ୍ୟକୁ ଦେଖିଲୁ ।
ତୋହର ସୁନ୍ଦର ରୂପ ଦେଖି ସେ ଦେବତା
ବଳ ବୀର୍ଯ୍ୟ ଖସିଲା କାମେ ଆତୁରତା ।
ତୋର ବଳ ମଝିରେ ପଡ଼ନ୍ତେ ବୀର୍ଯ୍ୟ ପୁଣି
ବେନି ବାଳ ଉପୁଜିଲେ ଶୁଣହେ ନୃପମଣି ।

ବେଦବର ଜାଣିଣ ସେ ବନୁ ତୋତେ ଆଣି
ସ୍ତିରୀ ରୂପ ଲୁଚାଇ ପୁରୁଷ ରୂପ କରେ ପୁଣି ।
ତୋତେ ବୋଇଲେ ଗୌତମ ଋଷିସ୍ଥାନେ ଯାଅ
ଗୁପତେ ଏ ବାଳ ସେଠାରେ ଶୁଆଇ ଦିଅ ।
ବେଦବର ବଚନେ ତୁ ଅଇଲୁ
ଏ ସ୍ଥାନରେ ଶୁଆଇ ନିଶ୍ଚିନ୍ତେ ଚଳିଗଲୁ ।
ଏ କାଳେ ସେ କଥା ପାଶୋରିଲୁରେ ତୁହି
ଏବେ ପଚାରି ରାଜା ମତି ଯେ ଭ୍ରମ ହୋଇ ।
ତୁ ଯେଣୁ ଏ କୁମର ମାତା ହେଲୁ
ଏହାଙ୍କର ମର୍କଟ ମୁଖ ହେଲା ତୁ ଦେଖିଲୁ ।
ପୂର୍ବରେ ଅଟନ୍ତି ଏ ତୋହର କୁମର
ଯୋଗବଳେ ଜାଣି ପାରିଲି ମୁଁ କୁମର ।
ଏବେ ବେନି ନନ୍ଦନ ଅଟନ୍ତି ଶ୍ରୀବନ୍ତ
କୁଳ ଉଦ୍ଧାରିଲେ ଶୁଣ ଏ ନୃପନାଥ ।
ତୁ ଏବେ କପିରାଜା ମୋହର ବୋଲ କର
ଏ କୁମରକୁ ନେଇଣ ପାଳ ତୋର ପୁର ।
ଏଣୁ ତୋର କୁଳେ ଉଦିତ ହୋଇବେ
ଯୁଦ୍ଧ କଲେ ଅକାଟ ଶରୀର ହୋଇଥିବେ ।
ଏ ପୁତ୍ର ଦୁହେଁ ତୋର ହୋଇବେ ନୃପତି
ତୋତେ ସୁଦୟା କରିବେ ବେଦପତି ।
ଏତେ ବୋଲି ଋଷି ପୁତ୍ରଙ୍କୁ କରେ ଧରି
ଖଡ଼ଗ୍ ନୃପତି କୋଳେ ଦେଲେ ନେଇକରି ।
ଦେଖିଣ ଋଷିଆଣୀ ଛଳ ଛଳ ଆଖି
ଖଡ଼ଗ ନୃପତି କୋପେ ବେନିପୁତ୍ର ଦେଖି ।
ମୁନି ବୋଇଲେ ତୁମ୍ଭେ ମନରେ କିମ୍ପା ଭାଳୁ
ଅତି ସ୍ନେହରେ ପାଳିବାର ମନରେ କି ବିଚାରୁ ।
ଏ କୁମର ରାଜା ହେଲେ ଆମ୍ଭର ଅଟେ ଭଲ
ଦେବଙ୍କର ପୁତ୍ର ଏ ଆମ୍ଭର ନୋହେ ସଲ ।
ସମୟ ପାଳିଲଇଁ ଆମ୍ଭର ହୁଏ ଭଲ ପୁଣ
ଏବେ ନୃପତି କୋଳକୁ ଯୋଗ୍ୟ ଏ ନନ୍ଦନ ।
ଯେବଣ କଥାକୁ ବିଧାତା ନିର୍ମାଣି
ସେ ତାହା ପାଇଲେକିରେ ଛଡ଼ାଇ ସଙ୍ଘାତୁଣୀ ।
ଖଡ଼ଗ ନୃପତି ଯେ ଅନେକ ତପ କଲା
ପୂର୍ବର ଭାଗ୍ୟବଳେ ଏ ପୁତ୍ର ଲଭିଲା ।
ନୁହ ତୁ ବିମୁଖରେ ଶରଦଚନ୍ଦ୍ର ମୁଖୀ
ଜଗତପିତା ମୋତେ ବନରେ କହିଛନ୍ତି ।
ଏ ପୁତ୍ର ସମ୍ଭାଳି ଆମ୍ଭେ ବ୍ରହ୍ମାର ହିତରେ
ବାନର ରାଜା ଥୋଇଣ ଗଲା ଯେ ମୋରପୁରେ
ତୁ ଯାହା ପାଇଲୁ ଧର୍ମରେ ପୁତ୍ର କରି
ଏବେଯାଇ ହୋଇଲେ କିଷ୍କିନ୍ଧ୍ୟା ଦଣ୍ଡଧାରୀ ।

ଶୁଣିଣ ଅହଲ୍ୟା ତୃପତୀ ଯେ ହୋଇଲା
ବାଳୀ ସୁଗ୍ରୀବର ଘେନି ନୃପତି ଚଳିଗଲା ।
ନିଜପୁରେ ପ୍ରବେଶ ହୋଇଲା ରାଜା ଯାଇ
ସମସ୍ତେ ପଶିଲେ ନଗ୍ରେ ଉତ୍ସବ କରାଇ ।
ଲୀଳାବତୀ ନାମରେ ତାହାର ଘରଣୀ
ହକାରିଣ ତାହାକୁ ଆଣିଲା ନୃପମଣି ।
ଏକାନ୍ତ କରିଣ ସେ ଅବକାଶ ହୋଇ
ସେ ବେନି ପୁତ୍ରକୁ ନେଇ ସମର୍ପଇ ।
ଶୁଣରେ ସଙ୍ଘାତୁଣୀ ବନ୍ଧୁ ବିମ୍ବ ଓଷ୍ଠୀ
ଗୌତମ ଋଷିଙ୍କ ସଙ୍ଗରେ ମୁହିଁ ଯେ ଗଲିଟି ।
ପୁତ୍ର ମୋର ନାହିଁ ବୋଲି କହିଲୁ ଯହୁଁ
ସେ ମୁନି ପ୍ରସନ୍ନ ହୋଇଲେ ମୋତେ ତହୁଁ ।
ଏ ବେନି କୁମର ମୋର ମୁନି ହାତେ ଥିଲେ
ସୁଦୟା କରିଣ ମୋତେ ମୁନି ହାତେ ଦେଲେ ।
ବୋଇଲେ କିଷ୍କିନ୍ଧ୍ୟାରେ ହୋଇବେ ନୃପତି
ଶୁଣିଣ ଆନନ୍ଦ ହେଲେ ଖଡଗ ନୃପତି ।
ପୁତ୍ରକୁ କୋଳେ ଧରିଣ ପ୍ରୀତି ଗୃହେ ଗଲା
ହରଷ ହୋଇଣ ଅନେକ ଦାନ ଦେଲା ।
ମନ ପ୍ରାଣ ସମକରି ପାଳିଲା ସେ ତନୟ
ଏଥୁ ଅନ୍ତେ ଶୁଣ ହେ ରାମ ରାୟ ।
ସହସ୍ର ସହସ୍ର ବିଦ୍ୟା ତାଙ୍କୁ ଯେ ଶିଖାଇଲେ
ସେ ବେନି କୁମର ଦଶ ବରଷ ହୋଇଲେ ।
ବିଭା କରାଇଲେ କୁଳଗୋତ୍ର ଜାଣି
ତାରା ନାମେ କନ୍ୟା ବିଭା ହେଲେ ବାଳୀ ।
ରୋମା ନାମେ ବାଳି ଯେ ମୋହର ଯୁବତୀ
ଯାହା ସେ ପଚାରିଲା କହିଲି ରଘୁପତି ।
କେତେକାଳ ଉତାରୁ ପିତା ଯେ ମୃତ ପାଇ
ସେ ପୁଣ୍ୟ ଆତ୍ମା ଯେ ସ୍ୱର୍ଗପୁର ଯାଇ ।
ପିତା ମରିବାର କାଳେ ଆମ୍ଭେ ନିତ୍ୟ ଭାଳି
ବଡ଼ ବୋଲିଣ ଅଭିଷେକ ହେଲେ ବାଳୀ ।
ତାରା ସୁନ୍ଦରୀ ପୁଣି ହୋଇଲା ପାଟରାଣୀ
ବାଳୀ ସେ ବଳୀୟାର କିଷ୍କିନ୍ଧ୍ୟା କାରେଣୀ ।
ମୃଗରାଜ ହୋଇଣ ପୃଥିବୀ ସେ ପାଳଇ
ବାଳୀର ଆଜ୍ଞାରେ ମୁଁ କିଷ୍କିନ୍ଧ୍ୟାରେ ଥାଇ ।
ଏଥିରେ ନଉ ସହସ୍ର ବୟସ ଗଲା ବହି
ମାୟାଭୀବୋଲି ଦୈତ୍ୟ କିଷ୍କିନ୍ଧ୍ୟାକୁ ଆସଇ ।
ଜଗତ ବଳୀୟାର ସେ ଦୈତ୍ୟ ଅଟଇ
ଯେଉଁଠାକୁ ଯାଏ ଦୈତ୍ୟ ଯୁଝଇ ପରିଘାଇ ।
ସମୁଦ୍ରକୁ ବୋଇଲା ତୁରେ ମୋର ସଙ୍ଗେଯୁଝ
ନିଜବଳ ପ୍ରାକର୍ମ ବିଚାରି ମୋର ବୁଝ ।

ନୋହିଲେ ପିଇଦେବି ସପ୍ତଏ ସାଗର
ଶୁଣି ବିଚଳିତ ହେଲା ବରୁଣ ନୃପବର ।
ଦୈତ୍ୟକୁ ବୋଇଲା ତୁରେ ଅସୁର ରାଜାଶୁଣ
ଧନୁର୍ଦ୍ଧର ବୀର ତୁରେ ନ ଦେଖିଲି ଜାଣ ।
ମୁହିଁ ନିର୍ମଳ ହେବାରୁ ମେରୁକୁ ଆଶ୍ରା ମୋର
ତୋର ସଙ୍ଗେ ଯୁଝିବାକୁ ଶୂରବୀର ।
ଗୋଷ୍ଠୀ ଜଗତ ଉଦ୍ଧାରଣ ଅଟଇ ମେରୁଗିରି
ସେ ଅବା ସଂଗ୍ରାମ ତୋ ସଙ୍ଗେ କରିପାରି ।
ଏବେ ଦୈତ୍ୟରାଜ ଯେ ନକର ମୋତେ କୋପ
ଚଳତୁ ଅସୁରାୟେ ନକର ମୋତେ ଧାପ ।
ବରୁଣ ମୁଖରୁ ଯେ ଏମନ୍ତ ବାଣୀ ଶୁଣି
ପଚାରଇ ତାକୁ ଅସୁର କୁଳମଣି ।
ମେରୁକୁ କିମ୍ପା ତୁହିରେ ଦୁର୍ବଳ ଯେ ହେଲୁ
ସାଗର ହୋଇ ତୁ ଭୟେ ପଳାଇଲୁ ।
ବରୁଣ ବୋଇଲେ ତୁରେ ଶୁଣ ଦୈତ୍ୟରାୟେ
ବିଧାତାର ପୁତ୍ର ଯେ କୁମ୍ଭଋଷି ହୁଏ ।
କୁ ମୃଦ ପୁଷ୍ପ ପ୍ରାୟେ ଯେ ଶରୀର ତାର ଜାଣ
ବିଧାତା ହସ୍ତରେ ବାର ଆଙ୍ଗୁଳ ହୁଏ ଚାଣ ।
ସେ ଋଷି କୋଳରେ ଜାତ ଅଗସ୍ତି ନାମେ ପୁତ୍ର
ତପବଳେ ବିଧାତାକୁ ଡରଇ ସେହୁ ପୁତ୍ର ।
ଆଶ୍ୱିନ ମାସରେ ଥାପିଣ କୁମ୍ଭ ଋଷି ପୁଣି
ତର୍ପଣ କରିବାକୁ ଅଇଲା ବେଳ ଜାଣି ।
ସମୁଦ୍ର କୂଳରେ ସେ ଯେ ନିତ୍ୟକର୍ମ କଲା
ଏମନ୍ତ ସମୟରେ ମୋର ଯୁବା ଅବସ୍ଥା ପାହିଲା ।
ମୁହିଁ ତତନ୍ତେ ସେ ଯେ ବୁଡ଼ିଣ ମଲା ପୁଣ
ପିତାର ମୃତ୍ୟୁ ଦେଖି ପୁତ୍ରର କୋପ ମନ ।
ମନ୍ତ୍ରବଳେ ସେ ଋଷି ମୋଠାରେ କ୍ରୋଧହେଲା
ଚଳୁକରି ସପତ ସାଗର ପିଇଦେଲା ।
ବାଆଷଠି ଯୁଗଯାଏ ସେ ଶୁଖିଲା ରହିଲା
ବୁଦ୍ଧି ଭ୍ରମ ହେଲା ଯେ ଚିନ୍ତାରେ ବସିଲା ।
କେତେଦିନ ଉତ୍ତାରୁ ମୁଁ ଯେ ବିଧାତାକୁ କହି
ବେଦବର ବିଚାରି ମେରୁକୁ କହେ ଯାଇ ।
ମେରୁ ବିଧାତା ତ ଉପାୟ ପୁଣ କଲା
ବୀର୍ଯ୍ୟ ନଥିଲା ପୁତ୍ର ଗୋଟିଏ ଜାତ କଲା ।
ସେ କୁମର ନାମ ଯେ ଭାଗୀରଥି ଦେଲେ
ବିଷ୍ଣୁ ପାଦୁଗଙ୍ଗା ଆଣି ମେରୁରେ ରୁହାଇଲେ ।
ସେ ଭାଗୀରଥି ଐରାବତକୁ ଘେନିଗଲା
ଦନ୍ତମାରି ମେରୁହୃଦ ସେ ହସ୍ତୀ ଚିରିଲା ।
ତେବେ ଗଙ୍ଗା ଆସି ସାଗର ପୁଣି କଲା
ତେବେ ମନରୁ ତ୍ରାହି ଯାଇଣ ଛାଡ଼ିଲା ।

ସେହିଦିନରୁ ଅଟେ ମୁଁ ନର୍ମିଳ
ମଲା ଜୀବ ପ୍ରାୟେ ବଞ୍ଚଇ ଦିନ କାଳ ।
ତୋର ସଙ୍ଗେ ଯୁଝିବାକୁ ମୁଁ ନୁହଇ ସମର୍ଥ
ତୋତେ ମୁଁ ନିଉନ ହେଲି କହିଲି ଯଥାର୍ଥ ।
ସିନ୍ଧୁରାଜା ମୁଖରୁ ଏସନ ବାଣୀ ଶୁଣି
ବାହୁଡ଼ି ବିଜେକଲା ଯେ ଅସୁର ଚୂଡ଼ାମଣି ।
ମେରୁର ଅନ୍ତେ ମିଳିଲା ପୁଣ ଯାଇ
ବିକ୍ରମି ରହି ସେ ଯେ ଦେଲାକ କ୍ରୋଧ ହୋଇ ।
ବାହୁ ଦୁଇ ମାରିଣ ଘେନଇ ବାହାପଟା
ଦଣ୍ଡ ମୁକୁଟ ବାନ୍ଧିଣ ଶିର ଯେ ଦଶଗୋଟା ।
କୋପରେ ଡାକଇ ଶୁଣରେ ଗିରିରାଜା
ଜଗତେ ବୋଲନ୍ତି ବଳରେ ଅଟୁ ରାଜା ।
କର ଏବେ ସଂଗ୍ରାମ ଯେ ମୋର ସଙ୍ଗେ ମିଳି
ନୋହିଲେ ଆଜ ମୁଁ ତୋତେ ପକାଇବି ମାରି ।
ବିଧାଘାତେ ତୋତେ ମୁଁ କରିବି ଆଜି ଚୂନା
ଯୁଦ୍ଧ କରିବାକୁରେ ମୋ ସଙ୍ଗେ ମିଳୁକିନା ।
ଶୁଣିଣ ଗିରିରାଜା କମ୍ପଇ ଥରହର
ମାୟାବୀ ଦୈତ୍ୟକୁ ଯାଇ କହେ ସେ ଉତ୍ତର ।
ମହୀ ମହାବୀର ଦେଖରେ ମହୀଆଳି
ତୋତେ ସଂଗ୍ରାମଦେବ ଯାଅ କିଷ୍କିନ୍ଧ୍ୟାର ବାଳୀ ।
ଜଗତରେ ଅଟଇ ସେ ଅତି ବଡ଼ ବୀର
ତାହା ତୁଲେ ତୁ ଯାଇ ସମର କର ।
ଦୈତ୍ୟ ରାହୁ ବୋଲି ସେ ଜିଣିଲା କାହାକୁ
ମେରୁ ରାଜା ବୋଇଲା ସେ ଜିଣିଲା ଦେବତାକୁ ।
ମୃତ୍ୟୁପରେ ରାଜା ଯେ ଅସୁରମାନ ଜିଣି
ତେଣୁ ସେ ମହାବଳୀ ଯେ ବୋଲାଇଲା ପୁଣି ।
ଶୁଣି ମାୟାବୀ ଦୈତ୍ୟ ହୋଇଲା ସନ୍ତୋଷ
ଗର୍ଜିଣ ଖରତରେ ଛାଡ଼ଇ ନିଃଶ୍ୱାସ ।
କିଷ୍କିନ୍ଧ୍ୟା ନଗ୍ରକୁ ଏବେ ଅଇଲା ଦୈତ୍ୟବୀର
ଦେଖି ସଘନେ ପଳାଇଲା ତରତର ।
ରଜନୀର ସମୟରେ କଟକେ ପଶିଲା
ମେଢ଼ ମଣ୍ଡପ ଯେ ଦେଉଳ ନାଶ କଲା ।
ଜଗତୀ ଅଟ୍ଟାଳିକା ଭାଙ୍ଗିଲା ବହୁତ
ରାଜଦାଣ୍ଡ ଘରଦ୍ୱାର କଲା ସେ ନିପାତ ।
ଅନ୍ତଃପୁରେ ଥାଇ ଯେ ସେହି ବୀର ବାଳୀ
ଧାତିକାରେ ଆସିଣ ଦନୁଜ ଆଗେ ମିଳି ।
ବିଧାଏ ମାଇଲା ସେ ଯେ ଦୈତ୍ୟର ବକ୍ଷସ୍ଥଳେ
ବୃଷଭ ରୂପ ଧଇଲା ଦୈତ୍ୟ ସେତେବେଳେ ।
ପବନୁ ବେଗେ ହୋଇଣ ପଳାଇଣ ଗଲା
ପାତାଳ ବିମ୍ବରେ ଯାଇଣ ପଶିଲା ।

ବାଳୀ ନ ଦେଖି ବାହୁଡି ଶୀଘ୍ର ଅଇଲା
ଆନନ୍ଦରେ ବାଳୀବୀର ଯାଇ ନିଜପୁରେ ଚଳିଲା ।
ମାୟାବୀ ଦୈତ୍ୟ ସେଠାରୁ ଗଲାକ ପଳାଇ
ନିଜପୁରେ ଦୈତ୍ୟ ଯେ ଶୋକ କରଇ ।
ବନ୍ଧୁବର୍ଗ ଲୋକଙ୍କୁ ବସାଇ ସେ କହିଲା
ଅନେକ ଶୋକ କରିଣ ଦୈତ୍ୟ ଶୋଇଲା ।
ମୋର ଶତ୍ରୁ ହେଲା ଯେ କିଷ୍କିନ୍ଧ୍ୟା ନାମେପୁରୀ
ବାନର ବନଜୀବ ତହିଁରେ ଦଣ୍ଡଧାରୀ ।
ତାହାର ସଙ୍ଗେ ମୁଁ ଯେ ସମର କରିଗଲି
ନଗ୍ର ମେଢ଼ ମଣ୍ଡପ ଯେ ଦେଉଳ ଭାଙ୍ଗିଲି ।
ଝୋପଭରେ ବାନର ଯେ ଅଇଲା ତହୁଁ ରାଗେ
ପର୍ବତ ସମାନେ ରୂପେ ମିଳିଲା ମୋର ଆଗେ ।
ବିଧାଏ ମାଇଲା ମୋର ବକ୍ଷସ୍ଥଳୀ
ଅଜ୍ଞାନ ହୋଇଣ ମୁଁ ଯେ ଧରଣୀ ପଡ଼ିଲି ।
ବୃଷଭ ରୂପ ଧରି ତହୁଁ ଅଇଲି ପଳାଇ
ନୋହିଲେ ପ୍ରାଣ ମୋର ନିଅନ୍ତା କପିସାଇଁ ।
କି ବୁଦ୍ଧି କରିବି ମୁଁ କହ ହେ ଉପାୟେ
କେମନ୍ତେ ମାରିବି ମୁଁ ଯେ କିଷ୍କିନ୍ଧ୍ୟା ରାୟେ
ଶୁଣିଣ ବୋଇଲା ଦୁନ୍ଦୁଭୀ ତାର ନାମ
କିମ୍ପାଇଁ ରାଗ ତୁ ଯେ କରୁଅଛୁ ମନ ।
ଛାର ବାନର ଯେ କିଷ୍କିନ୍ଧ୍ୟାର ରାଜା
ରହିଣ ନ ବୁଝିଲୁ ସମର କରୁ ତେଜ୍ୟା ।
ଗଲା ଅଇଲା କରଇ କିରେ ଦାଣ୍ଡ
ରନ୍ତ ଯୁଦ୍ଧ କରରେ ଲାଗଇ ଖଣ୍ଡା କାଣ୍ଡ ।
କେହୁ ହାରଇ କେହୁ ଜିଣଇ ରଣେ ପୁଣ
ଯୁଦ୍ଧରୁ ପଳାଇଲେ ନୁହେଁ ଯଶ ପୁଣ ।
ଏହିରୂପେ କ୍ଷତ୍ରୀପଣ କରି କି ଅଛ ଭାଇ
ଜିଣିଲେ ଭଲକଥା ମରିଲେ ସ୍ୱର୍ଗ ଯାଇ ।
ଛାର ବାନର ସେ ଯେ କିଷ୍କିନ୍ଧ୍ୟା ନୃପତି
ଏହିକ୍ଷଣି ଯାଇ ମୁଁ ସାରିବି ବିଭୂତି ।
ନ କର ଚିନ୍ତା ଯେ ଥାଅ ଏଥେ ରହି
ଏହିକ୍ଷଣି ବାଳୀକି ମାରିବି ମୁହିଁ ଯାଇ ।
ପ୍ରତିଜ୍ଞା କରିଣ ଦୁନ୍ଦୁଭୀ ବାହାରିଲା
ଧାଡିକାରେ ପାଦଭରେ ଯାଇଣ ପଶିଲା ।
ବିମ୍ବରର ଦ୍ୱାରବାଟେ ମଞ୍ଚପୁରକୁ ଆସିଲା
ବାହାର ହୋଇ ଦୁନ୍ଦୁଭୀ ବସି ବିଚାରିଲା ।
ବୋଇଲା ରଣ ଭୂମି ଏହି ଯେ ଅଟଇ
ସହସ୍ରେକ ଯୁଦ୍ଧ ଯେ ପାରେ ହୋଇ ।
ଏସନ ବିଚାରି ସେ ଯେ ଯାନକୁ ସୁମରିଲା
ତକ୍ଷଣେ ଲୁହା ରଥ ପାଶେ ଯାଇମିଳିଲା ।

ଦଶଭୁଜେ ଧନୁ ଯେ ଧଇଲା ଦୈତ୍ୟବଳୀ
ଲକ୍ଷ୍ୟ ରଥ ଉପରେ ଏବେ ବିଜେକଲା ଚଳି ।
ଏମନ୍ତ ସମୟରେ ମିଳିଲେ ସୈନ୍ୟବଳ
ବାଷଠି କୋଟି ଅସୁର ଯାଇଣ ହେଲେ ଠୁଳ ।
ସମ୍ଭ୍ରମରେ ବାଜା ଯେ ବଜାଇ ବାହାରିଲେ
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ଯାଇ ହେଲେ ।
ପ୍ରତିଜ୍ଞା କରିଣ ଆସଇ ଦୈତ୍ୟବାଳୀ
ଧାଡିକାରେ ଆସିଣ ହରଷେ ମିଳି ।
ଅସୁର ବଳ ଦେଖି ଚାର ରାଜା ପାଶେ କହିଲା
ତୋର ପାଶେ କେଉଁ ଦୈତ୍ୟ ଯେ ପୁଣି ଆସିଲା ।
ରଜନୀ ପ୍ରଭାତରେ ପଶିଲା ତୋର ପୁର
ସିଂହଦ୍ୱାରେ ଡାକୁଛି ରଡ଼ି କରିଣ ଘୋର ।
ଆରେ ପାମର ବାନରପତି ବାଳୀ
ତୋର ଜୀବନ ମୁହିଁ ପେଶିବି ଯମପୁରୀ ।
ମୋର ଜ୍ୟେଷ୍ଠ ଭାଇ ଅଟଇ ମାୟାବୀ
ନୃପତି କୁଳରେ ଯେ ଅଟଇ ସର୍ବସିଦ୍ଧି ।
ସେ ଭାଇକୁ ମୋର ଯେ ବିଧାଏ ମାଇଲୁ
ତେଣୁ କରି ମରଣକୁ ବରଣ କରିଲୁ ।
ମୁଁ ତାର ଅନୁଜରେ ଦୁନ୍ଦୁଭୀ ନାମ ମୋର
ଏ ତୋର ଜୀବନରେ ଘେନିବି ଆଜ ତୋର ।
ଏହାଶୁଣି ଶଯ୍ୟାରୁ ସେ ଉଠିଲାକ ବାଳୀ
ବିକ୍ରମ ସିଂହ ଜାଣି ଯେ ଅସୁର ଆଗେ ମିଳି ।
କୋଟିଏ ସିଂହର ବଳ ବାଳୀର ଅଟଇ
ଦୈତ୍ୟ ଦେଖିକରି ବାଳୀବୀର ସଙ୍କୁଚଇ ।
ବାସବପୁରେ ତୋରବୋଲେ ଯାଇ ଧର୍ମକୁ
ନୋହିଲେ ଦୈତ୍ୟ ବାଳୀ କି ମରନ୍ତା ମନକୁ ।
ଦୁନ୍ଦୁଭୀ ଡାକ ଦେଲା ଶୁଣରେ ବାନର
ଧନୁଶର ଧରିଣ ଚଢ଼ ଯାନର ।
ବାଳୀରାଜା କହିଲା କରରେ ମାଲଯୁଦ୍ଧ
ଦୁନ୍ଦୁଭୀ ବୋଇଲା ମୋର ନୁହଇ ମନବୋଧ ।
ଆ ତୋ ଶସ୍ତ୍ର ଘେନିଣ କରିବା ଶସ୍ତ୍ରଯୁଦ୍ଧ
ଶସ୍ତ୍ର ନ ପାଇଲେ କରିବା ମାଲଯୁଦ୍ଧ ।
ସେ ରଥରେ ଯାଇ ବସିଲା ବୀର ବାଳୀ
ଇନ୍ଦ୍ର ଦେଲେ ଧନୁ ଯେ ହସ୍ତରେ ପୁଣ ଧରି ।
ଦେଖିଣ ଦୁନ୍ଦୁଭୀ ଯେ ହୁଙ୍କାର ନାଦ କଲା
କାକପକ୍ଷୀ ଶର ନେଇ ଧନୁରେ ବସାଇଲା ।
ବିନ୍ଧିଲା ଦୈତ୍ୟରାଏ କ୍ରୋଧମତି ହୋଇଣ
ଦେଖିଣ ବାଳୀବୀର ଅଗ୍ନିଶରେ କାଟିଣ ।
ଦେଖିଣ ଦୈତ୍ୟରାଏ ପର୍ବତଶର ବାହାରକଲା
ବଜ୍ରଶରରେ ବାଳୀ ସେ ଶର କାଟିଲା ।

ଦେଖିଣ ଦୈତ୍ୟବୀର ବାବଲଶର ମାରି
ଜଇନ୍ତା ଶରରେ ତାହା ବାଳୀ ଯେ ନିବାରି ।
ଦେଖିଣ ଦୈତ୍ୟରାୟେ ଅଗ୍ନିଶର ଯେ ମାରିଲା
ଜଳଶରରେ ତାହା ବାଳୀ ଯେ ନିବାରିଲା ।
ଦେଖିଣ ଦୈତ୍ୟରାଜା କୁହୁକଶର ମାରିଲା
ଘୋଟିଲା କୁହୁକନ୍ଧ୍ର ପ୍ରାୟେ କରି ଦିଶିଲା ।
ସେତେବେଳେ ବାଳୀ ମୋତେ ବାଧା ଦେଲା
ମାରରେ ଅସୁରବଳ ବୋଲିଣ ବୋଇଲା ।
ବାଳୀର ଆଗରେ ମୁଁ ସୈନ୍ୟବଳ ଘେନି
କୁନ୍ଦକ ପେଶିଣ ଅସୁର ମାରି ପୁଣି ।
ବାରକୋଟି ବାନର ତେରକୋଟି ଅସୁର
ଜଣକୁ ଜଣକେ କରିଲୁ ସମର ।
ଘଡ଼ିକ ଭିତରେ ଯେ ଅସୁର ବଳ ମଲେ
ବାରକୋଟି ଦୈତ୍ୟବଳ ସେଠାରୁ ପଳାଇଲେ ।
କେ ମାରିଲା ଗଦାରେ କେ ହାଣିଲା କରରେ
କେ ବିଧାଏ କେ ମୁଥାଏ ପ୍ରହାରନ୍ତି ବକ୍ଷସ୍ଥଳେ ।
ସେ ଅସୁର ତିନିକୋଟି ବାନର ନାଶକଲେ
ରକ୍ତନଦୀ ବହିଲା ଜାଣ ଭଲେ ।
ବାଳୀ ଦୁନ୍ଦୁଭୀଙ୍କର ରଥ ଭାଙ୍ଗିଗଲା
ଅନ୍ଧାରବେଳେ କଳଣା କରି ନୋହିଲା ।
ସେତେବେଳେ ବାଳୀ ହେ ପବନ ଶରମାରି
ତେବେ କୁହୁଡି ନ ତୁଟିଲା ଘେରି ।
ଦେଖିଣ ବାଳୀବୀର ଆଦିତ୍ୟ ଶର ମାରିଲା
ସୂର୍ଯ୍ୟର ତେଜ ଲାଗନ୍ତେ କୁହୁଡି ପଳାଇଲା ।
ସେତେବେଳେ ବାଳୀ ଯେ ଚାହିଁଲା ଚତୁର୍ଦ୍ଦିଗ
ରକ୍ତନଦୀ ଘୋଟିଛି ଯେ ପ୍ରବଳ ବେଗ ।
କିଷ୍କନ୍ଧ୍ୟା କଟକରୁ ଯୁଣକେ ସେ ଛଡ଼ା
ଦୁଇଜଣଙ୍କର ରଥ ଅଛଇ ମଡ଼ା ।
ବାଳୀ ବିଚାରିଲା ରକ୍ତ ନଦୀ ଟାଣ
ରଥ ଭାଙ୍ଗି ଆସିଲା ଯେ ସାହି ଭିତରେ ଜାଣ ।
ଦୁନ୍ଦୁଭି ଅସୁରର ଯେ ସୈନ୍ୟବଳ ନାହିଁ
ଦେଖିଣ ଅସୁର ଯେ ମନେ ବିଚାରଇ ।
ଏ ବାଳୀ ବୀର ଅଟେ ବଳରେ ବଳୀୟାର
ଏହାକୁ ମାଇଲେ ସରଇ ସଳ ମୋର ।
ଏମନ୍ତ ବିଚାରି ଦୈତ୍ୟ ଧନୁ ଶୀଘ୍ର ଧରି
କୋଟିଏ କପିଙ୍କୁ ବିନ୍ଧିଲା ଯୋଖିକରି ।
ବାଣର ଛାଇରେ ଆଦିତ୍ୟ ଲୁଚିଲେଟି
ରଜନୀ ପ୍ରାୟେ ଘୋଟି ହୋଇଲା ଦିନଘୋଟି ।
ଘୋର ଶବ୍ଦ ରଡ଼ି ଶୂନ୍ୟରେ ଶୁଭିଲା
ସ୍ୱର୍ଗ ମର୍ତ୍ତ୍ୟ ବେନିପୁର ଚମକି ପଡ଼ିଲା ।

ନବଖଣ୍ଡ ମେଦିନୀ ଯେ କମ୍ପିଲା ଥରହର
ଭୂମିକମ୍ପ କଲା ଯେ ସଂସାର ସାଗର ।
ଦେଖିଣ ବାଳୀବୀର ବାବଲ ଶର ମାରିଲା
ଅସୁର ଶରକୁ ସବୁ ଛେଦି ପକାଇଲା ।
କ୍ରୋଧରେ ବାଳୀବୀର ଅଗ୍ନିଶର ଯେ ମାରି
ଦୈତ୍ୟର ଲୁହା ରଥ ଦେଲାକ ଭସ୍ମକରି ।
ବିରଥି ହେଲା କଲା ଯେ ଦୁନ୍ଦୁଭୀ ଅସୁର
ଗଦାଧରି ପିଟିଲା ସେ ରଥ ବାଳୀର ।
ଜୟ ବିଜୟ ରଥ ଯେ ବାଳୀର ଭାଙ୍ଗିଗଲା
ଧୂଳି ପ୍ରାଏ ହୋଇଣ ସେ ଭୂମିରେ ମିଶିଲା ।
ତେଣୁ ଯେ ବିରଥି ହୋଇଲା ବାଳୀ ରାଜା
ପଳାଇଲା ବାଳୀବୀର ରଣକୁ କରି ତେଜ୍ୟା ।
ବାଳୀର ପଛରେ ଯେ ଅସୁର ଗୋଡାଇଲା
କିଷ୍କନ୍ଧ୍ୟା କଟକରେ ପ୍ରବେଶ ଯାଇ ହେଲା ।
ଦେଖିଲା ବାଳୀବୀର ପଛରେ ଦୈତ୍ୟ ଆସି
ଲେଉଟି ବାଳୀବୀର ପଛରେ ତାକୁ କସି ।
ଗଦା ଖଡଗ ତାର ଭାଙ୍ଗି ଯେ ପକାଇଲା
ସେଠାରୁ ବେନି ବୀର ଠଣା ଯେ ଆବୋରିଲା ।
ଧରାଧରି ହୋଇଣ ଯେ ବାହୁ ଯୁଦ୍ଧ କଲେ
ହିଆ କୁ ହିଆ ଯେ ଦେଇ ପେଲାପେଲି ହେଲେ ।
ମୁଣ୍ଡକୁ ମୁଣ୍ଡ ମାରି ବୁହାଇଲା ରକତ
କେଜାଣି ପାରିବରେ ଶୁଭଇ ବଜ୍ରଘାତ ।
ବେନି ମୁଣ୍ଡ ଯୁଦ୍ଧରେ ରକ୍ତ ଅଗ୍ନି ଉଠନ୍ତି
ବିଧାର ଘାତରେ ଯେ କମ୍ପଇ ଦନ୍ତପନ୍ତି ।
ତଣ୍ଟି ଯେ ଛିଡ଼ିଗଡ଼ି ପାଇଲେକ ଘାତ
ପେଟକୁ ମରାମରି ବଜ୍ରସମ ମୁଥ ।
ନଗ୍ର ନରନାରୀ ଦେଖନ୍ତି ରୁଣ୍ଡ ହୋଇ
ସୈନ୍ୟବଳ ସମସ୍ତେ ହରଷ ଆସ୍ତେ ହୋଇ ।
ଦୁଇ ସିଂହ ଯେ ହୁଅନ୍ତି ଗଡ଼ାଗଡ଼ି
ଯେପରି ଷଣ୍ଢକୁ ଷଣ୍ଢ ହୁଅନ୍ତି ମୁଣ୍ଡ ମାଡ଼ି ।
ମଙ୍ଗଳ କେତୁଙ୍କ ପ୍ରାୟେ କରନ୍ତି ସମର
ଯେସନେ ଚୌଦନ୍ତ ଖେଳ ପଟାନ୍ତର ।
ଦୁନ୍ଦୁଭୀ ଦୈତ୍ୟ ଯେ ମାଇଲା ମୁଣ୍ଡିଆଇ
ବାଳୀର ବାଳ ଯେ ଭିଡ଼ିଣ ଧରେ ଯାଇ ।
ପାଦେ ପାଦ ଛନ୍ଦିଣ ପକାଏ ବେଗେ ତୋଳି
ଦୈତ୍ୟର ଉପରେ ସେ ଯେ ବସିଲାକ ବାଳୀ ।
କୋପରେ ଅଥୟ ହୋଇ କାଖରେ ହାତ ଦେଇ
ଉପରକୁ ଫିଙ୍ଗିଦେଲା ଯେ ବୀର ଦୃଢ଼ା ହୋଇ ।
ବାରଯୁଣ ପର୍ଯ୍ୟନ୍ତ ବାଳୀ ଉପରକୁ ଗଲା
ଅଠରଯୁଣ ଅନ୍ତର ଯାଇର ପଡ଼ିଲା ।

ସେଠାରେ ବାଳୀବୀର ଚେତନା ପାଇଣ
ଦୈତ୍ୟର ଆଗରେ ମିଳିଲା ଯାଇପୁଣ ।
ବାଳୀ ଆସିବାର ଅସୁର ଯେ ଦେଖିଲା
ଥୋକ ଏକ ଦୂରରେ ଯାଇଣ ଠିଆ ହେଲା ।
ଚନ୍ଦ୍ର ଆଗରେ ଯେହ୍ନେ ରବିର ଶୋଭା
ତେସନ ପ୍ରାୟେ ବେନିଜନଙ୍କର ଯେ ପ୍ରଭା ସେ ।
ଧାଇଁଣ ବାଳୀକି ସେ ଯେ ମାଇଲା ପଦଘାତ
କପିରାଜ ଉପରେ ବାଜିଲା ଯାଇ ନାତ ।
ପ୍ରଳୟ ହୁତାଶନ ଉଠିଲା ବାଳୀ ଅଙ୍ଗ
ରୋଷଭରେ ଧାଇଁଗଲା କପିରାଜ ।
ଦେଖିଣ ଦୁନ୍ଦୁଭୀ ଯେ ଭୟରେ ପଳାଇଲା
ମାୟାର ମଇଁଷୀ ରୂପ ହୋଇଲା ।
ବେନି ଶିଙ୍ଘ ତାର ଯେ ତୀକ୍ଷଣ ମୁନ ଥିଲା
ଦେଖିଣ ବାଳୀବୀର ଗୟଳ ରୂପ ହେଲା ।
ବେନିଏ ସେ ରୂପରେ କଲେ ଘୋର ରଣ
ବେନିମାସ ପର୍ଯ୍ୟନ୍ତ କନ୍ଦରଗିରି ଚୂର୍ଣ୍ଣ ।
ସେଠାରୁ ବେନିଜନ ନିଜରୂପ ହୋଇ
ଧାଇଁ ଦୁନ୍ଦୁଭୀ ଯେ ନିଜରୂପ ଧରଇ ।
ବାଳୀକି ମାଡ଼ି ବସିଲା ଦୁନ୍ଦୁଭୀ ଅସୁର
ପର୍ବତ ଉପରେ କି ପର୍ବତ ହେଲା ଠୁଳ ।
କେତେବେଳ ଉତ୍ତାରୁ ବାଳୀ ଯେ ଚେତାପାଇ
ଦୁନ୍ଦୁଭୀ ଅସୁରର ଚରଣ ଧରଇ ।
ଚରଣ ଧରିଣ ଯେ ବାଳୀ ନୃପବର
ଲେଉଟାଇ ଉଠିଲା ଗଳଗାଜି ବୀର ।
ଚକ୍ରପରି କରିଣ ବୁଲାଏ କପିରାଣ
ବୁଲାନ୍ତେ ଅସୁର ହୋଇଲା ନିର୍ବଳ ପୁଣ ।
ଏ ହାତରୁ ସେ ହାତକୁ ନେଇ ବାଳୀବୀର
ଆଘାତ କରିଣ ଖେଳାଇଲା ଦୋଳିପର ।
ଉଦ୍ଧତ ଅସୁରର ପ୍ରାଣ ଗଲା ଚଳି
ମୁଖବାଟେ ରୁଧିର ଯେ ପଡ଼ଇ ଗଳି ।
ମାତଙ୍ଗ ଋଷି ପୁଣି ଦୁର୍ବାସା ଋଷି ଶିଷ୍ୟ
ଋଷ୍ୟମୁକ ପର୍ବତରେ କରିଥାନ୍ତି ବାସ ।
ତାଙ୍କଠାରେ ପଡ଼ିଯାଇ ଅସୁର ରୁଧିର
ଦେଖିଣ ମୁନିବର ହୋଇଣ କୋପଭର ।
ଯୋଗରେ ଜାଣିଣ ବାଳୀକୁ ଶାପ୍ୟ ଦେଲେ
ଏ ପର୍ବତକୁ ତୁରେ ମରିବୁ ଅଇଲେ ।
ଋଷି କୋପ ହେବାର ସେ ବାରତା ପାଇଲା
ଦୁନ୍ଦୁଭୀ ଘେନିଣ ସେଠାକୁ ସେ ଗଲା ।
ଏ ପର୍ବତକୁ ନ ଆସେ ଶାପ୍ୟକୁ ଭୟକରି
ଜାଣିଣ ଛାମୁରେ ତାର ମିଳିଲେ ଚାପଧାରୀ ।

ବୋଇଲେ ବାଳୀକି ତୁରେକଲୁ ଏଡ଼େ କୃତ୍ୟ
ମୋହର ଆଶ୍ରମରେ ପଡ଼ିଲା ଯାଇ ରକ୍ତ ।
ଏତକ ଗର୍ବ ଯେ କଲୁ କିସପାଇଁ
କରପତ୍ର ଯୋଡ଼ିଣ କହେ କପିସାଇଁ ।
ଭୋ ମୁନି ମାତଙ୍ଗ ଯେ ଦୁନ୍ଦୁଭୀ ଦଇତ୍ୟ
ମାୟାବୀ ଦୈତ୍ୟର ଅଟେ ସାନ ଭ୍ରାତ ।
ଯୁଗେ ଯୁଗେ ଏମାନଙ୍କର ଶରୀର ଦୀର୍ଘପ୍ରତି
ଅଦୋଷେ କଟକ ଯେ ମୋର ପକାଇଲା ମନ୍ଥି ।
ତେଣୁ ଯୁଦ୍ଧ କରିଣ ମାଇଲି ତାକୁ ହାତେ
ପାଞ୍ଚଯୁଣ ଶରୀର ଅଟଇ ପରମାଦେ ।
ମୋହର ସେତେବେଳେ ଆୟତ୍ତ ଆଉ ନାହିଁ
କ୍ରୋଧରେ ଦେହ ମୋର ନିଆଁଗଲା ହୋଇ ।
ଭୋ ମୁନିବର ମୋତେ ନ ଜାଣି କୋପ କଲୁ
କଥା ନ ବିଚାରି ତୁ ଯେ ମୋତେ ଶାପ୍ୟଦେଲୁ ।
ଦେବଙ୍କ ହିତରେ ମୁଁ ଯେ ମାରଇ ଅସୁର
ନିଶ୍ଚିନ୍ତ ହୋଇଣ ତପ କର ମୁନିବର ।
ବିନା ଦୋଷେ ଅସୁର କରନ୍ତି ସମର
ମୋର ଦୋଷ ନାହିଁ ମୁନି କର ହେ ବିଚାର ।
ସେ ମୁନି ବୋଇଲେ ତୁରେ ଏକଥା ଭଲକଲୁ
ଏଡ଼େ ବଳବାନ ଅସୁରକୁ ପ୍ରାଣରେ ମାରିଲୁ ।
ରୁଧିର ପଡ଼ିଲା ଯେ ମୋହର ତପସ୍ଥାନ
ତେଣୁ ତୋତେ ଶାପ୍ୟ ମୁଁ ଦେଲି ହେ ରାଜନ ।
ଆଜହୁଁ ନୃପତି ପଣ ତୁ ଯେ କରିଥିବୁ
ଋଷ୍ୟମୁକ ପର୍ବତକୁ କେବେହେଁ ନ ଯିବୁ ।
ଗଲେ ପ୍ରାଣ ନିଶ୍ଚେ ଜାଣ ହାରିବୁରେ ତୁତ
ଏତେ କହି ସେଠାରୁ ଗଲେ ତପୋବନ୍ତ ।
ଶୁଣିଣ କପିମଣି ଗଲା ଯେ ବାହୁଡ଼ି
ଦୁନ୍ଦୁଭି ଦୈତ୍ୟର ଶବ କାନ୍ଧେ ଅଛି ପଡ଼ି ।
ଥୋକାଏ ଦୂର ନେଇଣ ଥୋଇଣ ତାକୁ ଗଲା
ସେଠାରେ ରହିଣ ଶବ ଅସ୍ଥିଗିରି ବୋଲାଇଲା ।
ସେ ଶବ ଫିଙ୍ଗିଦେଲା ବାଳୀ ମହାବଳ
ନୋହିଲେ ବଧ କେବେ ନୋହେ ଦୈତ୍ୟବଳ ।
ପାର୍ବତୀ ବୋଇଲେ ଶୁଣ ହେ ତ୍ରିଲୋଚନ
ସେଠାରୁ ସୁଗ୍ରୀବର ଯେ କି କହିଲା ଜାଣ ।
ଈଶ୍ୱର କହିଲେ ଶୁଣ ପଦକି ମୋହରି
ସେଠାରୁ ସୁଜ୍ଞାନୀ ଯେ ସୁଗ୍ରୀକି ପଚାରି ।
ଶ୍ରୀରାମ ପଚାରିଲେ ଶୁଣରେ ସୁଗ୍ରୀବର
ବାଳୀ ଯେ ମାଇଲା ପୁଣ ଦୁନ୍ଦୁଭୀ ଅସୁର ।
ତାହାର ଜ୍ୟେଷ୍ଠଭାଇ କଲାକ ପୁଣ କିସ
ଏହା ମୋତେ ସଂକ୍ଷେପି କହ ହେ ସୂର୍ଯ୍ୟବଂଶ ।

ସୁଗ୍ରୀବର ବୋଇଲେ ଶୁଣ ଦେବ ଏଥୁଅନନ୍ତରେ
ମାୟାବୀ ଅସୁର ଯେ ଥିଲା ନିଜପୁରେ ।
ଦୁନ୍ଦୁଭୀ ମରିବାର ବାରତା ସେ ପାଇଲା
ସାତ ପାଞ୍ଚ ଚାରି ଯାଇ କହିଲେ ତାକୁ ପରା ।
ବାରକୋଟି ଅସୁର ଯେ ଦୁନ୍ଦୁଭୀ ସଙ୍ଗେ ଆସି
ସାତଜଣ କେବଳ ଗଲେ ସେଠୁ ବଞ୍ଚି ।
ମାୟାଭୀ ଅସୁର ଆଗେ ସେ କହିଲେ
ଶୁଣିଲା ମାୟାବୀ ଦୈତ୍ୟ ଅନେକ ଶୋକ କଲେ
ମାୟାବୀ ଅସୁର କ୍ରୋଧ ସମ୍ଭାଳି ନ ପାରିଲା
କିଷ୍କିନ୍ଧ୍ୟା କଟକକୁ ବେଗେ ସେ ଅଇଲା ।
ଭାଇର ଛଳରେ ସେ ଯେ ଭାଙ୍ଗିଲା କଟକ
ତାହା ଦେଖି କହିଲେ ବାଳୀର ଲୋକ ।
ବାଳୀର ଆଗରେ ଯାଇ କହିଲେ ଧାଡିକାର
ଶୁଣିଣ ଅସୁର ଅଇଲା ନୃପବର ।
ମେଢ଼ ମଣ୍ଡପ ସେ ଯେ ଭାଙ୍ଗିଲା ସମସ୍ତ
ଶୁଣି କୋପକଲା ଯେ ବାସବର ସୁତ ।
ନବରୁ ବାହାରିଣ ଧାଡ଼ି କାର ଦେଲା
ଦେଖିଣ ମାୟାଭୀ ଯେ ମନରେ ଭୟ କଲା ।
କାଳ ଦେବତା ଯେହ୍ନେ ଜନ୍ତୁଙ୍କୁ ସେ ଆକ୍ରସୀ
ମାୟାଭୀକି ବାଳୀ ଯେ ତେସନପ୍ରାଏ ଦିଶି ।
ବୃଷଭ ରୂପ ଧରିଣ ଯେ ବେଗେ ପଳାଇଲା
ପଳାଇବା ଦେଖିଣ ବାଳୀ ବିଚାରିଲା ।
ଏ ଅସୁର ମାଇଲେ କଟକ ମୋର ସ୍ଥିର
ଦେବକାର୍ଯ୍ୟ ହୋଇବ ମୋତେ ଧର୍ମକରିବ ପାର ।
ଏମନ୍ତ ବିଚାରି ବାଳୀ ତାହାର ପଛରେ ଗଲା
ସେ ଯିବା ବିମ୍ବର ବାଟେ ପ୍ରବେଶ ହେଲା ।
ବିମ୍ବରେ ପଶିଣ ବାଳୀ ତାର ସଙ୍ଗେ ମିଳି
ଦେଖିଲେ ତାର ରାଜ୍ୟେ ଅନେକ ଦୈତ୍ୟପୁରୀ
ଯହୁଁ ସେ ବାଳୀବୀର ପ୍ରବେଶ ତହିଁ ହେଲା
ଦୈତ୍ୟବଳ ଘେନି ମାୟାଭୀ ଲେଉଟିଲା ।
ରଜନୀ ଶେଷରେ ବାଳୀ ସେ ସ୍ଥାନେ ପ୍ରବେଶ
ଦୁହେଁ ଯୁଦ୍ଧ କଲେ ଯେ ହୋଇଣ ପ୍ରବେଶ ।
ଛୟାଶୀ କୋଟି ଯେ ତାହାର ସୈନ୍ୟଗଣ
ଏକଜାତି ଅଟନ୍ତି ନୁହନ୍ତି ସେ ଯେ ଭିନ୍ନ ।
ସମୁଦ୍ର ପ୍ରାଏ ଘୋଟିଲେ ବାଳି ନୃପତିକୁ
ଭୟଭୀତି ନ କଲା ସେଠାରେ କପିପତି କାହାକୁ ।
ଇନ୍ଦ୍ର ଦେଲା ଗଦା ଯେ କରରେ ପୁଣ
ପିଲା ଅସୁରଙ୍କୁ ଉପ୍ରୋଧ ଦେଖିଣ ।
ସପ୍ତଦିନ ପର୍ଯ୍ୟନ୍ତେ ବିଷମ ଗୋଳ ହେଲା
ବାଆଷଠି କୋଟି ଅସୁର ସେ ନାଶିଲା ।
ରକ୍ତନଦୀ ଯେ ପୁରେ ବହେ ଜାଣ
ନାଚିଲେ ଖେଚରୀ ଯେ ଚାମୁଣ୍ଡା ହେଲେ ବଣ ।
ପିଚାସୁଣୀମାନେ ଯେ ରୁଧିର ପାନ କଲେ
ଶ୍ୱାନ ଶୃଗାଳ ଖାଇଣ ଯେ ସନ୍ତୋଷ ହୋଇଲେ ।
ଗୃଧ୍ର ପକ୍ଷୀମାନେ ସ୍ଥାନେ ସ୍ଥାନେ କ୍ରୀଡ଼ାକଲେ
ପାତାଳ ସୁମୁଦ୍ର ଯାଏ ରୁଧିର ପୁରୀ ଗଲେ ।
ଶୋଣିତରେ ଜାଣ ପୁଣ ମଡ଼ା ଯେ ଭାସିଗଲେ
ସାଗର ଭିତରେ ଯାଇ ପ୍ରବେଶ ହେଲେ ।
କଇଁଛ ଯେ କୁମ୍ଭୀର ମଗର ରାଘବ
ସେ ମଡ଼ାମାନଙ୍କୁ ଯେ ଭକ୍ଷିଲେ ଆଗ ।
ଶ୍ରାବଣ ମାସରେ ଯେହ୍ନେ ବର୍ଷାକାଳେ ନଦୀ
ବୁଡ଼ି ହୋଇ ପୂରିଣ ମନଭେଦୀ ।
କୋଟି କୋଟି କବନ୍ଧ ନାଚନ୍ତି ଯେ ବନ୍ଦର
ବାରଦିନ ପର୍ଯ୍ୟନ୍ତ ରକ୍ତ ବହିଲା ସେ ନଦୀର ।
ବାଷଠି କୋଟି ଅସୁର ଯହୁଁ ମଲେ
ଆଉ ଯେତେ ଦୈତ୍ୟ ଥିଲେ ଛାଡ଼ି ପଳାଇଲେ ।
ମାୟାବୀ ଅସୁର ପାଖେ କେହି ନ ରହିଲେ
ଦେଖିଣ ମାୟାଭୀ ଯେ କ୍ରୋଧ କଲେ ।
ବାଳୀର ସଙ୍ଗରେ ଆସିଣ ଯୁଦ୍ଧ କଲା
ସମତଳ ଯୁଦ୍ଧ ଯେ ଦୁହିଁଙ୍କର ହେଲା ।
ଏଥୁ ଅନନ୍ତରେ ଶୁଣ ହେ ଦାଶରଥି
ସୈନ୍ୟବଳଙ୍କୁ ଘେନି ଶୀଘ୍ର ମୁଁ ଗଲି ସେଠି ।
ମୁହିଁ ଯେ ବାଳୀ ପଛେ ପଛେ ଗଲି
ପାତାଳ ବିମ୍ବର ଦ୍ୱାରରେ ରହିଲି ।
ମନ୍ତ୍ରୀ ଅମାନତ ଯେ ମୋହର ସଙ୍ଗରେ ଥିଲେ
ବାଳୀ ମାୟାଭୀ ଯେ ପାତାଳେ ଯୁଦ୍ଧ କଲେ ।
ବେନିମାସ ପର୍ଯ୍ୟନ୍ତ ସେଠାରେ ସଂଗ୍ରାମ
ସୁଗ୍ରୀବର କହନ୍ତେ ଶୁଣନ୍ତେ ଶ୍ରୀରାମ ।
ଯେଦିନ ବାଳୀ ମାୟାଭୀକି ମାରିଲା
ପ୍ରାଣ ବିକଳେ ଅସୁର ରଡ଼ି ଏକ ଦେଲା
ରଡ଼ି ଦେଖି ବାଳୀ ଯେ ଦେନି ଗୋଡ଼ ଧରି
ଚିରି ପକାଇଲା ଯେ ବେନିଫାଳ କରି ।
ବିବର ଦ୍ୱାରବାଟେ ରକ୍ତ ଯେ ବାହାରେ
ଦେଖିଣ ଭୟରେ ଆମ୍ଭେ କାକୁତି ହୃଦରେ ।
ବିଚାରିଲୁ ବାଳୀ ଯେ ହେଲା ପ୍ରାଣେ ନାଶ
ସୈନ୍ୟବଳ ଘେନିଣ ମନରେ ହେଲୁ ତୋଷ ।
ବାଳୀକି ଦୈତ୍ୟ ଯେ ମାଇଲା ଏବେ ବଳେ
ଆମ୍ଭଙ୍କୁ ନାଶ ସେ କରି ଆସିଲା ସେ ହେଲେ ।
ଚାଲ ସେ ବିମ୍ବର ଦ୍ୱାରରେ ପୋତିବା
ନିଶ୍ଚିନ୍ତ ହୋଇଣ ଆମ୍ଭେ କିଷ୍କିନ୍ଧ୍ୟାରେ ଥିବା ।

ପାତ୍ରମନ୍ତ୍ରୀମାନଙ୍କୁ ଜଣାଇଲା କଥା
ବାଳୀ ମଲା ବୋଲିଣ ମନରେ ପାଇ ବ୍ୟଥା ।
ବଡ଼ ଗିରିବର ଗୋଟିଏ ଉପାଡ଼ିଣ ଆଣିଦେଲୁ
ପାତାଳ ବିମ୍ବରକୁ ପୋତିଣ ବାହାରିଲୁ ।
ନଗ୍ରରେ ପଶିଲୁ ଯେ ବିସ୍ମିତ ମୁଖ ହୋଇ
ତିନିମାସ ସେଠାରୁ ଦିନ ଯେ ଗଲା ବହି ।
ବିଚାର କଲି ମୁଁ ଯେ ମନ୍ତ୍ରୀପଣକୁ ନେଇ
ବାଳୀକଥା ମୁଁ ଯେ ମନରେ ଭାଳଇ ।
କିଷ୍କିନ୍ଧ୍ୟାରେ ଠାକୁର ଯେ ବାଳୀ ନୃପବର
ତାହାକୁ ମାଇଲା ନିଶ୍ଚୟ ମାୟାଭୀ ଅସୁର ।
ପାତ୍ରମନ୍ତ୍ରୀ ବୋଇଲେ ସୁଗ୍ରୀ ରାଜା ହୁଅ ଏବେ
ସୁଗ୍ରୀବ ରାଜା ହେଲେ ଶତ୍ରୁ ମରେ ତେବେ ।
ଏମନ୍ତ ବିଚାରିଣ ଅମାନତ୍ୟଗଣ
ଗଙ୍ଗା ସ୍ନାହାନ କରାଇ ଦେଲେ ପୁଣ ।
ଦଣ୍ଡ ସିଂହାସନ ଭଣ୍ଡାରରୁ ଆଣିଲେ
ମୋହର ଘରିଣୀକୁ ସୁବେଶ ଯେ କଲେ ।
ଆସ୍ଥାନ ନବର ଯେ ମଣ୍ଡିଲେ ଯତ୍ନକରି
ତୀର୍ଥ ଜଳ ଆଣିଲେ ପୂର୍ଣ୍ଣ ଶୂନ୍ୟଧରି ।
ଦେବତାଙ୍କ ବିଧିରେ ଅଭିଷେକ କରାଇ
ଟମକ ନିଶାଣ ଭେରୀ ତୂରୀ ଯେ ବାଜଇ ।
ଅମାତ୍ୟ ପାତ୍ର ମନ୍ତ୍ରୀ ଚାମର ଧରି ଢାଙ୍କି
କେହୁ ଦଣ୍ଡ ଛତ୍ର ତୋଳିଣ ଧରେ ବାଙ୍କୀ ।
ରାଜା ଅଭିଷେକ ବିଧାନେ ଶେଷ ପ୍ରମାଣ
ଏମନ୍ତେ ଅମାନତ୍ୟ କଲେକ ଭିଆଣ ।
ରୁମାଙ୍କୁ କୋଳେ ଧରି ଅଭିଷେକ ହେଲେ
ସପ୍ତମାସ ପର୍ଯ୍ୟନ୍ତ ରାଜପଣ କଲେ ।
ଏସନକ ସମୟେ ମିଳିଲା ବାଳୀ ବୀର
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ସୁଗ୍ରୀବର ।
ବେନିମାସେ ମାୟାବୀକି ବାଳୀବୀର ମାଇଲା
ପୂର୍ଣ୍ଣ ଦଶମାସ ହେ ସେ ପୁରେ କିସ କଲା ।
ସେ କଥା ମୋ ଆଗେ କହ ହେ ମିତ ମୋର
ଶ୍ରୀରାମ ବଚନେ କହଇ ସୁଗ୍ରୀବର ।
ସେ କଥା ଶୁଣ ଏବେ କୋଦଣ୍ଡ ଚାପଧାରୀ
ମାୟାବୀ ଅସୁରକୁ ବାଳୀ ଯେ ବୀର ମାରି ।
ସେଠାରେ ବାଳୀବୀର ମନରେ କଲା ବିଚାର
ବୋଇଲା ଏ ପୁର ତ ଅଟଇ ରାକ୍ଷସର ।
ଅନେକ ଦନୁଜ ଯେ ଅଛନ୍ତି ଏଠାଇ
ଏ ପୁର ମୁଁ ଦେଖିବା ଥରେ ଯାଇ ।
ମାରିବି ଅସୁର ମୁଁ ଯେ ଦେବଙ୍କ କାର୍ଯ୍ୟରେ
ଏମନ୍ତ ବିଚାରି ସେଠାରୁ ଚଳିଗଲେ ।

ମାୟାଭୀ ଅସୁର ପୁତ୍ର ସେଠାରେ ରାଜା ହେଲା
ସେଠାରେ ବଉଳାପୁରରେ ଜାଇ ପ୍ରବେଶିଲା ।
ଦେଖିଲା ସେ ପୁରଗୋଟି ଧବଳ ପ୍ରକାର
ନବର ଭିତରେ ପଶିଲା ବାଳୀବୀର ।
ସେ ରାଜା ସିଂହଦ୍ୱାରେ ମିଳିଲା ସତ୍ୱର
ବାଳୀକି ଦେଖିଣ ସେ ଯେ ନାରୀ କଟକର ।
ବୋଇଲେ ଅପୂର୍ବ ରୂପ କାହୁଁ ଏ ଅଇଲା
କାଳଯୁଗେ ଏ ରୂପେ ଦେଖାତ ନ ଥିଲା ।
ବାନର ମୁଖଗୋଟି ନର ଶରୀର ଅଟେ
ମେରୁ ଗିରି ସମାନ ଏ ଅଟଇ ଗୋଟେ ।
ଏମନ୍ତ ବିଚାରନ୍ତେ ବାଳୀ ଯେ ରଡ଼ିଦେଲା
ଏ ପୁରେ କିଏ ରାଜା ଆସରେ ବୋଇଲା ।
ବାଳୀର ରଡ଼ିରେ ଚମକେ ସେହି ପୁର
ବଉଳାସୁର ଅସୁର ହୋଇଲା କାତର ।
ଏମନ୍ତ ସମୟେ ତାର ଛାମୁରେ ଚାର କହି
ଶୁଣିମା ହେଉ ଅବା ସାବଧାନ ହୋଇ ।
ତୋର ପୁରେ ଏକ ବାନର ଅଇଲା
ହସ୍ତରେ ଗଦାଏ ଯେ ଧରିଣ ହୋଇଗଲା ।
ନବରେ ପଶନ୍ତେ ଯେ ନରନାରୀ ଦେଖି
ଆଚମ୍ବିତ ରୂପ ଦେଖି ମନରେ ହେଲେ ସୁଖୀ ।
ତୋର ସିଂହଦ୍ୱାରେ ଡାକଇ ଆସିକରି
କେହୁ ପୁରେ ରାଜା ଆସରେ ବେଗକରି ।
ମୋର ସଙ୍ଗେ ଯୁଦ୍ଧକର ନୋହିଲେ ମୋତେ ବୋଧ
ବୋଧ ଶୋଧ ଦୁଇ କଥା ପାଇଲେ ମୋତେ କ୍ରୋଧ ।
ଏମନ୍ତ ବଚନ ସେ କହଇ ରହି
ଆହୁରି କଥା ଏକ ଶୁଣ ନରଦେହୀ ।
ବୋଇଲେ ମାୟାବୀ ଦୁନ୍ଦୁଭୀ ନାଶଗଲେ
ମୋହର ସଙ୍ଗେ ସେହୁ ଭଗାରୀ ଯେ ହେଲେ ।
ମୁଁ ଅଟେ ଅସୁରରାଜା କୁମର ବାଳୀବୀର
କିଷ୍କିନ୍ଧ୍ୟା କଟକେ ଘର ମୋର ।
ସ୍ୱର୍ଗ ମଞ୍ଚ ବେନିପୁର ସାଧିଲି ବାହୁବଳେ
ଏବେ ପାତାଳକୁ ଦୀର୍ଘ ଦିନ ମୋର ହେଲେ ।
ଏମନ୍ତ ବୋଲି ବଚନ କହଇ କପିରାଣ
କେଉଁ କଥାରେ ତୁମର ଅଟଇ ସନମାନ ।
ବଉଳାସୁର ବୋଲେ ଜଣାଗଲା ମୋର ପୁରେ
ଯୁଦ୍ଧକଲେ ତାହାକୁ ମୁଁ ଯେ ନ ପାରିବି ଭଲେ ।
ମାୟାଭୀ ଅସୁର ଅଟେ ଦୈତ୍ୟକୁଳେ ବଡ଼
ତାକୁ ଯେବେ ମାଇଲା ମୋର ନାହିଁ ବଳ
ଚାର ଜଣାଇଲା ସେ ଯେ ନ ମରନ୍ତା
ଏକା ହୋଇଣ କିମ୍ପା ଏ ପୁର ଆସନ୍ତା ।

ଶୁଣିଣ ବଉଳାସୁର ବେଗ ହୋଇ ଉଠି
ବାଳୀ ଆଗରେ ପ୍ରବେଶ ହେଲା ବେଗି ।
ମଙ୍ଗଳ ଆଳତୀ ଧୂପ ଦୀପ ଦେଲା
ତୋତେ ମୁଁ ଯୁଦ୍ଧ ଦେଇ ନପାରେ ବୋଇଲା ।
ଶୁଣିଣ ବାଳୀବୀର ଯେ ବୋଧ ହୋଇଲା
ସେଠାରୁ ବାଳୀବୀର ଲେଉଟି ଅଇଲା ।
ହିରଣ୍ୟ ପୁରରେ ଯାଇ ପ୍ରବେଶ ହୋଇଲା
ସିଂହଦ୍ୱାରେ ପ୍ରବେଶି ସିଂହରଡ଼ି ଦେଲା ।
ସେ ପୁରର ନାରୀ ଦେଖନ୍ତି ଆସିକରି
ପଚାରିଲେ କେଉଁଠାରୁ ଅଇଲୁ ତୁ ଏପୁରୀ ।
କାହା କୋଳେ ଜାତ କେଉଁ ଦେଶେ ଘର
ଏମନ୍ତ ବଚନ ଯେ କହିଲେ ଅସୁର ।
ବାଳୀବୀର ବୋଇଲା ମୋର ମଞ୍ଚପୁରେ ଘର
ଇନ୍ଦ୍ରକୁମର ମୁଁ ଯେ ବାନର ଅବତାର ।
କିଷ୍କିନ୍ଧ୍ୟା କଟକରେ ଅଟଇ ନୃପବର
ସ୍ୱର୍ଗ ମଞ୍ଚ ସାଧିଲି ଅଇଲି ମୁଁ ପାତାଳପୁର ।
ମାୟାଭୀ ଅସୁର ମାରି ବଉଳାସୁର ମଣି
ଏପୁରକୁ ଅଇଲି ଶୁଣରେ ତୁମ୍ଭେ ପୁଣି ।
ଅସୁର ବୋଇଲେ ତୁରେ ଶୁଣ କପିବର
ଯୁଦ୍ଧ କରିବାକୁ ବଳ ଯେ ନାହିଁ ଆମ୍ଭର ।
ଏ ରାଜ୍ୟରେ ରାଜା ଯେ ବଳି ନାତି
ଯୋଗ ଲୟ କରିଣ ହିରଣ୍ୟ ଗର୍ଭେ ସ୍ଥିତି ।
ତିନିମାସ ଗଲେ ଯେ ହୋଇବ ବାହାର
ସେତେବେଳେ ସେ ଯେ ଯୁଦ୍ଧର ବେଭାର ।
ବାଳୀବୀର ବୋଇଲା ଦେଖିବା ତାକୁ ଥରେ
ପଶିବି ମୁଁ ବଳେ ହିରଣ୍ୟଗର୍ଭରେ ।
ଅସୁର ବୋଇଲେ ଏ ଗର୍ଭେ ଯେ ପଶଇ
ପୂର୍ବର ଜନ୍ମ ତାର ଏଠାରୁ ପାଶୋରଇ ।
ନାରାୟଣ ବ୍ୟତୀତ ଅନ୍ୟ ଯେ ନୋହେ ପଶି
ଏ ପୁର ନିର୍ମାଣବେଳେ ବିଧାତା ଛନ୍ତି ଭାଷି ।
ଶୁଣିଣ ବାଳୀବୀର ସେଠାରୁ ଲେଉଟିଲା
ଚିନ୍ତାମଣି ପାଟଣାରେ ଯାଇଣ ମିଳିଲା ।
ପାଟଣା ସିଂହଦ୍ୱାରେ ଯାଇ ଉଭା ହେଲା
ଭୟଙ୍କର ରଡି ଯେ ସେଠାରେ ବାଳୀଦେଲା ।
ଶୁଣିଣ ବେନିସିଂହ ଉଠିଲେ ଗଳଗାଜି
ବୋଇଲା ବାନର ଯେ ପଳା ଏଠୁ ଭାଗି ।
ବାନର ହୋଇଣ ତୋର ଏଡ଼େ ବଳବାନ
ସିଂହର ସଙ୍ଗେ ସମର କରିବୁକିରେ ପୁଣ ।
ଶୁଣିଣ ବାଳୀରାଜା କ୍ରୋଧରେ ବେଗେ ଉଠି
ସିଂହକୁ ବିଧାଏ ପ୍ରହାରିଲା ସେଠି ।

ଦେଖିଣ ରତ୍ନସିଂହ କ୍ରୋଧରେ ଜରଜର
ବେନିପାଟିରେ କାମୁଡ଼ି ଟେକିନେଲା ସିଂହବୀର ।
ପକ୍ଷେକ ପରିଯନ୍ତେ ଟେକିଲା ଗଗନେ ଉଠାଇ
ତେଣୁ ସେ ବାଳୀବୀର ନିର୍ମାଖୀ ହୋଇ ।
ପକ୍ଷେ ଉତ୍ତାରୁ ସିଂହ ହାଇମାରେ ପୁଣ
ସେତେବେଳେ ଖସି ପଡ଼ିଲା ବାଳୀ ଜାଣ ।
ପଡ଼ିବାରବେଳେ ପଳାଇଲା ମହାବୀର
ସେଠାରୁ ହାରିଲା ଯେ ବାସବ କୁମର ।
ସେଠାରୁ ବାଳୀବୀର ଗୋଲେଖପୁର ଗଲା
ଗୋଲଖ ଦ୍ୱାରେ ଏକ ସ୍ତିରୀ ଦେଖିଲା ।
ପଚାରିଲା ଏ ପୁର ଅଟଇ କାହାର
ସେ ବୋଇଲା ଗୋଲେଖ ନାରାୟଣଙ୍କ ଘର ।
ଶୁଣିଣ ବାଳୀବୀର ସେଠାରୁ ଲେଉଟିଲା
ସପ୍ତ ବ୍ରହ୍ମମଣ୍ଡଳେ ବ୍ରାହ୍ମଣ ଦ୍ୱାରେ ମିଳିଲା ।
ସେଠାରେ ପରମହଂସ ହୋଇଛି ଦେଖିଲା
ଦେଖିଣ ବାଳୀବୀର ରଡ଼ି ଏକ କଲା ।
ସେ ରଡ଼ି ହଂସ ଶୁଣି ପକ୍ଷ ବିସ୍ତାରିଲା
ପକ୍ଷରଘାତେ ବାଳୀ ସେଠାରୁ ଉଡ଼ିଗଲା ।
ପନ୍ଦର ଯୁଣରେ ବାଳୀବୀର ପଡ଼ିଲା
ସେଠାରୁ ଉଠିଣ ବେଗରେ ଚଳିଗଲା ।
ବାସୁକୀ ନାଗଦ୍ୱାରେ ଯାଇଣ ପ୍ରବେଶିଲା
ସପ୍ତଫେଣା ନାଗକୁ ସେଠାରେ ଦେଖିଲା ।
ବୋଇଲା ମୋର ସଙ୍ଗେ ରଣଗୋଳ କର
ଅନନ୍ତନାଗ ବୋଲେ ମହୀ ମୋ ଶିର ପର ।
ଛାଡ଼ିଲେ ରସାତଳ ପଡ଼ିବ ମେଦିନୀ
ଏଥିର ସକାଶେ ଯେ ଯୁଦ୍ଧ ନ ହୁଏ ପୁଣି ।
ଶୁଣିଣ ବାଳୀବୀର ଗଦା ଧରିଣ ଧାଇଁ
ତିନିମୁଣ୍ଡ ଅହଲ୍ୟାକୁ କାମୁଡ଼ି ଝିଙ୍କି ନେଇ ।
ଅହୀ ଛୁଅନ୍ତେ ବାଳୀ ହୋଇଲା ହତଜ୍ଞାନ
ପିତାକୁ ସୁମରିଲା ଯେ ବାଳୀ ସେଠାରେ ପୁଣ ।
ଜାଣିଣ ବାସବ ଯେ ବେଗେ ଚଳିଗଲେ
ପାତାଳପୁରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ବାଳୀବୀର ଶୋଇଛି ମରିକରି
ଗାରେଡ଼ି ମନ୍ତ୍ର ପଢ଼ି ଜୀଅନ୍ତେ ବଜ୍ରଧାରୀ ।
ଚେତନା ପାଇବାରୁ ଉଠିଲା ବାଳୀବୀର
ପିତାକୁ ଦେଖିଣ ପାଦେ କଲା ନମସ୍କାର ।
ବାସବ ବୋଇଲେ ବାଳୀ ଏ ପୁରେ ବସନ
ଅଇଲେ ସାଧିବେ ଏ ମହୀ ନାରାୟଣ ।
ବେଗେ ତୁ ପୁରୀ ବାହାର ବାଳୀ ଯୋଦ୍ଧା
ତୋତେ ଯେ ମାରିବ ଏ ପୁର କଲେ ନିନ୍ଦା ।

ଏତେ ବାସବ ନାଗରାଜାଙ୍କୁ ଦେଖି
ବାସୁକୀ ନମସ୍କାର ହୋଇଲା ଦେବଙ୍କର ସାକ୍ଷି ।
ଦେଖିଣ ବାଳୀ ଯେ ପିତାଙ୍କୁ ପଚାରି
ତୋଠାରୁ ବଡ଼କି ମହୀଧାରୀ ।
ଇନ୍ଦ୍ର ବୋଇଲେ ଶୁଣ ତୁ କୁମର
ଏମନ୍ତ ନାରାୟଣ ଅଟଇ ମହୀଧର ।
ମୋହରି ପରି କେତେ ସୁର ରାଜା ଗଲେ
ଅନନ୍ତ ବାସୁକୀକି ସମାନ ନୋହିଲେ ।
ଏ ଅନନ୍ତ ନାଗର ତିନି ରୂପ ଅଟେ
ନିଜ ରୂପ ଈଶ୍ୱର ଜାଣ ତୁ ପ୍ରତ୍ୟକ୍ଷେ ।
ମାୟାରୂପ ଗୋଟି ଅନନ୍ତନାଗ ଏକ ହୋଇ
ଛାୟା ରୂପଗୋଟି ହରି ସଙ୍ଗରେ ଅଛି ରହି ।
ଛାୟା ରୂପ ଉପରେ ଶୟନ ନାରାୟଣ
ଅନନ୍ତ ଶୟନ ବୋଲି ତାହାର ନାମ ପୁଣ ।
ତାହାର ପରେ ହରି କରିଛନ୍ତି ଶୟନ
କ୍ଷୀରଶାୟୀବାସୀ ଯେ ଅଟନ୍ତି ନାରାୟଣ ।
ସେ ଛାୟା ଈଶ୍ୱର ପ୍ରତିଜ୍ଞା ଅଟେ ଟାଣ
ବେନି ନୟନ ବେନିକୋଟି ସୂର୍ଯ୍ୟଜ୍ୟୋତିଟାଣ
ନାସା ବେନି ପବନୁଁ ଅଟେ ବର
ପବନ ଲାଗି ଦେହ ଅଟଇ ସାର ।
ପବନ ନଥିଲେକି ଶରୀର ବହିପାର
ଶରୀରଗୋଟି ଛାୟାରେ ଅଟେ ବିଶ୍ୱଧର ।
ସେ ବଂଶୀଧର ଅଟେ ସପତ ପୁର ପୁଣ
ଶକେ ଶତେ ସାଗର ପୁରେକ ଜାଣ ପୁଣ ।
ଏରୂପେ ଈଶ୍ୱର ଛାୟା ନବେ ରୂପ ଗୋଟି
ସମସ୍ତ ଫେଣ ତାର ବୈକୁଣ୍ଠ ହୋଇଛିଟି ।
ସେ ବୈକୁଣ୍ଠରେ ଲୀଳା କରେ ବାସୁଦେବ ଜାଣ
ଶୟନ ନାରାୟଣର ଛାୟା ରୂପ ଜାଣ ।
କମଳା ସାଙ୍ଗରେ ବିହରେ ନରହରି
ଦୁଷ୍ଟଜନ ମାରିବାକୁ ସେ ରୂପ ଅବତରି ।
ଯେତେବେଳେ ସେ ରୂପ ହୁଅଇ ଅବତାର
ଈଶ୍ୱର ଛାୟା ରୂପର ସଙ୍ଗତେ ଆଗେ ପୁଣ ।
ମାୟା ରୂପଗୋଟି ବାସୁକୀ ନାଗ ଜାଣ
ଅଠରକୋଟି ନାଗ ତାହାର ଅଂଶ ପୁଣ ।
ସେ ନାଗ ସପ୍ତପୁରକୁ ଧରି ରହି
ସପତ ରୂପ ତାଙ୍କ ପ୍ରକାଶ ବୋଲାଇ ।
ନିଜ ରୂପ ଗୋଟିଏ କପିଳାସ ବାସୀ
ଚଉଦ ଗୋଟି ଅଂଶ ତାହାର ବିଶେଷି ।
ସକଳ ଜୀବର ପଡ଼ିଦାତା ଅଟେ ସାର
କର୍ମକର୍ତ୍ତା ତେଣୁ ସେ ଈଶ୍ୱର ।

ନାରାୟଣ ଅଟନ୍ତି ଯେ ସମସ୍ତଙ୍କର ପ୍ରାଣ
ଶୁଣିଣ ବାଳୀରାଜା ସନ୍ତୋଷେ କହେ ପୁଣ ।
ବେଦବର ଅଟନ୍ତି ସବୁର କାରଣ
ନାରାୟଣ ଯେବେ ସବୁରି ଅଟେ ପ୍ରାଣ ।
ବିଧାତା ଅଟେ କିସ କହ ହେ ପ୍ରମାଣ
ଈଶ୍ୱର ଯେବେ ସବୁରି କର୍ମ ଜାଣ ।
ବାସବ ଦେବତା ତା ଆଗେ କହେ ପୁଣ
ବେଦବର ଯହୁଁ ଅଟଇ ବିଧାତା ନିର୍ମାଣ ।
ସବୁ ଦେବଙ୍କର ହେବୁ ପିଣ୍ଡ ଯେ ଅଟେ ପ୍ରଣ
ରକ୍ତ ବୀର୍ଯ୍ୟ ଦୁହିଙ୍କି ଏକଠାବ କରି ପ୍ରଣ ।
ତେଣୁ ସେ ରୂପଗୋଟି ଗଢ଼ି ସେ ବିଚାରି
ଯୋଗର ପ୍ରତାପରେ ଯେହୁ ଜନ୍ମ କରି ।
ତେଣୁ ସେ ପିତା ବୋଲି ବୋଲନ୍ତି ସର୍ବଜନ
ସେ ବେଦବର ଅଂଶରେ ମୁନିଙ୍କର ଜନ୍ମ ।
ସେ ମୁନିମାନେ ତପସ୍ୟା କରନ୍ତି ବହୁତଥ୍ୟ
ସେ ମୁନିମାନଙ୍କ ହେତୁ ସବୁରି ଜୀବ ସୃଷ୍ଟ ।
ଜ୍ଞାନୀବନ୍ତ ହୋଇଣ ଲଭନ୍ତି ସେ କାରଣ
ଏକଥା ଗୋଟିକ କହଇ ପ୍ରମାଣ ।
ଛୟାଶୀ କୋଟି ମୁନି ଯେ ବହ୍ମାସାର
ବତିଶ କୋଟି ସର୍ବ ଅଟନ୍ତି ସେ ପ୍ରକାର ।
ନାରାୟଣ ଅଂଶରେ ଅଟନ୍ତି ବାରକୋଟି
ମୋହର ଅଂଶେ ସକଳ ଜଗତଟି ।
ଦେବତାଙ୍କ ଅଂଶରୁ ସକଳ ଜୀବଜନ୍ତୁ ପୁଣ
କମଳା ଅଂଶରୁ ସବୁ ଦେବୀ ଜାଣ ।
ଦେବୀଙ୍କ ଅଂଶରୁ ସକଳ ନାରୀ ଜାତ
ନାରାୟଣ ଅଂଶରୁ ସକଳଭେଳା ଅଟେ ସତ୍ୟ ।
ଈଶ୍ୱର ମାୟାରେ ସମସ୍ତଙ୍କର ଲୀଳା
ବ୍ରହ୍ମାର ମାୟାରେ ସର୍ବେ ରୂପବନ୍ତ ହେଲା ।
ଦେବୀଙ୍କ ମାୟାରେ ସମସ୍ତ ଜାଣ କୃତ
ମୋର ମାୟାରେ ବୀର ଶୁର ସେତ ।
ଦେବୀଙ୍କର ମାୟାରେ ରତି ଯେ ଲୀଳା ସାର
ସମସ୍ତଙ୍କର କଥା ଯେ ନାରାୟଣ ଭାଙ୍ଗିବାର ।
ନାରାୟଣ କର୍ତ୍ତା ଯେ ସବୁଙ୍କୁ ଜଗିଥାଇ
ଏମନ୍ତ ପ୍ରକାର ଯେ ସର୍ବସିଦ୍ଧି ଅଟଇ ।
ଏଥୁ ଅନନ୍ତରେ ପଚାରେ ବାଳୀରାଜା
ଶୁଣ ପିତା ତୁମ୍ଭେ ଯେ ମୋର ବଡ଼ ତେଜ୍ୟା ।
ଯେବଣ ପକ୍ଷୀ ହାତରେ ଉଡ଼ିଗଲି ମୁହିଁ
ସେ ପକ୍ଷୀ ଗୋଟି କେବଣ ଅଟଇ ।
ସୁର ରାଜା ବୋଇଲାରେ ବ୍ରହ୍ମାଙ୍କ ବାହନ
ପରମହଂସ ଅଟଇ ସେ ପକ୍ଷୀର ନାମ ।

ବାଳୀରାଜା ବୋଇଲା ଯିଏ ମୋତେ କାମୁଡ଼ିଲା
ସେ ସିଂହର ପ୍ରତାପ ତ ସବୁଠାରୁ ବଳିଲା ।
ବାସବ ବୋଇଲେ ସେ ଯେ ପାର୍ବତୀ ବାହନ
ମୋପରି କୋଟି ରାଜା ଯେ ସେବନ୍ତି ତା ଚରଣ ।
ସେହି ସିଂହ ପ୍ରତାପରେ ମହିଁଷାସୁର ମଲା
ଅସୁରବଳକୁ ସେ ଯେ ଦଳି ପକାଇଲା ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଦେବତାଙ୍କ ହସ୍ତେ
ସେ ଅସୁର ନ ମରେ ଯେ ହୋଇ ବଳବନ୍ତେ ।
ସପ୍ତପୁରେ ପଶି ପାର୍ବତୀ ଦେବୀ ମାରି
ସମସ୍ତ ଉପରେ ସିଂହ ଅଟଇ ମହାବଳୀ ।
ଶୁଣି ବାଳୀରାଜା ଯେ ତୃପ୍ତ ସେ ହୋଇଲା
ପିତାର ଚରଣେ ସେତ ପ୍ରଣମିତ କଲା ।
ନାଗରାଜା ଚରଣେ ଶତେବାର ଲୋଟି
ପିତାଙ୍କୁ କହିଣ ବାରେ ଅଇଲା ଲେଉଟି ।
ସେ ବିମ୍ବରେ ପଶିବା ଦେଖିଲା ମୁଦି ପୁଣି
ପର୍ବତ ପେଲି ପକାଇ ଦେଲା ତତକ୍ଷଣି ।
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ଆସି ହେଲା
ବାଟରେ ଚାର ପୁଣି ବାରତା କହିଲା ।
ତୋର ଭାଇ ଏ ରାଜ୍ୟରେ କଲା ରାଜପଣ
ତୁ ହେ ପାତାଳେ ଉଛୁର କଲୁ ପୁଣ ।
ଶୁଣିଣ ବାଳୀବୀର ମନରେ କ୍ରୋଧ ହେଲା
ମରିବାର ମୋ ଭାଇ ବାଟରେ ଯେ ଚାହିଁଥିଲା ।
ଏମନ୍ତ ବିଚାରି କ୍ରୋଧରେ ଆସି ପୁଣ
ଯେତେବେଳେ ବିପତ୍ତି ପଡ଼ିଲା ମୋତେ ଜାଣ ।
ଦେଖି ପାତ୍ର ମନ୍ତ୍ରୀ ଯେ ପଳାଇଲେ ଡରି
ମୁହିଁ କେବଳ ରହିଲି ହୃଦୟେ ଦମ୍ଭ ଧରି ।
ମୋତେ ଦେଖି ବାଳୀବୀର ମନେ କ୍ରୋଧହେଲା
ନିର୍ଘାତ ଶବଦ କରି ବିଧାଏ ମାଇଲା ।
କୋପମୁଖ ହୋଇଣ ସେ ଯେ ନୟନ ତରାଟୀ
ତେଣୁ ସେ ବଳ ବପୁ ମୋହର ଗଲା ତୁଟି ।
ପାତ୍ର ଅମାତ୍ୟଙ୍କୁ ବୋଇଲା ସେ ଯେ ଚାହିଁ
ଏ ବିଚାର କରରେ କେବଣ ଗୁଣ ପାଇଁ ।
ସାହସ ତୁମରିରେ ଅଟଇ ବହୁତ କରି
ତୁମକୁ ପାଳଇ ମୁଁରେ ପୁତ୍ର ସମ ପରି ।
ମୁହିଁ ଥିଲେ ତୁମ୍ଭର ଚିନ୍ତା ନ ଲାଗଇ
କେବଳ ଗୁଣ ଧରିଣ କରରେ ଧରଇ ।
ରାଜ୍ୟର ଶତ୍ରୁକୁ କିରେ ଯାଇଥିଲେ ମାରି
ଦୈତ୍ୟକୁ ମାରିଣ ମୁଁ ଯେ ପାତାଳ ସାଧକଲି ।
ବର୍ଷେ ପର୍ଯ୍ୟନ୍ତ ପାତାଳେ ସମର
ଦୁଇମାସେ ମାୟାଭୀ ନାଶ ଗଲା ଅସୁର ।

ବରଷକେ ଯେ ପାତାଳପୁର ସାଧ କଲି
ବିମ୍ବରେ ପଶିଣ ଯେ ବାଟ ନ ପାଇଲି ।
କେବଣ ଗୁଣ ପର୍ବତ ପୋତି ସେ ଦୁଆର
ପେଲି ଦେଇ ଅଇଲି ମୁଁ ଯେ ନିଜପୁର ।
ଦେଖିଲି ସୁଗ୍ରୀବ ଏଠାରେ ରାଜା ହୋଇ
ବାଟରେ ଚାର ମୋତେ କହିଲାରେ ଯାଇ ।
ତୁମ୍ଭମାନଙ୍କର ବିଚାର ଏମନ୍ତ ଯୋଗାଇ
ଏଣେ ସୁଗ୍ରୀବର ମୋର ସାନଭାଇ ।
ଯୁବରାଜ ପଣରେ ପୃଥ୍ୱୀ ଯେ ରଖେ ଏହି
ଏଡ଼େ ସମ୍ପଦ ଛାଡ଼ି ତଦାଗ୍ରେ ହାୟ ଯେ ହୋଇ ।
ଜ୍ୟେଷ୍ଠଭାଇ ଇଚ୍ଛାରେ ହୁଏ ଯେ ନୃପତି
ଆବର ଅଟଇ ଯେ ଜଗତେ ବିଖ୍ୟାତି ।
ସୁର ଅସୁର ଯେ କରନ୍ତି ମୋତେ ଭୟ
ମୁହିଁ ସିନା ଅଟଇରେ ଜଗତେ ବିଜୟୀ ।
ଜନ୍ତୁପତି ମୋତେ ଦେଖି ଭୟ ଯେ କରଇ
ବାସବ ପିତା ମୋର ସ୍ୱର୍ଗରେ ଧରଇ ।
କାଳଫାଶ ଦେବକୂଟ ନ ଲାଗଇ ମୋତେ
ଅଧର୍ମକୁ ନ ଯାଇ ଧର୍ମରେ ଥାଏ ନିତ୍ୟେ ।
କିଷ୍କନ୍ଧ୍ୟା ଜନ ପ୍ରଜାଙ୍କୁ ମନରେ ନାହିଁ ଭୀତି
ବର୍ଷକ ଭିତରେ ଲକ୍ଷ୍ୟ ଏଡ଼େ ଗତି ।
ଯୁଗ ପର୍ଯ୍ୟନ୍ତ ରାଜା ମାନରେ ଜାଣ
ଯୁଦ୍ଧ କରୁଛନ୍ତି ଯେ ଅନ୍ତର ପୁଣ ।
କ୍ଷଣକେ ଯେ ପ୍ରବୋଧନ କଲା ମନ୍ତ୍ରୀଗଣ
ତୋହର ସୁଗୀବର ଯେ କେଉଁ ଭଲ ଗୁଣ ।
ଏମନ୍ତ ବଚନ ଶୁଣି କହେ ସୁଗ୍ରୀବର
ବରଷେ ହେଲା ଗଲ ତୁମ୍ଭେ ପାତାଳପୁର ।
ବିମ୍ବର ଦ୍ୱାରେ ମୁଁ ଯେ ବର୍ଷକେ ରହିଲି
ତୋହର ସନ୍ଧାନ ଯେ କିଛି ନ ପାଇଲି ।
ବିଚାରିଲି ଭାଇକି ମୋର ପକାଇଲା ମାରି
ପାତାଳକୁ ଯିବାକୁ ଭୟ ଯେ ମୋହରି ।
ଏମନ୍ତ ସମୟେ ଦୁର୍ଯ୍ୟୋଗ ହେଲା ଦେଖା
ବିମ୍ବର ଦ୍ୱାରେ ରକ୍ତ ବାହାର ହୋଇ ସଖା ।
ସେଠାରୁ ଆଶା ମୋର ନିରାଶା ହୋଇଲା
ବିଚାରିଲା ପୁଣ ଅସୁର ନାଶ କଲା ।
ବିମ୍ବର ଦ୍ୱାର ପୋତି ହୋଇଲି ଅଭିଷେକ
ମୋତେ କ୍ରୋଧେ ଚାହୁଥିଲା ବାସବର ସୁତ ।
ମୋଠାରୁ ଶୁଣି ସେ କ୍ରୋଧ ଶାନ୍ତି ହେଲା
ଏତେ ବୋଲି ଆସିଣ ବାଳ ମୋର ଧଇଲା ।
କଚାଡି ପକାଇ ଦେଲା ଜଗତୀ ଉପର
ଜ୍ଞାନ ବଣା ହୋଇଲା ଯେ ପଳାଇ ତରତର ।

ଧବଳ ଛତୀ ହନୁମନ୍ତ ଧରିଥିଲା
ତାହାଙ୍କୁ ବାଳୀ ଯେ ଗୋଇଠାଏ ମାଇଲା ।
ଏ ଯେ ନୀଳ ମୋର ଛାମୁରେ ବିଞ୍ଚଇ
ଏହାକୁ ବାଳୀ ଯେ ବହୁତ ଧିକାରଇ ।
ସୁଷେଣ ମନ୍ତ୍ରୀ ଯେ ଧରଇ ଛତ୍ରୀଦଣ୍ଡ
ସେ ଦଣ୍ଡ ଭାଙ୍ଗିଣ ବାଳୀ କଲା ଯେ ଖଣ୍ଡ ଖଣ୍ଡ ।
ଜମ୍ବେବ ମୁଖକୁ ସେ ଯେ ବିଧାଏ ମାରିଲା
ତାହାର ଯୋଗେ ସିନା ସୁଗ୍ରୀ ଯେ ରାଜାହେଲା ।
ଜଗତୀର ତଳେ ମୁଁ ଉଠିଣ ରହିଥିଲି
ଲଜ୍ଜାରେ ମୁଖ ମାଡ଼ିଣ ସେଠାରେ ଶୋଇଲି ।
ପୁଣି ଯାଇ ତାହାର ଧଇଲାକ କେଶ
ଶିର ଛେଦିବ ବୋଲି ମନରେ କଲା ପ୍ରାସ ।
ଗନ୍ଧମାର୍ଦ୍ଦନ ଯେ ତିଆରେ ଧର୍ମବଳ ପକ୍ଷଧରି
ମୋଦର ଭାଇ ମାରିଲେ ନିଶ୍ଚେ ତୁ ଯିବୁ ମରି ।
ନ ରହୁ ନଗ୍ରରେ କରିଦିଅ ବାହାର
ଏନେ ବୋଲି ଗନ୍ଧମାର୍ଦ୍ଦନ ଧରେ କର ।
କଟକରୁ ମୋତେ ହେଁ କରିଦେଲେ ବାହାର
ଏହା ତୋ କର୍ମରେ ଅଛି ତାହା ଭୋଗକର ।
ହନୁମନ୍ତ ସଙ୍ଗେ ଅଇଲେ ଛଅଜଣ
ନଳନୀଳ ଜମ୍ବେବ ସଙ୍ଗେ ତେଣୁ ସୁଷେଣ ।
ଋଷ୍ୟ ପର୍ବତ ମୁଖେ ଅଇଲେ ପଳାଇ
ବେନି ସହସ୍ର ଏଥିରେ ବଞ୍ଚିଲଇଁ ।
ମାତଙ୍ଗ ଋଷି ଯେ ବାଳୀକୁ ଶାପ୍ୟଦେଲେ
ଏ ଗିରିକି ଆସିଲେ ମରିବୁ ତୁହି ଭଲେ ।
ଆଜଠାକୁ ଏ ପର୍ବତେ ନଆସେ ବାଳୀବୀର
ତୁମ୍ଭ କଥା ଜଣା ନଥିଲା ସେ ବେଳର ।
ତେଣୁ ସେ ଗିରିରେ ନିଶ୍ଚିନ୍ତରେ ରହି
ଏ ଗିରିକୁ ବାଳୀବୀର କେବେହେଁ ନ ଆସଇ ।
ମୁନି ପୁଣ ତାକୁ ଗୁପ୍ତ କରି କହିଲେକ
ଆଜଠାରୁ ଅର୍ଦ୍ଧେକ ବନ ଶାଳବୃକ୍ଷ ରହିଲାକ ।
ଯେତେବେଳେ ବିଧାତା ସପ୍ତଶାଳା ବୃକ୍ଷ
ସେ ସ୍ଥାନରେ ରୋପିଲା ଯେ ହୋଇଣ ବିମୁଖ ।
ତାହାର ପ୍ରାଣ ଅଙ୍ଗ ସେଥିରେ ରଖିଥିଲା
ସେ ବୃକ୍ଷ ଯେହୁ ଛେଦିବ ତୁରେ ଭଲା ।
ତାହାର ହସ୍ତରେ ତୋର ଯିବ ପ୍ରାଣ ଭଲା
ଏ କଥା ମାନିତୁରେ ରଖିଥିବୁ ଜାଣ ।
ବାଳୀବୀର ବୋଇଲା ଶୁଣହେ ମୁନିବର
କିମ୍ପାଇଁ ବିଧାତା ଏହା କଲା ଯେ ବିଚାର ।
ମାତଙ୍ଗ ବୋଇଲେ ଶୁଣରେ ବାସବସୁତଗୋଟି
ଯେତେବେଳେ ଶିବ ତୋତେ ବର ଯେ ଦେଲାଟି ।
ଅମର ବଳବନ୍ତ ହୁଅତୁ ବୋଇଲା
ନାରାୟଣ ହସ୍ତରେ ମରିବୁ କହିଗଲା ।
ସେ କଥା ଜାଣି ବିଧାତା ମନେ ବିଚାରିଲା
ତୋହର ବୁଦ୍ଧି ପୁଣି ଦଇବ ଦେଖିଲା ।
ବିଚାରିଲେ ବାଳୀ ଥିଲେ ଦେବଙ୍କୁ ନୋହେଭାବ ।
ଏଥିର ସକାଶେ ଅର୍ଦ୍ଧେକ ବଳ ତୋର
ଶାଳବୃକ୍ଷେ ରଖିଲା ବିଚାରି ବେଦବର ।
ତୁ ଯେବେ ମାରିବୁ ସପ୍ତଶାଳ ଛେଦି
ତେବେ ତୁ ଅମର ହୋଇବୁ ଅବଧୀ ।
ଏକା ନାରାଚେ ତୁ କରୁ ଛେଦନ ଯେବେ
ତେବେ ତୋତେ ମାରି ଯେ ନ କେହି ପାରିବେ ।
ଏତେକହି ମୁନି ଯେ ସେଠାରୁ ଚଳିଗଲେ
ଗନ୍ଧମାର୍ଦ୍ଦନ ପର୍ବତେ ରହିଣ ତପ କଲେ ।
ସେହିଦିନୁ ବାଳୀ ବୃକ୍ଷରେ ଲାଗିଲା
ରାତିଦିନ ଲାଗିଣ ନାରାଚ ପରଖିଲା ।
ତିନିବୃକ୍ଷ ଫୁଟଇ ନ ଫୁଟେ ଜାଣ
ନିଶବ୍ଦ ହେଲା ବାଳୀ ନ ଫୁଟେ ବୃକ୍ଷ ପୁଣ ।
ଏଥୁ ଅନନ୍ତରେ ଯେ ମୁନି କହିଗଲେ
ନାରାୟଣ ମାରିବେ ନିଶ୍ଚେ କହିଗଲେ ।
ସେ ବୃକ୍ଷ ଯେତେବେଳେ ଛେଦନ ହୋଇବ
ତାହାର ହସ୍ତରେ ତୋର ପ୍ରାଣ ଯିବ ଜାଣ ।
ନାରାୟଣ ଜନ୍ମ ହେଲେ ଛେଦିବେ ସପ୍ତଶାଳ
ସେ ନାରାୟଣ ହସ୍ତେ ମରିବୁ ତୁହି ଜାଣ ।
ମୃତ୍ୟୁପୁର ତେଜିଣ ସ୍ୱର୍ଗପୁର ଯିବୁ
ଗନ୍ଧର୍ବଙ୍କ ସଙ୍ଗେ ତୁହି ଯେ ରହିବୁ ।
ଦ୍ୱାପର ଯୁଗେ ଜନ୍ମିବୁ ଅର୍ଜ୍ଜୁନ ରୂପ ହୋଇ
ନାରାୟଣଙ୍କ କଳା ତୁ ହେ ଶରୀରରେ ବହି ।
ଦ୍ୱିତୀ କୃଷ୍ଣ ବୋଲିଣ ତୋହର ନାମ ଦେଲା
ଶୁଣିଣ ବାଳୀବୀର ଓଳଗି ହୋଇଲା ।
ଏଥୁ ଅନନ୍ତରେ ଶ୍ରୀରାମଚନ୍ଦ୍ର କହି
ଦୁଇଜଣ ଜନ୍ମ ଏକା ଯେ ହୋଇ ।
ପିତା ତୁମ୍ଭର ଦୁହେଁ ଅଟନ୍ତି ଦେବତା
ତାର ବଳ ଅଧିକ ତୋର ନଉନ ବଳବନ୍ତ ।
ଏଥିର ଚରିତ କହ ଆଦିତ୍ୟର ସୁତ
କି ରୂପେ ବାଳୀରବଳ କେଡ଼େ ସେ ବଳବନ୍ତ ।
ସୁଗ୍ରୀବର କହିଲା ମୁଁ ଆଗେ ଯେଣୁ କହି
ନ ସହସ୍ର କୋଟି ସିଂହର ବଳ ଅଧିକ ସେ ବହଇ ।
ଦଶ କୋଟି ସିଂହର ବଳ ଅଧିକ ସେ ବହଇ
ତେଣୁ କରି ତାର ସଙ୍ଗେ ନ ପାରଇ ମୁହିଁ ।

ମୋଠାରୁ ବଳବନ୍ତ ଅଟଇ ବାଳୀବୀର
ପିତା ସଙ୍ଗତେ ସେ ଯେ ଆସିଲା ନିଜପୁର ।
ଋଷିଙ୍କର କହିବାରୁ ବିଧାତା ଅର୍ଦ୍ଧେନେଲା
ସପତଶାଳାରେ ନେଇଣ ସେ ରଖିଲା ।
ମୋହର ଯିବାକୁ ସ୍ୱର୍ଗରେ ବାଟ ନାହିଁ
ମୋର ପିତା କହିଲା ଶୁଣରେ ପୁତ୍ର ତୁହି ।
ନାରାୟଣ ଭକ୍ତିରେ ତୁହି ଯେ ମନ ଦେଇ
ତେଣୁ ମୁଁ ନିର୍ମଳ ଯେ ହୋଇଲି ରଘୁସାଇଁ ।
ମୋତେ ବାଳୀବୀର ବାହାର କରିଦେଲା
ମୋହର ଘରଣୀ ରୋମାକୁ ବଳେ ସେ ହରିଲା
ଶତ୍ରୁ ଯୁବତୀ ବୋଲି ସେ ଘରଣୀ କଲା ।
ଭାଇବୋହୂ ସଙ୍ଗରେ ସେ ରମଣ କରିଲା
ନର ନାରୀ ତାର ଯେ ଘରଣୀ ତାରା କହି
ସେ କଥାକୁ ନ ମାନିଲା ବାସବ ତନୟୀ ।
ତାହାରି ବୋଲ ସେତ ନ କଲା ବିହିତ
ମୋତେ ମାରିବାପାଇଁ ପେଶିଥାଏ ଦୂତ ।
ଆପଣେ ନ ଆସଇ ଯେ ପ୍ରାଣକୁ ଭୟକରି
ଚାର ଜଣାଇଛି ମୋତେ ମାରିବ ବୋଲିକରି ।
ଏ ପର୍ବତ ଛାଡ଼ିଲେ ମୋତେ କରନ୍ତା ନାଶ
ତେଣୁ କି ଅନ୍ୟସ୍ଥାନେ ନ ଯାଇ ବିଶେଷ ।
ପିତାମୋର ସ୍ୱପ୍ନରେ ଆସିଣ କହିଲା
ସେହିଦିନୁ ମନ ମୋର ସନ୍ତୋଷ ହୋଇଲା ।
ଅନେକ କଷ୍ଟ ମୁଁ ଏଥି ରାମ ସହି
କନ୍ଦମୂଳ ଖାଇଣ ନିର୍ଝର ଜଳ ପିଇ ।
କେତେ କାଳରେ ଦୁଃଖ ଯିବଟି ମୋହର
ତୁମ୍ଭଙ୍କୁ ଭେଟ ମିଳିଲା ବହୁ ଭାଗ୍ୟ ମୋର ।
ଏକବର୍ଷ ହୋଇଣ ମୁଁ ଅଇଲି ପଳାଇ
ପାଞ୍ଚଜଣ ପାତ୍ରମନ୍ତ୍ରୀ ମୋ ସଙ୍ଗେ ଅଛନ୍ତିଁ ।
ତୁମ୍ଭଙ୍କୁ ଦେଖିଲି ମୁଁ ନେତ୍ରେ ଆଜ ନିସ୍ତରିଲି
ଭୋ ରଘୁନନ୍ଦନ ଫେଡ଼ ମୋ କଷଣ ବୋଲି
ଏ ଦୁନ୍ଦୁଭୀର ଦିଶୁଅଛି ଅସ୍ଥି ହାଡ଼
ପର୍ବତର ଉଚ୍ଚ ଯେ ଅଟଇ ଜାଣ ବଡ଼ ।
ଏହା ଯେବେ ଚରଣରେ ଫିଙ୍ଗି ଦେଇପାର
ତେବେ ଯେ ବାଳୀବୀର ମରିବ କି ନିକର ।
ଏଥୁ ଅନନ୍ତରେ ତୁମେ ଶୁଣ ହେ ହୈମବତୀ
ବାଳୀ ସୁଗ୍ରୀବରର ଶୁଣିଲ ଏ ଯେଉଁ ଗୀତି ।
ସନ୍ତୋଷ ହୋଇଲଟିକି ଏହାଙ୍କ କଥା ଶୁଣି
ତୁ ଯେ ପଚାରିଲୁ ମୋତେ ବାଳୀ ସୁଗ୍ରୀବର
ପାର୍ବତୀ ବୋଇଲେ ତୁମ୍ଭେ ଶୁଣହେ ଶୂଳଧର
କଥାର ପରମସନ୍ଧି ଗୋପନ କିମ୍ପା କର ।

ବେଦବର ଜନ୍ମ ହେ ଲୋକାଲୋକ କଲେ
ଇନ୍ଦ୍ର ଆଦିତ୍ୟ ଯେ ତାହାକୁ ଦେଖି ଗଲେ ।
ପାର୍ବତୀ ବନେ କପିରାଜର ଯୁବତୀ
ବାଳୀ ସୁଗ୍ରୀବର ତାହାଠାରୁ ଉତପତ୍ତି ।
କିଷ୍କିନ୍ଧ୍ୟାରେ ରାଜା ଯେ ହୋଇଲା ଇନ୍ଦ୍ରସୁତ
ସୁଗ୍ରୀବି ଭାଗ ଦେବାକୁ ବିଜୟେ ରଘୁନାଥ ।
ଇନ୍ଦ୍ର ଆଦିତ୍ୟ ଯେ ଦୁଇଜଣ ଯାଇ ତେଣେ
ଦିବସରେ କି ରାତ୍ରରେ ଗଲେ ନିଜ ସ୍ଥାନେ ।
ଈଶ୍ୱର ବୋଇଲେ ଦେବୀ ସେ ଦୁଇଜଣ
ବ୍ରହ୍ମାଙ୍କ ପାଶେ ରହିଲେ କରଯୋଡ଼ି ପୁଣ ।
ବିଧାତା ଅନ୍ଧାରେ ଯେ ସ୍ୱର୍ଗପୁର ଗଲେ
ପଚାରିଲେ ଯେଉଁକଥା ଶୁଣିଲଟି ଭଲେ ।
ପାର୍ବତୀ ବୋଇଲେ ଦୁହେଁ ରହିଲେ ତିନିଜଣ
ଆଦିତ୍ୟ ନ ଯିବାରୁ ଅନ୍ଧାର କି ପୁଣ ।
ଈଶ୍ୱର ବୋଇଲେ ଅଟ ତୁ ଯେ ନାରୀ
ସପ୍ତପୁରରେ ବାର ଆଦିତ୍ୟଯେ ପୂରି ।
ମାସକରେ ଏକ ରବି କରନ୍ତି ଭ୍ରମଣ
ସେଥିରୁ ମୃତ୍ୟୁପୁରୀ ଯେ ଅବିଚାର ଜାଣ ।
ଅଧର୍ମ ବହୁତ ଧର୍ମ ଯେ ଅଟେ ଊଣା
ମାସକର ପକ୍ଷ ବିଚାରି ବୁଝନ୍ତି ରବିସେନା ।
ସେଥିରୁ ଜୀବମାନେ ଅଳପ କ୍ଷୟ ଯାନ୍ତି
ସ୍ଥିର ହୋଇଣ କେହି ଗୋଟିଏ ନ ରହନ୍ତି ।
ସ୍ୱର୍ଗପୁରେ ଏକସୂର୍ଯ୍ୟ ବେନି ପକ୍ଷକରେ
ଏମନ୍ତେ ପନ୍ଦର ସୂର୍ଯ୍ୟବାସ କରନ୍ତି ସ୍ୱର୍ଗପୁରେ ।
ଆଉ ଚାରି ପୁରର ଯେ ଆଠ ସୂର୍ଯ୍ୟ ଜାଣ
ଅନୁଚ୍ଛାୟା ବୋଲିଣ ଯେ ସେ ପୁରର ନାମ ।
ସେ ପୁରେ ନୃପତି ଅଟେ ଧର୍ମ ନିରଞ୍ଜନ
ତେଣୁ ସେ ପୁରଗୋଟି ଧର୍ମରେ ନିର୍ମାଣ ।
ତାହାଙ୍କର ଅନୁ ଯେ ଚବିଶ ସୂର୍ଯ୍ୟ ହୋଇ
ସେ ପୁରରେ ସମସ୍ତେ ଅଛନ୍ତି ଠୁଳ ହୋଇ ।
ପାପ ପୁଣ୍ୟ ବୁଝନ୍ତି ଧର୍ମ ସେ ନିରଞ୍ଜନ
ସେ ପୁରରେ ଆଉ କେହି ନୁହନ୍ତି ଭାଜନ ।
ଅଗ୍ନି ଜଳିଲା ପ୍ରା୍‌ ଦିଶଇ ତେଜୋମୟ
ଦେବ ସଭାକୁ ଆସିଲେ ସେ ଅନ୍ୟ ରୂପହୋଇ
ସେ ପୁରରେ ରଜନୀ ଆଉ ଯେ ପୁଣ ନାହିଁ ।
ତେଜମୟୀ ପୁର ସେ ସମସ୍ତ ପାରେ ଦହି
ଶୁକ୍ଳାମ୍ବର ରୂପ ଯେ ସମସ୍ତେ ସେଥିରେ
ସେ ରୂପ ଆତଯାତ ତାଙ୍କରି ଅଂଶ କରେ ।
ଏପରି କୋଡ଼ିଏ ପୁରୁଷ ଶତବାର ହୋଇ
ତେତିଶକୋଟି ଦେବତା ସେଠାରେଛନ୍ତି ରହି ।

ବୈକୁଣ୍ଠ ବିରାଟ ଯେ ଅଟଇ ସେହି ପୁର
ବିରାଟ ରୂପ ଧରିଣ ବିଜୟ ନିରାକାର ।
ପାତାଳରେ ଗୋଲ୍ଲଖ ମଞ୍ଚରେ ଅଟେ ଧାମ
ସମସ୍ତଙ୍କୁ ଜାତ କରେ ସାର ନିରଞ୍ଜନ ।
ଶୟନ ବାସର ଯେ ସପତପୁର ତାର
ବିରାଟ ରୂପ ଧରିଣ ବିଜୟ ନିରାକାର ।
ଚଉଦ ଭୁବନ ମେଦିନୀ ନବଖଣ୍ଡ ତାର
ଏଥିର କାର୍ଯ୍ୟ ବାସୁଦେବ ଯେ ହରି ସାର ।
ଖେଳିବୀର ବାସୁଧାରେ ଜନ୍ମ ପୁରେ ପୁର
ସେହି ପ୍ରଭୁ ଅବତାର ଏ ଜମ୍ବୁଦ୍ୱୀପର ।
ଶୁଣିଣ ପାର୍ବତୀ ପୁଣି ତୋଷମନେ କହି
ପୁଣି ଶ୍ରୀରାମ ସୁଗ୍ରୀବ ଠିକବନ୍ତ ହୋଇ ।
କହନ୍ତି ସଦାଶିବ ଶୁଣ ତୁ ଗଉରୀ
ସୁଗ୍ରୀବର ଠାରୁ ରାମ ଏମନ୍ତ ଶୁଣି କରି ।
ଏଥୁ ଅନନ୍ତରେ ଶୁଣ ଗୋ ସେହି କଥା
ସୁଗ୍ରୀବ କହିଲେ ଦୁନ୍ଦୁଭୀ ଅସ୍ଥି କଥା ।
ଶୁଣିଣ ଶ୍ରୀରାମ ଯେ ଉଠିଲେ ତଡ଼ତି
ଆଦିତ୍ୟ ସୁତକୁ ଚାହିଁ ବୋଲନ୍ତି ଦାଶରଥି ।
ଆସରେ ସୁଗ୍ରୀବର ଫେଡ଼ ତୋ ସଂଶୟ
ଯେଣେ ତୁ ପ୍ରତେ ଯିବୁ କପିକୁଳ ରାୟ ।
ଶୁଣି ସୁଗ୍ରୀବର ହନୁ ଭୁଜ ଧରି ବେନି
ଶୁଣି ଜମ୍ବବ ନୀଳ ନଳ ଯେ ସଙ୍ଗେ ଘେନି ।
ତାଙ୍କର ସଙ୍ଗତେ ପୁଣି ଲକ୍ଷ୍ମଣ ସଙ୍ଗତେ
ଋଷ୍ୟମୁକ ପର୍ବତରୁ ଗଲାକ ତୁରିତେ ।
ଆଗରେ ସୁଗ୍ରୀବର ଯେ କଢ଼ାଇ ଅଛି ବାଟ
ଯାଇ ମିଳିଲେ ଦୁନ୍ଦୁଭୀ ଶବଗିରିର ନିକଟ ।
ହସ୍ତ ଦେଖାଇଣ କହଇ କପିରାଣ
ଦେଖ ଦୁନ୍ଦୁଭୀର ଅସ୍ଥି ଦଶରଥ ପୁଅଜାଣ ।
ଏହା ଯେବେ ଗୋଡ଼ରେ ଫିଙ୍ଗିଦେଇ ପାର
ତେବେ ସେ ବାଳୀକି ପ୍ରାଣରେ ମାରିପାର ।
ଶ୍ରୀରାମ ବୋଇଲେ ଯେ ଅଟଇ ଦାସତ୍ୱ
ତୁ ଯେବେ ଏଣେ ଯିବୁରେ ସୂର୍ଯ୍ୟ ସୁତ ।
ସୁଗ୍ରୀବର କହଇ ଯୋଡ଼ିଣ ବେନିକର
ବାଳୀର ମୃତ୍ୟୁଭେଦୀ ଅଟଇ ନିକର ।
ଚରଣ ଅଗ୍ରେ ଯେବେ ଯୁଣେ ଫିଙ୍ଗିଦେଇ
ତେବେ ସଂଶୟ ଫେଡ଼ିଣ ମାର ରଘୁସାଇଁ ।
ହସିଣ କହନ୍ତି ଯେ ରଘୁକୁଳ ନାଥ
ଶୁଣ ଏବେ ତୁମ୍ଭେ ଅଛ ଯେ ସମସ୍ତ ।
ଜମ୍ବବ ସୁଷେଣ ନଳ ନୀଳକୁ ଚାହିଁ ପୁଣ
ଏ କଥାରେ ତୁମ୍ଭେମାନେ ସାକ୍ଷୀ ହେଲେରେ ଜାଣ ।

ତୁମ୍ଭେମାନେ ମନ୍ତ୍ରୀପଟ ଯେ ଶିରୋମଣି
ଯାହା ସେ ସୁଗ୍ରୀବର ମଇତ୍ର ତୁମ୍ଭେ ଭଣି ।
ଏ ଅସ୍ଥି ଫିଙ୍ଗିଦେଲେ ମରିବ ଯେବେ ବାଳୀ
କରିବ ଯେ ପ୍ରତେ କହେ ହେ ତୁମ୍ଭେ ଭାଳି ।
ଶୁଣିଣ ସମସ୍ତେ ଯୋଡ଼ିଲେ ବେନିକର
ହେବ ଦେବ ଶଙ୍କୁନ ଏ କଥା ଆଗର ।
ଶ୍ରୀରାମ ଲକ୍ଷ୍ମଣ ଚାହାନ୍ତି ବଦନ
ଶିରରେ କର ଦ୍ୟନ୍ତି ଯେ ସୁମିତ୍ରା ନନ୍ଦନ ।
ଏଣେ ସୁଗ୍ରୀବର ସମ୍ମତେ ଦେବ ହୋଇ
ଅସ୍ଥି ଫୋପାଡ଼ି ଦେଲେ ଦୁଷ୍ଟ ଯେ ମଉଇ ।
ମିତ୍ରଙ୍କ କାର୍ଯ୍ୟ ଏବେ କରହେ ରଘୁବୀର
ଯେଣେ ପ୍ରତେ ଯିବ ଏ କଥା ଏବେ କର ।
ଶୁଣିଣ ଶ୍ରୀରାମ ଯେ ଚାହିଁଲେ ଅସ୍ଥିକି
ବିଚାରିଲେ ବାଳୀର ବଳ ଅକଳାନ୍ତଟି ।
ଏତେ ବଳ ବହିଣ ଅନ୍ୟାୟ ସେ ପାଇଥିଲା
ସୋଦର ଭାଇକି ଯେ ବାହାର କରିଦେଲା ।
ଭାଇବୋହୂ ଘେନି ସେ ଯେ କରଇ ରମଣ
ଏବେ ନାଶଯିବ ସେ ପାପିଷ୍ଠ ନୃପରାଣ ।
ସଉମିତ୍ରୀ ବୋଇଲେ ଯେ ଶ୍ରୀରାମଙ୍କୁ ଚାହିଁ
ଆମ୍ଭର କଥାନ ଅଙ୍ଗରେ ଥାଇ ବହି ।
ଏକା ଉଦରରେ ଯେ ଜନ୍ମ ମାୟା କଲା
ଭାଇ ସିନା ଆମ୍ଭର ଧର୍ମ ବିଚାରିଲା ।
ଶୁଣନ୍ତେ ଲକ୍ଷ୍ମଣ ବାଣୀ କ୍ରୋଧ ହେଲେ ରାମ,
ବିଚାରିଲେ ଲକ୍ଷ୍ମଣ ଆଣରେ ବିମାନ ।
ଏତେ ବୋଲି ବାମ ପାଦ ଲଗାଇଲେ ନେଇ
ଅସ୍ଥିର ସଙ୍ଗତେ ବଡ଼ ଅଙ୍ଗୁଳି ଲଗାଇ ।
ପକ୍ଷୀ ଯେହ୍ନେ ଗଗନେ ଉଡ଼ିଯାନ୍ତି
ତେସନ ପରାୟେ ଅସ୍ଥି ଚଳିଣ ଯାନ୍ତି ଶୂନ୍ୟେ ।
ଦଶଯୁଣ ଅନ୍ତରେ ସେ ଯୁହୁଁ ପଡ଼ିଲା
ପଡ଼ିବା ଠାବରେ ନିଶ୍ଚଳ ହୋଇଲା ।
ଦଶଗୁଣ ଓଟାରେ ହୋଇଲା ଦଶ ଯୁଣ
ଶ୍ରୀରାମ ଛୁଅନ୍ତେ ସେ ଯେ ବଢ଼ିଲା ଦଶଗୁଣ ।
ମୁକତ ହୋଇଲା ସେ ଦୁନ୍ଦୁଭୀର ଅସ୍ଥି
ଜୀବନ ସେ ପାଇ ରହିଲା ଧରିତ୍ରୀ ।
ଶୁଖିଲା ପତ୍ର ଯେହ୍ନେ ଗଗନେ ଉଡ଼ିଯାଇ
ତେସନେ ପ୍ରକାରେ ଅସ୍ଥି ଗଲାକ ପଳାଇ ।
ସେତେବେଳେ ଅସ୍ଥିକି ଶ୍ରୀରାମ କହିଲେ
ତୁଅରେ ବଡ଼ ତୁ ବୋଲିଣ ବୋଇଲେ ।
ଅଷ୍ଟରତ୍ନ ସଙ୍ଗତରେ ତୁଅ ତୁ ଗଣିତା
ଆଜଠାରୁ ତୋ ଟାଙ୍ଗଣା ଅସ୍ଥି ଗୋଟା ।

ଅଷ୍ଟରତ୍ନ ତୁ ଯେ କରିବୁ ନିର୍ମାଣ
ତୁହି ନ ମିଶିଲେ ରତ୍ନ ନ ମିଶେ କେଭେପୁଣ ।
ଏମନ୍ତ ବଚନ ଯେ ଶ୍ରୀରାମଚନ୍ଦ୍ର କହି
ଦୁନ୍ଦୁଭୀର ଢୀବ ଯେ ଏଥିରେ ବଢ଼େ ଯାଇ ।
ତେଣୁ ସେ ଗିରିମାନଙ୍କ ଉପରେ ଉଛ ହେଲା
ଗଲାବେଳେ ଅସ୍ଥି ଯେ ତେଣେ ଗର୍ଜନ କଲା ।
ସେତେବେଳେ ବାଳୀ ଯେ ପଲ୍ୟଙ୍କେ ଶୋଇଥିଲା
ନିଦ୍ରା ତେଜି ବାଳୀ ଯେ ଚମକି ଉଠିଲା ।
କିଷ୍କିନ୍ଧ୍ୟା ଦଲ ଦଲ ହୋଇ ଯେ କମ୍ପିଲା
ସେ କଥା ଗୋଟି କେବେ ବାରଣ ନ ଗଲା ।
ବାଳୀ ବିଚାରିଲା ଶବଦ ଅଟେ କିସ
ତାରା ବୋଇଲା ନିଶ୍ଚେ ପଡ଼ିଲା ନିର୍ଘାତ ।
କିଷ୍କିନ୍ଧ୍ୟା ନରନାରୀ ବିଚାରେ ମନରେ
ପୁଣି କେହ୍ନ ଅସୁର ଅଇଲା ଏହୁ ପୁରେ ।
ଏମନ୍ତ ବିଚାର ଯେ କରନ୍ତି ସର୍ବଜନ
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ତ୍ରିଲୋଚନ ।
ଏଥୁ ଅନନ୍ତରେ କିସ ଯେ ରାମ କଲେ
ସେ କଥା ମୋର ଆଗେ କହ ଦେବଭଲେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗବତୀ
ଦୁନ୍ଦୁଭୀ ଚରଣ ଫିଙ୍ଗିଲେ ଦାଶରଥି ।
ମୁକତି କରି ତାକୁ ଦେଲେ ବଡ଼ପଣ
ଅଷ୍ଟରତ୍ନ ସଙ୍ଗରେ ବଡ଼ ହେଲେ ଜାଣ ।
ସେଠାରୁ ସୁଗ୍ରୀବ ମନରେ ବିଚାରଇ
ପୁର୍ବରେ ଦୁନ୍ଦୁଭୀ ହାଡ଼ ଅଚଳ ଅଟଇ ।
ଏବେ ସେ ଶୁଖି ଯିବାରୁ ଉଶ୍ୱାସତରୁ ଜାଣି
ଏ କଥାରେ ପ୍ରତେ ତ ନୋହେ ପୁଣି ।
ସୁଗ୍ରୀବର ବୋଇଲା ତୁମ୍ଭେ ଶୁଣ ହେ ଶ୍ରୀରାମ
ଏ କଥାରେ ତୃପତ ନୋହିଲା ମୋର ମନ ।
ନ କର କୋପ ମତେ ରଘୁ କୁଳସାଇଁ
ଏ ଯେଉଁ ସପତଶାଳା ଗୋ ଗୋସାଇଁ ।
ସପତଶାଳା ବିନ୍ଧିଲେ ମରିବ କପିରାଏ
ନହୋଇଲେ ପ୍ରତେ ଦେବ କେବେହେଁ ନଯାଏ ।
ବାଳୀ ମହାବୀର ଯେ ବଳରେ ଅକଳିତ
ନ ହେଲେ ପରମାଦ ନ ତେଜେ ତାକୁ ନିତ୍ୟ ।
ଏ ସପତଶାଳାରେ ସେ ଅଛଇ ତାର ଢୀବ
ଏ ସାତ ଗଛ ଛେଦିଲେ ନିଶ୍ଚୟ ମରିବ ।
ନିଶ୍ଚୟ ବଇରୀ ମୋର ହୋଇବ ପୁଣ ହତ
ନ ହେଲେ ତୃପ୍ତ ନୋହିବ ମୋର ଚିତ୍ତ ।
ସୁଗ୍ରୀବ ମୁଖରୁ ଶ୍ରୀରାମ ଏହା ଶୁଣି
ସମସ୍ତଙ୍କ ମୁଖ ଚାହିଁ ହସିଲେ ରଘୁମଣି ।

ଯେବେ ତୁହି ପ୍ରତେ ଯିବୁ ପବନର ସୁତ
ମୁହିଁ ତାହା କରିବି କରିଣ ଅଛି ସତ୍ୟ ।
ଶୁଣିଣ ସୁଗ୍ରୀବର ଯେ କହଇ ବଚନ
ଗମନ କର ବେଗେ ସେ ସ୍ଥାନେ ରଘୁନାନ ।
ଶ୍ରୀରାମ ବୋଇଲେ ନ ଯାଇ ଏତେବେଳେ
ଦୁନ୍ଦୁଭୀ ଅସୁର ଅସ୍ଥି ଛୁଇଁଲେ ଆସି ହେଳେ ।
ସ୍ନାହାନ କରିଣ ମୁଁ ଯେ ଶଉଚ ହୋଇବି
ଜଳତିଳ ଯେ ପିତୃରେ ମୁହିଁ ଦେବି ।
ଏତେବୋଲି ଶ୍ରୀରାମ ଯେ ସେଠାରୁ ଚଳିଗଲେ
ଯାଇ ସରୋବର କୂଳରେ ମିଳିଲେ ।
ସ୍ନାହାନ ଶଉଚ ଯେ ସେଠାରେ ହୋଇଲେ
ପିତୃଲୋକ ତର୍ପଣ ଜଳଦାନ ଦେଲେ ।
ଏହିରୂପେ ସଉମିତ୍ରୀ ଜଳଦାନ ଦେଲେ
ସୁଗ୍ରୀବର ଜଳତିଳ ଦାନ ଯେ ଦେଲେ ।
ଜମ୍ବେବ ସୁଷେଣ ନଳ ନୀଳ ଯେ ପୁଣ
ପବନ ନନ୍ଦନକୁ ଛାଡ଼ି ପାଞ୍ଚଜଣ ।
ସ୍ନାହାନ ତର୍ପଣ ଯେ ସମସ୍ତେ ସାରିଲେ
ଜଳ ତିଳ ଦେଇଣ ପିତୃକୁ ବୋଧ କଲେ ।
ସେଠାରୁ ଅଷ୍ଟଜଣ ବେଗେ ଚଳିଗଲେ
ଗହନ ବନରେ ଯାଇ ସେ ମିଳିଲେ ।
ବଲ୍ଲଭ ଗଛମୂଳେ ବସିଲେ ରଘୁମଣି
କୋମଳ ପତ୍ର ପାରି ଯେ ଦେଲା ପୁଣି ।
ହନୁମନ୍ତ ଆଣିଣ ଯେ ଫଳମୂଳ ଦେଲା
ନିର୍ଝର ଜଳ ଆଣି ଜମ୍ବେବ ରଖିଲା ।
ସେଠାରେ ଭୋଜନ କଲେକ ରଘୁରାଣ
ସମସ୍ତେ ଭୁଞ୍ଜିଲେ ଯେ ରାମର ସଙ୍ଗେ ଜାଣ ।
ଆଚମନ ସାରିଣ ଯେ ସେଠାରେ ନିଦ୍ରା ଗଲେ
ସେତେବେଳେ ସଉମିତ୍ରୀ ଜଗିଣ ରହିଲେ ।
ଅଳସ ଭାଙ୍ଗିଣ ଉଠିଲେ ରଘୁରାଣ
କୋଦଣ୍ଡ ଧରି ସଜ ହୋଇଲେ ଆପଣ ।
ବୋଇଲେ ସମସ୍ତେ ଚାଲ ଏବେ ଯିବା
ସପତଶାଳା ଛେଦିଲେ ବୋଧ ଅଧିକ ଅବା
ଏତେ ବୋଲିଣ ରାମ ଯେ ଆଗଭର ଯାନ୍ତି
ସପତଶାଳାର ନିକଟେ ଯାଇ ହୋନ୍ତି ।
ସୁଗ୍ରୀବକୁ ଚାହିଁଣ ରାମ ବୋଲନ୍ତି ପୁଣି ବାଣୀ
ଏବେ ପ୍ରତେ କରିବଟିକି କପିକୁଳମଣି ।
ହରି ହରି ବୋଲଇ ଯେ ଯୋଡ଼ଇ ବେନିକର
ଶୁଣି କୋଦଣ୍ଡ ହସ୍ତେ ଧଇଲେ ରଘୁବୀର ।
ଦକ୍ଷିଣ ଭୁଜରେ ଯୁବନା ଅଙ୍ଗୁଷ୍ଠିର
ସେଥିରେ ସଜକରି ଥୋଇଲେ ଧନୁଶର ।

ତୃଣୀରୁ ଯୋଚିଲେ ଯେ ଗୁପ୍ତ ଯେ ନାରାଚ
ଗୁଣରେ ବସାଇଣ ବୋଲନ୍ତି ରଘୁରାଜ ।
ଯାଅରେ ବାଣ ବେଗି ସପତଶାଳା ଛେଦ
ମଇତ୍ର ମନ ତୋଷ କରିଣ ବେଗେ ଛେଦ ।
ଏତେ ବୋଲି ଶ୍ରୀରାମ ଯେ ବାମପାଦେ ଆଗ
ଡାହାଣ ପାଦକୁ ରାମ ପକାଇ ପଛଭାଗ ।
ସପତ ବାଙ୍କରେ ସପତ ଗଛ ପୁଣ
ଅଛଇ ଏଣେତେଣେ ସଳଖ ନୋହେ ପୁଣ ।
ଶ୍ରୀରାମ ବିଚାରିଲେ ଏ ଯେ ଅଟଇ ବିପରୀତ
କେମନ୍ତେ ଏହାକୁ ମୁଁ ଯେ ଛେଦିବି ତୁରିତ ।
ତେଣେ ଦୃଢ଼େ ଚରଣ ପଡ଼ନ୍ତେ ସେ ଭୂମିରେ
ସର୍ପର ଲାଞ୍ଜେ ଚରଣ ପଡ଼ିଲା ସେ ଠାବରେ ।
ସେତେବେଳେ ସର୍ପର ନିଶ୍ଚିତ ନିଦ୍ରା ଭାଙ୍ଗ
ଏ ତୋତେ ଶ୍ରୀରାମ ଯେ ହୋଇଛନ୍ତି ରାଗି ।
ସେତେବେଳେ ମହାସର୍ପ ଜୀବନ ବିକଳେ
ହେଠମାଥ ହୋଇଣ ସଳଖ ହେଲା ଧୀର ।
ସେତେବେଳେ ଶ୍ରୀରାମ ସର୍ପକୁ ହେଳେ
ସର୍ପର ଉପରେ ବାମ ଚରଣ ଦେଲେ ।
ଦାଉ ପାଇ ସର୍ପ ଯେ ସଳଖେ ଚଳିଗଲା
ସାତଶାଳ ଭେଦିଣ ସେ ପର୍ବତ ଭେଦିଲା ।
ଗିରିବର ଫୁଟିଲା ପାତାଳ ଭେଦିଲା
ଯେସନେ ଜଳରେ ବୁଡ଼ି ରାଜହଂସ ।
ଥୋକାଏକ ଦୂରରେ ସେ ହୋଇଲା ବାହାର
ସଞ୍ଚାଣ ଉଡ଼ିଲା କି ଧରିଣ ଆହାର ।
ଶ୍ରୀରାମ ତ୍ରୋଣରେ ବାଣ ସମ୍ଭାଇଲା ଆସି
ଦେଖିଣ ସମସ୍ତେ ଯେ ଆଖି ବୁଜିଣ ବସି ।
ନିଶ୍ଚେ ଏ ବିଷ୍ଣୁ ବୋଲି ଜାଣିଲେ ଛଅଜଣ
ଶ୍ରୀରାମ ତେଜ ଯହୁଁ ଦେଖିଲେ ନୟନ ।
ଲକ୍ଷ୍ମଣକୁ ବୋଇଲେ ତୁମେ ଶୁଣହେ ସଉମିତ୍ରୀ
ରଘୁନାଥ ଅଟନ୍ତି ବ୍ରହ୍ମାଣ୍ଡେ ଏକ କ୍ଷତ୍ରୀ ।
ସହସ୍ରେ ବାଳୀ ଯେବେ ଏକସ୍ଥାନେ ହୋଇ
ସହସ୍ର ଇନ୍ଦ୍ର ହେଲେ ରହି ନ ପାରିବେଇ ।
ବ୍ରହ୍ମାଣ୍ଡେକ ରୁଣ୍ଡ ହୋଇ କର ଯେବେ ଯୁଦ୍ଧ
ଶ୍ରୀରାମଙ୍କ ନାରାଚେ ହୋଇବେ ସମସ୍ତେ ବଧ
ଏକା ବାଳୀ ଅଟେ କିଷ୍କିନ୍ଧ୍ୟା ନରପତି
ନିଶ୍ଚେ ଆଜିଠାରୁ ସରିଲା ତା ବିଭୂତି ।
ଏ ନାରାୟଣ ଯେ ମାନବ ରୂପଧାରୀ
ଏଥକୁ ଅଇଲେ ମୋହର ଶତ୍ରୁମାରି ।
ଏତେ ବୋଲି ସୁଗ୍ରୀବର ଚରଣ ତଳେପଡ଼ି
ଉଠି ଉଭା ହୋଇ ଶିରେ କରଯୋଡ଼ି ।

ଶ୍ରୀରାମ ଦୋଷ ଏବେ ନ ଧର ମୋହର
ମୁହିଁ ଯେ ଶରଣ ଚରଣେ ତୋହର ।
ଅଜ୍ଞାନ ପଣେ ମୁଁ ଯେ ବୋଲି ପରୀକ୍ଷା
ସେ ଅପରାଧ କ୍ଷମା କର ହେ ରଘୁନାଥ ।
ଶ୍ରୀରାମ ବୋଇଲେ ତୁ ଯେ ମମ ପ୍ରାଣ ପରି
ଏବେ ବାଳୀକି ମୁଁ ଯେ ମାରିପାରିବିକି ।
ଏବେ ପ୍ରତେ ଗଲୁକି ମୋହର ସାଥୀ
କାଲି ଆସି ମାରିବା ବାଳୀକି ହେଲେ ଦେଖି
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଶ୍ରୀରାମ ବାମଚରଣେ ସର୍ପର ଲାଞ୍ଜ ପଡ଼ି ।
ଭାରା ପାଇ ଗନ୍ଧର୍ବ ଯେ ହେଉଛି ବିକଳ
ସପ୍ତଶାଳା ଯିବାରୁ ଉଶ୍ବାସ ତାର ଶିର ।
ସେତେବେଳେ ସର୍ପର ଦେହରେ ଜ୍ଞାନ ହେଲା
ମୁକ୍ତି ଲଭିଲେ ବୋଲି ମନରେ ବିଚାରିଲା ।
ବୋଇଲା ନାରାୟଣ ନୋହିଲେ କିରେ ପୁଣ
ଏଡ଼େ ଭାରା ଦିଅନ୍ତାକି ସେ ଟାଣ ।
ଏମନ୍ତେ ବିଚାରି ସର୍ପ ଡାକେ ଯେ ଭୂମିରେ
ଲାଞ୍ଜଠାରୁ ମୁଣ୍ଡଯାଏ ଆସହେ ଚାଳି ଧୀରେ ।
ଭକତର ଆରତ ଶୁଣିଲେ ରଘୁନାଥ
ବୋଇଲା ପୂର୍ବ ଶାପ୍ୟରେ ସର୍ପ ମରି ।
ସପ୍ତଶାଳା ମୁକ୍ତ ଯେ ଏ ଯିବ ସ୍ଵର୍ଗପୁରୀ
ଏହାକୁ ନ ଦଳିଲେ ନ ଛାଡ଼େ ଜୀବନ ।
ବେଦବର ବଚନେ ସପ୍ତଶାଳା ତଳେ
ଚିନ୍ତାରେ ଶୟନ ଯେ କରିଥିଲା ହେଳେ ।
ଚରଣ ଭାଗରେ ମୋର ଚେତା ଯେ ପାଇଲା
ଏବେ ସ୍ଵର୍ଗ ଯିବାକୁ ମୋତେ ସେ ସୁମରିଲା ।
ଏମନ୍ତେ ବିଚାରି ରାମ ତା ହୃଦେ ଚାଳିଗଲେ
ନୟନ ବାଟେ ଜୀବ ଛାଡ଼ିଲା ସେ ଭଲେ ।
ଶରୀର ଗୋଟି ରହି ଜୀବ ଯେ ବାହାରିଲା
ଶ୍ରୀରାମ ଚରଣେ ଓଳଗି ବେଗେ ହେଲା ।
ସେତେବେଳେ ଶୂନ୍ୟରୁ ଅଇଲା ବିମାନ
ରଥରେ ବସିଲା ଗନ୍ଧର୍ବ ଦୁର୍ଯ୍ୟୋଧନ ।
ସେଠାରୁ ସପ୍ତଶାଳା ସପ୍ତଋଷି ହେଲେ
ଶ୍ରୀରାମ ଚରଣେ ଓଳଗି ହୋଇଲେ ।
ସପ୍ତଋଷି ଚଢ଼ିଣ ସ୍ଵର୍ଗେ ସେ ପୁର ଗଲେ
ଯେ ଯାହା ନିଜ ସ୍ଥାନେ ଯାଇଣ ରହିଲେ ।
ଏ କଥାମାନ ନ ଜାଣେ ହେ ହରି କେହି
ଶ୍ରୀରାମ ଲକ୍ଷ୍ମଣ ବେନି ଅନ୍ୟରେ ଦିଶୁନାହିଁ ।
ସେମାନଙ୍କୁ ମୁକ୍ତି ଦେଇ ଯେ ରାମରାଣ
ଋଷ୍ୟମୂକ ପର୍ବତକୁ ଚଳିଲେ ବହନ ।

ସେଦିନ ରାମ ସଙ୍ଗତେ ସମସ୍ତେ ଫେରିଲେ
ଋଷ୍ୟମୂକ ପର୍ବତେ ଯାଇଣ ମିଳିଲେ ।
ନିର୍ଝର ପାଣିରେ ଯାଇ ସ୍ନାହାନ କରିଲେ
ତର୍ପଣ ସନ୍ଧ୍ୟା ଯେ ସାରିଣ ଜଳ ଦାନ ଦେଲେ ।
ଫଳମୂଳ ଆଣିଣ କଲେ ସେ ଭୋଜନ
ମୃଗଛାଲ ଉପରେ ଶୋଇଲେ ରାମରାଣ ।
ଧନୁଶର ଘେନି ଲକ୍ଷ୍ମଣ ଜଗି ବସି
ଜମ୍ବେବ ନଳ ନୀଳ ସୁଷେଣ ଗୋଡ଼ ଘଷି ।
ପବନ ନନ୍ଦନ ସେ ଚାପଇ ଚରଣ
ଏଥୁ ଅନନ୍ତରେ ଯେ ପାର୍ବତୀ ଦେବୀ ଶୁଣ ।
ଯେତେବେଳେ ସପ୍ତଶାଳା ଶ୍ରୀରାମ ଛେଦିଲେ
ସେତେବେଳେ ଯେ ଶ୍ରୀରାମ ଶବଦ ।
ସ୍ୱର୍ଗ ମଞ୍ଚ କମ୍ପିଲା ଯେ ପାତାଳ କମ୍ପିଲା
ଜୀବଜନ୍ତୁ ଚମକି ପଡ଼ିଲା ବିଜୁଳି ।
ଦେବତାଏ ସୁଧର୍ମା ସଭାରେ ବସିଥିଲେ
ଶବଦକୁ ଶୁଣି ସର୍ବେ ନୟନ ବୁଜିଲେ ।
ପାତାଳେ ନାଗବଳ ଜାଣିଲେ ସକଳ
ବାସୁକୀ ବୋଲେ ସପ୍ତଶାଳାକୁ ଛେଦିଲେ ଚକ୍ରଧର
ମଞ୍ଚପୁର ରାଜାମାନେ ବିଚାରିଲେ ବସି
ନିର୍ଘାତ ଶବଦ ବହୁତ ହେଉଅଛି ।
ଆଜର ବେଳେତ ଦୁଇଥର ଚମକି
କି ଅବା ଏ ପୁରକୁ ପଡ଼ିବ ବିପତି ।
ଅସୁରମାନେ ପୁଣି ଚମତ୍କାର ହେଲେ
ନିର୍ଘାତ ଶବଦ ବୋଲି ସମସ୍ତେ ଜାଣିଲେ ।
ବାଳୀବୀର ବସିଥିଲା ଯେ ପଲଙ୍କେ
ବିଚାରିଲା ନିର୍ଘାତ ପଡ଼ିଲା ଆସି ଏଥେ ।
ପାତ୍ରମନ୍ତ୍ରୀ ଘେନି ସେ ଯେ କରଇ ବିଚାର
ଦୁଇବଳେ ନିର୍ଘାତ ପଡ଼ିଲା ଆଜ ଘୋର ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ବାଳୀର ଭାରିଯା ଯେ ଅଟଇ ତାରାବତୀ ।
ସପ୍ତଶାଳା ଛେଦିଲେ କି ଦାଶରଥି
ନିର୍ଘାତ ଶବଦ ଯେ ଶୁଣିଲା ସେ ଶ୍ରୁତି ।
ବାମକର ଚୁଡ଼ି ତାର ମଳିନ ଦିଶଇ
ପୁଣି ବିଚାରିଲା ଏ ତ ଅସମ୍ଭବ ହୋଇ ।
ଏମନ୍ତ ସମୟରେ ଡାହାଣ ନୟନ
ସ୍ଫୁରଇ ଘନ ଘନ ଶୁଣଗୋ ଦେବୀ ପୁଣ ।
ସତୀ ବିଚାରିଲା ଏ ତ ଅସମ୍ଭବ କଥା
ଅଶୁଭ କଥାପ୍ରାୟେ ହୋଇବକି ଲାଗେ ବ୍ୟଥା ।
ଏତେ ବୋଲି ରାଣୀ ଯେ ମନରେ ବ୍ୟଥାପାଇ
ନିଶ୍ଚଳ ଆସନରେ ବସିଲା ସତୀ ଯାଇ ।

ଦୁର୍ବାସା ଋଷିଙ୍କି ସେ ମନରେ ସୁମରିଲା
ଯେଉଁମାଳା ଦେଇଥିଲେ ପୂର୍ବରୁ ଋଷି ପରା ।
ବୋଇଲେ ଯେତେବେଳେ ବିପତ୍ତି ତୋତେ ପଡ଼ିବ
ଏ ମାଳା ଜପିଲେ ମୋର ଆସନ କମ୍ପିବ ।
ତେଣୁ ଯେ ଆସିବି ତୋର ପାଶ ତ
ଏତେ ବୋଲି କହିଗଲେ ବ୍ରହ୍ମାଙ୍କର ସୁତ ।
ସେ ମାଳା ଗୋଟି ଧରି ସତୀ ଯେ ଜପକଲା
ଦୁର୍ବାସା ଋଷିଙ୍କର ତେଣେ ଆସନ କମ୍ପିଲା ।
ଜାଣିଲେ ମୁନିବର ଯୋଗଧ୍ୟାନେ ପୁଣ
ତାରାବତୀ ରାଣୀ ମୋତେ କଲା ସୁମରଣ ।
ଘେନିଣ ସହସ୍ର ବରଷ ବାଳୀ ଯେ ରାଜା ପୁଣ
ଶାସନ କରୁଥିଲେ ପ୍ରଜାଙ୍କୁ ପାଳିଣ ।
ସେ ଦୋଷ ତାହାକୁ ଯେ ମାଡ଼ିଣ ବସିଲା
ରାତ୍ର ପାହିଲେ ମରିବ ଯେ ବାସବର ବଳା ।
ଅରକ୍ଷିତ ଦେଖିଣ ସୁମରେ ମୋତେ ସତୀ
ଏତେ ବୋଲି ଆସନରୁ ଉଠିଲେ ବ୍ରହ୍ମଯତି ।
ପ୍ରବେଶ ହୋଇଲେ ଯାଇ ରାଣୀର ଛାମୁରେ
ବସିଛି ତାରାବତୀ ଆସନେ ନିଶ୍ଚଳେ ।
ଋଷି ବୋଇଲେ ସହୀରେ କିମ୍ପା ସୁମରଣା
ମନେ ଦକା ନରଖିଣ ସୁବକଥା ଜଣା ।
ଦେଖିଣ ତାରାବତୀ ଉଠିଲା ବହନ
ସୁବର୍ଣ୍ଣ ଝରିରେ ଜଳ ଆଣିଣ ବହନ ।
ଚରଣ ଧୋଇ ଦେଲା ତାରା ରାଣୀ ଯେ ଜାଣ
ପଣତରେ ପୋଛି ଦେଲା ଯୁଗଳ ଚରଣ ।
ସିଂହାସନେ ବସାଇ ମୁନିକି ପୂଜାକଲା
ଚରଣ ଧରିଣ ଗୋଡ଼ ଧରିଣ ଶୋଇଲା ।
ଉଠିଣ କରଯୋଡ଼ି ବଚନ ସେ ବୋଇଲା
ବାମ ହସ୍ତ ଚୂଡ଼ି କିମ୍ପା ମଳିଣ ଦିଶିଲା
ଡାହାଣ ନୟନ ମୋର ସ୍ଫୁରଇ ଘନ ଘନ
ନିର୍ଘାତ ବଳ ଶୁଭିଲା ଦୁଇଥର ଯେ ପୁଣି
ଋଷି ବୋଇଲେ ଶୁଣ ବାଳୀର ପାଟରାଣୀ
ତୋହର ସ୍ୱାମୀ ଯେ ପାପକଲା ପୁଣି ।
ସୋଦର ଭାଇକି ଯେ ବାହାର କରିଦେଲା
ତାହାର ଘରଣୀକି ବଳରେ ସେ ହରିଲା ।
ଭାଇବୋହୂ ବୋଲିଣ ବିଚାର ନ କଲା
ଏଡ଼େ ବଳବନ୍ତ ରାଜା ବୁଦ୍ଧି ନାରଖାର ।
ବେନି ସହସ୍ର ବର୍ଷ ଯେ ଏଠି ବିତିଗଲା
ବେଳକୁ ବେଳ ପୁଣି ଅଧର୍ମ ବଢ଼ିଗଲା ।
ତେଣୁ କରି ତାହାର ପୂରିଲା ଆୟୁଷ
ମୃତ୍ୟୁକାଳ ତାକୁ ପ୍ରବେଶ ହେଲା ପୁଣି ।

ଧର୍ମକୁ ଦେବତାଏ ନିନ୍ଦା ଯହୁଁ କଲେ
ଧର୍ମ ନିରଞ୍ଜନ ନାରାୟଣଙ୍କୁ କହିଲେ ।
ନିରଞ୍ଜନ କହିବାରୁ ନାରାୟଣ ଜାଣ
ବାଳୀକି ମାରିବେ ବୋଲି ଆଣିଣ ଋଷ୍ୟମୂକ
କାଲି ସାତଘଡ଼ିଠାରେ ହୋଇବ ମରଣ
କାଳ ଦେବତା ଆସି ଘୋଟିଲାଣି ପୁଣ ।
ବାଳୀକୁ ମାରି ତାକୁ କାରଣ ଗତି ଦେବା
ସ୍ୱର୍ଗର ଭୁବନେ ନେଇଣ ବସାଇବା ।
ତାରାବତୀ ବୋଇଲା ବାଳୀ ଯେ ପରାଜିତ
ସ୍ୱର୍ଗକୁ କିମ୍ପା ଯିବ କହ ଏଥିର ବୃତ୍ତାନ୍ତ ।
ଦୁର୍ବାସା ବୋଇଲେ ନାରାୟଣ ହସ୍ତେ ମରି
ପିତା ଯଶ ଏ କରିଯିବ ସ୍ୱର୍ଗପୁରୀ ।
ତାରାବତୀ ବୋଇଲା ହୋଇବି ମୁଁ ବିଧବା
ନୋହିଲେ ସ୍ୱାମୀସଙ୍ଗେ ଯିବାକୁ ମୋର ଶ୍ରଦ୍ଧା
ଦୁର୍ବାସା ଋଷି ବୋଇଲେ ଶୁଣରେ ସୁନ୍ଦରୀ
ସୁଗ୍ରୀବ କରି ତୋତେ ରଖିବେ ଚାପଧାରୀ ।
କ୍ଷିତିରେ ଗଢ଼ିଣ ତୋତେ ବିଭା ଯେ କରିବେ
ତୋହର କ୍ରୋଧ ହୋନ୍ତେ ଶାନ୍ତି ଯେ କରାଇବେ
ପଞ୍ଚକନ୍ୟା ସଙ୍ଗରେ ଗଣିତା କରିବେ
ଦଶସସ୍ର ବରଷଠାରୁ ଭୋଗ ଯେ କରିବେ ।
ଗଲାବେଳେ ସଙ୍ଗେ ନେବେ ବୈକୁଣ୍ଠପୁଣ
ତୋରଠାରେ ବଡ଼ ସୁଖ ହୋଇବ ତାଙ୍କର ।
ଆହୁରି କଥାଏ ମୁଁ ଯେ କହୁଛି ଶୁଣ
ସ୍ୱାମୀ ମଲେ କ୍ରୋଧରେ ଅସ୍ଥିର ହେବୁ ପୁଣ ।
ସେ ନାରାୟଣଙ୍କୁ କ୍ରୋଧରେ ଶାପ୍ୟ ଦେବୁ
ସୀତା ତୋତେ ଅପବାଦ ହୋଇବ ବୋଲିବୁ
ସେତେବେଳେ ବହୁ ଚେତା ତୁହି ପୁଣ ରଖିବୁ
ଚଉବନ ବରଷକୁ ଯେ ତୁହି ସଂଖ୍ୟା ଦେବୁ
ବୋଲିବୁ ସେ ବେଳେ ଉଭଭୋଗ ତତେ ହେବ
ବୈକୁଣ୍ଠ ଯିବାକୁ ତୋତେ ଅଳ୍ପଦିନ ଥିବ ।
ଆଗେ ତୋର ଘରଣୀ ବୈକୁଣ୍ଠ ପୁର ଯିବ
ବୟାଳିଶ ବର୍ଷେ ତୁମ୍ଭେ ତାହାଙ୍କୁ ଭେଟହେବ ।
ତାରାବତୀ ବୋଲେ ମୋତେ କ୍ରୋଧ ହେବେ ରାମ
ନାରାୟଣ ଦେଖି ତ ନୁହଇ ନିଜପୁର ।
ଯେଉଁ ନାରାୟଣ ମୋତେ ସତୀରେ ଗଣିବ
ପଞ୍ଚକନ୍ୟା ସଙ୍ଗେ ମୋତେ ଗଣନା କରିବ ।
ଦୁର୍ବାସା ବୋଇଲେ ତୋତେ ଶ୍ରୀରାମ କେବଳ
ପୂର୍ବରେ ତାହାଙ୍କୁ ଅଛି ଯେ ଯୋଗ ।
ସକାଳ ବେଳା ଯେଉଁ ଶବଦ ଶୁଣିବୁ
ନିର୍ଘାତ ବୋଲିଣ ମନରେ ବିଚାରିବୁ ।

ସେ ନୁହେଁ ନିର୍ଘାତ ଦୁନ୍ଦୁଭୀ ହାଡ଼ ପୁଣ
ଚରଣେ ଫିଙ୍ଗିଲେ ଯାଇଣ ନାରାୟଣ ।
ତେଣୁ ସେ ଶବଦ ନିର୍ଘାତ ପ୍ରାୟେ ହେଲା
ଦଶଯୁଣେ ଯେ ପଡ଼ି ଗିରି ହେଲା ।
ତେଣୁ କରି ଦୁନ୍ଦୁଭୀ ଯେ ପାଇଲା ମୁକତ
ଅଷ୍ଟରତ୍ନେ ଜଡ଼ିତ ତାହାକୁ କଲେ ରଘୁନାଥ
ଉପର ଓଳି ଶବଦ ପୁଣି ଶୁଭିଲା
ସପ୍ତଶାଳା ଛେଦିଲେ ଦଶରଥ ବଳା ।
ତାରା ବୋଇଲେ କିମ୍ପା ଛେଦିଲେ ସପ୍ତଶାଳା
ସେ କଥା ମୋର ଆଗେ କହିବ ଭ୍ରମେ ପରା ।
ଦୁର୍ବାସା-ବୋଇଲେ ଜ୍ଞାନବନ୍ତ ନାରୀ
ସୁଗ୍ରୀବ ସଙ୍ଗେ ଭେଟ ହେଲେ ଚାପଧାରୀ ।
ସୁଗ୍ରୀବର ଦୁଃଖ କଥା ତାଙ୍କ ଆଗେ କହି
ରଘୁନାଥ ଶୁଣି ମନରେ ବିଚାରଇ ।
ବୋଇଲା ବାଳୀ ଯେବେ ହରିଲା ଭାଇବୋହୂ
ଏଡ଼େ ଅଧର୍ମ ଯେ କହିବା ନ ଯୋଗାଉ ।
ଦେବକାର୍ଯ୍ୟ ନିମନ୍ତେ ଆପେ ଯେ ଧର୍ମ କଲା
ଏବେ ସେ ଦେବଙ୍କ ଧର୍ମ ଯେ ଲଙ୍ଘିଲା ।
ଅନ୍ୟାୟ ଯେବେ ତୁହି କଲୁରେ ସୁଗ୍ରୀବର
ବଦଳ ତୋତେ ଘଉଡ଼ି ଦେବା ବେଭାର ।
ତାହାର ଘରଣୀକୁ ତୁ ନୋହିଲୁ ସମାନ
ସେ କିମ୍ପା ତୋର ଘରଣୀ ହରିଲା କେଉଁ ଧର୍ମ ।
ଅବିଚାର କରିବାରୁ ଆଉ ସେ ତାରା ନ ଗଲା
ଦେବତାମାନେ ଧର୍ମ ଦେବତାଙ୍କୁ ସେ ଲଙ୍ଘିଲା ।
କରିବାର ପାପରେ ହୋଇବ ମୃତ୍ୟୁ ତାର
ମାରିବି ତାହାକୁ ମୁହିଁ ଦୋଷ ନାହିଁ ମୋହର ।
ତାହାର ଘରଣୀକି ତୋହର ତଳେ ରଖି
ପଞ୍ଚ କନ୍ୟାରେ ଗଣିତା କରିବି ତାକୁ ସତୀ ।
ଯେତେବେଳେ ମୁହିଁ ବୈକୁଣ୍ଠପୁର ଯିବି
ସେତେବେଳେ ତୋତେ ତାରାକୁ ସଙ୍ଗେ ନେବି ।
ବୈକୁଣ୍ଠପୁରେ ତୁମେ ରହିବ ଷୋଳଯୁଗ
ଦ୍ୱାପର ଯୁଗେ ଜାତ ହୋଇବ ଯାଇ ବେଗ ।
ସେତେବେଳେ ତୁହି ଯେ ହୋଇବୁ ଭାଇ
ତୋର ନାମ କର୍ଣ୍ଣ ହେବ ଶୁଣରେ ସୁଗ୍ରୀ ତହିଁ ।
ବାଳୀ ଜାତ ହେବ ଯେ ଅର୍ଜୁନ ରୂପ ଧରି
ସେ ମୋର ଅର୍ଦ୍ଧ ଅଙ୍ଗ ହୋଇବ ସମସରି ।
ତୁହି ଆଦିତ୍ୟର ସୁତ ସେତେବେଳେ ପୁଣ
ସେହି ବାସବ ଅଙ୍ଗେ ଜନ୍ମ ହେବ ଜାଣ ।
ସେତେବେଳେ ଭାରତ ଯୁଦ୍ଧରେ ଅର୍ଜୁନ
ମାରିବ ବଳ ଯେ ଶୁଝିଯିବ ଜାଣ ।

ସେତେବେଳେ ତାକୁ ତୁ ଯେ ମାରିବୁ ନିଜ ହସ୍ତେ
ତେବେ ତାର ମନ ସୁସ୍ଥ ହୋଇବ ହୃଦଗତେ ।
ବାଳୀର ଭାରିଯା ହେବ ଯେ ଭଉଣୀ ମୋର
ସୁଭଦ୍ରା ରୂପରେ ହୋଇଥିବ ଜାତ ତାର ।
ସେତେବେଳେ ଅର୍ଜୁନ ତାହାକୁ ବିଭା ହୋଇ
ଦ୍ୱାପର ଯୁଗରେ ବାଳୀ ମୋର ଅଙ୍ଗ ଛେଦି ।
ଶୁଣିଣ ତାରାବତୀ ଆନନ୍ଦ ହୋଇଲା
କରିବି ରାମ ବୋଲ କରିବି ସେ ବୋଇଲା ।
ଏତେ ସୁଖ ଯେବେ କରିବେ ନାରାୟଣ
ଏ କଥାକୁ ତେଜିଲେ ହୋଇବି ଅକାରଣ ।
ଦୁର୍ବାସା ବୋଇଲେ ଆହୁରି କଥା ଶୁଣ
ଏ ଜନ୍ମେ ପାର୍ବତୀ ଅଂଶ ସପତଣୀ ଜାଣ ।
ସେ ଜନ୍ମେ ପାର୍ବତୀ ଅଂଶେ ସପତଣୀ ହୋଇବ
ପଞ୍ଚୁ ପାଣ୍ଡବ ଘରଣୀ ପାର୍ବତୀ ଅଂଶ ପୁଣ ।
ଏତେ କହି ଦୁର୍ବାସା ନିଜ ସ୍ଥାନେ ଗଲେ
ତାରାବତୀ ଶୁଣିଣ ଆନନ୍ଦ ମନ ହେଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ମନରେ ବିଚାରିଲା ଯେ ବାଳୀର ପତ୍ନୀ ।
ଋଷି କହିବା କଥା ଅଟଇ ଯେବେ ସତ୍ୟ
ଦେଖି ମୁଁ ପରୀକ୍ଷା କରିବି ନିଅତ ।
ଏତେ ବିଚାରି ତାରା ଦାସୀକି ଡ଼କାଇଲା
ବିଶ୍ୱାସ କରି ତାକୁ ବଚନ କହିଲା ।
ବୋଇଲା ଏବେ ତୁମ୍ଭେ ପାଞ୍ଚଜଣ ଯାଅ
ଦୁନ୍ଦୁଭୀର ଶବ ଦେଖିଣ ମୋତେ କହ ।
କେଉଁ ସ୍ଥାନେ ଅଛି ସେ କେବଣ ପ୍ରକାରେ
ଶୁଣିଣ ଦାସୀମାନେ ଚଳିଗଲେ ଧୀରେ ।
କଟକ ଦଶଯୂଣେ ଦୁନ୍ଦୁଭୀ ଅସ୍ଥି ଦେଖି
ମେରୁର ପ୍ରାୟେ ଉଚ୍ଚ ସେହୁ ଗୋଟି ।
ଦେଖିଣ ଦାସୀମାନେ ଫେରିଣ ଅଇଲେ
ତାରା ପାଟରାଣୀ ଆଗରେ କହିଲେ ।
ବୋଇଲେ ଆଗ ଦୁନ୍ଦୁଭୀ ଶବଥିବା ଯେ ସ୍ଥାନ
ସେ ସ୍ଥାନରେ ଚିହ୍ନ ନାହିଁ ଶୁଣ ଗୋ ସତୀ ପୁଣ ।
ସେଠାରୁ ଦଶଯୂଣ ଅନ୍ତରେ ଅଛି ପୁଣ
ଋଷ୍ୟମୂକ ପର୍ବତକୁ ତହିଁ ପାଞ୍ଚଯୂଣ ।
ଅଧା ସ୍ୱର୍ଗେ ତାର ଲାଗୁଅଛି ଶିର
ମୋଟା ଅଟେ ଦଶଗୁଣ ଶୁଣଗୋ ନାରୀବର ।
ଆଦିତ୍ୟ ଉଇଁଲା ପ୍ରାୟେ ଦିଶଇ ତାର ତେଜ
ଶୁଣି ତାରାବତୀ ପାଇଗଲା ତାର ଭେଦ ।
ଦାସୀକୁ ବୋଇଲା ତୁମେ ବେଗ ହୋଇ ଚଳ
ସପ୍ତଶାଳା ଦେଖିଣ ବେଗ ହୋଇ ଫେର ।
ଶୁଣିଣ ଦାସୀମାନେ ବେଗ ହୋଇ ଗଲେ
ସପତଶାଳା ସ୍ଥାନେ ପ୍ରବେଶ ଯାଇ ହେଲେ ।
ଦେଖିଲେ ସପତ ବାଙ୍କରେ ସପ୍ତତରୁ ପଡ଼ି
ଗିରି ପ୍ରାୟ ତରୁମାନ ଭୂମିରେ ଲୋଟେ ଛିଡ଼ି ।
ଅଲକ୍ଷଣ ଦିଶଇ ସପ୍ତଶାଳା ସ୍ଥାନ
ବୃକ୍ଷମାନ ମରିବାରୁ ନାହିଁ ଯେ ଗିରି ପୁଣ ।
ଶୁଣିଣ ତାରାବତୀ ମନରେ ବିଚାରିଲା
ଋଷିର କଥା ସତ୍ୟ ହେଲା ବିଚାରିଲା ।
ନିଶ୍ଚୟ ମୋର ସ୍ୱାମୀ ମରିବାର ସତ୍ୟ
ଋଷିମାନେ କେବେ ହେଁ ନ କହନ୍ତି ମିଛ ।
ଏମନ୍ତ ବୋଲିଣ ନାରୀ ଗୁପ୍ତଭାବେ ରହି
ରଜନୀ ସାତଘଡ଼ି ହୋଇଲାକ ଯହିଁ ।
ବାଳୀ ସଭା ଭାଙ୍ଗିଣ ଭିତରେ ବିଜେ କଲା
ଦାସୀମାନେ ମଶୋହି ଘେନିଗଲେ ପରା ।
ଅନ୍ତଃପୁରେ ବାଳୀରାଜା ହୋଇଲା ପ୍ରବେଶ
ପଲଙ୍କ ଉପରେ ବସେ ଖଡ଼ଗର ସୁତ ।
ବେଶ ବେଶ ହୋଇ ତାରାରାଣୀ ଆସି
ବାଳୀ ପାଶରେ ଯାଇ ମିଳିଲା ଶୁଭ୍ରକେଶୀ ।
ଦେଖିଣ ବାଳୀବୀର କୋଳରେ ବସାଇଲା
ମୁଖେ ଚୁମ୍ବ ଦେଇଣ ଆଲିଙ୍ଗନ କଲା ।
ବେନି ହସ୍ତରେ କୁଚ ମର୍ଦ୍ଦନ କଲା ପୁଣ
ଶୃଙ୍ଗାର ରତି କଲା ହରଷ ହୋଇ ପୁଣ ।
ବୀର୍ଯ୍ୟବଳ ଖସନ୍ତେ ଉଠିଲା ବାଳୀବୀର
ପଲଙ୍କେ ଘେନି ଶୁଏ ଖଡ଼ଗ କୁମର ।
କେତେବେଳେ ଉତ୍ତାରୁ ନିଦ୍ରା ଯେ ଭାଙ୍ଗେ ପୁଣ
ପୁଣି ତାରା ସଙ୍ଗତରେ ରମଣ କଲା ଜାଣ ।
ରତି ସାରି ବାଳୀ ଯେ କୋଳରେ ବସେଘେନି
ସେତେବେଳେ ତାରାରାଣୀ ବଚନ କହେ ପୁଣି
ବୋଇଲା ହେ ପ୍ରାଣନାଥ ପୂରିଲା ତୁମ୍ଭକାଳ
କାଲି ମୃତ୍ୟୁ ପାଇବ ଯେ ସେ କଥା ବିଚାର ।
ବାଳୀବୀର ବୋଇଲା ଶୁଣଗୋ ପ୍ରାଣସଖୀ ।
ମୋତେ ମାରିବାକୁ କେ ତିନିପୁରେ ଅଛି ।
ବଳରେ ସ୍ୱର୍ଗପୁର ସାଧିଲି ମୁହିଁ ପୁଣ
ଅଭାବରେ ଶତ୍ରୁପୁର ସାଧିଲି ତୁହି ଶୁଣ ।
କ୍ରୋଧରେ ପାତାଳପୁର ଜାଣ ଗଲି ମୁହିଁ
ପାତାଳପୁର ସାଧି ନିଜ ନବର ଅଇଲି ।
ପୁଣି ସପ୍ତସାଗର ସାଧିବାକୁ ଗଲି ବଳେ
କେ ମୋତେ ସାଧିବାକୁ ଅଛି ଏ ରବିତଳେ ।
ଯମ ବରୁଣ ଯେ ଦେଖିଲେ ମୋତେ ଡରି
ବ୍ରହ୍ମା ଶିବ ସଙ୍ଗେ ମୁଁ ଯେ ନୁହଇ ବଇରୀ ।

ଦେବତାଙ୍କୁ ଦେଖିଲେ ମୁଁ କରଇ ମାନ୍ୟଧର୍ମ
ଦୁଷ୍ଟଜନ ମାରିବାରୁ ନାରାୟଣ ଉତ୍ତମ ।
ନର ବାନର ଅସୁର ସେ ନ ମାରି
ଏମାନଙ୍କର ମୁଁ ଯେ ନୁହଇ ଭଗାରି ।
ଶୁଣିଣ ତାରାବତୀ କହଇ ବଚନ
ଧର୍ମ ନିରଞ୍ଜନଙ୍କୁ ତୁମ୍ଭେ ଭଗାରୀ ଜାଣ ।
ପାତାଳକୁ ଯିବାବେଳେ ସୁଗ୍ରୀବ ଯେ ହେଲା ରାଜା
ତୁହି ଆସି ତାହାକୁ ଘଉଡ଼ାଇ ଦେଲୁ ରାଜା ।
ତାହାର ଭାରିଯାକୁ ବଳାତ୍କାରେ ହରି
ତେଣୁ ସେ ଧର୍ମର ହୋଇଲୀ ବଇରୀ ।
ତେଣୁ ସେ ଧର୍ମ ନିରଞ୍ଜନ ନାରାୟଣରେ କହି
ତେଣୁ ସେ ନାରାୟଣ ଜନ୍ମ ହେଲେ ମହୀ ।
ବିଶ୍ୱାମିତ୍ର ଯାଗ ରଖି ଅସୁର ବଳ ମାରି
ଗୌତମ ନାରୀକୁ ପାଷଣରୁ ତାରି ।
ମିଥିଳାର ଶିବଧନୁ ଭାଙ୍ଗି ସୀତା ବିଭାହେଲା
ବାଟରେ ପର୍ଶୁରାମର ଗାରିମା ଭାଙ୍ଗିଲେ ।
ସାବତ ଜନନୀ ତାର ପିତାକୁ ସତ୍ୟ କଲା
ଚଉଦ ବରଷ ବନକୁ ଯାଉ ଯେ ବୋଇଲା ।
ଦୁଷ୍ଟଜନ ମାରି ରାଜା ଆସି ହେଉ
ଶୁଣିଣ ସେ ରାମ ବନକୁ ଗଲେ ତହୁଁ ।
ଭାଇ ଭାରିଯା ସଙ୍ଗତେ ଘେନି ଦାଶରଥି
ବନରେ ଅନେକ ଅସୁର ମାରନ୍ତି ।
ଗୋଦାବରୀ କୂଳେ ପଞ୍ଚବଟୀ ବନେ
ଖର ଦୂଷଣ ତ୍ରିଶିରା ରଣ ଯେ କଲା ତେଣେ ।
ସେମାନେ ମରିବାର ରାବଣେଶ୍ୱର ଜାଣି
ରାମର ଘରଣୀକି ଯେ ହରିନେଲା ପୁଣି ।
ଖୋଜିଣ ଶ୍ରୀରାମ ତା ନ ପାଇଲା ଘରଣୀ
ରାବଣ ନେଲା ବୋଲି ପାଇଲ ତଥ୍ୟ ପୁଣି ।
ବନ ଖୋଜି ଋଷ୍ୟମୁକ ପର୍ବତେ ଜାଣ
ତାଙ୍କର ସୁଗ୍ରୀବର ହୋଇଣ ବିଶ୍ୱାସ ।
ସକଳ କଥା ସେ ଯେ କହିଲା ବୁଝାଇ
ଶ୍ରୀରାମ ଧର୍ମବନ୍ତକୁ ନ ପାରଇ ।
ସୁଗ୍ରୀବର ବୋଇଲା ସେ ଅଧର୍ମ କଲା
ସୋଦର ଭାଇ ମୁଁ ଯେ ଘଉଡ଼ାଇ ଦେଲା ।
ମୋର ଘରଣୀ ଅଟଇ ତାର ସାନବୋହୂ
ଭାଇବୋହୁ ହରିଲା ଶୁଣ ହେ ରାମରାହୁ ।
ଶୁଣିଣ ଶ୍ରୀରାମଚନ୍ଦ୍ର କ୍ରୋଧ ହେଲେ
ଜାଣିବା ରାଜା ହୋଇ ଅଧର୍ମ କିମ୍ପା କଲେ ।
ଯେବେ ଭାଇର ଅନ୍ୟାୟ ଏବେ ଦେଖିଲା
ବେନି ଜନକୁ କିମ୍ପା ନ ଘଉଡ଼ିଲା ।
ଭାଇବୋହୂକୁ ରଖି ରମଣ ଯେବେ କଲା
ପଶୁଜନ୍ତୁଙ୍କ ସଙ୍ଗେ ସେହି ସରି ହେଲା ।
ଏମନ୍ତ ରାଜାକୁ ମୁଁ ଯେ ମାରିବା ନିୟତ
ଏତେ ବୋଲି ସୁଗ୍ରୀବ ସଙ୍ଗେ ହେଲା ମିତ ।
ତେଣୁ ସେ ସୁଗ୍ରୀବର ଚଳିଗଲେ
ଦୁନ୍ଦୁଭୀ ହାଡ଼କୁ ଚରଣେ ଫିଙ୍ଗିଲେ ।
ସପ୍ତଶାଳାକୁ ଏକାଶରରେ ଛେଦିଲେ
ତେଣୁ ସେ ସୁଗ୍ରୀବର ପରତେ ଗଲା ଭଲେ ।
ଶୁଣିଣ ବାଳୀବୀର ମନରେ କ୍ରୋଧ ହେଲା
ଦଶରଥ ପୁଅ ମୋତେ ମାରିବ ବୋଇଲା ।
ରାବଣ ନେଲା ତା ନାରୀ ମୁଁ ନେବି ଜୀବନ
ଏହିଥର ଦଶରଥର ପୁଅ ଶେଷ ହେବ ଜୀବନ ।
ଶ୍ରୀରାମ ଲକ୍ଷ୍ମଣ ମାରି ଅଯୋଧ୍ୟାକୁ ଯିବି
ଭରତ ଶତୃଘନକୁ ମୁଁ ଭଲେ ମାରିବି ।
ଏମନ୍ତ କହିଣ ବୀର ଗଦା ଯେ କରେ ଧରିଲା
ଦୁନ୍ଦୁଭୀର ଶବ ପାଖରେ ହୋଇଲା ପ୍ରବେଶି ।
ଦେଖିଲା ଶବ ଯେ ସେଠାରେ ନାହିଁ ଭଲା
ସେଠାରେ ଚିହ୍ନ ନାହିଁ ସେ ଦେଖିଲା ।
ସେଠାରୁ ଦଶଯୁଣ ଯାଇଣ ଦେଖିଲା
ବଳବନ୍ତ ଗିରି ଯେ ସେଠାରେ ଦେଖିଲା ।
ଦେଖିଣ ବାଳୀବୀର କ୍ରୋଧରେ ଉପାଡ଼ିଲା
ମୁଣ୍ଡ ଦେଇ ପେଲନ୍ତେ ତିଳେ ନ ଘୁଞ୍ଚିଲା ।
ସେଠାରୁ ବାଳୀବୀର ଅଇଲା ବେଗେ ପୁଣ
ସପ୍ତଶାଳା ପାଶରେ ପ୍ରବେଶ ହେଲା ଜାଣ
ଛେଦିଲା ତରୁମାନ ପଡ଼ିଅଛି ପୁଣ ।
ଦେଖିଣ ବାଳୀବୀର ଆଚମ୍ଭିତ ହେଲା
ସେଠାରୁ ବାଳୀବୀର ମନରେ ଭୟ କଲା ।
ଅନ୍ତଃପୁରେ ତାରା ପାଶେ ଯାଇଣ ମିଳିଲା
ତାରାକୁ ବୋଇଲେ ସେ କଥା ହେଲା ସତ ।
ସପ୍ତଶାଳା ଛେଦିବାର ଦେଖିଲି ପ୍ରତ୍ୟକ୍ଷ
ଦୁନ୍ଦୁଭୀ ହାଡ଼ ଫିଙ୍ଗି ଦେବାର ସତ ।
କେମନ୍ତେ ମାରିବ ମୋତେ ଦଶରଥ ବଳା
କଥାରେ ମୋର ଅନ୍ୟାୟ ହୋଇଲା ସିନା ।
ଆଉ ତ ସବୁଥିରେ ଧର୍ମ କରିଛି ମୁହିଁ
ଏମନ୍ତେ ବୋଲି ବାଳୀ ଅନ୍ତଃପୁରେ ରହିଲ ।
ରଜନୀ ପାହି ଯେ ପାହାନ୍ତି ଆସି ହେଲା
ଉଠିଣ ବାଳୀରାଜା ସ୍ନାହାନ ଆସି କଲା ।
ସନ୍ଧ୍ୟା ତର୍ପଣ କରି ପିତୃଙ୍କୁ ଜଳ ଦେଲା
ଦେବାର୍ଚ୍ଚ୍ୟ ନ ସାରିଣ ରହିଲା ଅନ୍ତଃପୁର
ବାଳୀରାଜା କଥା ମୁଁ ଯେ କହିଲି ତୁମ୍ଭ ଆଗର ।

ଏଥୁ ଅନନ୍ତରେ ପାର୍ବତୀ କହେ ପୁଣ
ସପ୍ତଶାଳା ଛେଦିଲେ ଯାଇ ରଘୁରାଣ ।
କିମ୍ପାଇଁ ସପ୍ତଶାଳା ନାମ ଯେ ତାର ହେଲା
ବାଳୀର ଜୀବନ କିମ୍ପା ସେଥିରେ ରହିଲା ।
ସେ କଥା ବୁଝାଇ ମୋତେ କହ ତ୍ରିଲୋଚନ
ତେବେ ଯାଇ ମୋର ମନ ହୋଇବ ପ୍ରସନ୍ନ
ପାର୍ବତୀ ବଚନ ଶୁଣି ଈଶ୍ୱର କହନ୍ତି
ସ୍ୱର୍ଗରେ ବିଦ୍ୟାଧର ନାମ ଯେ ଜୟନ୍ତୀ ।
ଅନାଙ୍ଗପନଠାରୁ ଜାତ ସେ କୁମର
ସାତଗୋଟି କୁମର ଏକଇ ଦିନକର ।
ପିତା ଏକଗୋଟି ମାତା ଯେ ସାତ ଗୋଟି
ଗନ୍ଧର୍ବ ଅଂଶରେ ବଳବାନ ହେଲେ ପୁଣିଟି ।
ଯୁବା କାଳରେ ଯେ ଧାର୍ମିକ ହୋଇଲେ
ଚନ୍ଦ୍ରଙ୍କ ରଥରେ ସେ ଯାଇଣ ବସିଲେ ।
ବୋଇଲେ ଆମ୍ଭେ ଏବେ ହୋଇବୁ ବଂଶଧର
ଏତେ ବୋଲି ଚନ୍ଦ୍ରଙ୍କୁ ଧଇଲେ ସାତବୀର ।
ସାତଜଣ ଧରନ୍ତେ ଚନ୍ଦ୍ର ବିକଳ ହେଲା
ତେଣୁ କ୍ରୋଧ ହୋଇ ତାଙ୍କୁ ଶାପ୍ୟ ଦେଲା ।
ବୋଇଲେ ଶାଳଗଛ ହୁଅରେ ମଞ୍ଜପୁରେ
ସତର ଯୁଗ ରହିବ କିଷିନ୍ଧ୍ୟା ନଗରେ ।
ପ୍ରତ୍ୟେକ ହାତରେ ସର୍ବେ ଏକ ହୋଇ
ସପତ ବାଙ୍କରେ ସପତ ଭାଇ ରହି ।
ଏମନ୍ତ ବୋଲିଣ ଚନ୍ଦ୍ର ତାଙ୍କୁ ଶାପ୍ୟ ଦେଲେ
ଶାପ୍ୟ ପାଇ ବିମୁଖ ସାତ ଗନ୍ଧର୍ବ ହୋଇଲେ ।
ବାସବର ଆଗରେ କହିଲେ ବେଗେ ଯାଇ
ଚନ୍ଦ୍ର ଦେବତା ଯେ ଶାପ୍ୟ ଦେଲେ ନୃପସାଇଁ
ବାସବ ବୋଇଲେ ତୁମ୍ଭେ ତା ପୁରେ ଦୋଷୀ ହୋଇଲ
କିମ୍ପା ବଳାତ୍କାରେ ଯାଇଣ ତାଙ୍କୁ ଧଇଲ ।
ତେଣୁ ସେ ଶାପ୍ୟ ହୋଇବ ପ୍ରାପତ
ସତର ଯୁଗ ଗଲେ ଯେ ହୋଇବ ମୁକତ ।
ରାବଣ ମାରିବାକୁ ଯେ ଶ୍ରୀରାମ ଜନ୍ମ ହେବେ
ବାଳୀକୁ ମାରିବାକୁ କିଷିନ୍ଧ୍ୟାକୁ ଯିବେ ।
ସେତେବେଳେ ସୁଗ୍ରୀବର ସଙ୍ଗେ ମିତ
ସୁଗ୍ରୀବ କହିବ ଯେ ଭାଇର ବଳକୃତ ।
ଯେତେବେଳେ ସପ୍ତଶାଳା କରିବେ ଛେଦନ
ସେତେବେଳେ ମୁକ୍ତ ହେବ ସାତ ଭାଇ ପୁଣ ।
ଏମନ୍ତ ବଚନ ବାସବ କହିଲେ
ଶୁଣିଣ ସପ୍ତଭାଇ ପ୍ରବୋଧ ଯେ ହେଲେ ।
ପାର୍ବତୀ ବୋଇଲେ ତୁମ୍ଭେ ଏକ କଥା ଶୁଣ
ସପ୍ତଶାଳା ସେଠାରେ ଛେଦିଲେ ରଘୁରାଣ ।
ଯେବେ ଧନୁରେ ଦେଲେ ଗୁଣ
ସପ୍ତପୁର କମ୍ପିଲା ପଥ ନ ଦିଶିଲା ପୁଣ ।
ସେତେବେଳେ ସର୍ପ ଯେ ସଳଖ ହୋଇଗଲା
ସପ୍ତଶାଳାକୁ ତେଣେ ଶ୍ରୀରାମ ଛେଦିଲେ ।
ସେ କଥା ବୁଝାଇ ମୋତେ କହ ତ୍ରିଲୋଚନ
ତେବେ ମୋର ମନ ଯେ ହୋଇବ ପ୍ରସନ୍ନ ।
ପାର୍ବତୀ ବଚନରେ ଈଶ୍ୱର କହନ୍ତି
ସ୍ୱର୍ଗର ବିଦ୍ୟାଧର ଯେ ନାମ ତା ଜାଣନ୍ତି ।
ଯୁବାକାଳରେ ସେ ଅଧର୍ମ ବିଚାରିଲା
ଚନ୍ଦନ ବନେ ସନାତନ ଋଷିକୁ ଭେଟିଲା ।
ଋଷିର ଆଗରେ ଯାଇ ହୋଇଲା ଛିଡ଼ା
ବିଚାରିଲା ଏ ଋଷି ଯେ ଅଟନ୍ତି ଅମଡ଼ା ।
ମିଛରେ ଏ ଯେ ମାଳି ମାତ୍ର ଘେନି କରେ
ନୟନ ବୁଜିଅଛି କେବଣ ପ୍ରକାରେ ।
ସେଠାରେ ରହି ମୁନିକି ଟାପରା କଲା
କ୍ରୋଧରେ ମୁନି ତାହାଙ୍କୁ ଶାପ୍ୟ ଦେଲେ
ବୋଇଲେ ସର୍ପ ତୁରେ ହୁଅ ମଞ୍ଜପୁରେ
ସତର ଯୁଗ ରହିବୁ କିଷିନ୍ଧ୍ୟା ସୀମାରେ ।
ଆଠଶତ ହାତ ଲମ୍ବା ଯେ ତୁହି ହେବୁ
ଶତହାତ ମୋଟା ହୋଇଣ ଶରୀର ବୋହିବୁ ।
ବେନିଶତ ଗଭୀର ଖାଲ ସେ ଖଣାର
ସାତ ମୋଡ଼ ବାଙ୍କରେ ଶୋଇବୁ ସେହିଠାର ।
ପବନ ଆହାରେ ତୁ ବଞ୍ଚିବୁ ମହାସର୍ପ
ମାସକେ ଏକଦିନ ହୋଇବ ପରାପତ ।
ତୋ ପରେ ସାତ ଗଛ ଶାଳ ଯେ ଉଠିବ
ସେ ଶାଳଗଛମାନ ଯେ ଉଚ୍ଚ ହେବ ।
ମୋଟା ଶତହାତ ଲମ୍ବ ଯେ ବେନିସସ୍ର ହାତ
ଏ ରୂପେ ଶାଳଗଛ ତୋ ପରେ ହେବ ସମ୍ଭୂତ ।
ମୋଡ଼ରେ ତୋର ପରେ ଗୋଟିଏ ଲେଖାଏଁ
ହୋଇବ ତରୁବର ପର୍ବତ ପରାଏ ।
ତାଙ୍କର ନାମ ପୁଣ ହୋଇବ ସପ୍ତଶାଳା
କ୍ଷତ୍ରୀମାନେ ପଳାଇବେ ଦେଖିଲେ ତାକୁପରା ।
ରାବଣ ମାରିବାକୁ ଶ୍ରୀରାମ ଜନ୍ମ ହେବେ
ବାଳୀକୁ ମାରିବାକୁ କିଷିନ୍ଧ୍ୟାକୁ ଯିବେ ।
ଲାଞ୍ଜମୁଣ୍ଡ ତୋର ଚିହ୍ନିବେ ନାରାୟଣ
ଲାଞ୍ଜରେ ବାମ ଚରଣ ଲଦିବେ ସେ ପୁଣ ।
ସେତେବେଳେ ସଳଖ ହୋଇ ବିଦ୍ୟାଧର
ସପ୍ତଶାଳା ଛେଦନ କରିବେ ରଘୁବୀର ।
ସପ୍ତଶାଳା ମୃତ୍ୟୁ ପାଇବ ଯେତେବେଳେ
ମୁକ୍ତ ତୁ ହେବୁ ବିଦ୍ୟାଧର ସେତେବେଳେ ।

ଶୁଣିଣ ସର୍ପରୂପ ଯେ ବିଦ୍ୟାଧର ହେଲା
ସତରଯୁଗଯାଏ କିଷ୍କନ୍ଧ୍ୟାରେ ଥିଲା ।
ଶ୍ରୀରାମ ଚରଣ ଲାଗି ମୁକ୍ତ ସେ ହୋଇଲା
ସପ୍ତଶାଳା ଛେଦନ୍ତେ ସ୍ୱର୍ଗ ପୁର ଯେ ଗଲା ।
ଇନ୍ଦ୍ରଙ୍କୁ ଦର୍ଶନ କରି ନିଜପୁରେ ଯାଇ
ପିତାମାତାଙ୍କୁ ଦେଖି ଓଳଗି ସେ ହୁଅଇ ।
ଶୁଣିଣ ଗୌରୀ ଯେ ମନ ତୋଷ ହେଲେ
ଚନ୍ଦ୍ରଠାରେ ସପ୍ତଶାଳା ଶାପ୍ୟ ଯେ ପାଇଲେ
ତାହାକୁ ବେଦବର କି ରୂପେ ଜାତ କଲେ ।
ଅଧେ ବଳ ବାଳୀର ସେ କିରୂପେ ହାରିଲେ ।
ସେ କଥା ମୋହ ଆଗେ କହ ହେ ପଞ୍ଚାନନ
ଜନ୍ମ ହେବାର ମୁଁ ଯେ ନ ଶୁଣିଲି ପୁଣ ।
ଈଶ୍ୱର ବୋଇଲେ ଶୁଣରେ ଭଗବତୀ
ଚନ୍ଦ୍ରର ଶାପ୍ୟରେ ଗନ୍ଧର୍ବ ସାତଗୋଟି ।
ବାସବ ଆଗରେ କହିଣ ବୋଧ ହେଲେ
ଜାଣିଣ ବେଦବର ତାଙ୍କୁ ଘେନି ଗଲେ ।
ସାତ ମୋଡ଼ରେ ସତ ଗନ୍ଧର୍ବ ମୋଡ଼ ହେଲେ
ବାଳୀର ଅଧେ ବଳ ବେଦବର ହାରିଲେ ।
ସେ ସାତ ବୃକ୍ଷରେ ରଖିଲେ ନେଇକରି
ସେ ସାତବୃକ୍ଷକୁ କହିଲେ ବେଦଧାରୀ ।
ବୋଇଲେ ଯେତେବେଳେ ଛେଦିବେ ନାରାୟଣ
ସେତେବେଳେ ନିଜସ୍ଥାନ ଯିବରେ ସାତଜଣ ।
ସତର ଯୁଗ ସେ କଥା ପ୍ରମାଣ ହେଲା
ଶ୍ରୀରାମ ଛେଦନ୍ତେ ମୁକ୍ତ ପରା ହେଲା ।
ଶୁଣିଣ ପାର୍ବତୀ ଯେ ମନରେ ତୋଷ ହେଲେ
ବାଳୀର ମରଣ କଥା ସ୍ୱାମୀଙ୍କୁ ପଚାରିଲେ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣରେ ପ୍ରାଣସହୀ
ରଜନୀ ଶେଷରେ ବାଳୀ ଶୌଚ ଯାଇ ହୋଇ
ଘରଣୀକି କହି ଆପେ ଦେଖି ଗଲା
ସ୍ୱପ୍ନରେ ବାସବ ତାହାକୁ କହିଗଲା ।
ସପ୍ତଶାଳା ଛେଦନ୍ତେ ଗଲାକ ଅଧେ ବଳ
ଖଳ ପୁରୁଷ ବାଳୀ ଦେହରେ ବିକାର
କୌଣସି କଥାକୁ ବାଳୀ ବିଚାର ନ କଲା
ତାରାସଙ୍ଗେ ଅନ୍ତଃପୁରେ ସେଦିନ ରହିଲା ।
ଏଥୁ ଅନନ୍ତରେ ଶୁଣରେ ଜୟଦୁର୍ଗା
ରଜନୀ ଶେଷ ହେଲା ସକଳେ ଜୀବ ତେଜ୍ୟା ।
ରାତ୍ର ପାହିବାରୁ ଶ୍ରୀରାମ ସାରିଲେ ନିତ୍ୟକର୍ମ
ସୁଗ୍ରୀବକୁ ଘେନି ପର୍ବତୁ ଚଳିଲେ ବହନ ।
ଚାଲ ଯିବା ଏବେ ବଇରୀ ତୋର ଦେଖା
ଏତେ ବୋଲି ଆଜ୍ଞା ଦେଲେ ଲକ୍ଷ୍ମଣଙ୍କ ସଖା ।

ଆବର ମଧ୍ୟରେ ତୋତେ ଦେବଙ୍ଗି ସମ୍ପଦ
ଅନେକ କାଳରୁ ତୁ ଯେ ରଖିଯିବୁ ବାଦ ।
ବାଳୀ ଯେ ତାହାର ଭାରିଯା ନେଲା
ତାହାର ଘରଣୀ ଏବେ ତୋହର ହୋଇଲା ।
ଏତେ ବୋଲି ଶ୍ରୀରାମ ହୋଇଲେ ଆଗୁସାର
ସୁଗ୍ରୀବର ସହିତେ ଗୋଡ଼ାଏ ପଞ୍ଚବୀର ।
ସୋଦର ଲକ୍ଷ୍ମଣ ଯେ ଅଟଇ ସାନଭାଇ
ଆଗପଛ ହୋଇଣ ଆଠଜଣ ଯାଇ ।
ଆଗରେ ସୁଗ୍ରୀବର କଢ଼ାଉଅଛି ବାଟ
ଲକ୍ଷ୍ମଣର ପଛରେ ପବନର ଚାଟ ।
ଜମ୍ୱେବ ସୁଷେଣ ଯେ ଅଛନ୍ତି ନଳ ନୀଳ
ଦକ୍ଷିଣକୁ ମୁଖକରି ଚାଲନ୍ତି ସକଳ ।
ବନସ୍ତ ଭିତରେ ପୁଣି ଶୁଭଇ ଗର୍ଜନ
ନୃତ୍ୟରେ ଆନନ୍ଦ ସେ ଯେ କରନ୍ତି ଗମନ ।
ଯନ୍ତ୍ର ବାଇ ସ୍ୱରରେ କରନ୍ତି ଆନନ୍ଦ ତାʼର
ଶ୍ରୀରାମ ପଚାରିଲେ ଶୁଣରେ ସୁଗ୍ରୀବର ।
ବାଟ ନ ସରିବ ଯେ କଥାକୁ ଲୟ ଦେଲେ
ଯାଉଁ ଯାଉଁ କଥାଏ କହ ହେ ସୁଗ୍ରୀବରେ ।
ଶୁଣିଣ ସୁଗ୍ରୀବର ଚାଲଇ ଖରତରେ
ଶ୍ରୀରାମ ବୋଇଲେ ଶୁଣହେ ସୁଗ୍ରୀବରେ ।
କଥା କଉତୁକେ ଯେବଣ ପ୍ରକାର
ଆଗରେ କିଷ୍କିନ୍ଧ୍ୟା ଦିଶଇ ନିକଟରେ ।
ଏ ବନ ଭିତରେ ଅଛଇ ମହାକର୍ଣ୍ଣ
ଏଥି ଭୋଗ ହେଲା ତାକୁ ସହସ୍ରେ ଲୋଚନ ।
ବନ ଭିତରେ ଶୁଣ ଶୁଭଇ ମର୍ଦ୍ଦଳ
ଘଣ୍ଟି ଘାଗୁଡ଼ିଏ ଶୁଭଇ ଚହଳ ।
ଏଥୁ ଅନନ୍ତରେ ଯାଆନ୍ତି ପଥ ବାହି
କିଷ୍କିନ୍ଧ୍ୟା ନଗ୍ରରେ ପ୍ରବେଶ ହେଲେ ଯାଇ ।
ଆକାଶରେ ରାମ ରାମ ଶୁଭଇ ଶବଦ
କେ ଜାଣି ବିଜୁଳି ମାରଇ ଘୋର ନାଦ ।
ଦଶଦିଶ ଆଲୋକ ଦିଶଇ ଘନଘନ
କି ଜାଣି ଆକାଶରୁ ଖସିଲା ବିମାନ ।
ଶ୍ରୀରାମଙ୍କୁ ସୁଗ୍ରୀ ଯେ ହୋଇଲେ ସୁପକ୍ଷ
ରବି ବୋଇଲେ ରାଜା ହୋଇବ ମୋର ପୁତ୍ର ।
ସୁବର୍ଣ୍ଣର ମାଳାଗୋଟି କଣ୍ଠରୁ କାଢ଼ିଲେ
ନିଜ ତେଜ ଦେଇଣ ଗଗନୁ ଛାଡ଼ିଦେଲେ ।
ସେ ଆସି ସୁଗ୍ରୀବର ଗଳାରେ ପ୍ରବେଶ
ରତ୍ନ ଜଡ଼ିଛି ସେଥିରେ ବସନ୍ତ ଶତେ ପୁଷ୍ପ ।
ସେ ମାଳା ଦେଖି ରାମ ସନ୍ତୋଷ ମନ ହେଲେ
ମଇତ୍ର ତୁମ୍ଭ କାର୍ଯ୍ୟ ହେବ ହେ ବୋଇଲେ ।

ଶୁଣିଣ ସୁଗ୍ରୀବର ରାମଙ୍କୁ ନମସ୍କାର
ମାଳା ବେଶ ହୋଇଲେ କପିଙ୍କ ବୀର ।
ଏଥୁଅନନ୍ତରେ ଶୁଣ ଗୋ ହୈମବତୀ
ବାସବ ପ୍ରବେଶ ହେଲେ ଶ୍ରୀରାମଙ୍କ କତି ।
ବୋଇଲେ ବାଳୀକି ନ ମାର ରଘୁନାଥ
ଜୀଇଥିଲେ ତୁମ୍ଭଙ୍କୁ କରିବି ପୁରୁଷାର୍ଥ ।
ଶ୍ରୀରାମ ବୋଇଲେ ଅନ୍ୟାୟ ସେ କଲା
ଭାଇବୋହୂର ପୁଣି କି ଦୋଷ ସେ ଦେଖିଲା ।
ବେନି ସହସ୍ର ବର୍ଷ ଏଥିରେ ଗଲା ବହି
ତେବେହେଁ ଦୟା ତାର ହୃଦେ ନ ବସଇ ।
ଭାଇ ଦୋଷ କଲା ଭାଇକି କ୍ରୋଧ ହେଲା
ଭାଇବୋହୂକୁ ହରିଣ ଭାଇକି ଘଉଡ଼ିଲା ।
ପରଦାରା ପାପକୁ ନ କଲା ସେ ଭୟେ
ନିଶ୍ଚୟ ତାର ମରଣ ହୋଇବ ଦେବରାଏ ।
ଏପରି ଦୁଷ୍ଟ ଯେବେ ମର୍ତ୍ତ୍ୟରେ ରହିବ
ବାସୁକୀ ନାଗ ଯେ ଧରଣୀ ନ ଧରିବ ।
ଶୁଣିଣ ସୁରରାଏ ଫେରିଣ ବେଗେ ଗଲା
ମାର ତୁ ବାଳୀ ଦୁଷ୍ଟକୁ ବୋଲିଣ କହିଲା ।
ସ୍ୱର୍ଗରେ ସୁରରାଜା ପ୍ରବେଶ ହୋଇଲା
କରହୋ ନୃତ୍ୟ ଅପସରୀଙ୍କି ବୋଇଲା ।
ଶୁଣଗୋ ଭବାନୀ କହନ୍ତି ଗିରିଶ
କିଷ୍କିନ୍ଧ୍ୟା ବଡ଼ଦାଣ୍ଡ ଅଟଇ ତିନିକୋଶ ।
ତହିଁର ଶାଖା ଅଟେ ବାଆସ୍ତରୀ ଦାଣ୍ଡ ।
କନ୍ଦି ବିକନ୍ଦି ଯେ ତାର ରୁଣ୍ଡ ।
ସେ ବଡ଼ ଦାଣ୍ଡର ଉତ୍ତର ମୁଣ୍ଡରେ
ବିଜୟ ସଦାଶିବ ନୀଳ ଯେ ବର୍ଣ୍ଣରେ ।
ଦେବଙ୍କ ନାମ ଅଟଇ ନୀଳକଣ୍ଠ
ସହସ୍ରେଲିଙ୍ଗ ଘେନି ବିଜୟେ ସେ ପୀଠ ।
ସେ କଟକପୁରେ ନୀଳକଣ୍ଠେଶ୍ୱର
ପ୍ରତିଦିନ ବଢ଼ନ୍ତି ଛତିଶ ଆଙ୍ଗୁଳ ।
ପ୍ରଭାତରୁ ସାତଘଡ଼ି ବେଳଯାଏଁ ବଢ଼ି
ସ୍ଥିର ହୋଇ ଈଶ୍ୱର ରହନ୍ତି ବେନିଘଡ଼ି ।
ପୁଣି ବେଳ ଗଡ଼ିବାରୁ ହୁଅନ୍ତି ନିଉନ
ସନ୍ଧ୍ୟା ସମୟକୁ ସମସରି ପୁଣ ।
ରଜନୀରେ ସମଭାବେ ନୀଳକଣ୍ଠ ରହି
ଆରଦିନ ଶୁକ୍ଳାମ୍ବର ରୂପକୁ ଧରଇ ।
ସେହିଭାବେ ବଢ଼େ ଛିଡ଼େ ସେଦିନକ ଜାଣ
ଆରଦିନ ରଙ୍ଗ ଯେ ମନ୍ଦାରପୁଷ୍ପ ବର୍ଣ୍ଣ ।
ସେ ଦିନ ବଢ଼ନ୍ତି ଛିଡ଼ନ୍ତି ସମ ହୁଅନ୍ତି
ଆରଦିନ କଳାମେଘ ପରାଏ ଦିଶନ୍ତି ।
ବଢ଼ନ୍ତି ଛିଡ଼ନ୍ତି ହୁଅନ୍ତି ସମତୁଲ
ଏମନ୍ତେ ଚାରିବର୍ଣ୍ଣ ନୀଳକଣ୍ଠ ହର ।
ସେ ଲିଙ୍ଗକୁ ଦର୍ଶନ କଲେ ଯାଇ ରାମ
ସୁଗ୍ରୀବର କହିଲେ ସେ ଲିଙ୍ଗ ଅନୁପମ ।
ରାମ ପଚାରିଲେ ଲିଙ୍ଗଙ୍କର କେଉଁ ନୀତି
ସୁଗ୍ରୀବର ବୋଇଲେ ଶୁଣହେ ରଘୁପତି ।
ତ୍ରିନିଧୂପ ପାଞ୍ଚ ଅବକାଶ ଜାଣ
ଅଗୁରୁ ଚନ୍ଦନ ଚୁଆ ଲେପନ୍ତି ପ୍ରତିଦିନ ।
ନାନାବର୍ଣ୍ଣେ ପୁଷ୍ପ ତୁଳସୀ ଦୟଣା
ବନ୍ଧାଣ କରାବନ୍ତି ସକଳ ନରେ କିନା ।
ଏ ଲିଙ୍ଗଗୋଟି ଦେବ ଏ ପୁରକୁ ସାର
ବରଷକେ ଜନ୍ମଦିନ ନୀଳକଣ୍ଠଙ୍କର ।
ସେ ଦିନ ନୀଳକଣ୍ଠଙ୍କ ଶରୀରୁ ଗଙ୍ଗା ଝରି
ସେଦିନୁ ଗଙ୍ଗାଧର ବୋଲାନ୍ତି ତ୍ରିପୁରାରୀ ।
ଶୁଣିଣ ଶ୍ରୀରାମ ନମସ୍କାର ହେଲେ
ନୀଳକଣ୍ଠ ପାଷାଣ ତେଜିଣ ଉଭା ହେଲେ ।
ବୋଇଲେ ଶ୍ରୀରାମ ଦର୍ଶନ କଲି ତୋତେ
ମାର ପାପୀ ବାଳୀକି ଅନ୍ୟାୟ କଲା ଏଥେ ।
ଭାଇକି କୋପ ମନେ ଘଉଡ଼ିଣ ଦେଲା
ଭାଇବୋହୂକୁ କିମ୍ପା ରଖିଣ ହରିଲା ।
ସେହି ଭାଇ ସଙ୍ଗେ ତାକୁ ନ ଦେଲା କିମ୍ପା ଛାଡ଼ି
ଭଲ ଭଲ ଜନେ କହିଲେ ତା[illegible] ବେଢ଼ି ।
ଦଧିବାମନ ମୁଁ ଯେ ବେନିଜନ [illegible]ଲୁଁ
ବ୍ରାହ୍ମଣ ରୂପ ଧରି ତାହାକୁ କହିଲୁ ।
ବାଳୀ ବୋଲେ ତୁମ୍ଭ କଥା ମୁଁ ଘେନିବି ନାହିଁ
ହରିବି ତାହାରି ନାରୀ ଶତ୍ରୁ ସେ ଅଟଇ ।
ତେଣୁ ସେ ବେନି ଦେବ ଆମ୍ଭେ କ୍ରୋଧ ହେଲୁ
ଏ ନାରୀକି ହରିଣ ତୁ ମରିବୁ ବୋଇଲୁ ।
ଶୁଣିଣ କ୍ରୋଧ ହୋଇ ଉଠିଲାକ ବାଳୀ
ବୋଇଲା ମୋର ସଙ୍ଗେ ଲଗାଇଲ କଳି ।
ଏମନ୍ତ ବୋଲିଣ ଆମ୍ଭଙ୍କୁ ମାରି ମିଶି
ସେଠାରୁ ଅନ୍ତର୍ଦ୍ଧାନ ହୋଇଣ ଆମ୍ଭେ ଆସି ।
ଆମ୍ଭର କଥା ଏବେ ନ କର ରାମ ଆନ
ମାର ଦୁଷ୍ଟ ଜୀବକୁ ମନ୍ତ୍ରୁ ଏ ବାଳୀ ପୁଣ ।
ଶୁଣିଣ ଶ୍ରୀରାମ ମନରେ ବିଚାରିଲେ
ଦେବତାଙ୍କର କୋପ ତ ଏ ବାଳୀ ଉପରେ ।
ଏମନ୍ତ ବିଚାରି ସେଠାରୁ ଚଳିଗଲେ
ରାଜଦାଣ୍ଡ ବାଟରେ ସମସ୍ତେ ପଶିଲେ ।
ଆଗରେ ସୁଗ୍ରୀବର ପଛରେ ପାଞ୍ଚଜଣ
ତାଙ୍କ ପଛେ ବେନିଭାଇ କରନ୍ତି ଗମନ ।

ନଗର ନରନାରୀ ଦାଣ୍ଡରେ ଦେଖିଲେ
ଅପୂର୍ବ କଥା ଆଜ ବୋଲି ବିଚାରିଲେ ।
ବୋଇଲେ ବେନିସସ୍ର ବର୍ଷେ ସୁଗ୍ରୀ ଦେଖା
କେବଣ ଲୋକକୁ ଏତେ ପାଇଅଛି ସଖା ।
ଏମନ୍ତ କୁହାକୁହି ହୁଅନ୍ତି ନରନାରୀ
ପଛରେ ଶ୍ରୀରାମ ଲକ୍ଷ୍ମଣ ଦେଖାକରି ।
ବୋଇଲେ ସୁଗ୍ରୀବର ଆଗରେ ଚାଲ ପୁଣ
ଜମ୍ୱେବ ହନୁମନ୍ତ ତାହାର ପଛେଣ ।
ତାଙ୍କର ପଛରେ ସୁଷେଣ ନଳ ନୀଳ
ଏ ପାଞ୍ଚଜଣ ଅଟନ୍ତି ସୁଗ୍ରୀବର ମେଳ ।
ଏ ବେନି ଜନ ତ ନୁହନ୍ତି ଏକସଙ୍ଗ
କାଣ୍ଡ କୋଦଣ୍ଡ ଏ ଯେ ଧରିଣ ଛନ୍ତି ସଙ୍ଗ ।
ଦେବତାଙ୍କ ପ୍ରାୟେ ଦିଶନ୍ତି ବେନି ଜନ
କେ ବୋଲଇ ବାଳୀକି ମାରିବେ ଏହୁ ଜାଣ
କେ ବୋଲଇ ବାଳୀ ରାଜା ଅନ୍ୟାୟ ଯେ କଲା ।
କେ ବୋଲଇ ସୋଦର ଭାଇବୋହୂକୁ ହରିଲା
ଦେବତା ବ୍ରାହ୍ମଣ ନାଗ ନର ସୁର
ଅସୁର ଚାଣ୍ଡାଳ ଅଛି ହିଁ ବିଚାର ।
ଏମାନଙ୍କ ଘରେ ତ ନ ଶୁଣି କର୍ଣ୍ଣରେ
ସବୁଥିରୁ ବାଳୀ ବାହାର ଏ ପୁରେ ।
ଏମନ୍ତ ରାଜା ଯେବେ ରାଜ୍ୟରେ ଥାଇ
ପ୍ରଜାଙ୍କର ସୁଖ ନାହିଁ ସଂଶୟ ନ ଯୋଗାଇ ।
ଏସନ ବିଚାର କରନ୍ତି ନରନାରୀ
ଶ୍ରୀରାମଙ୍କୁ ଚାହିଁଣ ବୋଲନ୍ତି ଥିରକରି ।
ମାରବାଳୀକୁ ବେଗ ପାପ କ୍ଷୟ ଯାଉ
ପରସ୍ତିର ହରଣ ଦୋଷ ଦୂର ହେଉ ।
ଶୁଣିଣ ଶ୍ରୀରାମ ମନରେ ବିଚାରିଲେ
ସମସ୍ତଙ୍କ ତୁଣ୍ଡେ ବାଳୀ ପତିତ ହେଲା ଭଲେ ।
ମରିବାର କାଳେ ତାକୁ ନ ବୋଇଲେ ଭଲ
ନିଶ୍ଚୟ ବାଳୀ ରାଜାର ପୂରିଲା ଯେ କାଳ ।
ଏମନ୍ତ ବିଚାରି ଦାଣ୍ଡରେ ଚାଲନ୍ତି
ଦକ୍ଷିଣ ମୁଣ୍ଡେ ଦେଖି ଦଧିବାମନ ମୂର୍ତ୍ତି ।
ସେ ବିଷ୍ଣୁପ୍ରତିମାକୁ ଦର୍ଶନ ଯାଇ କଲେ
ନମସ୍କାର ହୋଇଣ ଓଳଗି ହୋଇଲେ ।
ଦଧିବାମନ ମୁରତି ଓଁକାର ବାଣୀ କହି
ଦେଉଳ ଭିତରେ ଶବଦ ଭେଦ ହୋଇ ।
ବୋଇଲେ ଶ୍ରୀରାମ ବାଳୀକି ବେଗେ ମାର
ଆଜିର ଭିତରେ ସୁଗ୍ରୀକି ରାଜା କର ।
ଆମ୍ଭର କହିବାର ନ ମାନେ ବେଳେ ବାଳୀ
ମନରେ ଗର୍ବ ତାର ଅଛଇଁ ବିଚାରି ।

ତ୍ରୈଲୋକ୍ୟରେ ଯେଉଁ କଥା ଅଟଇ ଅଭୂଷଣ
ସେ କଥା ବାଳୀରାଜା କଲା ଯେ ଭିଆଣ ।
ପାପରେ ବାଳୀ ଯେ ସବୁଙ୍କଠାରେ ଦୋଷୀ
ବେଗେ ତୁ ଶ୍ରୀରାମ ପକାଅ ତାକୁ ଧ୍ୱଂସୀ ।
ଏମନ୍ତ କହି ଦଧିବାମନ ତୁନି ହେଲେ
ପୁଣି ସେ ଓଁକାର ଶବଦ କହିଲେ ।
ବୋଇଲେ ବାଳୀରାଣୀ ଅଟଇ ତାରାବତୀ
ତାହାକୁ ସୁଗ୍ରୀବକୁ ଦିଅହେ ରଘୁପତି ।
ଶୁଣିଣ ଦାଶରଥି ବୋଲନ୍ତି ବଚନ
ସେ ନାରୀ କାହାରି ତ ନୁହଇ ଦୋଷମନ ।
ଦଧିବାମନ ବୋଇଲେ ସେ ତୋତେ ଦୋଷୀ ହେବ
ତାହାକୁ ସୁଗ୍ରୀତକେ ରଖିବୁ ରାଘବ ।
ଶୁଣିଣ ଶ୍ରୀରାମ ସନ୍ତୋଷ ମନ ହେଲେ
ବାଳୀବୀର ନିଶ୍ଚେ ମରିବ ବିଚାରିଲେ ।
ସୁଗ୍ରୀକି ବୋଇଲେ ତୁମ୍ଭେ ଶୁଣ ମୋ ବଚନ
ବଳୀର ସିଂହଦ୍ୱାରକୁ ଚଳିଯା ବହନ ।
ରାଜାର ସିଂହଦ୍ୱାରେ ବାହାନାଦ ଦେ'ସି
ରଡ଼ିଦେଇ ଡାକି ବାହାର କରସି ।
ଯେତେବେଳେ ବାହାର ହୋଇବ ତୁମ୍ଭଭାଇ
ପ୍ରାଣ ଘେନି ଘରକୁ ଆଜ କି ଯିବ ସେହି ।
ତାହାର ସିଂହଦ୍ୱାର ଆଗରେ ନିମ୍ବବୃକ୍ଷ
ବେନିଶତ ହାତ ସିଂହକୁ ଛଡ଼ା ସେତ ।
ଆମ୍ଭେ ଯେ ନିମ୍ବବୃକ୍ଷ ଉହାଡ଼ରେ ଥିବୁଁ
ବେଳକାଳ ଜାଣିଣ ନାରାଚ ବିନ୍ଧିବୁଁ ।
ସୁଷେଣ ନଳ ନୀଳ ଜମ୍ୱେବ ହନୁମାନ
ସୁଗ୍ରୀବ ସଙ୍ଗରେ ଏ ଅଟନ୍ତି ପାଞ୍ଚଜଣ ।
ଏମାନେ ଉହାଡ଼ରେ ଥାଆନ୍ତୁ ଉଭା ହୋଇ
ତୁମ୍ଭେ ଏକା ଯାଅ ଚିନ୍ତା ନ କର କପିସାଇଁ ।
ତେବେ ସେ ମରିବ କିଷ୍କିନ୍ଧ୍ୟାର ବାଳୀ
ସୁଗ୍ରୀବ ଗଲାବେଳୁଁ ପଡ଼ିଛି ହାଳହୋଳି ।
ଦେଉଳ ଅଟାଳି ବୃକ୍ଷ ତରୁପରେ
ପଦାମେଲା ପାଚେରୀ ଗୃହର ଉପରେ ।
ବାଳୀ ସୁଗ୍ରୀବର ଯୁଦ୍ଧ ଦେଖିବେ ବୋଲିଣ
ଦେଖନ୍ତି ନରନାରୀ ତହିଁ ରହି ପୁଣ ।
ଗଳାରେ ଲମ୍ୱେ ତାର ସୁବର୍ଣ୍ଣ ପୁଷ୍ପଗଭା
କେ ଜାଣି ଦିଶେ ଦ୍ୟୁତି ଆଦିତ୍ୟର ପ୍ରଭା ।
ସିଂହଦ୍ୱାର ନିକଟକୁ ଯାଅ ହେ ମିତ୍ର ତୁହି
ଶ୍ରୀରାମଙ୍କ ବାଣୀ ଶୁଣି ସୁଗ୍ରୀବ ହସଇ ।
ବାଳୀର ସିଂହଦ୍ୱାରେ ସୁଗ୍ରୀବ ମିଳିଲା
ସେତେବେଳେ ଶ୍ରୀରାମ କୋଦଣ୍ଡ ସଜ କଲା ।

ଗୁଣକୁ ଚଢ଼ାଇ ରାମ କୋଦଣ୍ଡ ଉପରେ
ଦେବଙ୍କ ବଚନେ କ୍ରୋଧ ଜାତ ଯେ ଶରୀରେ ।
ଏଥିଅନନ୍ତରେ ଶୁଣ ଗୋ ଗଉରୀ
ଦ୍ୱାରରେ ଥିବା ଲୋକୁ ସୁଗ୍ରୀବ କ୍ରୋଧକରି ।
କହରେ ବାଳୀ ବାପକୁ ତୁମ୍ଭର ଯାଇଣ
ବୋଲିବ ସୁଗ୍ରୀ ସଙ୍ଗେ କର ଆସି ରଣ ।
ଏହାଶୁଣି ଦ୍ୱାରପାଳ ସେଠାରୁ ଚଳିଗଲେ
ବାଳୀର ଆଗରେ ଦ୍ୱାରୀ ଜଣାଇଲେ ।
ବୋଇଲେ ଦେବ ତୋର ଭାଇ ସୁଗ୍ରୀବର
ରଣ କରିବାକୁ ଆସି ମିଳିଲା ସିଂହଦ୍ୱାର ।
ଦେଖିଣ ଆମ୍ଭେମାନେ ପଳାଇଲୁଁ ତ୍ରାସି
ସିଂହଦ୍ୱାର ନିକଟକୁ ଅଇଲା ସେ ପଶି ।
ଦ୍ୱାରେ ରହି ରଡ଼ି ଛାଡ଼ଇ ଘନ ଘନ
ତାହର ରଡ଼ି ଶୁଣି ଅଇଲୁଁ ଆମ୍ଭେ ପୁଣ ।
ଏହିକ୍ଷଣି ବହୁତ କରିବ ରଣଭଣ
ବେନିସସ୍ର ବର୍ଷେ ଆସିଅଛି ପୁଣ ।
ଏସନ ସମୟେ ଡାକିଲା ସୁଗ୍ରୀବୀର
କିମ୍ପାଇଁ ବାଳୀ ତୁରେ ପଶିଛୁ ଅନ୍ତଃପୁର ।
ଅନେକ ସମୟ କିଷ୍କିନ୍ଧ୍ୟା ଭୋଗ କଲୁ
ମୋହର ଭାଇ ଭାଗ କିମ୍ପାଇଁ ନ ଦେଲୁ ।
ମୋତେ ଘଉଡ଼ାଇ ମୋ ଭାର୍ଯ୍ୟାକୁ ହରିଲୁ
ଧର୍ମ ଛାଡ଼ି ଅଧର୍ମରେ ବହୁତ ଦିନ ନେଲୁ ।
ବଳବନ୍ତ ପଣରେ ଅଧର୍ମ ଅର୍ଜୁ ପୁଣ
ମୋହର ହାତରେ ଆଜ ମରିବୁ ତୁ ଜାଣ ।
ନିସତ ହୋଇଲେ ଆଜି ଜୀଇକି ଘରକରି
ବାଳୀବୀର ଶୁଣିଲା କହିଲା କଥା ତାରି ।
ହସିଣ ବିଚାରେ ବିପରୀତ ଏ ହେଲା
ନିଜ ମୃତ୍ୟୁ ଦେବତା କଢ଼ାଇ ଆଣିଲା ।
ଯେଉଁକଥା ଯତ୍ନରେ ଲୋଡ଼ଇ ପରିଘାଇ
ଦଇବ ଆଣିଲା ତାକୁ ଗଳାରେ ହାତ ଦେଇ ।
ଏତେ ବୋଲି ଆସନରୁ ଉଠିଲା ସେ ଧାତି
ଅମାନତ୍ୟମାନଙ୍କୁ ରାଜେ ବୋଇଲା ତାରାପତି ।
ତୁମ୍ଭେ ଯେ କହୁଥିଲ ସୁଗ୍ରୀକି କର ଦୟା
ସେ ପାପୀଷ୍ଠ ହୃଦରେ ଅଛି ବଡ଼ ମାୟା ।
ଦୟା କରିଣ ମୁଁ ଯେ ଛାଡ଼ିଲି ସେ ଘାନ୍ତି
ନିଶ୍ଚୟ ସୁଗ୍ରୀବରକୁ ମାରିବି ଏ ଘାନ୍ତି ।
ଗନ୍ଧମାର୍ଦ୍ଦନ ବୋଲେ ନ ଜାଣ ନୃପରାଏ
ଭାଇବୋହୂ ହରିଲାଦିନୁଁ ତୁମ୍ଭ ଅନ୍ୟାୟେ ।
ସ୍ତ୍ରୀ ରେ ହରଣରେ ହୁଏ ବହୁତ ଯେ ଦୋଷ
ଗଲେ ଆଜି ଲେଉଟି ନ ଆସୁ ବାନରେଶ ।

ଦୁଇଭାଗ କରି ରାଜ୍ୟକୁ ବାଣ୍ଟିଦେବା
ତୋହର କିଷ୍କିନ୍ଧ୍ୟା ହେଉ ତାକୁ ଦେବା ।
ତାହାର ଘରଣୀକି ତାହାକୁ ଦେଇ ନେଇ
କିଷ୍କିନ୍ଧାରେ ରାଜା ସେ ହେଉ ଦେବ ଯାଇ ।
ତାର ସଙ୍ଗେ ଅଛନ୍ତି ପାଞ୍ଚଜଣ ମନ୍ତ୍ରୀ ପାତ୍ର
ସେମାନଙ୍କୁ ଘେନି ହେଉ ରାଜନ ତ ।
ଶୁଣିଣ ବାଳୀବୀର କ୍ରୋଧରେ ଜର ଜର
ବୋଇଲେ ସମସ୍ତେ କହିଛ ଏ ବିଚାର ।
ଦୂତ ପେଷି ତାକୁ ଆଣିଛ ଡକାଇ
ଜାଣିଛି ତୁମ୍ଭଙ୍କୁ ବିଶ୍ୱାସ ମୋର ନାହିଁ ।
ତାକୁ ମାରି ତୁମ୍ଭଙ୍କୁ ଦେବିରେ ନିକାଲି
ତେବେ ମୋର ମନ ନିଶ୍ଚଳ ହୋଇପାରି ।
ଶୁଣିଣ ଗନ୍ଧମାର୍ଦ୍ଦନ ବାଳୀକି କହିଲେ
ନିଶ୍ଚୟ କାଳ ତୋର ପୂରିଲା ବୋଇଲେ ।
ଶୁଣିଣ ବାଳୀବୀର ବୋଇଲା ବଚନ
ତିନିପୁରେ ମୋତେ ମାରିବାକୁ କେ ସମାନ ।
ପାତ୍ରମନ୍ତ୍ରୀ ବୋଇଲେ ପୂର୍ବକଥା ହେତୁକର
ବାଳୀ ବୋଇଲା ମୋତେ ମାରିବେ ଚକ୍ରଧର
ଗନ୍ଧମାର୍ଦ୍ଦନ ବୋଇଲେ ଜାଣୁଟିକି ତାହା
ଶ୍ରୀରାମ ଲକ୍ଷ୍ମଣ ସୁଗ୍ରୀକି ହେଲେ ସାହା ।
ସେ ରାମ ଦୁନ୍ଦୁଭୀ ହାଡ଼କୁ ଫିଙ୍ଗିଦେଲା
ସପ୍ତଶାଳାକୁ ଏକ ନାରାଚେ ଛେଦିଲା ।
ବଳରାମ ଦାସ ଶ୍ରୀହରି ଶରଣ
ବାଳୀକୁ ମାରିବାକୁ ଶ୍ରୀରାମ ବିଜେ ପୁଣ ।
ସେହି ରାମ ଦେବ ଏ ନୀଳଗିରିରେ
ସନ୍ଥଜନ ଉଦ୍ଧାରିବା ନିମନ୍ତେ ବିଜେ କଲେ ।
ଏଥି ଅନନ୍ତରେ ପାର୍ବତୀ ପଚାରି
ପାତ୍ରମନ୍ତ୍ରୀ ବୋଲି କି ବୁଝିଲା ଦଣ୍ଡଧାରୀ ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ବାଳୀକି ମନାଇଁ କହିଲେ ପାତ୍ରମନ୍ତ୍ରୀ ।
ପାତ୍ରମନ୍ତ୍ରୀ ବଚନେ ବାଳୀ କ୍ରୋଧ କଲା
ସମସ୍ତେ ମୋର ମନ୍ଦ ପାଞ୍ଚୁଛ ବୋଇଲା ।
ତାରାକ୍ଷ ବୋଇଲା ରାଜା ତୋହର କେତେବଳ
ନାରାୟଣଙ୍କ ମାୟା ନୁହଇ ଗୋଚର ।
ବଇଲୋଚନ ବୋଲି ପ୍ରହଲାଦର ସୁତ
ପିତା ବୋଲ ନ ମାନି ହୋଇଲା ବଳବନ୍ତ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନିପୁର ସାଧି
ସ୍ୱର୍ଗର ଇନ୍ଦ୍ରକୁ ଆଣିଲା ସେ ବାନ୍ଧି ।
ପାତାଳପୁରେ ଗଲା ବାସୁକୀକୁ ନ ମାନିଲା
ଦୁଇ ମୁଥ ମାରନ୍ତେ ବାସୁକୀ ଧରଣୀ ଛାଡ଼ିଲା ।

ବାସୁକୀ ଛାଡ଼ନ୍ତେ ଧଇଲା ବୀର ଟେକି
ନବଯୁଗ ପର୍ଯ୍ୟନ୍ତ ଏହି ଧରଣୀକି ।
ପ୍ରହଲାଦ ଆସିଣ ପୁତ୍ରକୁ ଶାନ୍ତ କଲା
ତେବେ ସେ ବାସୁକୀ ଶିରେ ମେଦିନୀକି ଦେଲା
ତେବେ ସେ ମଧୁପୁରେ ଆସିଲା ନୃପରାଣ
ମଧୁପୁର ରାଜାଙ୍କୁ ଜିଣିଲା ଧରିଣ ।
ବାସୁକୀ ନାଗ ପୁଣି ଈଶ୍ୱରଙ୍କୁ ସୁମରି
ନାଗପୁରେ ଈଶ୍ୱର ମିଳିଲେ ଯାଇକରି ।
ବାସୁକୀ ନାଗ ବୋଲେ ଶୁଣ ଜୀବଦାତା
ବୈଲୋଚନ ବୀର ଜିଣି ଧରଣୀ ଧରନ୍ତା ।
ଈଶ୍ୱର ବୋଇଲେ ସେ ମୋ ହସ୍ତେ ନ ମରଇ
ନାରାୟଣ ସ୍ତିରୀହେଲେ ସେ ଦୈତ୍ୟ ମରଇ ।
ବାସୁକୀ ନାଗ ବୋଲେ ଯାଅ ବେଗ ହୋଇ
ମୋ ଦୁଃଖ ବାସୁଦେବଙ୍କୁ କହିବ ମଣାଇଁ ।
ଶୁଣିଣ ଈଶ୍ୱର ବେଗେ ଚଳିଗଲେ
ଅଚିନ୍ତା ବୈକୁଣ୍ଠପୁରେ ପ୍ରବେଶ ହୋଇଲେ ।
ଶୟନକୁ ଚାହିଁଣ ବସିଲେ ଯୋଗଧାନେ
ସହସ୍ରେ ବର୍ଷ ଲୟେ କଲେ ତ୍ରିଲୋଚନେ ।
ଜାଣିଣ ଶୟନୁଁ ନାରାୟଣ ଉଠି
ଈଶ୍ୱରଙ୍କୁ ବୋଇଲେ କିମ୍ପାଇଁ ବସିଛଟି ।
ଈଶ୍ୱର ବୋଇଲେ ଅସୁର ପ୍ରବଳ
ଧରଣୀ ଧଇଲା ପ୍ରହଲାଦର ବାଳ ।
ତିନିପୁର ବଳବନ୍ତଙ୍କୁ ସାଧି କଲା
ସ୍ୱର୍ଗରେ ଇନ୍ଦ୍ରଙ୍କୁ ବାନ୍ଧିଣ ଘେନିଗଲା ।
ନାରାୟଣ ବୋଇଲେ ସେ କାହା ହସ୍ତେ ମରି
ଈଶ୍ୱର ବୋଇଲେ ତୁମ୍ଭେ ହୋଇବ ଯେବେ ସ୍ତିରୀ ।
ନାରାୟଣ ବୋଇଲେ ସେ ମରିବ ମୋ ହସ୍ତରେ
ତେବେ ମୁଁ ସ୍ତିରୀରୂପ ହୋଇବି ପ୍ରତ୍ୟକ୍ଷରେ
ସଦାଶିବ ବୋଇଲେ ତାହାର ତ୍ରୟ ଆଖି
ଏକଇ ଲୋଚନ ତାଳୁରେ ତାର ଅଛି ।
ସେ ନେତ୍ରକୁ ଯେତେବେଳେ ତେଜିବ ସେ ବୀର
ସେତେବେଳେ ମରିବଟି ନିଶ୍ଚୟ ଅସୁର ।
ନାରାୟଣ ବୋଇଲେ ତାକୁ କେମନ୍ତ ବିଶ୍ୱାସ
ତାର ଘରଣୀ ହୋଇବ ବୋଇଲେ ଦିଗବାସ
ତେବେ ସେ ବିଶ୍ୱାସ ଯିବ ଦୈତ୍ୟବୀର
ବିଶ୍ୱାସରେ ମାଇଲେ ମରେ ପ୍ରହଲ୍ଲାଦ କୁମର ।
ନାରାୟଣ ବୋଇଲେ ତାକୁ କିଏ ସେ ଦେଲା ବର
ସଦାଶିବ ବୋଇଲେ ସହାୟ ବେଦବର ।
ପ୍ରସନ୍ନ ହୋଇଣ ତାକୁ ଅମର ବର ଦେଲେ
ନିଦାନ ବଚନ ତାକୁ ପାଞ୍ଚିଣ କହିଲେ ।

ବୋଇଲେ ତୋର ତାଳୁ ଉପରେ ଏକ ଚକ୍ଷୁ
ସେ ଚକ୍ଷୁ ଚିପିଲେ ହୋଇବ ତୋର ମୃତ୍ୟୁ ।
ଏ କଥା ଗୁପତେ ରଖିଣ ଥିବୁ ମନେ
କାହାକୁ ତାଳୁ ଚକ୍ଷୁ ନ ଦେଖାଇବୁ ଏଣେ ।
ସେ ବୋଇଲା ମୋହର ଘରଣୀ ବିନା ଆନ
ଦେଖିବାକୁ ସାମର୍ଥ୍ୟ ନୋହିବେ କେହି ପୁଣ ।
ଯେବେ ଅନ୍ୟଲୋକ ଦେଖିବ ସେ ସ୍ଥାନ
ବ୍ରହ୍ମା ବିଷ୍ଣୁ ଶିବ ହେଲେ ମରିବ ସେହିକ୍ଷଣ ।
ବେଦବର ବୋଇଲେ ନାରାୟଣ ମାରି
ଅନ୍ୟଲୋକ ହସ୍ତରେ ନୁହଇ ସଂହାରି ।
ଏତେ କହି ବେଦବର ନିଜ ସ୍ଥାନେ ଗଲେ
ସେହିଦିନୁ ଅସୁର ପ୍ରବଳ ହେଲା ଭଲେ ।
ତିନିପୁର ଧନ ରତ୍ନ ଚୋର କରି ନେଲା
ହିରଣ୍ୟ ଗର୍ଭରେ ସମ୍ଭାଳି ରଖିଲା ।
ଶୁଣିଣ ନାରାୟଣ ଈଶ୍ୱର ସଙ୍ଗେ ଚଳି
କପିଳାସ କନ୍ଦରକୁ ଚଳିଲେ ତ୍ରିଶୂଳୀ ।
ସେଠାରୁ ନାରାୟଣ ପାତାଳପୁରୀ ଗଲେ
ହିରଣ୍ୟ ଗର୍ଭ ନିକଟେ ପ୍ରବେଶ ହୋଇଲେ ।
ଗନ୍ଧ ସରୋବର ସେହି ନିକଟରେ ଥିଲା
ସେଥିରେ ପଦ୍ମଫୁଲ ଫୁଟଅଛି ତ୍ୱରା ।
ସେ ପୁଷ୍ପରେ ସ୍ତିରୀରୂପେ ନାରାୟଣ ଶୋଇ
ବଇଲୋଚନ ମଉଳା ପାରିଧି ଥିଲା ଯାଇ ।
ସେ ସରୋବରେ ଜଳ ଶାଖାନ୍ତେ ଫୁଟିକରି
ଗଉରୀ ଅସୁର ସେଥି ଦେଖିଲାକ ସ୍ତିରୀ ।
ତହୁଁ ସେ ସ୍ତିରୀକି ସଙ୍ଗରେ ଘେନିଗଲା
ନିଜ ପୁରେ ତାର ପ୍ରବେଶ ହୋଇଲା ।
ତାହାର ରମଣୀ ଅଟଇ ରାତ୍ରିଖେଳା
ତାହାର କୋଳେ ନେଇ ଦେଲା ଗଉରୀ ପରା
ସେ ନାରୀ ଦେଖିଣ ଆନନ୍ଦ ମନ ହେଲା
କେଉଁଠାରୁ ଏହାକୁ ଆଣିଲୁ ପଚାରିଲା ।
ଗଉରୀ ଦୈତ୍ୟ ବୋଲେ ଆଣିଲି ପୁଷ୍ପବନୁଁ
ଅଯୋନି ସମ୍ଭୁତା ଏ ଅଟଇ ଦିବ୍ୟତନୁ ।
ରତିଖେଳା ବୋଇଲା ଦୁହିତା ନାମଦେବା
ଗଉରୀ ଦୈତ୍ୟ ବୋଲେ ଲୀଳାବତୀ ପ୍ରଭା ।
ସେ ଦୁହିତା ଗୋଟିକ ଯତନେ ପାଳିଲେ
ଦୁହିତା ରୂପେ ପାର୍ବତୀ ସମ ତୁଲେ ।
ସପ୍ତବର୍ଷେ ଦୁହିତା ହେଲା ନବଯୁବା
ନବମ ବର୍ଷେ ବଇଲୋଚନ ହେଲା ଲୋଭା ।
ସେ ଦୈତ୍ୟ ପରେ ଯେ ଅଛଇଁ ବିଡ଼ମ୍ବଣ
ପ୍ରଥମରେ ସ୍ୱାମୀ ସଙ୍ଗେ ସଙ୍ଗ ହେଲା ଦିନ ।

ବର ବାଳକୁ ସେ ଯେ ସାମଳି ବାନ୍ଧି ଦେଇ
ତେବେ ସେ ସ୍ୱାମୀ ସଙ୍ଗତେ ପ୍ରୀତିଭାବ ହୋଇ
ସେଦିନ ସେ ଲୀଳାବତୀ ପ୍ରଥମ ଦିନରେ
କେଶ ସାମଳନ୍ତେ ନୟନ ଦେଖେ ତାରେ ।
ନୟନ ଚାରପାଖେ ସାର ଜୀବ ରହି
ବେନିହସ୍ତେ ସାର ଜୀବ ମାରଇ ଚାନ୍ଦମୁହିଁ ।
ସାରଲୋଚନ ସଙ୍ଗତେ ଚକ୍ଷୁ କୁ ଚିପି ଦେଲା
ବଇଲୋଚନ ବୀର ଜୀବନ ଛାଡ଼ିଲା ।
ମରିବା ଦେଖିଣ ଉଠିଲା ଲୀଳାବତୀ ।
ଅନ୍ତର୍ଦ୍ଧାନ ହୋଇଣ ଗଲା ସେ ଝଟତି
ସ୍ତିରୀ ରୂପ ତେଜିଣ ନାରାୟଣ ପୁଣ
ଅନନ୍ତ ଶୟନେ ଯାଇ ଶୋଇଲେ ଆପଣ ।
ଏମନ୍ତେ ରଜନୀ ପାହିଣ ବେଳ ହେଲା
ଦ୍ୱାରରେ ଗହଗହ ଶବଦ ଉଚ୍ଛୁଳିଲା ।
ବଇଲୋଚନପୁରେ ପଶିଲେ ଦାସୀଗଣ
ଦେଖିଲେ ମୃତପିଣ୍ଡ ପଡ଼ିଛି ରାଜନ ।
ଅନ୍ତଃପୁରେ ବୋବାଳି ପଡ଼ିଲାକ ଜାଣି
ପାତ୍ରମନ୍ତ୍ରୀ ମିଳିଲେ ସେଠାରେ ପୁଣି ।
ଜୀବନ ନ ଥିବାରୁ ବୈଲୋଚନକୁ ନେଲେ
ଧରଣୀରେ ପୋତିଣ ମୂର୍ଦ୍ଧନୀ ଦାନ ଦେଲେ ।
ଲୀଳାବତୀକି ଖୋଜନ୍ତେ ନ ମିଳିଲା ପୁଣ
ଜାଣି ପ୍ରହଲାଦ ମିଳିଲା ସେହି ସ୍ଥାନ ।
ପାତ୍ରମନ୍ତ୍ରୀକି କହିଣ ବଧିକୁ ଶାନ୍ତି କଲା
ନାରାୟଣ ପୁତ୍ରକୁ ମାଇଲେ ବୋଇଲା ।
ଲୀଳାବତୀ ସ୍ତିରୀ ଅଟେ ନାରାୟଣ ରୂପ
ତାଙ୍କର ନେତ୍ର ଚିପି ମାଇଲେ ମୋର ପୁତ୍ର ।
ସେ ନେତ୍ରରେ ପୁତ୍ର ଜୀବନ ପାଇଥିଲା
ସେ ନେତ୍ର ଚିପନ୍ତେ ବଇଲୋଚନ ମଲା ।
ତୋହ ଜୀବ ପୁଣି ସପ୍ତଶାଳ୍ପା ଜାଣ
ଶୁଣିଣ ବାଳୀରାଜା ବୋଇଲା ବଚନ ।
ଏତେ ମାୟାରେ ଯେବେ ନାରାୟଣ ମାରି
ମାରିଣ ମୁକ୍ତି ସେ ଦିଅଇ ସମସରି ।
ଦଶରଥ ନନ୍ଦନ କାହିଁ ହୋଇବ ନାରାୟଣ
ଏକ ସ୍ତିରୀକି ରଖି ନ ପାରିଲେ ବେନିଜନ ।
ରାବଣ ଅସୁର ଭାରିଯାକୁ ନେଲା
ସେ କଥା ଶ୍ରୀରାମ ଯେବେ ବାରତା ପାଇଲା ।
ସେଠାକୁ ନ ଯାଇ କିମ୍ପା ଏଥକୁ ଅଇଲା
ନାରାୟଣ ହୋଇ କିମ୍ପା ଭ୍ରମ ସେ ହୋଇଲା ।
ଡେଇଁଯିବା ବାଟକୁ ଯେବେ ସେ କରେ ଚିନ୍ତା
ବନ ଗିରି ବୁଲିଣ ଖୋଜୁଅଛି ସୀତା ।

ସପତ ବ୍ରହ୍ମାଣ୍ଡ ସେ ନାରାୟଣ ଗର୍ଭରେ
ସେ ପୁଣି ରାବଣକୁ ମାରିବା ଚିନ୍ତା କରେ ।
ଭାରିଯାକୁ ଆଣିବାକୁ କହୁଛି ମାୟାବାଣୀ
ଶୁଖିଲା ହାଡ଼ ଦୁନ୍ଦୁଭୀ ଫିଙ୍ଗି ଦେଲା ପୁଣି ।
ସପ୍ତଶାଳା ଛେଦିଲା ସପ୍ତହିଁ ଶାଳଗଛ
ମୋହର ରଜକାରୀ ଛେଦନ କହିଲେ ତ ।
ଏକଥା ଆଚମ୍ଭିତ ତୁମ୍ଭଙ୍କୁ ଏ ସମ୍ଭୁତ
ମୋହର ମନକୁ ଟିକିଏ ନ ଆସେତ ।
ସୁଗ୍ରୀବରକୁ ସତ ଉପୁଯାଇଅଛି
ମାରିବି ବାଳୀ ବୋଲି ସଂପ୍ରତେ ଦେଇଛି ।
ତେଣୁକରି ସୁଗ୍ରୀବର ସଙ୍ଗତେ ଘେନି ତାକୁ
ମୋତେ ମାରି ରାଜା ଆସିଛି ହେବାକୁ ।
ସୁଗ୍ରୀକି ମାରିବି ମାରିବି ପାଞ୍ଚଜଣ
ରାମ ଲକ୍ଷ୍ମଣ ଦୁହିଁଙ୍କି ମାରିବି ଆଜି ପୁଣ ।
ତୁମ୍ଭମାନଙ୍କୁ ଏଠାରୁ ଘଉଡ଼ିଣ ଦେବି
ତେବେ ମୁଁ ନିଶ୍ଚିନ୍ତ ହୋଇଣ ରହିବି ।
ଶୁଣିଣ ପାତ୍ର ମନ୍ତ୍ରୀ କିଛି ନ କହିଲେ
ସକଳ ପାତ୍ର ମନ୍ତ୍ରୀ ମନେ ବିଚାରିଲେ ।
ବୋଇଲେ ବାଳୀ ଆଜି ହୋଇବ ପ୍ରାଣନାଶ
କାଳଦେବତା ଆସି ହୋଇଲା ପ୍ରବେଶ ।
ଦୃଷ୍ଟାନ୍ତର କଥା କହିଲେ ନ ଶୁଣିଲା
ଭଲ କହିଲାକୁ ଅବିଗୁଣ କଲା ।
ମରିବାବେଳେ ବୁଦ୍ଧି ନ ରହେ କାହାରି
କାଳଦେବତାକୁ ହୁଅଇ ଭଗାରୀ ।
ଦେବତାଙ୍କର କୂଟ ନର ବାନର ପ୍ରଶଂସା
ଦେଖିଲା କଥା ମିଛ ମଣେ ଖଡ଼୍‌ଗଦର ପୁତା ।
ଏମନ୍ତ ବିଚାର ମନରେ ସର୍ବେ କଲେ
ଯାହା ହେବ ତାହା ଦେଖିବା ବୋଇଲେ ।
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ
ବାଳୀର ଚଦିବା କଥା ଜାଣିଲେ ରଘୁପତି ।
ଏମନ୍ତ ସମୟେ ସୁଗ୍ରୀ ରଡ଼ି ଦେଇ
ନିଶରେ ହାତମାରି ଡାକେ ଚମକାଇ ।
ସିଂହରଡ଼ି ଦିଅନ୍ତେ ବାଳୀ ଚମକିଲା
ବରଡ଼ାପତ୍ର ପ୍ରାୟ ତା ଦେହ କମ୍ପିଲା ।
ତତକ୍ଷଣେ ବାଳୀବୀର ନବରୁ ବାହାର
ଯାଇଣ ଦେଖିଲା ସୁଗ୍ରୀବ ସିଂହଦ୍ୱାର ।
ବୋଇଲା ପାପିଷ୍ଠରେ ମାରିବାକୁ ଆସୁ
ବେନିସସ୍ର ବରଷରେ ଆସିଣ ମୋତେ ଗ୍ରାସୁ ।
ଯେବଣ ଲୋକକୁ ତୁରେ ପାଇଛୁ ଭରସା
ତୋର ତାର ପାଞ୍ଜି ଆଜି ପୋଛିଚି ଜାଣିଥା ।

କୋପମନ ହୋଇଣ ବିଧାଏ ସେ ମାରି
ସୁଗ୍ରୀବର ଛାତିରେ ବାଜିଲା ହେତୁକରି ।
ବଜ୍ର ଆଣିଣ ଯେହ୍ନେ ଗିରିପରେ ପଡ଼ି
ସୁଗ୍ରୀବର ଅଙ୍ଗରେ ତେସନ ପ୍ରାୟେ ଜଡ଼ି ।
ବିଷମଘାତ ପାଇଣ ନ ପାରେ ସେ ରହି
ପଳାଇବା ବେଳେ ରାମ ବୋଇଲେ ରହଭାଇ ।
ନ ଶୁଣି ସୁଗ୍ରୀବର ଗଲା ଯେ ପଳାଇ
ଋଷ୍ୟମୂକ ପର୍ବତେ ପ୍ରବେଶ ହେଲା ଯାଇ ।
ଶ୍ରୀରାମ ଲକ୍ଷ୍ମଣ ହନୁମନ୍ତକୁ ନ କହିଲା
ପଳାଇ ସୁଗ୍ରୀବର ପଛକୁ ନ ଚାହିଁଲା ।
ଜମ୍ବେବ ସୁଷେଣ ନଳନୀଳ ପୁଣ
ଏହାକୁ ନ କହିଲା କପିକୁଳ ରାଣ ।
ବିଷମ ଘାନ୍ତି ପାଇ ପଳାଇ ସେହୁ ଗଲା
ଋଷ୍ୟମୂକ ପର୍ବତରେ ଯାଇଣ ଲୁଚିଲା ।
କନ୍ଦର ବିମ୍ବରେ ଲୁଚିଲା ସେ ଗୁପ୍ତେ
ଅଭିମାନ ପାଇଣ ରହିଲା ରବିସୁତେ ।
ଯହୁଁ ସେ ସୁଗ୍ରୀବର ସଂଗ୍ରାମୁଁ ଭାଗିଲା
ହନୁମନ୍ତ ଥାଇଣ ମନରେ ଭାବିଲା ।
ବୋଇଲା ରାମଙ୍କୁ ମୁଁ ଦେଖିବାର କାଳେ
ପୂର୍ବବଳ ପ୍ରାପ୍ତ ହୋଇଲା ତେତେବେଳେ ।
ତେତିଶକୋଟି ସିଂହର ଅଟଇ ମୋର ବଳ
ମୋହର ସରି ସମ ଅଟଇ ବାଳୀବୀର ।
ଅଧେ ବଳ ତାହାର ସପ୍ତଶାଳା ନେଲା
ଅଧେକ ବଳ ତାର ଶରୀରେ ରହିଲା ।
ବଳ ଦେଖି କସିବା ଏହାର ମୋହର
ଏତେ ବୋଲି ହନୁମନ୍ତ ହୋଇଲା ବାହାର ।
ଡାକିଲା ରହ ରହ ଆରେ ବାଳୀ ଛାର
ଡରିଲାକୁ ତୁରେ କରୁଛୁ ବଡ଼ ଗୋଳ ।
ଆଜି ତୋର ପ୍ରାଣ ନେବ ଜନ୍ତୁରାଣ
ଏମନ୍ତ ବଚନ କହିଲା ହନୁ ପୁଣ ।
ଏତେ ବୋଲି ବେଗେଁ ହନୁ ଦୁଇଗୋଡ଼ ଧରି
ଫୋପାଡି ଦେଲା ସେ ବିକ୍ରମ ଗତି କରି ।
ନବର ଭିତରେ ବାଳୀ ଯାଇଣ ପଡ଼ିଲା
ତାରା ମହାଦେଈ ଯାଇଣ ଉଠାଇଲା ।
ଶ୍ରୀରାମ ଲକ୍ଷ୍ମଣ ବାହୁଡ଼ି ଆସନ୍ତେ
ହନୁମନ୍ତ ଅଇଲା ପୁଣି ତାଙ୍କ ସଙ୍ଗତେ ।
ଋଷ୍ୟମୂକ ପର୍ବତରେ ସାତଜଣ ମିଳି
ଯାଆନ୍ତେ ଶ୍ରୀରାମ ମନରେ ବିଚାରି ।
ହୋଇଲେ ସୁଗ୍ରୀବର ନୁହଇ କିଛି ଦନ୍ଦ
ଥରେକ ମଟାଳିଥିଲେ ଛେଦିଥାନ୍ତି ବାଳୀ କନ୍ଧ ।

ଦେଖିଣ ସମସ୍ତେ ବିସ୍ମୟ ମୁଖ ହୋଇ
ଋଷ୍ୟମୂକ ପର୍ବତକୁ ଗଲେ ରଘୁସାଇଁ ।
ବାଟରେ ଶ୍ରୀରାମ ହନୁମନ୍ତକୁ ପଚାରି
ସୁଗ୍ରୀବର ନିର୍ବଳ ବୋଲି ଜାଣି ତ ନ ପାରି ।
ବାଳୀ ସୁଗ୍ରୀବର ଏକଇ ରୂପ ଦିଶି
କାହାକୁ ମାରିବ ବୋଲି ଭାଳିଲି ମୁଁ ବସି ।
ବାରଣ ନ ଗଲା ସେ ଏକଇ ରୂପ
ଦୁହିଁଙ୍କ ଦୁହେଁ ଦିଶନ୍ତି କାମଦେବ ରୂପ ।
ସୁଗ୍ରୀବର ପ୍ରାୟେ ଅଇଲା ତଡ଼ତି
ଚିହ୍ନି ନ ପାରିଲୁ ବେନିଜନଙ୍କର ଗତି ।
ବିଧାଏ ଆସି ମାରେ ନିର୍ଘାତ ପ୍ରାୟେ ଜାଣି
ତେତେକ ନ ସହିଲା କପିକୁଳମଣି ।
ଆମ୍ଭଙ୍କୁ ନ କହିଲା ଗଲା ସେ ପଳାଇ
ଜାଣିଲୁଁ ମଇତ୍ରର କିଛି ହିଁ ବୁଦ୍ଧି ନାହିଁ ।
ହନୁମନ୍ତ ଧରିଣ ତାକୁ ଫୋପାଡ଼ି ଦେଲା
ମାତୁଳ ବୋଲି କରି ତାହାକୁ ନ ମାରିଲା ।
ହନୁମନ୍ତ ବୋଇଲା ଶୁଣ ହେ ରଘୁମଣି
ବାଳୀ ବଳିଆର ଯେ ତ୍ରଇଲୋକ୍ୟ ଜିଣି ।
ସ୍ୱର୍ଗରେ ପ୍ରଶଂସା କରନ୍ତି ସୁରପତି
ତେତିଶକୋଟି ସିଂହର ବଳ ଅଧଇ ଧୃତି ।
ତୁମ୍ଭ ଆଜ୍ଞା ଥିଲେ ମାରିଥାନ୍ତି ଆଜ
ମଉଳାକୁ ମାଇଲେ ହୁଅନ୍ତା ବଡ଼ ଲାଜ ।
କ୍ଷତ୍ରି ଅଟଇ ସେ ଯେ ବାସବ ନନ୍ଦନ
ତିନିଭୁବନରେ ସରି ନାହାନ୍ତି ତାକୁ ଜାଣ ।
ମୃତ୍ୟୁପୁରରେ ତାକୁ କେ ନାହିଁ ସମସରି
କ୍ଷତ୍ରୀମାନେ ଜଳନ୍ତି ତା ନାମ ଶୁଣିକରି ।
ବିକ୍ରମସିଂହ ଜାଣି ଅଟଇ କପିରାଏ
ଭୋ ଦେବ ସୁଗ୍ରୀବର ତାହାକୁ ସରି ନୁହେଁ ।
ବେନି ସହସ୍ର ବରଷ ଗତ ହୋଇଗଲା
ତୁମ୍ଭର ଭରସାରେ ପୁଣି ସେ ଯାଇଥିଲା ।
ବାଟକୁ ଚାହିଁଣ କରଇ ବଡ଼ ଭୟେ
ରାଜ୍ୟର ସମ୍ପଦକୁ ଶରଧା ତାର ନୁହେଁ ।
ପ୍ରଜ୍ୱଳିତ ଅଗ୍ନି ଅଟଇ ବାଳୀବୀର
ସୁଗ୍ରୀବର ତାକୁ ଯଥା ପତଙ୍ଗ ପ୍ରକାର ।
ଶୁଖିଲାର ତୃଣ ଅଟଇ ରବିସୁତ,
ବାଳୀର ତେଜ ଅଟେ ପ୍ରଳୟ ଅଗ୍ନିବତ ।
ତୁମ୍ଭର ବଳ ସେ ପାଇଣ ରଘୁପତି
ତାହାର ଆଗରେ ଏ ପାରିବ ବର୍ତ୍ତି ।
ତାର ତେଜ ଦେଖିଣ ନ ପାରେ ଏ ରହି
ପ୍ରାଣକୁ ଭୟ କରି ଗଲାକ ପଳାଇ ।

ତୁମ୍ଭେ ସ୍ୱାମୀ ଜଗତରେ ଅଟ ଯେ ଅଜୟେ
ସେ କଥା ନ ବୁଝଇ ସୁଗ୍ରୀବର ରାଏ ।
ସେ କପି ସୁଗ୍ରୀବର ପାଇଛି ଦାଉ ନିତି
ଜୀବନକୁ ତାହାର ଅଟଇ ବଡ଼ ଭୀତି ।
କଥା କହନ୍ତେଣ ମିଳିଲେ ଋଷ୍ୟମୁକେ
ବେନିଯୁଣ ପଥ ସେ ଗଲେ ନିମିଷକେ ।
ବିମ୍ୱରେ ସୁଗ୍ରୀବର ଶୋଇଅଛି ସୁଖେ
ବିଚାରଇ ପ୍ରମାଦ ପଡ଼ିଲା ଆସି ମୋତେ ।
ବିମ୍ୱର ଦ୍ୱାରେ ସାତଜଣ ହୋଇଲେ ପ୍ରବେଶ
ଦେଖିଲେ ସୁଗ୍ରୀବର ଶୋଇ କରେ ଦୁଃଖ ।
ସୀମସ୍ଥାନରେ ବସିଣ ବୋଇଲେ ରଘୁସାଇ
କିମ୍ପାଇଁ ଶୋଇଲ ମିତ ବିମୁଖ ଚିତ୍ତ ହୋଇ ।
ଚିହ୍ନି ନ ପାରିଲୁଁ ଆମ୍ଭେ ଦୁହେଁ ଏକରୂପ
ଅକାରଣେ କାହାକୁ ମାରନ୍ତୁ ଆମ୍ଭେ ନୃପ ।
ପୂର୍ବରେ ବାଳୀକି ମୁଁ ଦେଖିବାର ନାହିଁ
ଦୁହିଁଙ୍କି ଏକ ରୂପ ବିଧାତା ଗଢ଼ିଲାଇଁ ।
ତେଣୁ ବାରି ନ ପାରିଲୁଁ ନାରାଚ ନ ବିନ୍ଧିଲୁ
ତୀକ୍ଷ୍ଣ ନାରାଚ ଆମ୍ଭେ ଧନୁରେ ଯୋଚିଥିଲୁ ।
ଏବେ ଦେଖିଲେ ସେ ଯେ ନ ଯିବ ବରତି
ଉଠ ଉଠ ମଇତ୍ର ମନକୁ କର ଶାନ୍ତି ।
ଉଠହେ ମଇତ୍ରେ ଯିବା ହେ ଚାଲ ବେଗେ
ନରନାରୀ ହସନ୍ତି ପଳାଇବାର ଭାବେ ।
ହନୁମନ୍ତ ବାଳୀକି ଧରିଣ ଫିଙ୍ଗି ଦେଲା
ନବର ଭିତର ବାଳୀ ଯାଇଣ ପଡ଼ିଲା ।
କେଉଁ ଜନ୍ମେ ପାପ କରିଥିଲି ମୁହିଁ
ଏ ଜନ୍ମେ ଦଇବ ଏତେ ଶାସ୍ତି ଦେଇ
ଏ ଜନ୍ମରେ ପ୍ରଭାବ ଯେତେକ ପାଇଲି
ରାଜାର ପୁତ୍ର ହୋଇ ବନରେ ବୁଲିଲି ।
ମଇତ୍ର ଦୋରେହାକୁ ମନରେ ଭୟ କଲି
ତେଣୁ ସେ କପିରାଜାକୁ ନାରାଚ ନ ବିନ୍ଧିଲି ।
ଯେବେ ମୁଁ ନାରାଚ ବିନ୍ଧିଣ ଥାନ୍ତି ଟାଣେ
ତୁମ୍ଭଠାରେ ବାଜିଥିଲେ ହୁଅନ୍ତି ନିନ୍ଦା ଏଣେ ।
ତୁମ୍ଭେ ନ ବଞ୍ଚିଲେ ବାଳୀର ହୋନ୍ତା ହାସ୍ୟ
ଲୋକଙ୍କର ମୁଖରେ ମୁଁ ପାଆନ୍ତି ଅପଯଶ ।
ବୋଲନ୍ତି ସୁଗ୍ରୀକି ରାମ ସାହା ହେଲେ
ବାଳୀର ଭୟରେ ପୁଣି ସୁଗ୍ରୀକି ନାଶ କଲେ ।
ଏମନ୍ତ ବିଚାରି ମୁଁ ଧୀରରେ ରହିଲି
ତୁମ୍ଭେ ଦମ୍ଭ ନୋହିବ ବୋଲି ମୁଁ ଜାଣିନଥିଲି
ଶୁଣିଣ ସୁଗ୍ରୀବର ବୋଲଇ ବଚନ
ଆଗତ କରି ପିତା ଦେଲା ଯେ ମାଲ୍ୟ ପୁଣ ।

ସେ ମାଳକୁ ଚିହ୍ନ ଯେ ବିନ୍ଧିଲେ ଶର
ବରଣ ମାଳଟି ଥିଲା ମୋ ଗଳାର ।
ଶ୍ରୀରାମ ବୋଇଲେ ସେପରି ମାଳାଗୋଟି
ବାଳୀର ଗଳାରେ ଥିଲା ଯେ ପୁଣଟି ।
ତେଣୁ ମୁଁ ବିଚାରିଣ ନାରାଚ ନ ବିନ୍ଧିଲି
ବାକୀ ରହିବାର ତଥ୍ୟ ମୁଁ ନ ଦେଖିଲି ।
ସୁଗ୍ରୀବର ବୋଇଲା ଯେବେ ନ ରହିଲା ବାଳୀ
ହନୁମନ୍ତ କି ରୂପେ ଦେଲାକ ଫୋପାଡ଼ି ।
ଶ୍ରୀରାମ ବୋଇଲେ ତୁମ୍ଭେ ପଳାଇବାରବେଳେ
ଦେଖିଣ ବାଳୀ ଯେ ଚଳିଲା ନିଜପୁରେ ।
ସେତେବେଳେ ହନୁ ବିକ୍ରମ ମୂର୍ତ୍ତି ହେଲା
ଭେଇଁ ଯାଇ ହନୁ ତାର ଚରଣକୁ ଧଇଲା ।
ଟେକିଣ ଫୋପାଡ଼ି ଦିଅନ୍ତେ ବାଳୀ ଗଲା
ତାହାର ନବର ଭିତରେ ପଡ଼ିଲା ।
ସୁଗ୍ରୀବର ବୋଇଲା ସେତେବେଳେତ ଜଣା
ନାରାଚ ନ ବିନ୍ଧିଲ ନୋହିଲା କରୁଣା ।
ରାମ ବୋଇଲେ ସେତେବେଳେ ହନୁ ଥିଲା
ହନୁ ଦେଖି ମୋର ବିଚାର ହୋଇଲା ।
ଯେତେବେଳେ ଶର ବିନ୍ଧିଥାନ୍ତି ମୁହିଁ
ନିଶ୍ଚୟ ହନୁମନ୍ତ ମାରିଥାନ୍ତା ତହିଁ ।
ସୁଗ୍ରୀବର ବୋଇଲା ମୁଁ ଯାଇ ନ ଆସଇ
ସେ ବାଳୀ ବୀରକୁ ମୁଁ ଭୟରେ ଡରଇ ।
ଏକ ବିଧାକରେ ସେ ଭାଙ୍ଗିଲା ମୋର ଦର୍ପ
ମୁଁ ତାକୁ ମଣ୍ଡୁକ ସେ ମୋର ତ କାଳ ସର୍ପ ।
କ୍ଷୁଦ୍ରନଦୀ ସାହେର ଯେସନେ ନ ଯାଇ
ତରଙ୍ଗ ଲହରୀକି ମନରେ ଭୟ ପାଇ ।
ସେହିରୂପେ ବାଳୀକି ଡରଇ ମୋର ପ୍ରାଣ ।
ତୁମ୍ଭେ ମାରି ନ ପାରିବ ଶୁଣ ହେ ରଘୁରାଣ ।
ଯାହାର ବିଧାଘାତେ ପର୍ବତ ଚୂନାହୋଇ
ତାହାର ଆଗରେ ମୋହର ବଳ ନାହିଁ ।
ଏବେ ମୁଁ ବାଳୀ ସଙ୍ଗେ ନ କରିବି ଗର୍ବ
ମୋତେ ସେ ମାରିବ ଲେଖିଛି ଦଇବ ।
ତୁମ୍ଭେ ମୋତେ ରାମ ନ ବଳାଅ ଏବେ
ତୁମ୍ଭଙ୍କୁ ନ୍ୟୁନ ମୁଁ ହୁଅଇ ସଦ୍‌ଭାବେ ।
ବିଧାରଘାତେ ମୋର ଭାଙ୍ଗିଅଛି ହିଆ
ନିଃଶ୍ୱାସ ନ ବହଇ ଶୁଣ ରଘୁନାହା ।
ଏବେ ବୁକୁ ବ୍ୟଥା କରୁଛି ମୋହର
ଅଣ୍ଟା ପିଠି ଯନ୍ତି ହେଉଛି ରଘୁବୀର ।
ନିଶ୍ଚୟ ପ୍ରାଣ ଛାଡ଼ିଯିବ ମୋର ଦେହୁ
ଏତେବୋଲି ସୁଗ୍ରୀବର କାନ୍ଦିଲାକ ତହୁ ।

ଶ୍ରୀରାମ ବୋଇଲେ ଶୁଣ ନୃପବର
ସମ୍ଭାଳ କଥା ତୁମ୍ଭେ ନୁହ ହେ ବିକଳ ।
ପର୍ଶୁରାମ କ୍ଷତ୍ରୀ ଅଟଇ କେଡ଼େ ବୀର
ଅର୍ଜୁନକୁ ହାରିଲା ଯୁଦ୍ଧରେ ସାତବାର ।
ସହାୟ କେହି ନାହିଁ ଏକା ସେ ଯୁଦ୍ଧ କରି
ନ ପାରିଲେ ବନକୁ ପଳାଏ ବ୍ରହ୍ମଚାରୀ ।
ଆଠବେଳେ ଅର୍ଜୁନକୁ ମାଇଲା ସେ ପୁଣ
ଲକ୍ଷେକ ନାତି ତାର ଶତେକ ନନ୍ଦନ ।
ସୈନବଳ ମାଇଲା କ୍ରୋଧରେ ବ୍ରହ୍ମଚାରୀ
ପିତାର ଶତ୍ରୁ ବୋଲି ନ ରଖେ ବଂଶ ତାରି ।
ଅର୍ଜୁନକୁ ମାରି ଭାଇକୁ ରାଜା କଲା
ସପ୍ତପୁର ଜିଣିଣ କାହାକୁ ନ ରଖିଲା ।
ପୁଣି ସେ ମୋତେ ହାରି କୋଦଣ୍ଡକାଣ୍ଡ ଦେଲା
ବନର ଭିତରେ ଯାଇଣ ତପ କଲା ।
କହନ୍ତି ଶ୍ରୀରାମ ସୁଗ୍ରୀବି ବୁଝାଇଣ
ଜାଣକି ଚାଳିଶ ସହସ୍ର ରାଜା ପୁଣ ।
ଯାହାର ଭୟରେ ସ୍ତିରୀରୂପ ହୋଇ
ଲୁଚିଣ ରହିଲେ କୋଣ ବିକୋଣେ ରହି ।
ଏତେ ଦୁଃଖ ସହିଣ ପଛନ୍ତେ ନାଶ କଲା
ପୁଣି ସେ ତେଡ଼େ ବୀର ତପରେ ରହିଲା ।
ତୁହି ସୁଗ୍ରୀବର ପାଇଛୁ ବଡ଼ ଦୁଃଖ
ଏବେ ତୁ ବଡ଼ ସୁଖୀ ହୋଇବୁ କପି ମୁଖ୍ୟ ।
ଶୁଣିଣ ସୁଗ୍ରୀବ ଜାମ୍ବେବକୁ ପଚାରି
ସତେକି ହନୁମନ୍ତ ବାଳୀକୁ ଫୋପାଡ଼ି ।
ଜାମ୍ବେବ ବୋଇଲା ସେ କଥା ଅଟେ ସତ
ମୋର ମନ୍ତୁ ଔଷଧି ପାଶୋରି ଥିଲା ପୁଣ ।
ନଳ ନୀଳ ବୋଇଲେ ଦେଖିଲୁଁ ପ୍ରତ୍ୟକ୍ଷ ।
ଶୁଣିଣ ସୁଗ୍ରୀବର ମନରେ ବିଚାରିଲା
ଏବେ ବାଳୀ ରାଜା ନିର୍ବଳ କିମ୍ପା ହେଲା ।
ସୁଗ୍ରୀବ ବୋଇଲା ଶୁଣ ହନୁମନ୍ତ
ତୁ ପୁଣି କିପରି ଫିଙ୍ଗିଲୁ ତାହାନ୍ତ ।
ଏ କଥା ଶୁଣିବାରୁ ମୋ ମନେ ହେଲା ଗରୁ
ମେରୁଠାରୁ ବଳି ଟାଣ ଅଟେ ହନୁ କାରୁ ।
ହନୁମନ୍ତ ବୋଇଲା ଋଷିଙ୍କର ଶାପେ
ନିର୍ବଳ ହୋଇଣ ରହିଥିଲି ଗୋପ୍ୟେ ।
ଏ ରାମଙ୍କୁ ଦେଖିବାରୁ ହୋଇଲି ବଳବନ୍ତ
ସତେ ବାଳୀ ମାରିବାକୁ ମୁହିଁ ସେ ସାମର୍ଥ୍ୟ ।
ଜାମ୍ବେବ ବୋଇଲା ସେ କଥା ସତ୍ୟ ଜାଣ ।
ରାମଙ୍କୁ ଦେଖିବାରୁ ସକଳ କଥା ହେଜା
ପୂର୍ବର ବଳ ମୋର ଶରୀରେ ହେଲା ତେଜା ।

ସୁଷେଣ ବୋଇଲା କଥା ଅଟେ ସତ
ରାମକୁ ଦେଖିଲାବେଳୁ ବଳ ଉପୁଜାତ ।
ନୟନକୁ ଯେଉଁ ପୋଥି ନ ଦିଶେ ମୋହର
ଏବେ ସେ ବୈଦ୍ୟଶାସ୍ତ୍ର ହୋଇଲା ଦୃଶ୍ୟ ମୋର ।
ତାହା ଶୁଣି ନଳ ବଚନ କହିଲା
ରାମଙ୍କୁ ଦେଖିବାରୁ ପୂର୍ବ ବଳ ହେଲା ।
ଯେଉଁ କଥା ପାଶୋର ହୋଇଥିଲା ମୋର
ସେ କଥା ପ୍ରତ୍ୟକ୍ଷରେ ଚିହ୍ନିଲି ନୃପବର ।
ସୁଗ୍ରୀବର ବୋଇଲା କିସ ସେ ପରୀକ୍ଷିତ
ନ କହିଣ ଗୁପତ କିମ୍ପା କରୁଛୁ ତୁ ତ ।
ନଳ ବୋଲେ ପୂର୍ବରେ ବଳବାନ ହେଲି
ଋଷିଙ୍କର ଦ୍ରବ୍ୟାଦି ସମୁଦ୍ରେ ପକାଇଲି ।
ସେ ସବୁ ଦ୍ରବ୍ୟ ସମୁଦ୍ରେ ବୁଡ଼ିଯାଏ ଜାଣ
ଶାପ ଦେଇ ନିଶ୍ରୀର୍ବଳ କଲେ ଋଷିଗଣ ।
ବୋଇଲେ ଯେତେ ଦ୍ରବ୍ୟ ପାଣିରେ ପକାଇବୁ
ସମସ୍ତ ଭାସିବ ନ ବୁଡ଼ିବାରେ ବାବୁ ।
ନିର୍ବଳ ହେବାରୁ ସେ କଥା ପାଶୋରିଲି
ରାମଙ୍କୁ ଦେଖିବାରୁ ବଳବନ୍ତ ହେଲି ।
ବଳବନ୍ତ ହେବାରୁ ସେ କଥା ମନେ ପଡ଼ି
କିମ୍ପା ସରୋବରେ ପାଷାଣ ମେଲିଲି ।
ନ ବୁଡ଼ିଲା ପଥର ଭାସିଲା ଯେ ପୁଣ
ବିଚାରିଲି ରାମ ଅଟନ୍ତି ନାରାୟଣ ।
ନଳ ବୋଇଲା ମୁଁ ଯେ ନିଉନ ଭାବେ ଥିଲି
ଏବେ କୋଟି ସିଂହର ବଳ ମୁଁ ବହିଲି ।
ସୁଗ୍ରୀବ ବୋଇଲା ମୁଁ ଦେଖିଲି ଚାପଧାରୀ
ମୋହର ବଳ କିମ୍ପା ନୋହିଲା ଏତେ ସରି ।
ଶୁଣିଣ ଶ୍ରୀରାମ ବୋଇଲେ ଏବେ ଚାଲ
ବିଳମ୍ବ ନ କର ଏବେ କପିକୁଳ ମଲ୍ଲ ।
ସୁଗ୍ରୀବ ବୋଇଲା ମୁଁ ଯେ ନପାଳେ ସେ କଥା
ଏ ଦେହ ଥିବାଯାଏ ମୋତେ ଅଣ୍ଟିଲାଣି କଥା
ଶୁଣି ଶ୍ରୀରାମ ବୋଇଲେ ଗଲା ମୋର ଦୋଷ
ଉଠରେ ଲକ୍ଷ୍ମଣ କରିବା ଏଥି କିସ ।
ବାଳୀକି ମାରିବା ଚାଲ କୋଦଣ୍ଡ ସଜ କର
ତାହାର କୁମର ଦେବ ରାଜ୍ୟଭାର ।
ଭାଇ ଯାଉ ବାଳୀ ତା ଠାରେ ଭାଗ ଯାଉ
ପୁତୁରା ରାଜା ହେଲେ ନ ପାଏ ଭାଗ ସାର ।
ପଶ୍ଚାନ୍ତେ ଗୋଳମାଳ କରିବ ଯେବେ ଏହି
ଅଙ୍ଗଦ କୁମର ରାଜା ମୋହର ବଳ ପାଇ ।
ବାଳୀ ଯେ ଅଧର୍ମ ମାରିଲେ ଯଶ ପାଇ
ପୁତ୍ର ରାଜା ହେଲେ ମୋର ସୁଲଭତ ହୋଇ ।

ତାହାର ପୁତ୍ରକୁ ତାହାର ରାଜ୍ୟ ଦେବା
ଋକ୍ଷ ବାନର ଘେନିଣ ରାବଣ ବିନାଶିବା ।
ଏମନ୍ତ ବଚନ ରାମ ଲକ୍ଷ୍ମଣକୁ କହି
ଶୁଣିଣ ସୌମିତ୍ରୀ ମନରେ ତୋଷ ହୋଇ ।
ଲକ୍ଷ୍ମଣ ବୋଇଲେ ନାହିଁ ତୋତେ ଯୋଗ
ବାଳୀର କୁମରକୁ କିଷ୍କିନ୍ଧ୍ୟା ହେବ ଭୋଗ ।
ଆମ୍ଭର ଦୋଷ ଯେ ନାହିଁ ଏବେ ଜାଣ
ତୋହର ଉପକାରେ ଆମ୍ଭର ଥିଲା ମନ ।
ରାଜାର ପୁତ୍ର ହୋଇ ଯୁଦ୍ଧକୁ ଯେ ଡରି
ଜାଣିବାରେ ହନୁ ଯେ ପ୍ରତିଜ୍ଞାରେ ଭାରି ।
ଏତେବୋଲି ବେନିଭାଇ ହୋଇଲେ କ୍ରୋଧମୂର୍ତ୍ତି
କୋଟିସୂର୍ଯ୍ୟ ପ୍ରାୟ ଦିଶିଲା ତାଙ୍କ ଜ୍ୟୋତି ।
ଦେଖିଣ ପାଞ୍ଚମନ୍ତ୍ରୀ ଚରଣେ ପଡ଼ିଲେ
ରହ ରହ ଶ୍ରୀରାମ ବୋଲିଣ ବୋଇଲେ ।
ଶୁଣିଲେ ଶ୍ରୀରାମ ବିଚାରିଲେ ମନ
ନିର୍ବଳ ସକାଶେ ସୁଗ୍ରୀ ମନରେ ଭୟ ଜାଣ ।
ଏମନ୍ତ ବିଚାରି ରାମ ଛୁଇଁଲେ ସୁଗ୍ରୀ ଅଙ୍ଗ
ରୂପରେ ପଞ୍ଚାନ୍ତର ଯେସନେ ଅନଙ୍ଗ ।
ଦେହରୁ ବ୍ୟଥା ଛାଡ଼ି ପାଇଲା ଅଙ୍ଗେ ବଳ
ବଳବନ୍ତ ହୋଇଣ ରହିଲା ଆଗୁଁ ସାର ।
ଶୋଇଲା ଠାବରୁ ଉଠିଲା ତେଜଧରି
ଚରଣ ଧରି ରାମଙ୍କୁ ଓଳଗେ  ବେଗକରି ।
ଭୋ ରଘୁନାଥ ମୋଠାରେ କରୁଅଛ ରୋଷ
ବାଳୀକି ଦେଖିଲେ ମୋର ଭାଗଇ ବୀରବେଶ ।
ମୋତେ ଯେବେ ଓପ୍ରୋଧ କରିଣ ଦୟାକଲୁ
ମରିବଇଁ ପଛେ ମୁଁ ଯାଉଛି ଗୋ ବୋଲୁଁ ।
ଏଥୁ ଅନନ୍ତରେ ଶୁଣ ଦେବ ସ୍ୱାମୀ
ହନୁମନ୍ତ ଫୋପାଡ଼ି ଦେଲା ବାଳୀକି ପୁଣି ।
ସେ କଥା ମୋର ଆଗେ କହ ହେ ବୁଝାଇ
ଈଶ୍ୱର ବୋଇଲେ ଶୁଣ ପ୍ରାଣସହୀ ।
ଯେତେବେଳେ ହନୁମନ୍ତ ବାଳୀକି ଫିଙ୍ଗିଦେଲା
ସେ ବାଳୀ ଅନ୍ତଃପୁରେ ଯାଇଣ ପଡ଼ିଲା ।
ତାରାରାଣୀ ଦାସୀଗଣ ମେଳରେ ଥିଲା ବସି
ଶରୀରଗୋଟା ରାଣୀର ମଳିନ ପୁଣି ଦିଶି ।
ଦେଖିଣ ଦାସୀଗଣ କହନ୍ତି ତାରା ଆଗେ
ଶରୀର ମଳିନ ଦିଶୁଛି ରାଣୀ ଏବେ ।
ତାରାବତୀ ବୋଇଲେ ଶୁଣ ପ୍ରାଣସଖି
ଆଜି ରାତିରେ ମୁଁ ସ୍ୱପନ ଯେ ଦେଖି ।
ମହିଷୀ ଉପରେ ଚଢ଼ିଣ ମୋର ସ୍ୱାମୀ
ଦକ୍ଷିଣ ଦିଗକୁ ଯାଉଛନ୍ତି ଗମି ।
ଗଳାରେ ରଙ୍ଗପୁଷ୍ପ ତିଳମାଳା ପଡ଼ି
ବେଗ ବେଗ ଚାଲଇ ଦକ୍ଷିଣ ଦିଗ ମାଡ଼ି ।
ପେଚା ଯେ ଉଲୁକ ଦ୍ୱାରେ ରାବ କଲେ
ଗୃହର ଉପରେ ସର୍ପ ଫଣା ଟେକେ ଭଲେ ।
ଆଗରେ ଶୃଗାଳ ଗୋଡ଼ାଏ ରାବ ଦେଇ
ସୁବର୍ଣ୍ଣ ଚୂଡ଼ି ମୋର ହସ୍ତରେ ନ ଦିଶଇ ।
ଜଟା ବାନ୍ଧି ଯୋଗୀ ମୋର ଦ୍ୱାରେ ଉଭା
ସୁଗ୍ରୀବର କରରେ ଶ୍ୱେତପୁଷ୍ପ ଗଭା ।
ଶ୍ୱେତ ଛତ୍ର ତା ଉପରେ ହୋଇଛି ଉହାଡ଼
ଶ୍ୱେତ ପାଗ ଶ୍ୱେତବର୍ଣ୍ଣ ତହିଁରେ ନିବିଡ଼ ।
ଚାମର ବିଞ୍ଚଣୀ ଢ଼ାଳନ୍ତି ମନ୍ତ୍ରୀମାନେ
ଧନୁଶର ଧରି ଉଭା ତା ପାଶେ ଯୋଗିଜନେ ।
ଶଙ୍ଖ ଚକ୍ର ଗଦା ଶୋଭଇ ତାଙ୍କ କରେ
ସୁଗ୍ରୀବରକୁ ରାଜା କଲେ ସେହୁ ପୁରେ ।
ମୋତେ ନେଇ ସୁଗ୍ରୀବର କୋଳେ ବସାଇଲେ
ଦୁଇଜଣଙ୍କୁ ଯୋଗୀ ଅଭିଷେକ କଲେ ।
ହୀରା ମାଣିକ୍ୟ ଚୂଡ଼ିର ସଙ୍ଗେ ଅଳଙ୍କାର
ମୋର ଅଙ୍ଗେ ସୁଗ୍ରୀବର ଭୂଷଣ ବେଭାର ।
ସୁବର୍ଣ୍ଣ ଥାଳିରେ ସୁଗ୍ରୀ ପରଶଇ ଅନ୍ନ
ମୋତେ କୋଳେ ଧରିଣ ବସିଲେ ସିଂହାସନ ।
ରଜନୀରେ ମୋର ସଙ୍ଗେ ରମଣ ଭୋଗକଲେ
ଚାଟୁ ବଚନ କହି ମୋ ମନ ସୁଖୀ କଲେ ।
ପୁଣି ସ୍ୱପନରେ ଦେଖିଲିଟି ଯାହା
ପୁଷ୍ପକ ବିମାନ ଶୂନ୍ୟରେ ଆସି ଉଭା ।
ସେଥିରେ ବସିଣ ସ୍ୱାମୀ ଗଲେ ସ୍ୱର୍ଗପୁର
ରଥ ଚକ ଧରି ମୁଁ ହୋଇଲି ବିକଳ ।
ମୋତେ ବୋଇଲେ ତୁ କିମ୍ପା ଶୋକ କରୁ
ଦ୍ୱାରରେ ପରଂବ୍ରହ୍ମ ଦର୍ଶନ ନ କରୁ ।
ସେ ନାରାୟଣ ତୋତେ ବୋଲିବେ ଯେଉଁ ବାଣୀ
ସେ ବଚନ କରିବୁ କିଷ୍କିନ୍ଧ୍ୟା ପାଟରାଣୀ ।
ପାଞ୍ଚ କନ୍ୟ  ସଙ୍ଗରେ ଗଣିତା ତୋତେ କରି
ସତୀବ୍ରତ ପଣ ତୋତେ ଦେବେ ନରହରି ।
ଚନ୍ଦ୍ରସୂର୍ଯ୍ୟ ଥିବାଯାଏ ତୁ ସତୀରେ ଗଣିତା
ଦ୍ୱାପର ଯୁଗେ ନନ୍ଦ ଗଉଡ଼ ଦୁହିତା ।
ବାସୁଦେବ ଜାତ ହେବେ ବସୁଦେବ ଘରେ
କଂସ ଡରେ ରହିବେ ନନ୍ଦର ମନ୍ଦିରେ ।
ମୁହିଁ ପୁଣି ପାଣ୍ଡବ ବଂଶରେ ଜନ୍ମ ହେବି
ବାସବର ପୁତ୍ର ହୋଇ ଅର୍ଜ୍ଜୁନ ବୋଲାଇବି ।
ତେତେବେଳେ ଭେଟ ତୁ ହୋଇବୁ ମୋର ସଙ୍ଗେ
ତୋତେ ବିଭା ହୋଇଣ ରମିବି ଲୀଳାରଙ୍ଗେ ।

ରାମକୃଷ୍ଣ ବେନିଭାଇ ହୋଇବେ ତୋର ଭାଇ
ପରଂବ୍ରହ୍ମ ରୂପ ତୁ ଦେଖିବୁ ଚାନ୍ଦମୁହିଁ ।
ଏତେ କହି ସ୍ୱାମୀ ମୋର ସ୍ୱର୍ଗପୁର ଗଲେ
ନିଦ୍ରା ଭାଗିଲା ମୁଁ ଉଠିଲି ସତ୍ୱରେ ।
ସେତେବେଳୁ ମୁହିଁ ଭାବଇ ଯେ ପୁଣ
ପ୍ରହରେ ବେଳ ଭିତରେ ବିପରୀତ ଜାଣ ।
ଏମନ୍ତ ବେଳେ ବାଳୀ ତାରା ପାଦେ ପଡ଼ି
ଦେଖିଣ ତାରାଦେବୀ ଉଠିଲା ତଡବଡ଼ି ।
ଦାସୀଗଣଙ୍କୁ ଘେନିଣ ସ୍ୱାମୀକି ଟୋଳିଲା
ସଚେତ କରିଣ କଥା ତ ପଚାରିଲା ।
ବାଳୀବୀର ବୋଇଲା ଶୁଣ ପ୍ରାଣସହୀ
ଏତେକାଳେ ପ୍ରାଭବ ପାଇଲି ଯେ ମୁହିଁ ।
ସାନୁଜ ସୁଗ୍ରୀବର ଥିଲା ଋଷ୍ୟମୁକେ
ଯୁଝିବ ବୋଲିକରି ଅଇଲା ତାର ସୁଖେ ।
ସିଂହଦ୍ୱାରେ ଲୋକଙ୍କୁ ମାରିଣ ଘଉଡ଼ିଲା
ଉଗର ଆସିକରି ମୋ ଆଗେ କହିଲା ।
କ୍ରୋଧରେ ମୁହିଁ ଯାଇ ମାଇଲି ବିଧାଏ
ପଳାଇଲା ସୁଗ୍ରୀବର ଋଷ୍ୟମୁକ ଯାଏ ।
ସଙ୍ଗରେ ତାର ହନୁମନ୍ତ ଆସିଥିଲା
ବିକ୍ରମ ଗତିକରି ମୋତେ ଫିଙ୍ଗିଦେଲା ।
ତୋହର ଆଗରେ ପଡ଼ିଲି ଏବେ ଆସି
ମୋହଗଲା ପ୍ରାୟ ହୋଇଲି ଶୁଭ୍ରକେଶୀ ।
ଆଉ ବେଳେ ଯେବେ ଆସିବ ସୁଗ୍ରୀବର
ପାଞ୍ଚଜଣ ସଙ୍ଗରେ ମାରିବି ନିକର ।
ଏତେ ବୋଲି ବାଳୀ କ୍ରୋଧଭର ହୋଇ
କ୍ରୋଧରେ ରକ୍ତବର୍ଣ୍ଣ ତା ଦେହ ଦିଶଇ ।
ତାରା ମହାଦେଈ କରଯୋଡ଼ି କହି
କ୍ରୋଧଭର ନୁହହେଁ କିଷ୍କନ୍ଧ୍ୟାର ସାଇଁ ।
ରାଜ୍ୟରୁ ଛବିଶ୍ୱା ଘରଣୀ ତାର ଦିଅ
ଚାରିଯୁଗରେ ଦେବତା କୀରତି ରୁହାଅ ।
ଭାଇକି ଭାଗ ଦେବାର ସବୁଠାରେ ଜାଣ
ମୋର ବୋଲ କରହେ ନୃପତି ମହାରାଣ ।
ଶୁଣିଣ ବାଳୀବୀର ବୋଇଲା ଆନ ଦେବା
ପାଞ୍ଚମନ୍ତ୍ରୀ ସଙ୍ଗରେ ଯମପୁରେ ବରଗିବା ।
ଆଉ ଏଠାରେ ପଡ଼ିଲେ ଯିବ କି ସେ ବର୍ତ୍ତି
ଗଳାରେ ତାହା ଲାଗିଲା କାଳଫାଶୀ ।
ତାରାବତୀ ରାଣୀ କହିଣ ତୁନି ହେଲା
କିଏ ଯମପୁର ଯିବ ବୋଲିଣ ବୋଇଲା ।
ପାତ୍ରମନ୍ତ୍ରୀ ଜନପ୍ରଜା ମୁହିଁ ଯେ କହିଲି
କାହାରି ବୋଲ ନ ମାନିଲା ଦଣ୍ଡଧାରୀ ।

ଏଥୁ ଅନନ୍ତରେ ପାର୍ବତୀ ଦେବୀ ଶୁଣ
ତାହା କହିବାରୁ ବାଳୀ ଧଇଲା ଅବିଗୁଣ ।
ପାତ୍ରମନ୍ତ୍ରୀ ଡକାଇ କହିଲା ଦଣ୍ଡଧାରୀ
ତୁମ୍ଭେମାନେ କହୁଥିଲ ମୋ ଆଗେ ବିଚାରି ।
ବୋଇଲ ସୁଗ୍ରୀବିକି ସାହା ହୋଇଛି ରାମରାଣ
ଏବେ ତାର ବଳବପୁ କେଣେ ଗଲା ପୁଣ ।
ଶ୍ରୀରାମ ଲକ୍ଷ୍ମଣ ସାଙ୍ଗରେ ଆସିଥିଲେ
ସୁଗ୍ରୀ ପଳାଇବାରୁ ସେହି ପଳାଇଲେ ।
ଜଣାଗଲା ତୁମ୍ଭର ତାଙ୍କ ସଙ୍ଗେ ମେଳ
ଏବେ ତୁମ୍ଭେମାନେ ମୋ ନଗ୍ରୁ ବେଗେ ଚଳ ।
ଯେବେ ସେ ସୁଗ୍ରୀବର ମୋତେ ଯେ ମାରିବ
ତେବେ ସୁଗ୍ରୀବର ସଙ୍ଗରେ ବିହରିବ ।
ମୁହିଁ ମାଇଲେ ସୁଗ୍ରୀ ନ ଆସିବ ଆଉ
ଏମନ୍ତ ବଚନ ବୋଇଲା ବାଳୀ ତହୁଁ ।
ପଚିଶ ଯୁଥପତି ମନେ ବିଚାରିଲେ
କିମ୍ବା ଏହା ସଙ୍ଗେ ଥିବା ବୋଲି ଚଳିଗଲେ ।
ଏମନ୍ତ ବୋଲି ସମସ୍ତେ ନଗ୍ରୁ ବାହାରି
ଦଧିବାମନ ମନ୍ଦିରେ ବସିଲେ ଯାଇକରି ।
ବୋଇଲେ ଆମ୍ଭେ ଯେବେ କୌଣସିଆଡେ ଯିବା
ଏ ବାଳୀ ବିଚାରିବ ମେଳ ସେ କଲେ ଅବା ।
ପାଞ୍ଚସାତ ଦିନ ଯେ ଏହିଠାରେ ଥିବା
ବାଳୀ ସୁଗ୍ରୀବର ଯୁଦ୍ଧକୁ ଦେଖିବା ।
ସୁଗ୍ରୀବ ସଙ୍ଗେ ଶ୍ରୀରାମ ଲକ୍ଷ୍ମଣ ଛନ୍ତି ମିଶି
ଶ୍ରୀରାମଙ୍କୁ ମାରିବ ବୋଲି ବାଳୀ କହିଅଛି ।
ଏମନ୍ତ ବୋଲିଣ ପାତ୍ର ମନ୍ତ୍ରୀ ଯୁଥପତି
ଦଧିବାମନ ମନ୍ଦିରେ ରହିଲେ ସେ ଘାନ୍ତି ।
ସେମାନେ ଯିବାରୁ ବାଳୀ ବିଚାରିଲା
ଡଗରକୁ ଡକାଇ ବଚନ କହିଲା ।
ପାତ୍ରମନ୍ତ୍ରୀ ଯୁଥପତି କେଣେ ଗଲେ ପୁଣ
ଦେଖିଣ ଆସ ଯାଇ ଅଛନ୍ତି କେଉଁସ୍ଥାନ ।
ଶୁଣିଣ ଡଗର ବେଗେ ଚଳିଗଲା
ଦଧିବାମନ ମନ୍ଦିରେ ସବୁଙ୍କ ଦେଖିଲା ।
ଫେରିଣ ବାଳୀ ଆଗେ କହିଲା ସେ ଗୁଣ
ଦଧିବାମନ ମନ୍ଦିରେ ଅଛନ୍ତି ସର୍ବେ ଜାଣ ।
ଶୁଣିଣ ବାଳୀବୀର ବେଗେ ଚଳିଗଲା
ପାତ୍ରମନ୍ତ୍ରୀ ସେନାପତି ମାନଙ୍କୁ କହିଲା ।
ବୋଇଲା ସୁଗ୍ରୀବର ମଲେ ତୁମ୍ଭେ ଯିବ
ସୁଗ୍ରୀବର ଥିବାଯାଏ ମୋ ସଙ୍ଗରେ ଥିବ ।
ଶୁଣିଣ ପାତ୍ରମନ୍ତ୍ରୀ ଯୁଥପତି ଗଲେ
ଭିତରେ ଜଗତୀରେ ଯାଇଣ ବିଜେ କଲେ ।

ଏଥୁ ଅନନ୍ତରେ ଶୁଣ ଭଗବତୀ
ସେଠାର ସୁଗ୍ରୀବର କଲା ଯେବଣ ରୀତି ।
ଶ୍ରୀରାମ ଅଙ୍ଗ ଛୁଅନ୍ତେ ବଳ ଅପ୍ରମିତ
ଆଗରେ ସୁଗ୍ରୀବର ଚଳିଲା ତ୍ୱରିତ ।
ଭୋ ରଘୁନନ୍ଦନ ବେଗ ହୋଇ ଆସ
ଆଜ ମୁଁ ଛାଡ଼ିବି ଜୀବନର ଆଶ ।
ବାଳୀ ସଙ୍ଗେ ମୋର ହୋଇବ ସମର
ମୋତେ ଦୟା ଥିଲେ ବାଳୀକୁ ବେଗେ ମାର ।
ସୁଗ୍ରୀବର ଯିବାରଉଠିଲେ ରଘୁପତି
ଆଠ ଦଶ ଆଗପଛ ହୋଇଣ ଯାଆନ୍ତି ।
ମାଲ ବେଶ ହୋଇଣ ଅଛନ୍ତି ସୁଗ୍ରୀବର
ବାହେ ବୀର ନେତ ଉଡ଼ଇ ଫରଫର ।
ଶିରରେ ମୁକୁଟ ଶୋହେ ଶରୀରେ ରଙ୍ଗମାଟି
ଅଞ୍ଚଳରେ ଲାଞ୍ଜ ଯେଲୋଟେ ଭୂମିରେ ପାଛୋଟି ।
ଆଗେ ସୁଗ୍ରୀବର ପଛେ ଲକ୍ଷ୍ମଣ
ଶ୍ରୀରାମ ହନୁମନ୍ତ ଜମ୍ୱେବ ସୁଷେଣ ।
ନୀଳକୁ ମିଶିଣ ଏମନ୍ତେ ଆଠଜଣ
କିଷ୍କିନ୍ଧ୍ୟାରେ ପ୍ରବେଶ ହୋଇଲେ ଯାଇ ପୁଣ ।
ଚାହିଁଲେ ସେ ନଗ୍ର ଅତିହିଁ ସୁସଞ୍ଚ
ମଞ୍ଚକୁହିଁ ଶୋଭାପାଏ ଉଚ୍ଚର୍ଗ ଅଟେ ଉଚ୍ଚ ।
ଚଉକତିରେ ପର୍ବତ ଅଛି ପୂରି
ବିଶ୍ୱକର୍ମା ଗଢ଼ିଲା ଅତି ଯତ୍ନ କରି ।
ଦେଉଳ ମଣ୍ଡପ ଜଗତୀ ଅଟାଳି
ମୋତି ଗଜବାରଣ ପନ୍ତି ପନ୍ତି କରି ।
ଚାଙ୍ଗ ବନ୍ଧା ଫେରକୁ ଫେରି ବାଘ ମୁହିଁ
ତିନିଲକ୍ଷ କମଳ ଶିରା ଅଛଇଁ ଶୋଭାଇ ।
ଠାବେ ଛିଟୁକିଛି ରଖିଛି ନିରନ୍ତର
ଗଧିଆ ତାଭରଣ ତାଙ୍କୁ ଯେ ସେ ନିଅନ୍ତି ପଥର ।
ସୁବର୍ଣ୍ଣ କଳସ ଅଛଇଁ ପନ୍ତି ପନ୍ତି
ବିବିଧ ବର୍ଣ୍ଣେ ଚିରାଳ ଉଡଇ ନେଛି ନେଛି
ରଥ ଘୋଡ଼ା ହାତୀ ପଦାତି ଅନେକ
ଏକେ ଏକେ ନାମ ଧରି କହିବା କେତେକ ।
ପୁଷ୍ପବନମାନଙ୍କରେ ଭ୍ରମର ଉଡ଼ନ୍ତି
ଚୂତବନ ମାନଙ୍କରେ କୋକିଳ ରାବନ୍ତି ।
ନାନା ବୃକ୍ଷମାନେ ଫଳଭାରେ ଭାରି ହୋଇ
କୃଷ୍ଣବେଣୀ ଚାରିପାଶେ ବେଢ଼ିଣ ବହିଯାଇ ।
ନଗ୍ରର ଚାରିପାଶେ ବେଢ଼ିଣ ବହିଯାଇ
ଅମୂଲ୍ୟ ଗଙ୍ଗାଜଳ ସ୍ୱାଦ ଯେ ଶୀତଳ ହିଁ ।
କୂପ ବାମ୍ପୀ ଚଉକା ପୁଷ୍କରିଣୀମାନ
ନିର୍ମଳ ଶଉଚ ପରିମଳ ସେ ପୁଣ ।
ବନ୍ଧମାନଙ୍କରେ ବସାଇଅଛି ନଳା
ନଦୀତୁଠ ମାନ... ର ବସାଇ ଅଛି ଭେଳା ।
ହ୍ରଦ ପୁଷ୍କରିଣୀରେ ଦୀପଦଣ୍ଡି ସାର
ଜଗତୀ ଅଟାଳି ମଣ୍ଡପ ରତ୍ନସାର ।
ଚିତ୍ର ବିଚିତ୍ର ଅଟେ ସବୁଙ୍କରି ଘର
ସ୍ୱର୍ଗ ଅଟଇ ଶୋଭା ମଞ୍ଚକୁ ସୁନ୍ଦର ।
ସମସ୍ତ ଯୋଗାଇ ରଖିଅଛି ବାଳୀବୀର
କୁବେର ଭଣ୍ଡାର ପରିପୂର୍ଣ୍ଣ ତାର ।
ଦେଖିଣ ଶ୍ରୀରାମ ପ୍ରଶଂସା କଲେ ପୁଣ
ଧନ୍ୟ ଧନ୍ୟ ବାଳୀ ଧନ୍ୟ ତୋର ଗୁଣ ।
ଧନ୍ୟରେ କିଷ୍କିନ୍ଧ୍ୟା ବାଳୀର କଟକ
ଦେବ ଅଂଶରେ ଜାତ ଏ ନଗ୍ରଲୋକଯାକ ।
ଏ ପୁରେ ସୁଗ୍ରୀବ ଆଜ ହେବ ରାଜା
ଏ ପୁର ଗୋଟି ବାଳୀ କରିବ ନିଶ୍ଚେ ତେଜ୍ୟା ।
ଏମନ୍ତ ବିଚାରି ରାମ ସୁଗ୍ରୀବକୁ କହି
ସିଂହଦ୍ୱାରକୁ ତୁମ୍ଭେ ଯାଅ ବେଗ ହୋଇ ।
ଆମ୍ଭେ ଲିମ୍ୱଗଛ ଉହାଡ଼େ ସର୍ବେ ଥିବୁଁ
ନବରୁ ବାହାର ହେଲେ ବାଳୀକୁ ଧରିବୁ ।
ଉହାଡ଼ରେ ଥିବେ ଯେ ମନ୍ତ୍ରୀ ପାଞ୍ଚଜଣ
ମୋହର ବଚନ ତୁମ୍ଭେ ସାବଧାନେ ଶୁଣ ।
କ୍ଷତ୍ରୀୟ ସୁତ ହୋଇଣ ଯୁଦ୍ଧକୁ ନ ଡର
ନ ପାରିଲେ ଛାଡ଼ିଣ ଦମ୍ଭରେ ରହି ବୀର ।
ବେନି ହାତ ଦୂରରେ ହୋଇବୁ ତୁ ଠିଆ
ତେତେବେଳେ ନାରାଚ ବିନ୍ଧିବି ମୁଁ ପରା
ଶୁଣି ସୂର୍ଯ୍ୟସୁତ କୋପେ ଜରଜର
ଯାଇଣ ମିଳିଲା ନବର ସିଂହଦ୍ୱାର ।
ଆରେ ଆରେ ବାଳୀ ବୋଲି ସେ ଡାକଇ
ବାହାନାଦ କରିଣ ରଡ଼ି ସେ ଦିଅଇ ।
ହୁଂକାର ଧ୍ୱନି କରିଣ ଭିତରେ ସେ ପଶଇ
ଯଥାକାଳେ ଦୂର ହୋଇଣ ବାହୁଡ଼ି ଆସଇ ।
ପଳାଇ ଦ୍ୱାରପାଳ ଭିତରେ ପଶିଲା
ବାଳୀର ଆଗରେ ଯାଇଣ କହିଲା ।
ସେ ନଗ୍ର ନରନାରୀ ଶୁଣିଣ ଅଇଲେ
ମେଢ଼ ମଣ୍ଡପ ଜଗତୀ ଉପରେ ଉଠିଲେ ।
କେ ବୋଲେ ସୁଗ୍ରୀବର ଯେ ରଣେ ପଳାଇଲା
କେବଣ ପ୍ରକାରେ ପୁଣି ସେ ଯୁଝି ଆସିଲା ।
କେ ବୋଲଇ କାହାର ବଳ ପାଇଛଇଁ
ନୋହିଲେ କେମନ୍ତେ ଆସୁଅଛି ଧାଇଁ ।
ବେନି ସପ୍ତ ବରଷ ରାଗିଣ ବନେ ରହି
ଏକା ଓଳ... ସେ କେମନ୍ତ ଦି ଥର ଆସଇ ।

ଦେଖ ମୋତିହାର ଦିଶଇ ବିପରୀତ
ଅବଶ୍ୟ ଏ ହାରିବ ବାଳୀର ପୁରୁଷାର୍ଥ ।
ଏମନ୍ତ ବୋଲି ଲୋକେ କୁହାକୁହି ହୋନ୍ତି
ମେଢ଼ ମଣ୍ଡପରେ ଉଠିଣ ଦେଖନ୍ତି ।
ସୁଗ୍ରୀବର ପୁଣ ପୁଣ ଦିଅଇ ଯେ ରଡ଼ି
ଶୁଣିଣ ଥରହର କିଷ୍କିନ୍ଧ୍ୟା ନରନାରୀ ।
ଅନ୍ତଃପୁରେ ଥାଇଣ ଶୁଣିଲା ସେ ବାଳୀ
ଘୃତ ପାଇଲେ ଯେସନେ ଅନଳ ପ୍ରଜ୍ୱଳି ।
ତାରାକୁ କୋଳେ ଘେନିଣ ନିଶ୍ଚିନ୍ତେ ବସିଥିଲା
ଧଡ଼ପଡ଼େ ଉଠିଣ ବେଗେ ସେ ଉଭା ହେଲା ।
କ୍ରୋଧରେ ନୟନ ବୁଲାଇ ଘନଘନ
ଖରତରେ ନିଃଶ୍ୱାସ ବହଇ ଘନ ଘନ ।
ବସନ ସମ୍ଭାଳି ଯେ ପିନ୍ଧଇ ଦୃଢ଼ମୁଷ୍ଟି
ଆଗରେ ଓଗାଳିଲା ତାରା ଯେ ବିମ୍ବୋଷ୍ଟୀ ।
ଭୋ ନାଥ ମୂର୍ଖବୁଦ୍ଧି କିମ୍ପାଇଁ ଏବେ କରୁ
କଥାର ସନ୍ଧି ତୁ କିମ୍ପାଇଁ ନ ବିଚାରୁ ।
ବେନି ସସ୍ର ବରଷ ଗଲା ସୁଗ୍ରୀବର
ତାହାର ପ୍ରାକର୍ମରେ ଅଟେ କି ଏତେ ବଳ ।
ପରଂବ୍ରହ୍ମ ସଙ୍ଗରେ ହୋଇଣ ଅଛି ମିତ
ଯାହାକୁ ସମସରି ନାହିଁ ଏ ଜଗତ ।
ଦଶରଥ ଘରେ ଜାତ ନାରାୟଣ
ଦୁଷ୍ଟମାରିବାକୁ ସେ ହୋଇଛନ୍ତି ଜନ୍ମ ।
ସେ ରାମ ପ୍ରତିଜ୍ଞା କରିଛି ଶସ୍ତ୍ର ଛୁଇଁ
ତୁମ୍ଭଙ୍କୁ ମାରିଣ ସୁଗ୍ରୀକି ଆଜ୍ଞା ଦେଇ ।
ଏ ରାତ୍ରି ସ୍ୱପନରେ ଦେଖିଛି ଏହିକଥା
ଦୁର୍ବାସା ଋଷି ମୋତେ କହିଲା ବାରତା ।
କେତେ କଥା କହିଲେ ମୁନି ଆସି ଆଜ
ସେ କଥା ମୋଠାରୁ ଶୁଣ ହେ ମହାରାଜ ।
ମୋର ହୃଦ ହସ୍ତରେ ନାହିଁ ଏ ଅଳଙ୍କାର
ଅଭୂଷଣକାରୀର ମୋର ଦିଶଇ ଶରୀର ।
ଶୁକ୍ଳବସ୍ତ୍ର ପିନ୍ଧିଛି ଅଶୋଭା ଦିଶେ ଦେହ
କାହାରି ସଙ୍ଗରେ ମୋର ନାହିଁ ପ୍ରେମ ପ୍ରିୟ ।
ଏ ସ୍ୱପନ ଦେଖିଲି ଆଜ ରଜନୀରେ
ତେଣୁକରି ବିନତି ହେଉଛି ତୋ ପାଦରେ ।
କେ ମୋତେ ବିନୀତ କହିବ ଚାଟୁଆଇ
କାହାର କୋଳରେ ଶୋଇବି ଆଉ ମୁହିଁ ।
ନାସିକା ଶୋଭା ନୁହେଁ ବସଣୀ ବିହୁନେ
କେତେ ଦୁଃଖ ମୁଁ ସହିବି ତୁମ୍ଭର ବିହୁନେ ।
ମୋହର ଶପଥ ଦେବ ନ ଯାଅ ତୁମ୍ଭେ ଉଠି
ଗଲେଟି ପ୍ରାଣ ଯିବ ନ ଆସିବ ଲେଉଟି ।

ସୁଗ୍ରୀବର ତୁମ୍ଭର ଅଟଇ ସାନଭାଇ
ତାହାକୁ ଯୁବରାଜ କର ହେ ସ୍ୱାମୀ ତହିଁ ।
ସୁଖେ ରାଜାପଣେ ରାଜ୍ୟଭୋଗ କର
ରାଜ୍ୟର ଭଲ ମନ୍ଦ ତାହା ପରେ ଡାଳ ।
ତାରାର ବଚନ ଶୁଣି ବୋଲଇ କପିରାଏ
ଶ୍ରୀରାମ ଦଶରଥ ରାଜାର ତନୟେ ।
ତାଙ୍କର ସଙ୍ଗରେ ମୁଁ ହୋଇଲି ବିମନ
ଥରେ ମୁଁ ଯାଇଥିଲି ହାରିଣ ଅଛି ପୁଣ ।
ସନମାନ ହୋଇଣ ମୁଁ ନୁହଇ ଜାଣିପାରୁ
ତାରଠାରେ ଦୋଷୀ ମୁଁ ନୁହଇ ଜାଣିପାରୁ ।
ଯଦ୍ୟପି ମାରିବ ମୋତେ ସୁଗ୍ରୀବର ଛଳେ
ଇନ୍ଦ୍ରଙ୍କ ସଙ୍ଗରେ ମୁଁ ବସିବି ସ୍ୱର୍ଗଆଳେ ।
ପାତାଳକୁ ଗଲାବେଳେ କହିଛି ପିତା ମୋତେ
ମରିବୁ ତୁ ନିଶ୍ଚୟ ନାରାୟଣ ହସ୍ତେ ।
ସେ ଯେବେ ନାରାୟଣ ଜନ୍ମ ହୋ'ଇଥିବ
ସେ ମୋତେ ମାରିବ କେହି ନ ରଖିବ ।
ମାରିଲେ ଦୟା ମୋତେ କରିବେ ବାସୁଦେବ
ଦ୍ୱାପର ଯୁଗେ ମୁଁ ତାହାର ସଙ୍ଗେ ସଙ୍ଗ ।
ତୋତେ ଯେ କାରଣ କରିବେ ଚାନ୍ଦମୁହିଁ
ସତୀରେ ଗଣିତା ହୋଇବୁ ଯେ ତୁହି ।
ନୋହିଲେ ତାହାକୁ ମୁଁ ମାରିବି ଯେ ଆଜ
ମୋହର ସାମର୍ଥପଣ ଜାଣୁ ତ ବଳବୀର୍ଯ୍ୟ ।
ମୋତେ ସମ ନାହିଁ ଦଶଦିଗପାଳ
ନାରାୟଣ ନ ମାରିଲେ ନ ପୁରେ ମୋରକାଳ ।
ଘଡ଼ିକ ଭିତରେ ଚାରି ସମୁଦ୍ରେ ସ୍ନାନକରି
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ କାହାକୁ ମୁଁ ନ ଡରି ।
ତୁ ବୋଇଲୁ ସଖିରେ ସୁଗ୍ରୀକି କର ସୁଖୀ
ରାଜାମାନେ ଶୁଣି ବୋଲିବେ ମୁଁ ନୁହଇ କିଛି
ସୁଗ୍ରୀବର ଘରଣୀକି ଯେ ବେଳୁଁ ନାଶ କରି
ସୁଗ୍ରୀବର ଭଗାରୀ ଅଟଇ ଶୁଣ ନାରୀ ।
ଭଗାରୀ ଦାଉ ମୁଁ ନ ସହେ ସଙ୍ଗାତୁଣୀ
ଏତେ କହି ଗର୍ଜିଲା କପିକୁଳମଣି ।
ତାରାବତୀ କହିଲେ ପାତ୍ରମନ୍ତ୍ରୀ ନାସ୍ତି କଲେ
ମୁହିଁ ଦୁଇଥର କହିଲି ତୁମ୍ଭଠାରେ ।
ସପ୍ତଶାଳାରେ ତୋର ଅଧେ ବଳ ଥିଲା
ଏକ ନାରାଚେ ରାମ ତାହାକୁ ଛେଦିଲା ।
ଦୁନ୍ଦୁଭୀର ହାଡ଼ ଚରଣେ ପିଙ୍ଗିଦେଲା
ତାହାର ଦର୍ଶନେ ହନୁ ବଳ ଯେ ପାଇଲା ।
ତାଙ୍କର ଅଙ୍ଗ ସଙ୍ଗେ ସୁଗ୍ରୀ ବଳବାନ
ହନୁମନ୍ତ ପିଙ୍ଗି ଦେଲା ଧରି ତୋତେ ପୁଣ ।

ଏ କଥାମାନ ସବୁ ସଖିମାନେ କହି
ସେ କଥାମାନ ଜାଣି ମନାକଲି ମୁହିଁ ।
ତାରାବତୀ କଥା ଶୁଣି ବେଗେ ବାହାର ହେଲା
ସୁଗ୍ରୀବର ପାଶକୁ ଚଞ୍ଚଳ ଧାଇଁଲା ।
ସୁଗ୍ରୀକି ଦେଖିଲା ସେ ଯେ ସିଂହଦ୍ୱାରେ ପୁଣ
ମୁଠେକ ପ୍ରହାରିଲା ବାଳୀ ନିର୍ଘୃଣେଣ ।
ସୁଗ୍ରୀର ବକ୍ଷସ୍ଥଳେ ମାଇଲା ବିଧାଏ
ସୁଗ୍ରୀବ ମୁଠେକ ମାଇଲା ତେଜାଏ ।
ଦୁଇଭାଇଙ୍କ ସଂଗ୍ରାମ ଦେଖନ୍ତି ନରନାରୀ
ସୁଗ୍ରୀବର ମୁଠ ବାଳୀ ହୃଦରେ ବ୍ୟଥା କରି ।
ସେହିଠାରୁ ବେନି ଭାଇ ଅଲଗା ହୋଇଲେ
ଦାନ୍ତପାଟି ଭିଡ଼ାଭିଡ଼ି ହୋଇଣ ରହିଲେ ।
ଶାଳଗଛ ଉପାଡ଼ି ଧଇଲା ସୁଗ୍ରୀବର
ଚକ୍ରପ୍ରାୟେ କରି ବୁଲାଇଲା ହସ୍ତର ।
ବାଳୀର ଉପରେ ପିଟିଲା ସେ ନେଇ
ଦେଖିଣ ବାଳୀବୀର ଗଲା ଚକିତ ହୋଇ ।
ବୋଇଲା ସୁଗ୍ରୀବର ଆଜହୁଁ ନାଶଗଲା
ଯମ ନୃପତି ତୋର ପାଞ୍ଜି ଯେ ପୋଛିଲା ।
ସୁଗ୍ରୀବର ବୋଇଲା ଯେତିକି ଦିନ ଭୋଗ
ଆଉକି ଲେଉଟି ଯିବୁରେ ଆଜ ଆଗ ।
ଆଜିଠାରୁ ତାରାବତୀ ହୋଇଲା ମୋହର
ବଦଳକୁ ବଦଳ ସୁଝିବି ତୋହର ।
ମୁଣ୍ଡରେ କୋଡ଼ା କୋଡ଼ି ହିଆରେ ଯନ୍ତାଯନ୍ତି
ଧରାଧରି ହୋଇଣ ଗଡ଼ାଗଡ଼ି ହୋନ୍ତି ।
ଏକପ୍ରାୟ ଶରୀର ବାରଣ ନ ଯାଇ
ଭୂମିତଳେ ପଡ଼ିଣ ଗଡାଗଡି ହୋଇ ।
ଏକକୁ ଆରେକ ବିନ୍ଧାଣ କରନ୍ତି
ନଖଘାତେ ଘାଆ ଯେ ରୁଧିର ବାହାରନ୍ତି ।
ଫୁତ୍କାର ଶବଦ ନିଃଶ୍ୱାସ ଘୋର ବାଏ
କାଷ୍ଠ ପାଷାଣ ବାଜିଣ ଶରୀରେ ଚୂର୍ଣ୍ଣ ହୁଏ ।
ନରନାରୀ ଅମାନାତ୍ୟ ଗଣ ଯେ ଦେଖନ୍ତି
ନିଶବଦ ହୋଇଣ ସମସ୍ତେ ରହିଛନ୍ତି ।
ସ୍ୱର୍ଗେ ଦେବତାଏ କରନ୍ତି ଭାଳେଣି
ବାଳୀବୀର ମରିବ ଜାଣ ଏହିକ୍ଷଣି ।
ଏସନକ ସମୟେ ବାଳୀ ସୁଗ୍ରୀ ବେନି
ଏକୁଆରେକ ଯେ ବିନ୍ଧାଣ ଗତି ଘେନି ।
ସୁଗ୍ରୀବରକୁ ତଳେ ମାଡ଼ିବସି ବାଳୀ
ଦେଖିଣ ରଘୁନାଥ ମନରେ ଯେ ଭାଳି ।
ଏହିଟି ତାରାପତି କିଷ୍କିନ୍ଧ୍ୟାର ରାଣ
ଏତେ ବୋଲି ଛାଡ଼ିଦେଲେ ସନ୍ଧିଲା ବାଣ ।

ରଘୁନାଥ ଡାକଦେଲେ ସମ୍ଭାଳ ଆରେ ବାଳୀ
ଦଶରଥ ପୁତ୍ରଙ୍କୁ ମାରିବୁ ଥିଲୁ ଭାଳି ।
ଆଗେ ଯେ ପ୍ରମାଣ କରିଥିଲୁ ତୁହି
ଏ ବେଳ ସମ୍ଭାଳିଲେ ଜାଣିବା ତୋର ଦେହୀ ।
ଏତେ ବୋଲି ଶ୍ରୀରାମ ଚତୁର୍ଦ୍ଧା ମୂର୍ତ୍ତି ହୋଇ
ଦେଖିଣ ସମସ୍ତେ ହୋଇଲେ ସେଥି ମୋହି ।
ବାଳୀର ହୃଦରେ ଯାଇ ପଡ଼ିଲା ନାରାଚ
ଅଙ୍ଗଦ ସୁମରି ବାଳୀ ଗଡ଼ିଲାକ ବେଗ ।
ବୋଇଲା ଖଡ୍ଗରେ ପ୍ରାଣ ଗଲା ଆଜ
ତୋତେ ଦେଖିଣ ମୁଁ ନ ପାରେ ତନୁଜ ।
ସୁଗ୍ରୀକି ଭୋଗ ହେଲା ଏଡ଼େକ ବିଭୂତି
ଏତେ ବୋଲି ଭୂମିରେ ଶୋଇଲା କପିପତି ।
ଯହୁଁ ସେ ବାଳୀବୀର ନାରାଚେ ଘୁମାଇଲା
ଉଠିଣ ସୁଗ୍ରୀବର ଶ୍ରୀରାମେ ଚାହିଁଲା ।
ଦାଶରଥି ଲକ୍ଷ୍ମଣ ଜାଣି ସେଥି ଆସି
ଦେଖିଲେ ତଳେ ପଡ଼ିଅଛି ଇନ୍ଦ୍ର ଶିଶି ।
ଜମ୍ବେବ ସୁଷେଣ ନଳ ନୀଳ ପୁଣ
ହନୁମନ୍ତ ସହିତେ ଆସଲେ ଆଠଜଣ ।
ଚେତନା ପାଇ ବାଳୀ ଉଠିଣ ବସିଲା
ସମ୍ଭାଳି ନ ପାରି ପୁଣି ଭୂମିରେ ଲୋଟିଲା ।
ଶ୍ରୀରାମଙ୍କୁ ଚାହିଁଣ ବୋଲଇ ବାଳୀ କପି
କେବଣ ଦେଶରୁ ତୁ ଅଇଲୁ ଏଠିକି ।
କି ଲାଗି ପ୍ରାଣେ ମୋତେ ତୁହି ବଧ କଲୁ
କେବଣ ଲୋକ ଶିକ୍ଷାରେ ଶତୃତାପଣ କଲୁ ।
କେବଣ ନାମରେ ଅଟଇ ତୋହର
କେବଣ ଅର୍ଥେ ଆସି ମାଇଲୁ ମୋତେ ଶର ।
କିଷ୍କିନ୍ଧ୍ୟା ନଗ୍ରକୁ କିମ୍ପା ତୁ ଅଇଲୁ
କେବଣ ହିତରେ ନାରାଚ ମାଇଲୁ ।
ରକ୍ତ ମାଂସେ ଯେବେ ତୋହର ପୀରତି
ଏମନ୍ତ ବିଚାରିଣ ଭୟରେ ମାରେ ଯତି ।
ଶ୍ରୀରାମ ବୋଇଲେ ମୁଁ ସୂର୍ଯ୍ୟବଂଶେ ଜାତ
ଅଯୋଧ୍ୟାରେ ରାଜା ଅଟନ୍ତି ଦଶରଥ ।
କଉଶଲ୍ୟା କଇକେୟୀ ସୁମିତ୍ରା ତିନି ରାଣୀ
ସନ୍ତତି ନିମନ୍ତେ ଯାଗ କଲେ ନୃପମଣି ।
ଋଷ୍ୟଶୃଙ୍ଗ ମୁନିଙ୍କ ମନ୍ତ୍ରର ବଳରେ
ଚାରିପୁତ୍ରଙ୍କୁ ଜାତ କଲେ ନୃପବରେ ।
ସେ ରାଜାଙ୍କ ଜ୍ୟେଷ୍ଠପୁତ୍ର ନାମ ମୋର ରାମ
କଉଶଲ୍ୟା ଜନନୀ ଗର୍ଭରୁ ଜନମ ।
କୈକେୟୀଠାରୁ ଜାତ ଭରତ ନାମେ ଭାଇ
ଲକ୍ଷ୍ମଣ ଶତୃଘନ ସୁମିତ୍ରା ତନୟୀ ।

ଜନକ ମହାରାଜା ମିଥିଳା ନୃପମଣି
ସୀତୟା ନାମେ ଅଟେ ତାଙ୍କର ଦୁଲଣୀ ।
କନ୍ୟାକୁ ଜନକ ମୁନି ମୋତେ ଦେଲେ
ଯହୁଁ ସେ କୁଳ ଗୋତ୍ର କଥାନ୍ତ ଜାଣିଲେ ।
ଅଯୋଧ୍ୟା ଦେଶରେ ମୁଁ ଯେତେଦିନ ଥିଲି
ପିତା ଉଦ୍‌ଯୋଗୀ ଯେ ରାଜା କରିବେ ବୋଲି
ଯାବତ ଜନନୀ ମୋର ଅଟନ୍ତି କୈକେୟୀ
ଦେବତାଙ୍କର କୂଟରେ କଲେ ମୋତେ ମାୟା ।
ନୃପତିଙ୍କି ରାତ୍ରରେ ସତ୍ୟ କରାଇଲେ
ଶ୍ରୀରାମ ବନ ଯାଉ ବୋଲିଣ ବୋଇଲେ ।
ଚଉଦବର୍ଷ ଯାଏ ନ ଆସିବ ଏ ଦେଶ
ବନରେ ଅସୁର ଦୁଷ୍ଟ ତାଙ୍କୁ କରୁ ନାଶ ।
ମୋହର କୁମର ଭ୍ରତ ରାଜା ହେବ
ଚୌଦବର୍ଷ ଗଲେ ଏଥି ରାମ ରାଜା ହେବ ।
ସେ କଥା ଜାଣି ଭାଇ ଭାରିଯା ସଙ୍ଗେ ଘେନି
ବନରେ ବୁଲି ସଙ୍ଗରେ ତାଙ୍କୁ ଘେନି ।
ବହୁତ ବନ ବୁଲି ଦୁଷ୍ଟଙ୍କୁ ନିପାତିଲି
ଦୂଃଖ ସୁଖରେ ବନେ କାଳ ଯେ କାଟିଲି ।
ସେଠାରୁ ଗୋଦାବରୀ କୂଳରେ ବାସ କଲି
କର୍ମର ଅବଳେ ମୁଁ ଘରଣୀ ହରାଇଲି ।
ରାବଣେଶ୍ୱର ନାମରେ ଲଙ୍କାର ଅଧିପତି
ସେ ଆସି ଘେନିଗଲା ମୋହର ଯୁବତୀ ।
ଗରୁଡ଼ ତନୟ ପକ୍ଷୀଚଟା ବୀର
ମୋତେ କହିଲା ଯେ ନେଲା ଦଶଶିର ।
କବନ୍ଧଠାରୁ ମୁଁ ଯେ ପାଇଲି ବାରତା
ଲଙ୍କାର ରାବଣ ନେଲା ମୋର ସୀତା ।
ଶବରଣୀ ପୁଣ କହିଲାକ ଏହା
ତୋହର ଘରଣୀକି ନେଲା ବିଂଶବାହା ।
ତାହା ଶୁଣି ମୁଁ ଯେ ବନସ୍ତେ ଖୋଜିଲି
କୌଣସିଠାରେ ମୋର ଘରଣୀ ନ ଦେଖିଲି ।
ପମ୍ପା ସରୋବରେ ପ୍ରବେଶ ଆସି ହୋଇ
ସେଠାରେ ଚକ୍ରବାକ କହିଲା ମଣାଇ ।
ବୋଇଲା ଏ ରାଜ୍ୟ ନାମ ଅଟଇ କିଷ୍କିନ୍ଧ୍ୟା
ଏଥିରେ ବାଳୀ ନୃପତି ଅଟଇ ଯୋଦ୍ଧା ।
.ବାଳୀ ସୁଗ୍ରୀବର ଅଟନ୍ତି ବେନି ଭାଇ
ବାଳୀ ତ ଅଧର୍ମୀ ଅଟେ ସୁଗ୍ରୀ ଧର୍ମେ ରହି ।
ମୁଁ ବୋଇଲି କି ଅଧର୍ମ ବାଳୀ ନୃପକଲା
ସେ ବୋଇଲା ଭାଇକି ରାଜ୍ୟରୁ ଘଉଡ଼ିଲା ।
ଭାଇବୋହୂକୁ ଧରିଣ ବଳେ ସେ ହରିଲା
ଖଗ ମୃଗ ନର ବାନର ନ ଦେଖିଲା ।

ଦେବତା ଅସୁର ଏଥିରେ ଦେଖା ନାହିଁ
ଅନେକ ଅଧର୍ମ ବାଳୀ ରାବଣ ଯେ ହୋଇ ।
ଏବେ ତାକୁ ନାଶ କର ବେଗେ ଦାଶରଥି
ନୋହିଲେ ବାସୁକୀ ଯେ ଛାଡ଼ିବ ଧରିତ୍ରୀ ।
ମୁଁ ବୋଇଲି ଏମାନଙ୍କୁ ମାରିବି ନିଶ୍ଚେ ଜାଣ
ଅଧର୍ମ କଲେ ଯେ ଦେବଦ୍ୱା କଷ୍ଟ୍ର ।
ସେଠାରୁ ତୋର ଅଧର୍ମ ମୋତେ ଜଣାଗଲା
ମୁଁ ନ ମାରିଲେ ତୋତେ ମାରନ୍ତା କେ ଭଲା
ମୁହିଁ ଯେ ନାରାୟଣ ଦୁଷ୍ଟଙ୍କୁ ନାଶ କରେ
ତେଣୁ ମୁଁ ଜନ୍ମ ଲଭିଲି ନର ମାନବରେ ।
ବାଳୀରାଜା ବୋଇଲା ମୋହଠାରୁ ଶୁଣ
ଖଗ ମୃଗଙ୍କ ଭାଷା ତୁମ୍ଭେ ଜାଣ କି ହେ ପୁଣ
ଶ୍ରୀରାମ ବୋଇଲେ ମୁଁ ସଭିଙ୍କ କଥା ଜାଣି
ତେଣୁ ସେ ସର୍ବଜୀବେ ଅଟଇ କାରେଣୀ ।
ବାଳୀ ବୋଲେ ତୁ ଯେବେ ଅଟୁ ନାରାୟଣ
ତେଇଁଯିବା ବାଟକୁ କିମ୍ପା ନ ଗଲୁ ପୁଣ ।
ତୁ ଯେବେ ନାରାୟଣ ତୋ ଗର୍ଭେ ଅଛି ସର୍ବ
ତୁ କିମ୍ପା ରାବଣକୁ ଡରୁଅଛୁ ଦେବ ।
ଶ୍ରୀରାମ ବୋଇଲେ ବାଳୀ ଶୁଣ ମୋ ବଚନ
ଯେଉଁରୂପେ ସଂସାରେ ମୋତେ ଜାଣିବା ପ୍ରମାଣ ।
ମୋର କଥା ପୁରାଣେ ହେବ ଲେଖା
ଯେରୂପେ ଜୀବମାନଙ୍କର ମୁଁ ହେବି ସଖା ।
ମୋର କଥା ସର୍ବେ ଶୁଣି ହୋଇବେ ଯେ ମୁକ୍ତ
ତୋତେ ମୁଁ ମାଇଲି ତୁ ଯେ ଯିବୁ ସ୍ୱର୍ଗପଥ ।
ବାଳୀ ବୋଇଲା କେମନ୍ତେ ଭେଟିଲୁ ସୁଗ୍ରୀବର
ମୋହର ଭୟରେ ଲୁଚିଥାଏ ଗିରିପର ।
ଶ୍ରୀରାମ ବୋଇଲେ ଯୋଗେ ପାଇଲି ମୁଁ ଭେଟ
ବିକଳ ପାଇଲି ଦେଖିଣ ତାର କଷ୍ଟ ।
ମୋହର ଦୁଃଖ ଜାଣିଣ ତାହାକୁ ଦୟା କଲି
ମଇତ୍ର ହୋଇ ଛଳେ ତୋତେ ନାରାଚ ବିନ୍ଧିଲି
ଶ୍ରୀରାମ ବଚନେ ବୋଇଲା ଖଡ଼୍‌ଗର ସୁତ
କେଉଁ ଛଳେ ବିନ୍ଧିଲୁ ନାରାଚ ମୋତେତ ।
ଶ୍ରୀରାମ ବୋଇଲେ ତୁ ଘରଣୀ ଆଗେ କହି
ଶ୍ରୀରାମ ସୁଗ୍ରୀବର ଲକ୍ଷଣ ମାରିବଇଁ ।
ତେଣୁ ସେ ତୋତେ ମୋର ମାରିବା ପ୍ରମାଣ
କେତେ ବଳବନ୍ତରେ ନ ଜାଣୁ ମୋତେ ପୁଣ
ତୋହରି ପିତା ଯେ ବାସବ ଅଟଇ
ଦିନକେ କୋଟି ବାସବ ମୁହିଁ ମାରିବଇଁ ।
ତୁ ଛାର ବାନରରେ ଗୁମାନି ମୋତେ ପୁଣ
ବିଚାରିଲେ ଯମକୁ ବାନ୍ଧିବି ଏହିକ୍ଷଣ ।

ଏବେ ମୋର ଦୟା ହେଲା ଯିବୁ ସ୍ୱର୍ଗସ୍ଥାନ
ଷୋଳଯୁଗ ଉତ୍ତାରେ ହସ୍ତିନାରେ ହେବୁ ଜନ୍ମ ।
ତେତେବେଳେ ମୋହର ହୋଇବୁ ଧର୍ମ ଅଙ୍ଗ
ଦ୍ୱିତୀକୃଷ୍ଣ ବୋଲାଇଣ ନେବୁ ତୁ ମୋର ପଦ ।
ତୋତେ ଘେନି ମୁଁ ଅସୁର ଦୁଷ୍ଟଜନ ମାରି
ଭାରତ ଯୁଦ୍ଧରେ ସାରଥି ହେବି ତୋରି ।
ନନ୍ଦିଘୋଷ ରଥେ ବସିବୁ ଯେତେବେଳେ
ତୋହରଘରଣୀ ତାରା ଭଏଣୀ ହେବ ମୋରେ
ବାଳୀରାଜା କହିଲା ପିତା କହିଣ ଥିଲା ଯାହା
ସେ କଥା ତୋରଠାରୁ ଶୁଣିଲି ରଘୁନାହା ।
ନିଜ ରୂପ ତୋର ଦେ... ଏବେ ମୋତେ
ଶ୍ରୀରାମ ବୋଇଲେ ତୁ ଚାହାଁ ସ୍ଥିରଚିତ୍ତେ ।
ଶୁଣିଣ ବାଳୀବୀର ଶ୍ରୀରାମେ ଚାହିଁଦେଲା
ଚତୁର୍ଭୁଜ ମୂରତି ନେତ୍ରରେ ଦେଖିଲା ।
ନିସ୍ତରିଲି ବୋଲିଣ ଶିରେ ଦେଲା କର
ବୋଇଲା ସୁଗ୍ରୀବରରେ ଜନ୍ମ ତୋର ସାର ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ବାସବ କୁମର ଦେଖିଲି ପରଂବ୍ରହ୍ମ ମୂର୍ତ୍ତି ।
ଜୟଦୁର୍ଗା ବୋଇଲେ ସେଠାରୁ କିସ ହେଲା
ଈଶ୍ୱର ବୋଇଲେ ଶୁଣ ରସ ଭଲା ।
ଶ୍ରୀରାମ ବୋଇଲେ ତୋ କୁମର ଅଛି କାହିଁ
ବାଳୀରାଜା ବୋଇଲା ସେ ମାମୁଁଘରେ ଯାଇ
ରାମଙ୍କୁ ବାଳୀରାଜା ବଚନ କହଇ
ମୋ ପୁତ୍ର ଘରଣୀ ତୋତେ ଲାଗିଲାଇଁ ।
ମଏରୁକ୍ଷ ରାଜା ଯେ ଅଟଇ ତାର ଅଜା
ଏଠାରୁ ଚାଳିଶ ଯୋଜନରେ ହେଜା ।
ଶ୍ରୀରାମ ବୋଇଲେ ହନୁ ଯାଇଣ ଘେନି ଆସୁ
ଦେଖିଣ ତୋତେ ସେ ଯେ ତୋର ମନତୋଷୁ
ଏତେ ବୋଲି ଶ୍ରୀରାମ ହନୁକୁ ଆଜ୍ଞା ଦେଲେ
ବାଳୀର କୁମରକୁ ଆଣ ତୁ ବୋଇଲେ ।
ଶୁଣିଣ ହନୁମନ୍ତ ବିକ୍ରମି ଚଳିଗଲା
ମୟେ ବାନରପୁରେ ପ୍ରବେଶ ହୋଇଲା ।
ଅଙ୍ଗଦକୁ ଦେଖିଣ କଲାକ ନମସ୍କାର
ଅଙ୍ଗଦ ବୋଇଲା ହନୁ ବଡ଼ ଖରତର ।
ମାରୁତି ବୋଇଲା ବେଗ ହୋଇ ଆସ
ତୋହର ବାପକୁ ରାମ କଲେ ପ୍ରାଣେ ନାଶ ।
ଅଙ୍ଗଦ ବୋଇଲା ମୋର ପୂର୍ବ ଭାଗ୍ୟ ହେଲା
ନାରାୟଣ ହସ୍ତେ ଯେବେ ମୋ ପିତା ନାଶଗଲା
ପରଂବ୍ରହ୍ମ ମୂର୍ତ୍ତି ଯେ ଅଟନ୍ତି ନାରାୟଣ
ଗୌତମ ଋଷି ମୋତେ କହିଛନ୍ତି ଜାଣ ।
ସେ ନାରାୟଣ ଦର୍ଶନେ ମୋ ପିତା ହେବ ମୁକ୍ତ
ମାତା ସତୀ ହେବେ କହିଛନ୍ତି ତପୋବନ୍ତ ।
ଏତେ ବୋଲି ଅଙ୍ଗଦ ଶୀଘ୍ର ଚଳିଗଲା
ମଉଳା ଅଜା ଆଗଙ୍କ ଆଗରେ କହିଲା ।
ଦିଗଦଳନ ରଥରେ ଚଢ଼ିଣ କୁମର
ପ୍ରବେଶ ହୋଇଲା ଆସି କିଷ୍କିନ୍ଧ୍ୟା ନଗର ।
ଶ୍ରୀରାମଙ୍କୁ ଦେଖିଣ ଚରଣେ ଲୋଟିଲା
ଉଠି ଅଙ୍ଗଦ କୁମର ଚରଣେ ଓଳଗିଲା ।
ସେଠାରୁ ସୁଗ୍ରୀବର ଚରଣରେ ପଡ଼ି
ଦେଖିଣ କପିରାଣ ତୋଳିଣ ତାକୁ ଧରି ।
କୋଳରେ ଧରିଣ ଚୁମ୍ବନ ସେ ଦେଲା
ଚରଣ ଧରିଣ ଲୋଟନ୍ତି ଅନର୍ଗଳା ।
ଦେଖିଣ ବାଳୀର କୋଳରେ ଆଉଜାଇ
ବୋଇଲା ରୋଦନ ନକର ତନୟୀ ।
ଦେଖିଲି ନାରାୟଣ ମୁକ୍ତି ମୁଁ ଲଭିଲି
ପରଂବ୍ରହ୍ମ ହସ୍ତରେ ଜୀବନ ହରାଇଲି ।
ଏବେ ତୁ ଶ୍ରୀରାମ ସୁଗ୍ରୀବ ବୋଲେ ଥିବୁ ।
ଆଜିଠାରୁ ତୋର ପିତା ସୁଗ୍ରୀବରେ ବାବୁ
ବଡ଼ ଯଶ ପାଇବୁ ମାଇଲେ ରାବଣ
ଯୁଗେ ଯୁଗେ ତୋର କଥା ରହିବ ପୁରାଣ ।
ଏତେ ବୋଲି ପୁତ୍ରର ମୁଖେ ଚୁମ୍ବ ଦେଲା
ପାର୍ବତୀ ବୋଇଲେ ସେଠାରୁ କିସ ହେଲା ।
ଈଶ୍ୱର ବୋଇଲେ ଶୁଣ ଭଗବତୀ
ପୁତ୍ରକୁ ଦେଖିଣ ସନ୍ତୋଷ ଋକ୍ଷପତି ।
ଶ୍ରୀରାମଙ୍କୁ ଚାହିଁଣ ବାଳୀରାଜା କହି
କେହ୍ନେ ରଘୁବଂଶ ରାଜା ଧାର୍ମିକ ବୋଲାଇ ।
ସେହି କୁଳରେ ହରିଚନ୍ଦନ ରାଜା ଥିଲେ
ଏ ମହୀମଣ୍ଡଳରେ ଅନେକ କୀର୍ତ୍ତି କଲେ ।
ସେ ବଂଶରେ ରାଜା ମୁଚୁକୁନ୍ଦ ଜାଣ
କୀର୍ତ୍ତି କରି ହୋଇଲା ସେ ଦେବଙ୍କ ସମାନ ।
ବିକୁନ୍ଦ ତାର ସୁତ ସେ ଅତି ଧାର୍ମିକ
ତାହାକୁ ପ୍ରଶଂସା କରନ୍ତି ବହୁ ଲୋକ ।
ମାନଧାତା ନୃପତି ସପ୍ତଦୀପେ ରାଏ
ସ୍ୱର୍ଗରେ ପୁଣି ସେ ପ୍ରଶଂସା ଯାଇ ପାଏ ।
ରଘୁନାଥ ନୃପତିର ମହିମା ଅପାର
ଅଶ୍ୱମେଧ ଯାଗକଲା ସେ ଶତେବାର ।
ଅଜୟେ ମହାରାଜା ଇନ୍ଦ୍ରଙ୍କୁ ଜିଣିଲା
ସ୍ୱର୍ଗେ ସୁରରାଜା ପଣେ ସେ ବସିଲା ।
ରଘୁରାଜା କହିବାରୁ ଇନ୍ଦ୍ରଙ୍କୁ ଦାନ ଦେଲା
ସନ୍ତୋଷରେ ସୁରରାଜା ସ୍ୱର୍ଗରେ ରହିଲା ।

ଭାଗିରଥୀ ଗଙ୍ଗା ଆକାଶୁ ଆଣିଲେ
ସଗର ନୃପତି ସାଗର ଡୋଳାଇଲେ ।
ଇକ୍ଷ୍ୱାକୁ ନୃପତି ଜଗତେ ବିଖ୍ୟାତ
ଧରଣୀ ତାର ଗୁଣେ ପାଇଲା ଶୋଭନ୍ତ ।
ସେହି ବଂଶେ ଜନମ ହୋଇଲେ ଦଶରଥ
ଶନିଙ୍କି ଜିଣିଲା ସେ ହୋଇ ସେ ସମର୍ଥ ।
ସେହି ବଂଶରେ ଜନ୍ମ ହୋଇଲ ତୁମ୍ଭେ ଜାଣ
ଦୁଷ୍ଟ ମାରିଣ ସନ୍ଥ ପାଳିବାରେ ମନ ।
ଧର୍ମବନ୍ତ ବୋଲିଣ ଦେବତା କୂଟକଲେ
ଦୁଷ୍ଟଜନଙ୍କୁ ସେ ମାରିବାକୁ ଅଇଲେ ।
ତେଣୁ କରି ସାନଭାଇକୁ ରାଜ୍ୟରେ ରଖାଇଲେ
ଅମାନାତ୍ୟଗଣଙ୍କୁ ରାଜ୍ୟ ସମର୍ପିଲେ ।
ଦେବତାଏ ନୃପତି ବିଚାରି ଯେ କଲେ
ପ୍ରଜାମାନେ ଅତି ସୁଖରେ ଦିନ ନେଲେ ।
ବନଜୀବ ପରାୟେ ବଞ୍ଚିଲୁ ତୁ ପୁଣି
ଏହାସବୁ ଅଟେ ତୋର କର୍ମର କାରେଣୀ ।
ମୋତେ ତୁ ମାଇଲୁ ମୁକ୍ତି ଦେବାପାଇଁ
ଜାଣିଲି ନାରାୟଣ ନିଶ୍ଚେ ଅଟୁ ତୁହି ।
ମୋତେ ମାରିବାରୁ ତୋହର ହେବ କାର୍ଯ୍ୟ
ବିଶ୍ୱାସଘାତକୀ ତୁ ନୋହିଲୁ ରଘୁରାଜ ।
ପୁରାଣ ଶାସ୍ତ୍ରରେ ଶୁଣିଅଛୁ ଯେଣୁ
ମୋର ଦୁଷ୍ଟପଣ ଜାଣି ମାଇଲୁ ତୁ ତେଣୁ ।
ଶ୍ରୀରାମ ବୋଇଲେ ସୁଗ୍ରୀ ମୋର ମିତ
ତୋତେ ମାଇଲି ମୁଁ ଯେ ତାହାରି ନିମିତ୍ତ ।
ତୁ ଏହାର ଭାଇ ଅଟୁ ସହୋଦର
ତୁ ନ ମଲେ କେମନ୍ତେ ମହୀ ହୋନ୍ତା ସ୍ଥିର ।
ପିତା ତୋହର ଏ ରାଜ୍ୟେ ରାଜା କଲା
ସୁଗ୍ରୀକି ଯୁବରାଜା ମୋଡ଼ୀ ପୁଣ ଦେଲା ।
ପିତାର ସତ୍ୟକୁ ତୁ ଲଙ୍ଘନ କଲୁ
ରାଜ୍ୟରୁ ବାହାର କରିଣ ତାଙ୍କୁ ଦେଲୁ ।
ଏକାରେ କିଷ୍କିନ୍ଧ୍ୟା ରାଜ୍ୟ ତୁ ଭୋଗ କଲୁ
ତା ଘରଣୀ ଭାଇ ବୋହୂ ବଳେ ତୁ ହରିଲୁ ।
ଏତେକ ଅଧର୍ମ କିମ୍ପା ତୁହି ଅରଜିଲୁ
ସୋଦର ଭାଇକୁ ମାରି ପାପ ଅରଜିଲୁ ।
ତେଣୁ ତୋତେ ଶର କଲି ମୁଁ ପ୍ରହାର
ତେଣୁ ସେ ଅନ୍ୟାୟ ତୁରେ କଲୁ କପିବୀର ।
କଳିଯୁଗ ଅନ୍ୟାୟେ ତୋ ଶରୀରେ ବ୍ୟାପିଲା
ଭାଇକୁ ଭାଗ ନ ଦେଲୁ ଖଡ଼୍‌ଗଦର ବଳା ।
ଚାଣ୍ଡାଳ ଏହି ବୁଦ୍ଧି ନକରେ ମନରେ
ବାନର ଜାତି ସିନା ଅଟୁ ତୁ ସ୍ୱଭାବରେ ।

ଦେବତାଙ୍କର କୂଟରେ ବନକୁ ମୁଁ ଆସି
ଦୁଷ୍ଟଜନ ଦେଖିଲେ ପକାଏ ବିନାଶି ।
ଅନ୍ୟାୟ ଦେଖିଲେ ତୋର ଓପ୍ରୋଧ ନ କଲି
ତେଣୁ ଏ ଦେବକାର୍ଯ୍ୟେ ତୋତେ ମୁଁ ବଧିଲି
ସୂର୍ଯ୍ୟବଂଶେ ଜାତ ମୁଁ ଅଟଇ ଧର୍ମଶୀଳ
ପାପୀ ଦେଖି ତୋତେ ମୁଁ ପ୍ରହାରିଲି ଶର ।
ବିଶେଷେ ବାନର ତୁ ମୂର୍ଖ କପିରାଏ
ମୃଗ ବିନୋଦେ ଯେହ୍ନେ ବନସ୍ତକୁ ଯାଏ ।
କୌତୁକେ ଯେମନ୍ତେ କରେ ଜୀବନାଶ
ଆମ୍ଭର ମୂର୍ଖପଣ ନୁହେଁରେ ମର୍କଟ ।
ଯୋଗବଳେ ସୁଗ୍ରୀବ ମୋ ସଙ୍ଗେ ହେଲା ମିତ
ତାର କଥା ମୋତେ ଅଟଇ ଯେ ହିତ ।
ଦୁଷ୍ଟଜନ ସଙ୍ଗେ ମୁଁ ନୁହଇ ଯେ ମିତ
ସନ୍ଥଜନ ମୋହର ଅଟଇ ପିତୃବତ ।
ରାବଣ ମୋହର ଘରଣୀକୁ ଘେନିଗଲା
ତାହା ଶୁଣି ସୁଗ୍ରୀବ ଅନେକ ଶୋକ କଲା ।
ସେ ବୋଇଲା ଲଙ୍କାଗଡ଼ ପୋଡ଼ିବି ଯାଇକରି
ଦଶଶିରୀକୁ ମାରି ଆଣିବି ଜନକକୁମାରୀ ।
ଏସନେକ କଥା ଏବେ ବୁଝ ତୁରେ ବାଳୀ
ମଇତ୍ର ମୋହର ଅଟଇ ଶୁଦ୍ଧଶାଳୀ ।
ଯେବଣ ଦିନ ରାବଣ ସୀତାଙ୍କୁ ନେଇଗଲା
ରଥର ପରେ ସତୀ ଏହି ବାଟେ ଗଲା ।
ସୁଗ୍ରୀକି ଦେଖିଣ ଆଏ ଅଳଙ୍କାର
ପିଙ୍ଗିଦେଇ ସତୀ ଗଲା ଲଙ୍କାପୁର ।
ସେ ଆଏ ମଇତ୍ର ସାଇତି ଥୋଇଲା
ଆକାଶ ମାର୍ଗରେ ସେ ରଥ ବାହିଦେଲା ।
ଏତିକି ଭାବ ଯେ କଲା ମଇତ୍ର ତହିଁ
କାହାର ଆୟେ ବୋଲି ସମ୍ଭାଳି ଅଛି ଥୋଇ ।
ତେଣୁ ତୋତେ ନାଶିଲି ମଇତ୍ରର ପାଇଁ
ତୋତେ ଦେଖି ସୁଗ୍ରୀବର ଯାଏ ଯେ ପଳାଇ ।
ସେହି ସୁଗ୍ରୀବ ତୋର-ସଙ୍ଗେ ଯୁଦ୍ଧ କଲା
ମୋହର ଦର୍ଶନରେ ବଳ ତାର ଥିଲା ।
ଯେଉଁ ହନୁମନ୍ତ ତୋର ଭୟେ ଲୁଚିଥିଲା
ସେହି ହନୁମନ୍ତ ତୋତେ ପୋପାଡ଼ିଣ ଦେଲା ।
ଅନ୍ତଃପୁର ଭିତରେ ପଡ଼ିଲୁ ତୁ ଯାଇ
ତେବେ ତୁ ନ ଜାଣିଲୁ ବୁଦ୍ଧି ତୋର ନାହିଁ ।
ଦୁଇଥର ତୋର ଘରଣୀ ବୁଝାଇଲା
ସେ କଥାମାନ ତୋର ମନକୁ ନ ଆସିଲା।
ପାତ୍ରମନ୍ତ୍ରୀ ସାମନ୍ତ କହିଲେ ତୋରେ ବଳେ
ସେ କଥାମାନ ନ ମାନିଲୁ ଅଜ୍ଞାନ ପଣରେ ।

ବାଳୀ ବୋଇଲା ତୁମ୍ଭେ ଶୁଣ ରଘୁନାନ
ଆଜ ଏ ଲଙ୍କାଗଡ଼ରେ ଅଛି ଦଶାନନ ।
ସୁଗ୍ରୀବର ବଳେ କି କାହାକୁ ହୁଏ ମାରି
ଯାର ମୁଖ ଦେଖିଲେ ବାସବ ଭୟକରି ।
ତେତିଶକୋଟି ଦେବତା ବ୍ରହ୍ମା ଶିବ ଜାଣ
ତାହାର ଛାମୁରେ ଖଟନ୍ତି ପ୍ରତିଦିନ ।
ମୋ ତହୁଁ ଜିଣନ୍ତା ନାହିଁ ତାକୁ ଆନ
ମୋତେ ଯେବେ ଆସି କହିଥାନ୍ତୁ ପୁଣ ।
ରାବଣକୁ ମାରି ତୋର ସୀତା ଦେଇଥାନ୍ତି
ସୁଗ୍ରୀବରକୁ ମୁଁ ଯେ ଗୌରବ କରନ୍ତି ।
ତୋତେ ଆଶ୍ରେକରିବାରୁ ପାଆନ୍ତି ସେକାରଣ
ଏବେ ଜଣାଗଲା ତୋର ନ ଜାଣିବା ପଣ ।
ଶ୍ରୀରାମ ବୋଇଲେ ମୋତେ ସେକଥା ଅଛି ଜଣା
ତାରା କହିବାରୁ ତୁ ବୁଦ୍ଧିରେ ହେଲୁ ବଣା ।
ବୋଲଇ ରାମ ଲକ୍ଷ୍ମଣ ସୁଗ୍ରୀବ ମାରିବି
ମୋହର ପାତ୍ର ମନ୍ତ୍ରୀକି ଘଉଡ଼ିଣ ଦେବି ।
ଅଯୋଧ୍ୟାରେ ପୁତ୍ରକୁ ମୁଁ କରିବି ଅଭିଷେକ
ସୂର୍ଯ୍ୟବଂଶକୁ ମୁଁ କରିବି ନିପାତ ।
ଏମନ୍ତ ବଚନ ତାରା ଆଗେ କହି
ସେ କଥା ମୋର କର୍ଣ୍ଣେ ସମ୍ଭବିଲା ଯାଇ ।
ତୋହର ହସ୍ତେ ରାବଣ କେବେହେଁ ନ ମରି
ଧରିଲା ବାନର ଯେହ୍ନେ ସବୁରି ବୋଲକରି ।
ଏବେ ମୋର କାଣ୍ଡେ ପଡ଼ିଣ ଅଛୁ ଭାଇ
ଏତେବେଳେ ଚୈତନ୍ୟ କି ପାଇଲା ତୋର ଦେହୀ
ତୋତେ ଯେବେ ମୁହିଁ କରିଥାନ୍ତି ଆଶ
କେବେହେଁ ଚାରି ରାବଣ ନୁହନ୍ତେ ବିନାଶ ।
ଯେଉଁ ଲୋକ ଭାଇକି ନ ରଖି ଘଉଡ଼ିଲୁ
ଭାଇବୋହୂକୁ ସୁନ୍ଦରୀ ଦେଖିଣ ହରିଲୁ ।
ଶୁଣିଣ ବାଳୀବୀର ବୋଇଲା କଥା ସତ
ଦୁଷ୍ଟ ଲୋକକୁ ମାଡ଼ ଦେଲେ ହୁଏ ଶାନ୍ତ ।
ଶ୍ରୀରାମ ବୋଇଲେ ବାଳୀ ଏବେ ଶୁଣ
ନାରାଚ କାଢ଼ିନେଇ କରିବି ତୋତେ ଭଲ ।
ରାବଣ ମାରିକରି ଜାନକୀ ମୋର ଦେବୁ
ତୋହରି ସନମାନ ମୋଠାରେ ରଖିଥିବୁ ।
ଶୁଣିଣ ବାଳୀ ବୋଲେ ନୁହଇ ସେ କଥା
ତୁହି ଶ୍ରୀରାମ ପ୍ରତ୍ୟକ୍ଷେ ଅଟୁ ଚଉମଥା ।
ପରଂବ୍ରହ୍ମ ମୂର୍ତ୍ତି ତୁ ଅଟୁ ନାରାୟଣ
ତୋ ହସ୍ତେ ଅସୁର ହୋଇବ ନିବାରଣ ।
ଚଉଦଗଣ୍ଡା ଯୁଗ ଦେବେ ଅନୁସରି
ଦେବେ ଜାତ ହେଲେ ତୁମ୍ଭେ ନରଦେହ ଧରି ।

ରାବଣକୁ ମାରିବାକୁ ଦେବେ କଲେ ଗୁହାରି
ଦୁଷ୍ଟ ମାରିବ ତୁମ୍ଭେ ସନ୍ଥଜନ ପାଳି ।
ଯେତେବେଳେ ସୁଗ୍ରୀବର ତୋତେ ଦେଖିଲା
କୋଟିସିଂହ ତାର ହୃଦରେ ଆସିଲା ।
ଦୁଇଘଡ଼ି ପର୍ଯ୍ୟନ୍ତେ ଯୁଝିଲା ମୋର ସଙ୍ଗେ
ସୁଗ୍ରୀବର ଛାର କି ରହନ୍ତା ମୋର ଆଗେ ।
ପବନ ସୁତକୁ ଦେବତା କହିଗଲେ
ରାମଙ୍କୁ ଦେଖି ନିଜ ବଳ ପାଇବୁ ତୁ ଭଲେ ।
ସେ କଥା ଏବେ ଯେ ଦେଖିଲି ନୟନେ
ମୋତେ ଫୋପାଡ଼ି ଦେଲା ପବନର ସୂନେ ।
ମୋହରି ପରାୟେ କୋଟିଏ ବାଳୀ ହେଲେ
କୋଟିଏ ଅନୁସରି ନୋହିବେ ତୋହରେ ।
ଏ ମୋହର ଭାଗ୍ୟରେ ଦେଖିଲି ଏବେ ତୋତେ
ସପ୍ତଶାଳା ଛେଦିଲାଦିନୁଁ ମୃତ୍ୟୁ ହେଲା ମୋତେ ।
ତୁ ଦେବ ନାରାୟଣ ତା ଶର ବିନ୍ଧିଲୁ ମୋତେ
ସେତେବେଳୁଁ ହୃଦୁ ମୋର ଗଲା ପାପଯେତେ ।
ପାପଭରା ମନ ମୋର ହୋଇଲା ଏବେ ନାଶ
ତୁମ୍ଭର ଦୟାରେ ମୋତେ ମିଳିବ ସ୍ୱର୍ଗବାସ
ଏ ଯେଉଁ ସୁଗ୍ରୀବର ଅଟଇ ଭାଇ ମୋର
ଏହାକୁ ସମାନ ନୁହନ୍ତି ଦେବାସୁର ।
ଏହା କରେ ତୁମ୍ଭେ କାର୍ଯ୍ୟ ପାଇବ ବହୁତ
ଏମାନଙ୍କୁ ଘେନି କାର୍ଯ୍ୟକର ରଘୁନାଥ ।
ଅଙ୍ଗଦ କୁମରକୁ କରିଥିବ ଦୟା
ତାହାଠାରେ ପ୍ରଭୁ ହେ ନ କରିବ ମାୟା ।
ତୋହର ପୁତ୍ର ପ୍ରାୟେ ତାହାକୁ ମଣିବୁ
ମୋହର ଦୋଷ ଆଉ ତା ଠାରେ ନ ଘେନିବୁ ।
ଶ୍ରୀରାମ ବୋଇଲେ ତାକୁ କରି ନିଶ୍ଚେ ରାଜ
ରାଜ୍ୟରୁ ଅର୍ଦ୍ଧେଦେବି ନୋହିବ ମୋତେ ଲାଜ
ତୋହର କୁଳ ଯେ ଉଜ୍ଜ୍ୱଳ ହୋଇବ
ଯୁଗେ ଯୁଗେ ତା କଥା ପୁରାଣେ ରହିବ ।
ଶୁଣିଣ ବାଳୀବୀର ହରଷ ମନ ହେଲା
ବୋଇଲା ମୋର ଦୋଷ ଆଜିଠାରୁ ଗଲା ।
ବୋଇଲା ଜମ୍ବେବ ମନ୍ତ୍ରୀ ବୁଦ୍ଧିବଳେ ଥିବୁ
ସେ ମନ୍ତ୍ରୀର କଥାକୁ ସଂପ୍ରତେ କରିବୁ ।
ନଳ ନୀଳ ବେନିଜଣ ଅଟନ୍ତି ବଳବାନ
ନଳ ଛୁଇଁଲେ ଜଳରେ ଭାସଇ ପାଷଣ ।
ପଞ୍ଚମ ଯୂଥପତି ମଲ୍ଲ ମହାମଲ୍ଲ
ଅସୁର କୁଳକୁ ଅଟନ୍ତି ସେହୁ ସଲ ।
ଇକ୍ଷେକ ନୃପତି ଋକ୍ଷ ଭାଲୁ ପୁଣ
ସେମାନଙ୍କୁ ସାଧି ମୁଁ କରି ବଡ଼ପଣ ।

ଲକ୍ଷେ ରାଜାଠାରୁ ଲକ୍ଷେ ମନ୍ତ୍ରୀ ମୁଁ ଆଣିକରି
ମୋହର ପୁରରେ ରଖିଛି ଚାପଧାରୀ ।
ପଞ୍ଚାଶ ଯୂଥପତି ମଉଡ଼ମଣି ଜାଣ
ଏହାଙ୍କ ତଳେ ଦିଶାପୁର କପି ଭାଲୁ ପୁଣ ।
ମୋତେ ଜୀଆଇବୁ କହିଲୁ ରଘୁନାଥ
ମୁଁ ଜୀଇଲେ ଅସୁର ନୋହିବେ ଯେ ହତ ।
ମୋହର ଗଲେ ରାବଣ ତୋହର ସତୀ ଦେବ
ମୁଁ କହିଲେ ତୋର ଠାରେ ଶରଣ ପଶିବ ।
ଶରଣ ପଶିଲେ ତ ହୋଇବ ତୁମ୍ଭେ ଧୀରା
ଦେବଙ୍କର କାର୍ଯ୍ୟ ନୋହିବ କିଛି ପରା ।
ତୁ ନ ମାଇଲେ ଦୈତ୍ୟ ଅନ୍ୟରେ ନ ମରନ୍ତି
ଅସୁରେ ଓପ୍ରୋଧ ନ କର ରଘୁପତି ।
ତିନିପୁର ଦୈତ୍ୟଙ୍କୁ କର ତୁ ନିଶୋଧନ
ଦୁଷ୍ଟ ନିବାରଣ ଅଟଇ ତୋର ନାମ ।
କେବଳ ଲଙ୍କାରେ ସେ ରାବଣର ଭାଇ
ବିଭୀଷଣ ବୋଲିଣ ତା ନାମ ଅଟଇ ।
ସେହି ଯେ ସନ୍ଥ ଅଟେ ଶୁଣ ରଘୁନାଥ
ଶରଣ ପଶିଲେ ରଖିବୁ ତାକୁ ତୁତ ।
ରାବଣର ଅଠରଗଣ୍ଡା ଯେ କୁମର
ସେଥିରେ ବୀରବାହୁ କୁମର ଧୀର ।
ଏହାକୁ ବିଚାରି ଗତି ମୁକ୍ତି ଦେବୁ
ସେ ଯାହା କହିବ ସେ କଥା ତୁ ପାଳିବୁ ।
ମୁହିଁ ସ୍ୱର୍ଗ ଯିବି ଯେ ନ ରହଇ କ୍ଷଣେ
ତୁ ବୋଇଲେ ବିମାନ ଆଣିବେ ସୁରଗଣେ ।
ଏତେ ବୋଲି ବାଳୀ ଇନ୍ଦ୍ରର ରତ୍ନମାଳି
ଆପଣା କଣ୍ଠରୁ କାଢ଼ିଲେ ବେଗ କରି ।
ସୁଗ୍ରୀବର କଣ୍ଠରେ ଯେ ଲମ୍ବାଇଲା ତାହା
ବୋଇଲୁ ନୃପତି ଯେ ହୋଇଲୁ କପିନାହା ।
ମୋହର ଦୋଷ ଆଉ ନ ଘେନିବୁରେ ବାବୁ
ଦ୍ୱାପର ଯୁଗେ ତୋ ବଳ ଜଣାଯିବ ସବୁ ।
ରାବଣକୁ ମାରିଣ ରାମକୁ ସୀତାଦେବୁ
ତେବେ ତୁ ଚାରିଯୁଗେ କଥା ରଖାଇବୁ ।
ଏମନ୍ତ ପ୍ରବୋଧ ଯେ କଲାକ ବାଳୀବୀର
ପୁତ୍ରକୁ ବୋଲେ ସେବିବୁ ଶ୍ରୀରାମ ପୟର ।
ଯେତେବେଳେ ସେ କାଢ଼ିଲା ରତ୍ନମାଳା
ତାହାର ହୃଦୟ ଛାଡ଼ିଲା ଶିରୀ ପରା ।
ତେତେବେଳେ ସୁଗ୍ରୀବର ଗଳାରୁ ହାର କାଢ଼ି
ଆଦିତ୍ୟ ଦେଇଥିଲା ଯେଉଁ ରତ୍ନମାଳି ।
ସେ ମାଳ ଅଙ୍ଗଦ କଣ୍ଠରେ ନେଇ ଦେଲା
ଆଜଠାରୁ ଯୁବରାଜ ହୋଇବୁ ବୋଇଲା ।
ଦେଖିଣ ବାଳୀବୀର ଆନନ୍ଦ ମନର
ତାରାବତୀ ସ୍ୱପ୍ନ ହୋଇଲା ମୋତେ ସାର ।
ଶ୍ରୀରାମ ବୋଇଲେ ସେକଥା ଜଣାଇ ମୁହିଁ ପୁଣ
ଦ୍ୱାପରଯୁଗେ ତୁ ଲଭିବୁ ଜନମ ।
ସୋମବଂଶ ପଣ୍ଡୁଘରେ ହସ୍ତିନା ନଗରେ
ପାଞ୍ଚଭାଇ ଜନ୍ମ ହେବ କୋଇନ୍ତା ଗର୍ଭରେ ।
କୋଇନ୍ତାର ଇଚ୍ଛାରେ କର୍ଣ୍ଣ ଯେ ଜନମିବ
ଏ ଯୁଗେ ସୁଗ୍ରୀବର ଯେ ଜନ୍ମେ କର୍ଣ୍ଣ ନାମ ।
ପାଞ୍ଚଭାଇ ଉପରେ ହୋଇବ ଏ ବଡ଼
ବଳି ମାନଧାତା ସଙ୍ଗରେ ଲେଖା ବୀର ।
ମୋହର ଜନ୍ମ ପୁଣ ବସୁଦେବ ଘରେ
କଂସକୁ ମାରି ମିଳିବି ତୁମ ସଙ୍ଗରେ ।
ଶୁଣିଣ ସନ୍ତୋଷ ଯେ ବାସବର ବଳା
ବୋଇଲା ସୁଦୟା ମୋତେ କର ପ୍ରଭୁ ଭଲା ।
ବୋଇଲା ଶ୍ରୀରାମ ହେ ନାରାଚ ବେଗେ କାଢ଼
ଜାଣିଣ କରତ ଯେସନେକ ଦାଢ଼ ।
ଏମନ୍ତ ବଚନ ବାଳୀ କହିଲା ବସୁଦେବେ
ମୋହର ବିନୟ ବଚନ ଘେନ ଏବେ ।
ଅମରଗଣ ସଙ୍ଗେ ନିଶ୍ଚିନ୍ତେ ରହିବି
ତେମନ୍ତେ ବିଚାର କର ହେ ରାମ ବେଗି ।
ଶୁଣିଣ ଶ୍ରୀରାମ ହେ ହନୁକୁ ଅନାଇଲେ
କିମ୍ପା ସୁରଗଣ ରଥ ନ ଆଣିଲେ ।
ଅମରପୁର ଯାଏ ଯିବୁକି ହନୁ ଏବେ
ବାସବକୁ କହିବୁ କିଷ୍କିନ୍ଧ୍ୟା ଯାଅ ଏବେ ।
ଦିଗ ଦହନ ରଥ ସଙ୍ଗରେ ଘେନି ଚଳ
ତ୍ରିଦଶ ଦେବତାଙ୍କୁ ସଙ୍ଗରେ ମେଳ କର ।
ଶୁଣିଣ ମାରୁତି ଯେ ନମସ୍କାର କଲା
ଯାଉଛି ବୋଲିଣ ଦେବ ଯାଉଛି ସେ ବୋଇଲା
ବାଳୀକୁ ଶ୍ରୀରାମ ଯେ କଲେଣି ତେଣେ ହତ
ରଥ ଘେନି ବେଗେ ଚଳ କଶ୍ୟପର ସୁତ ।
ଶୁଣିଣ ବାସବ ଯେ ରଥ ସଜ କଲା
ତେତିଶକୋଟି ଦେବତାଙ୍କୁ ସଙ୍ଗତେ ଘେନିଲା
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ଆସି ହେଲା ।
ଶହେ ହାତ ଉପରେ ଉଚ୍ଚେ ସେ ରହିଲା ।
ସେ ରଥ ଦେଖିଣ ଯେ ବୋଲଇ ବାଳୀରାଜା
ତୋର କିଅତ ନାରାଚ ମୋତେ ଯେ କଲାପୂଜା ।
ଦେଖି ହନୁମନ୍ତ ଦେବଙ୍କୁ ଯାଇ ଆଣି
ଏବେ ପ୍ରତେ ଗଲୁକି ଅଯୋଧ୍ୟା ନୃପମଣି ।
ଶୁଣିଣ ଶ୍ରୀରାମ ଯେ କାଢ଼ିଲେ ତୀକ୍ଷ୍ଣ ଶର
କଟା ହୋଇନାହିଁ ହୋଇଣ ଦିଶେ ହୃଦବିମ୍ବର ।

ତେଜଭର ହୋଇ ବହିଲା ଯେ ରକ୍ତ
ନାରାଚ ଫଳରେ ଲାଗିଣ ଆସେ ଅନ୍ତ ।
ବ୍ୟଥା ପାଇ ବୀର ହୋଇଲା ବିକଳ
ବାମକର ଘେନିଣ ଆଉଁସେ ବକ୍ଷସ୍ଥଳ ।
ଘୋର ରଡ଼ି ଦେଇଣ ଆଖି ଲେଉଟାଇ
ରକ୍ତ ବାହାରିଣ ଯେ ଅଷ୍ଟ ଶରୀର ହୋଇ ।
ଦେଖିଣ ଶ୍ରୀରାମ ତାହା ବିକଳ ହୋଇଲେ
ନଗ୍ର ନରନାରୀ ଅନ୍ଧ ହୋଇଗଲେ ।
ତାରାବତୀ ବାର୍ତ୍ତା ଯେ ପାଇଲା ଅନ୍ତଃପୁରେ
ରୋଦନ କରି ନାରୀ ଯେ ଅଇଲା ତହୁଁ ଖରେ
ଦାସୀଜନମାନେ ସଙ୍ଗରେ ଗୋଡ଼ାଇ
ତାରା ମହାଦେଈ ଆସଇ ବେଗ ହୋଇ ।
ପ୍ରଥମେ ଅଙ୍ଗଦକୁ ଦେଖିଲେ ଆସିକରି
ଦ୍ୱିତୀୟେ ସୁଗ୍ରୀବକୁ ଦେଖିଲା ସେ ତରୁଣୀ ।
ତୃତୀୟେ ସକଳ ପାତ୍ର ମନ୍ତ୍ରୀ ଦେଖି
ଚତୁର୍ଥେ ପାତ୍ରମନ୍ତ୍ରୀ ଶୁଭ୍ରକେଶୀ ଦେଖି ।
ପଞ୍ଚମେ ବାଳୀକୁ ଦେଖିଲା ସେହୁ ନାରୀ
କାନ୍ଦଇ ମୁଣ୍ଡରେ ଯେ ବେନିହସ୍ତ କରି ।
ଅଙ୍ଗଦ ବୋଇଲେ ଶୁଣ ଗୋ ମାୟେ
ସାବଧାନ ହୋଇଣ ଶୁଣସି କଥାୟେ ।
ବାଳୀର କନିଷ୍ଠ ସୁଗ୍ରୀବ ମୋର ପିତା
ଶ୍ରୀରାମଚନ୍ଦ୍ର ଅଟେ ବିଷ୍ଣୁ ଯେ ଦେବତା ।
ବୋଇଲେ ପିତା ତାକୁ ମୋର କେ ମାରିପାରେ
ଗୌତମ ଋଷି ଯେତେ କହିଛନ୍ତି ବେଳେ ।
ଯେତେବେଳେ ଗୌତମ ଋଷିଙ୍କି ଭେଟିଲି
ନମସ୍କାର କରିଣ ଯେ ଚରଣେ ଲୋଟିଲି ।
ହସ ହସ ହୋଇଣ କହିଲେ ତପୋବନ୍ତ
ଅହଲ୍ୟା ଦେଖିଣ ସେ ହୋଇଣ ଉସତ ।
କୋଳେ ଧରି ମୋତେ ଦେଲେ ଘୃତ ଅନ୍ନ
ବହୁତ ତିଆରିଲେ ଯେ ମୋତେ ଗୌତମ ।
ସେ ମୋତେ କହିଲେ ମୁହିଁ ଯେ ଜାଣି
ଶ୍ରୀରାମ ଅଟନ୍ତି ଯେ ସ୍ୱୟଂ ଚକ୍ରପାଣି ।
ତୁ ଏବେ ଜନନୀ ମନେ କିଛି ନ ବିଚାର
ଏ ରାଜ୍ୟେ ନୃପତି ହୋଇବ ସୁଗ୍ରୀବର ।
ଯେତେବେଳେ ଋଷି ଯେ କହିଲେ ଏହି ବାଣୀ
ସେ ମୁନିଙ୍କୁ ପଚାରିଲି ଯେ ମୁହିଁ ପୁଣି ।
ସେ ବୋଇଲେ ସୀତା ଘେନି ବନ ଆସିବେ
ସୁଗ୍ରୀ ସଙ୍ଗେ ମିତ୍ର ହୋଇ ବାଳୀକି ମାରିବେ ।
ଗୋଦାବରୀ କୂଳରୁ ରାବଣ ସୀତା ନେବ
ସେଥିର ଛଳେ ରାମ ରାବଣ ମାରିବ ।

ସେ କଥା ଋଷି ମୋତେ ଆଗରୁ ଛନ୍ତି କହି
ଦେଖ ତୁ ପରଂ ବ୍ରହ୍ମ ନାରାୟଣ ଗୋ ସେହି ।
ତୁହି ମନାକଲୁ ମନା କଲେ ପାତ୍ରମନ୍ତ୍ରୀ ତ
କେହ୍ନେ ପିତା ମୋର ନିର୍ବତ ହୋଇଲା ପୁଣି ତ ।
ତାରାବତୀ ବୋଇଲା ଶୁଣରେ କୁମର
ପୁଣି ରହିଥିଲୁ ମଉଳାର ଘର ।
କେମନ୍ତ ବାର୍ତ୍ତା ଯେ ପାଇଣ ଆସିଲୁ
ଅଙ୍ଗଦ ବୋଇଲା ମାତା ଯେ କଥା ପଚାରିଲୁ ।
ପିଟା କହିବାକୁ ଯେ ହନୁମନ୍ତ ଗଲା
ଶ୍ରୀରାମ ଆଜ୍ଞା ବୋଲିଣ ମୋ ଆଗେ କହିଲା ।
ଶୁଣିଣ ହନୁସଙ୍ଗେ ଅଇଲି ମୁଁ ବେଗ
ଦେଖିଲି ପିଟା ମୋର ହୋଇଛି ବିଭଙ୍ଗ ।
ଶଙ୍ଖ ଚକ୍ର ଗଦା ମୋତେ ଦିଶେ ରାମ ହସ୍ତ
ପ୍ରଭୁଙ୍କୁ ଦେଖି ମୁହି କରିଲି ଦଣ୍ଡବତ ।
ସେଥିରୁ ଜାଣିଲି ଯେ ଅଟନ୍ତି ନାରାୟଣ
ମୋର ପିତା ସୁଗ୍ରୀକି ଦେଲେ ରାଜପଣ ।
ସୁଗ୍ରୀ ମୋତେ ଯୁବରାଜ ପଣେ ଶାଢ଼ୀ ଦେଲେ
ତେଣୁ ସେ ପିତା ମୋର ହରଷ ହୋଇଲେ ।
ଦେବରଥ ଅଣାଅ ରାମ ରାଣ
ଶୁଣିଣ ଶ୍ରୀରାମ ଯେ ହନୁକୁ ଡାକି ପୁଣ ।
ଶୁଣି ହନୁମନ୍ତ ଯେ ସ୍ୱର୍ଗକୁ ଚଳିଗଲା
ଦେବଙ୍କୁ ବାସବଙ୍କ ରଥରେ ଆଣିଲା ।
ଦେଖ ଆଗେ ଦଶହାତ ରଥଅଛି ଉଚ୍ଚରେ
ଦେବତାର ସବୁ ଶତେ ହାତ ଉଚ୍ଚରେ ।
ଶୁଣିଣ ତାରାବତୀ ଉ◌ଦ◌କୁ ଚାହିଁଲା
ସକଳ ଦେବତାଙ୍କୁ ଦେଖିଲାକ ଭଲା ।
ଯେ ଯାହା ବାହନରେ ବିଜେ କରି
ଦିଗଦହନ ରଥ ଆଗରେ ଦେଖି ନାରୀ ।
ଦେଖିଣ ସନ୍ତୋଷ ଯେ ତାରାବତୀ ହେଲା
ନିଶ୍ଚୟ ନାରାୟଣ ବୋଲିଣ ସେ ଜାଣିଲା ।
ପୁଣି ସେ ଯଶ କଲେ ଗୋ ଭାରତୀ
ମନରେ ବିଚାର କରେ ପୁଣି ତାରାବତୀ ।
ମୁଁ ଶୋକ ନ କଲେ ବୋଲିବେ ସର୍ବଜନେ
ଗୁରସ୍ତ ମଲାବେଳେ ନ କର ଶୋକ କ୍ଷଣେ ।
ଏମନ୍ତ ବିଚାରି ଯେ ଶୋକ କଲା ତାରା
ଗଳାରୁ ଛିଣ୍ଡାଇଲା ମୁକତାର ହାରା ।
କେଶବାସ ଅସମ୍ଭାଳ ଖଳିତ କେଶ
ଉଚ୍ଚରେ କାନ୍ଦନ୍ତେ ପୂରିଲା ଆକାଶ ।
ଆହା ସ୍ୱାମୀ ବୋଲିଣ ନିକଟକୁ ଯାଇ
ବେନିକର ଘେନିଣ ଶରୀର ଆଉଁସଇ ।

ଭୋ ନାଥ ଜଗତରେ ଆନ ଏ ପଟୁ ପୁଣ
କେ ତୋହର ପ୍ରାଣ କେହ୍ନେ ହାରିଲା ଜନ୍ତୁରାଣ ।
ବିଧବା ଅବସ୍ଥା ମୁଁ କେମନ୍ତେ ସହିବି
ସଧବା ସ୍ତିରୀଙ୍କ ମୁଖ କେମନ୍ତେ ଚାହିଁବି ।
ଅନାସ୍ତ କରିଣ କେଣେ ଗଲ ମୋତେ ଛାଡ଼ି
ପଲଙ୍କ ସୁପାବି ତେଜି ଭୂଇଁରେ ଅଛି ପଡି ।
ତିଆରିଲା ବୋଲ ମୋର ନ କଲ ଗୋସାଇଁ
ଦୁର୍ବୁଦ୍ଧି କରିଣ ତୁ ଯେ ଅଇଲୁ ଧାଇଁ ।
ଦିଗପାଳ ସମାନ ଅଟ ହେ ପ୍ରାଣ ନାଥ
ପର୍ବତ ପକାଇଣ ପାତୁ ଯେ ନିଜ ମାଥ ।
ଚାରି ସମୁଦ୍ର ଯାଇଣ ବେଗେ ସ୍ନାନ କରୁ
ଦେବ ଦାନବ ମଧ୍ୟରୁ ଶଙ୍କା ତୁ ନ ଧରୁ ।
ଏବେ କପିକୁଳର ସାଇଁ ପ୍ରାଣ ହାରି
କ୍ଷତ୍ରୀମାନେ ଦେଖିଲେ ଯାଆନ୍ତି ଡରିକରି ।
କିଞ୍ଚିତ ନାରାଚେ ତୁମେ ହରାଇଲୁ ପ୍ରାଣ
ଅଖଡ଼ରେ ତୋର ପ୍ରାଣ ଗଲା କପିରାଣ ।
ସୋଦରେ ହୋଇଣ ତୁରେ ଭଗାରି ଭାଇ
ବାଳୀରାଜା ବୋଲେ ଆଗୋ ଶୁଣ ମହାଦେଈ ।
କିମ୍ପାଇ ରୋଦନ ତୁରେ କରୁ ପ୍ରାଣ ସହୀ
ଦୁଷ୍ଟ ପଣେ ପ୍ରାଣ ଗଲା ଦୋଷ କାର ନାହିଁ ।
ସଂସାର ମାୟା ଏ ଯେ ଜୀବନ ଅସାର
ମଞ୍ଚେ ଜନ୍ମ ହୋଇ କେହି ନାହାନ୍ତି ଅମର ।
ମେରୁ କନ୍ଦର ଶିଖରେ ନିର୍ଝର କପିଳାସ
ସକଳ ପ୍ରାଣିମାନେ ଦେଖିଲେ ପ୍ରାଣନାଶ ।
ସମୁଦ୍ରମାନେ ଶୁଖିବେ ପୋଡ଼ିବେ ଅନଳ
ଏ ତିନିପୁରେ ପୁଣି ରହିବେ ଅସାର ।
ଏତେ ବେଳ ବାକି ଯେ ବୋଇଲା ଏଥି ପାଇ
ଭୋଗ କରୁଥାଇ ଅଜ୍ଞାନମତି ହୋଇ ।
ଏବେ ଶ୍ରୀରାମ ମୋତେ ନାରାଚ ମାରିଲେ
ଏହିଟି ନାରାୟଣ ମୋତେ ସ୍ୱର୍ଗକୁ ଭିଆଇଲେ ।
ମୋକ୍ଷ ହୋଇଲି ମୁଁ ଯେ ଶ୍ରୀରାମ ଦର୍ଶନେ
ସ୍ୱର୍ଗରେ ବସିବି ମୁଁ ଯେ ଇନ୍ଦ୍ରର ସନିଧାନେ ।
ଏବେ ରଘୁନାଥ ଥାଅରେ ସେବାକରି
ଏହିଟି ନାରାୟଣ ଶଙ୍ଖ ଚକ୍ର ଗଦାଧାରୀ ।
ଏ ରାମ ବୋଲ ତୁରେ କରିବୁ ପ୍ରାଣସହୀ
ପଞ୍ଚ କନ୍ୟାରେ ଲେଖା ହୋଇବୁରେ ତୁହି ।
ସତୀ ସାଧବୀ ତୋତେ ବୋଲିବେ ଜଗତେ
ରଘୁନାଥଠାରେ ବିମନ ନୋହିବୁ କଦାଚିତେ ।
ଶ୍ରୀରାମଙ୍କୁ ଅନାଇ ବୋଲଇ ବାଳୀବୀର
ଯିବଇଁ ସ୍ୱର୍ଗକୁ ମୁଁ ଯେ ସୁଦୟା ମୋତେକର ।

ଶୁଣିଣ ଶ୍ରୀରାମ ଯେ ଦେବଙ୍କୁ ଆଜ୍ଞା ଦେଲେ
ତଳକୁ ଆସୁ ପୁଷ୍ପ ବିମାନ ବୋଇଲେ ।
ଦେଖନ୍ତୁ ସକଳ ଲୋକ ନରନାରୀ ହେ ପୁଣି
ରଥରେ ବିଜେକରି ଯାଉ ଏ ନୃପମଣି ।
ଶୁଣିଣ ଦେବଦର୍ପ ସେ ରଥ ଆଗେଇଲା
ବାଳୀ ଦେଖିଣ ରଥ ସନ୍ତୋଷ ହୋଇଲା ।
ଭାରିଯା ପୁତ୍ରକୁ ଯେ ବୋଇଲା ଦେଖ ବେଗେ
ଯାହାର ଆଜ୍ଞାରେ ରଥ ମିଳିଲା ମୋର ଆଗେ ।
ଯାଉଛି ପୁଣ୍ୟ ସ୍ଥାନ ସମସ୍ତେ ବୋଲ ହରି
ଶୁଣିଣ ରାମ ଡାକି ସକଳ ଜନ ଶୁଣି ।
ନାରାୟଣ ସୁମରି ପ୍ରାଣ ଯେ ଛାଡ଼େ ବାଳୀ
ମର୍କଟ ଶରୀରୁ ପ୍ରାଣ ଯେ ଗଲା ଉଡ଼ି ।
ଦେଖିଣ ଶ୍ରୀରାମ ଯେ ଆଶ୍ଚର୍ଯ୍ୟ ହୋଇଲେ
ଧନ୍ୟରେ ବାଳୀବୀର ବୋଲିଣ ବୋଇଲେ ।
ଦେଖିଣ ତାରାବତୀ ବୁକୁରେ କର ମାରି
କ୍ଷଣ କ୍ଷଣକେ ଭୂମି ଭାଗରେ ପଡ଼ି ।
ବୋଲଇ ଭୋ ନାଥରେ ଅନାଥ କରିଗଲୁ
କେଉଁ ଗୁଣ ଦେଖି ମୋର ଛାଡ଼ି ପଳାଇଲୁ ।
ବିଧବାରେ ଗଣିତା ହୋଇଲି ଏବେ ମୁହିଁ
ମୁନିମାନେ ମୋତେ ଯେ କହିଣ ଛନ୍ତି ଯାଇ ।
ଯେବଣ କାଳେ ମୁଁ ଯେ ପିତାର ଘରେ ଥିଲି
ତପୀଜନଙ୍କ ମୁଖରୁ ମୁଁ ଶୁଣିଥିଲି ।
ସୁଲକ୍ଷଣୀ ବୋଲିଣ ବୋଲନ୍ତି ମୋତେ ସତୀ
ଏବେ ଯେ ମୋହର ହରାଇଲି ଗତି ।
ଶ୍ରୀରାମଙ୍କୁ ବୋଲଇ ଚାହିଁଣ ତାରାରାଣୀ
ଏତେ କଷ୍ଟତ ମୋତେ ଦେଲୁରେ ରଘୁମଣି ।
ଭୃତର ନିମନ୍ତେ କଲୁରେ ଏଡ଼େ କୃତ୍ୟ
ଅଦୋଷେ ସ୍ୱାମୀକୁ ମୋର ମାରିଲୁ ରଘୁନାଥ ।
ତୋହର ଘରଣୀସୀତା ଅଭୋଗ ତୋତେ ହେଉ
ଶେଷରେ ଚଉବନ ବରଷଠାରେ ଯାଉ ।
ବାର ବରଷ ଯେ ରହିବ ପିତାଘରେ
ବୟାଳିଶ ବର୍ଷ ଥିବ ଛାଡ଼ିଣ ଯିବ ହେଳେ ।
ବୈକୁଣ୍ଠ ପୁରରେ ଜାନକୀ ରହିଥିବ
ଦାସୀମାନଙ୍କୁ ସଙ୍ଗତରେ ଯେ ନେବ ।
ଜାନକୀ ଯିବାର ବୟାଳିଶ ବର୍ଷେ ତ
ତୁମ୍ଭେ ଯିବ ବୈକୁଣ୍ଠ କହିଲି ମୁଁ ତୋତେ ତ ।
ବୃଦ୍ଧ ସମୟ ଛାଡ଼ି ଯେ ଯିବ ପୁଣି
ମୋହର କଥା ଯେ ମିଛ ନ ହେବ ପୁଣି ।
ଶେଷ ଦିନରେ ଅଳ୍ପ ଭୋଗ ଯେ କରିବୁ
ଅଳ୍ପ ଭୋଗ ପରେ ସ୍ତ୍ରୀକୁ ଛାଡିବୁ ।

ଶ୍ରୀରାମ ବୋଇଲେ ତୁ ଯେ ଲଙ୍ଘିଲୁ ସ୍ୱାମୀକଥା
ବାଳୀର କହିବା କଥା କଲୁ ଯେ ଅନ୍ୟଥା ।
ଏ ଦୋଷ ତୋର ହେବ ଶୁଣରେ ତାରାରାଣୀ
ଦ୍ୱାପରେ ଜନ୍ମ ହୋଇ ଖଟ ତୁ ସପତଣୀ ।
ଶୁଣିଣ ତାରାରାଣୀ ରାମ ଚରଣେ ଲୋଟନ୍ତି
ଶାନ୍ତି ହୋଇ ଶ୍ରୀରାମ ଯେ ତାହାଙ୍କୁ ଉଠାନ୍ତି ।
ଉଠ ତୁ ସାଧବୀରେ ସ୍ୱାମୀ କାର୍ଯ୍ୟ କର
ତାରା ବୋଇଲେ ତୁମ୍ଭେ ଶୁଣ ହେ ରଘୁବୀର ।
ସାଧବୀ ବୋଲି ଯେ ବୋଇଲ କେମନ୍ତେ
ମୁହିଁ ତ ବିଧବା ଯେ ହୋଇଲି ପତି ଅର୍ଥେ ।
ଦେଖୁ ଦେଖୁ ନିଜ ପତି ହୋଇଲା ମୋର ହତ
ମୋତେ କିମ୍ପା ବୋଇଲ ରଘୁନାଥ ।
ଶ୍ରୀରାମ ବୋଇଲେ ଶୁଣିବା ହେଉ ସତୀ
ସୁଗ୍ରୀବର ଏବେ ତୋର ହୋଇଲା ନିଜ ପତି ।
ପାଟରାଣୀ ପଣରେ ତୁ ଯେ ହେବୁ ଅଭିଷେକ
କିଷ୍କିନ୍ଧ୍ୟା ନଗରେ ତୁ ପାଟରାଣୀ ହୋଇବୁ ତ ।
ତାରା ବୋଲଇ ଏ ଯେ ଅଟଇ ଅନିତ୍ୟ ତ
ସେ କଥା କିବା କହିଲ ରଘୁବୀର ତ ।
ଧାର୍ମିକ ହୋଇଣ ଅନୀତି କଥା କଲ ବିଭୁ
ନରନାରୀ ସଂସାରରେ କି ବୋଲିବେ ପ୍ରଭୁ ।
ବାଳୀର ପ୍ରାୟେ ସ୍ୱାମୀ ମୋର ନାଶ ଗଲା
ଏ କଥା ନ ବୋଲ ହେ ଦଶରଥ ବଳା ।
ଶ୍ରୀରାମ ବୋଇଲେ ତୁମ୍ଭେ ଆମ୍ଭର ସଙ୍ଗେ ଯିବ
ସତୀରେ ଗଣିତା ହେଲେ ବୈକୁଣ୍ଠକୁ ଯିବ ।
ଏଗାର ସସ୍ର ବରଷରେ ଯିବି ମୁଁ ନିଜ ସ୍ଥାନ
ଅଙ୍ଗଦ ସୁଗ୍ରୀବର ମୋ ସଙ୍ଗେ ଯିବେ ପୁଣ ।
ତାଙ୍କର ସଙ୍ଗତରେ ଯିବୁ ତୁ ସାଧବୀ
ବିଧବା ହେଲେ ବୈକୁଣ୍ଠକିଯାଏ ନ ହେଲେସିଦ୍ଧି ।
ପଞ୍ଚ କନ୍ୟାରେ ତୁ ଯେ ହୋଇବୁ ଗଣିତା
ମୋର ବୋଲ କଲେ ସୁଖୀ ଅଙ୍ଗଦର ମାତା ।
ଅନ୍ତଃକାଳେ ବୈକୁଣ୍ଠତଟେ ହୋଇବ ପ୍ରାପତ
ତୋର ନାମ ନରନାରୀ ସୁମରି ଥିବୁ ନିତ୍ୟ ।
ତୁହି ପୁଣ୍ୟସ୍ତିରୀ ଗୋ ମୋହର ବୋଲ କର
ଏ କଥାରେ ସାଧବୀରେ କିଛି ନ ବିଚାର ।
ତାରାବତୀ ବୋଇଲା ଏ କଥା ଯେବେ ସତ୍ୟ
ବିଧବା ହେଲେ ସାଧବା ହେବ ଯେ ମୋର ପୁତ୍ର
ଦାସୀକି ବୋଇଲେ କାଢ଼ ମୋର ଅଳଙ୍କାର
ଚୂଡ଼ି ବିଦ ସହିତ ବାହାର ବେଗ କର ।
ଶୁଣି ଦାସୀମାନେ ବେଗେ ସେ ଲାଗିଲେ
ତାରାବତୀ ଅଙ୍ଗକୁ ଅଭୂଷଣ କଲେ ।
ସେ ଭୂଷଣ ତାରାବତୀ ଆଗରେ ଯାଇ ମିଳି
ଗତୁ ଶତେ ଗୁଣରେ ଦିଶିଲା ସେ ପୁଣି ।
ଦେଖିଣ ତାରାବତୀ ସନ୍ତୋଷ ମନେ ହେଲା
ଶ୍ରୀରାମଙ୍କୁ ଚାହିଁଣ ବଚନ ଏମନ୍ତ କହିଲା ।
ବୋଇଲା ତୁମ୍ଭର କଥା ନିଶ୍ଚୟ ରହିଲା
ସଙ୍କେତ ଜାଣିଲି ଯେ ଆନ ହିଁ ନ କଲା ।
ଯହୁଁ ସେ ତାରାବତୀ ହୋଇଲା ତୃପତି
ଅଙ୍ଗଦକୁ ବୋଇଲେ ବିଚାରି ରଘୁପତି ।
ଏ ତୋହର ପିତା ହେବ ଅଟଇ ବୀର ବାଳୀ
ସତରଯୁଗ ପର୍ଯ୍ୟନ୍ତ ଭୋଗ ଯେ ମହୀଆଳି
ପାର୍ବତୀ ବୋଇଲେ ତୁମ୍ଭେ ଶୁଣହେ ବିଷ୍ଣୁବାସ
ବାଳୀର ଆଗରେ ରଥହିଁ ପ୍ରବେଶ ।
ଦେବତାଗଣ ଆସି ସମସ୍ତେ ମେଳ ହେଲେ
ରଥରେ ବସିଣ ବାଳୀ କେଉଁରୂପେ ଚଳେ ।
ଶୁଣିଣ ଈଶ୍ୱର ଯେ ମନରେ ହେଲେ ତୋଷ
ବୋଇଲେ ଭଗବତୀ ଶୁଣ ଗୋ ଏଥି ରସ ।
ଶ୍ରୀରାମ ଆଜ୍ଞାରେ ଦେବଗଣ ପୁଣି
ଯେ ଯାହା ବାହନରେ ଶୂନ୍ୟରେ ରହେ ପୁଣି ।
ଶହେ ହାତ ଉଚ୍ଚରେ ରହିଲେ ଦେବଗଣ
ଇନ୍ଦ୍ର ବ୍ରହ୍ମା ସହିତ ଯେତେ ଦେବ ଜାଣ ।
ଦିଗଦହନ ରଥ ଯେ ଦେବଙ୍କ ସାରଥି ଆଣି
ବାଳୀରାଜା ଆଗରେ ନେଇ ଥୋଇଲେ ପୁଣି ।
ରଥକୁ ଦେଖିଣ ସେ ଯେ ଛାଡ଼ିଲା ବାଳୀ ପ୍ରାଣ
ଦିବ୍ୟ ରୂପ ଧରିଣ ଯେ ଖଡ଼୍ଗ ନନ୍ଦନ ।
ରୂପ ଦେଖି ଅପସରୀ ଯେ ନୃତ୍ୟ କଲେ
ଚାର ବିଞ୍ଚଣୀ ସେ ଯେ ଅନେକ ଢାଳିଲେ ।
ନଗ୍ର ନରନାରୀ ଅମାନତ୍ୟ ଯେ ଚାହିଁ
ପୁତ୍ର ମନ୍ତ୍ରୀ ନାତି ତାରା ଯେତେକ ବନ୍ଧୁଭାଇ ।
ସମସ୍ତେ ଚାହିଁଛନ୍ତି ଯେ ବାଳୀ ବୀର ଗଲା
ଦେବରଥ ଧରି ରଥରେ ସେ ବସିଲା ।
ଶ୍ରୀରାମଙ୍କୁ ନମସ୍କାର ରଥ ଉପରେ ହୋଇଲା
ଯାଉଛି ସ୍ୱର୍ଗପୁର ବୋଲିଣ ସେ ବୋଇଲା ।
ଯେଉଁକଥା କରିଛୁ ଦେବ ସେ କଥା କରିବ
ନିଜସ୍ଥାନେ ଗଲେ କଥା ପାଶୋରି ନ ଦେବ ।
ଦେଖିଣ ହରଷ ଯେ ହୋଇଲେ ସକଳ
ସମସ୍ତେ ନମିଲେ ଦାଶରଥି ପୟର ।
ପୁତ୍ରବନ୍ଧୁ ଘରଣୀ ସମସ୍ତେ ଯେ ପୁଣି
ଶ୍ରୀରାମ ଚରଣେ ଲୋଟିଲେ ଧରଣୀ ।
ଶ୍ରୀରାମ ବୋଇଲେ ଉଠ ହେ ସକଳେ
ବାଳୀ ଏବେ ଯାଉଛି ଅମର ସ୍ୱର୍ଗପୁରେ ।

ଶୁଣିଣ ସମସ୍ତେ ଉଠି ଯେ ରାମତାଳି ଦେଲେ
ହରିବୋଲ ଶବଦେ ଯେ ସକଳେ ଉଠିଲେ ।
ରଥର ଉପରେ ବସି ବାଳୀ ଚଳିଗଲା
ସ୍ୱର୍ଗପୁର ରାଜା ସଙ୍ଗତେ ତାକୁ ନେଲା ।
ଆଗରେ ଦେବତାଏ ମଧ୍ୟରେ ବାସବ
ପଛରେ ବାଳୀବୀର ଚଳଇ ସଦଭାବ ।
ଦେଖୁ ଦେଖୁ ଅଦୃଶ୍ୟ ଯେ ହୋଇଲେ ସକଳେ
ସ୍ୱର୍ଗରେ ସମସ୍ତେ ମିଳିଲେ ସତ୍ୱରେ ।
ଦେଖିଣ ସକଳେ ମେଳ ହେଲେ
ଜୟ ଜୟ ଶବ୍ଦ କରି ରାମତାଳି ଦେଲେ ।
ସୁରରାଜା ବୋଇଲେ ପୁତ୍ରକୁ ମୋର ନିଅ
ନିଶ୍ଚିନ୍ତ ସ୍ଥାନରେ ନେଇଣ ୟାକୁ ଥୁଅ ।
ଶୁଣିଣ ଗନ୍ଧର୍ବ ଯେ ବାଳୀକି ଘେନିଗଲେ
ଷୋଳପୁର ଉଆସରେ ନେଇଣ ରଖିଲେ ।
ସେଠାରୁ ଦେବତାଏ ନିଜପୁର ଗଲେ
ଦେବରାଜା ବୃହସ୍ପତି ଦୁଆରେ ରହିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ବାଳୀ ଯିବାରୁ ସମସ୍ତେ ହୋଇଲେ ତୋଷମତି ।
ଶ୍ରୀରାମ ବୋଇଲେ ଶୁଣରେ ପାଟରାଣୀ
ସ୍ୱାମୀର କାର୍ଯ୍ୟ ତୁମ୍ଭେ କରଗୋ ବେଗ ପୁଣି ।
ତୋହର ନିଜ ସ୍ୱାମୀ ସ୍ୱର୍ଗକୁ ଏବେ ଗଲା
ଦେଖିଲୁ ଦେବତାଙ୍କ ସଙ୍ଗରେ ଚଳିଲା ।
କିଛି କହିଲା ମହାବାଳୀ ନ ଜାଣିବା ନୋହେ
ତା ସାକ୍ଷାତ ଦେଖିଲୁ ସାଧବୀ କୁଳନାରୀ ପ୍ରାୟେ ।
କ୍ଷତ୍ରୀ ବୋଲେ ସେ ଯେ ଏଣେ ତେଣେ
ସ୍ୱର୍ଗରେ ଦେବତାଏ ପ୍ରଶଂସା କଲେ ତେଣେ ।
ସେ ପୁଣି ଧାମକ ଯେ ଅଟଇ ମହାବୀର
ଏ ବାଳୀ ଶରୀରକୁ ଭସ୍ମ ନେଇ କର ।
ପାତ୍ରମନ୍ତ୍ରୀଙ୍କୁ ବୋଇଲେ ରାମରାୟେ
ଏ ମହା କ୍ଷତ୍ରୀ ଅଟେ ରାମ କେ କହି ନୋହେ ।
ଯେଡ଼େ ରବିତଳେ ଏ ଯେ ଥିଲା
କର୍ମର ଅନୁସାରେ ଭୋଗ ସେ ଭୁଞ୍ଜିଲା ।
ଏବେ ତାର ପିଣ୍ଡ ଦହନ କର ଯାଇ
ସୁଗ୍ରୀବରକୁ ଚାହିଁଣ ଶ୍ରୀରାମ ବୋଲଇ ।
ଯେଉଁ ବାଳୀ ତୋର ଅଟଇ ସହୋଦର
ଏହାର ପିଣ୍ଡ ନେଇ ସଂସ୍କାର ବେଗେ କର ।
ଶୁଣି ଅଙ୍ଗଦ ଯେ କରଯୋଡ଼ି କହଇ
ତୋହର ବଚନେ ନ ଫିଙ୍ଗିବୁ ଯାଇ ।
ପିତାଙ୍କୁ ମୋର କରିବୁ ଦହନ
ଏ ରାଜ୍ୟ ଅରାଜ୍ୟ ଯେ ଚଉଦଦିନ ଜାଣ ।
ପିତା ଗଲେ ଆମ୍ଭେ ଅଶୌଚ ଯେ ହୋଇ
ଏଥିର ସକାଶେ ଦେବ କହିଲୁ ବୁଝାଇ ।
ଶ୍ରୀରାମ ବୋଇଲେ ଏ କଥା ଅଟେ ତ
ରାଜା ନୋହିଲେ ରାଜା ନୋହେ ଭସ୍ମ ପିଣ୍ଡ ତ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ସୁଗ୍ରୀବରକୁ ଶ୍ରୀରାମ କହିଲେ ଆଗଭରି ।
ମଇତ୍ର ଏବେ ହୁଏ କିଷ୍କିନ୍ଧ୍ୟାର ସାର ନୃପତି
ତୋହର ହେତୁରୁ ଭାଇ ପାଇଲା ଯେ ମୁକ୍ତି ।
ତାରା ପାଟରାଣୀ ଯେ ବିବିଧ ବେଶ ହେଉ
ତୁମ୍ଭର କୋଳେ ବସିଣ ଗୌରବ ସେ ପାଉ ।
ଶୁଣିଣ ସୁଗ୍ରୀବର ଯେ କହଇ ବଚନ
ଭାଇର ପିଣ୍ଡ ପଡ଼େ ଅଚେତା ହୋଇ ପୁଣ ।
ଶ୍ରୀରାମ ଯେ ବହନ କରି ତୋଳ ବୋଇଲେ
ବିମାନ ଉପରେ ନେଇ ବେଗେ ରଖ ଭଲେ ।
ଶୁଣିଣ ପାତ୍ର ମନ୍ତ୍ରୀ ଯେ ବିମାନ ସଜ କଲେ
ଫୁଲ ଚନ୍ଦନ ଯେ ପୁଷ୍ପ ଭରି ତା ରଖିଲେ ।
ଯେ ସଉରୀ ମେଢ଼କରି ଚଉପାଶେ ବାନ୍ଧିଲେ
ସେଠାରୁ ସୁଗ୍ରୀବର ଅଙ୍ଗଦ ପାତ୍ର ମନ୍ତ୍ରୀ ଗଲେ ।
ସ୍ନାନ ସାରିଣ ଯେ ଶୌଚ ବେଗେ ହୁଅତ
ସୁଗ୍ରୀବର ବୋଇଲା ଯେ ଶୁଣ ହେ ଅମାନତ୍ୟ ।
ଅଭିଷେକ ସାମଗ୍ରୀ ଯେ ଅଣାଅ ତୁରିତ
ଶୁଣିଣ ମନ୍ତ୍ରୀଗଣ ଅଣାଇ ତୁରିତ ।
ବେଶ କଲେ ସେ ଅପାର ସୁଗ୍ରୀବକୁ
ରତ୍ନ ସିଂହାସନ ଉପରେ ବସାଇଲେ ତାକୁ ।
ଆଦିତ୍ୟଙ୍କର ସୁତକୁ ଯେ ଅଭିଷେକ କଲେ
ତାରା ମହାଦେଈ ମର୍ଦ୍ଦନ ମାର୍ଜନା ହେଲେ ।
ନାନା ବେଶରେ ବେଶ ହେଲେ ସତୀଜାଣ
ସର୍ବାଙ୍ଗେ ଅଳଙ୍କାର ପୁଷ୍ପେ ଯେ ଭୁଷଣ ।
ସିନ୍ଦୂର କଜ୍ଜ୍ୱଳ ଅଳତା ପୟରେ
ଲଗାଇଲା ପରା ସତୀ ହରଷ ମନରେ ।
ସୁଗ୍ରୀବର କୋଳରେ ବସିଲା ଯାଇ ବେଗ
ସିଂହଦ୍ୱାରେ ବାଜଣା ବାଜଇ ରାଗ ।
ବୀରଛତ୍ର ଧରିଲା ଯେ କେଶରୀର ବଳା
ସେତେବେଳେ ହନୁମନ୍ତ ତେଜ ଅନର୍ଗଳା ।
ତାରାକ୍ଷ ସୁଷେଣ ବିଞ୍ଚେଣୀ ବିଞ୍ଚେ ଘେନି
ଛୁରୀ ଖଣ୍ଡା ଘେନିଛି ଗନ୍ଧମାର୍ଦ୍ଦନ ବେନି ।
ଜମ୍ବେବ ବେଦମନ୍ତ୍ର କରନ୍ତି ଅଧ୍ୟାନ
ନଳ ଯେ ଟେକି ଧରେ କଳା ଛତୀ ପୁଣ ।
ତ୍ରାସ ଆଢ଼େଣି ଯେ ଧଇଲା ତହିଁ ନୀଳ
ସୁନା ବେତ ଧରିଣ ଆଗେ ପବନର ବାଳ ।

ମଙ୍ଗଳ ଆରତୀ ଯେ ବିଦର୍ଭ ଋଷି କଲେ
ଗବାକ୍ଷ ଧୂପକାଠି ସଜ ଯେ ଆଣି ଦେଲେ ।
ଅଭିଷେକ ହୋଇଲେ ସେ ଯେ ସୁଗ୍ରୀବ ରାଜନ
ଢ଼ାଳିଲେ ବିଦ୍ରୁମାଳି ତୀର୍ଥ ଜଳମାନ ।
ବିପ୍ରଜନ ମିଳିଣ ଅର୍ଘ୍ୟ ଯେ ବନ୍ଦାଇଲେ
ଆନନ୍ଦରେ ଯୁବତୀ ଯେ ହୁଳିହୁଳି ଦେଲେ ।
ଆପଣ ପାଗ ଯେ ଧରି ରଘୁସାଇଁ
ସୁଗ୍ରୀବର ଶିରରେ ବାନ୍ଧିଲେ ନିଜେ ନେଇ ।
ସେତେବେଳେ ଆକାଶରୁ ହୋଇଲା ପୁଷ୍ପବୃଷ୍ଟି
ଅତି ଶୋଭାବନ ଯେ ଦିଶିଲା ସୃଷ୍ଟି ।
ଅଙ୍ଗଦ କୁମରଙ୍କୁ ଡାକିଲେ ଶ୍ରୀରାମ
ବୋଇଲେ ଅଭିଷେକ ହୁଅରେ ନନ୍ଦନ
ଧର୍ମଙ୍କୁ ଦେଖାଇ ବହୁତ ତିଆରିଲେ
ଅଭିଷେକ ସାମଗ୍ରୀ ସକଳ ଅଣାଇଲେ ।
ଅଙ୍ଗଦକୁ ଅଭିଷେକ କଲେ ଯେ ତୁରିତ ନେଇ
ବଧିକୁ କୋଳେ ତାର ଚାପଧାରୀ ବସାଇ ।
ଶ୍ରୀରାମ ବୋଇଲେ ତୁମ ବଧିକୁ ବେଗେ ଆଣ
ଶୁଣିଣ ତାରାବତୀ ଅଣାଏ ବହନ ।
ଅଙ୍ଗଦ କୋଳରେ ନେଇଣ ବସାଇଲେ
ମଙ୍ଗଳ ନାରୀମାନେ ହୁଳହୁଳି ଦେଲେ ।
ଅଙ୍ଗଦ ଶିରରେ ରାମ ପାଗ ଯେ ବାନ୍ଧିଲେ
ଯୁବରାଜା ହୋଇଲୁରେ ସୁତ ବୋଇଲେ ।
ସେଠାରୁ ତାରାସୁତ ବର ଯେ ଗଲେ ଉଠି
ମଙ୍ଗଳ ଆରତୀ ସେ ଶ୍ରୀରାମ କରନ୍ତି ।
ବନ୍ଦାପନା ସାରିଣ ସେଠାରୁ ଚଳିଗଲେ
ସୁଗ୍ରୀବର ଭାରିଯା ଉମା ବର ବେନି କରେ ।
ଶ୍ରୀରାମ ଅଣାଇଲେ ଗୌରବ କରି
ଆପଣେ ରଘୁନାଥ ତାହାଙ୍କୁ ଭୁଜେ ଧରି ।
ଦୋଚାରୁଣୀ ବୋଲିଣ ସଂସ୍କାର ତାକୁ କଲେ
ସୁଗ୍ରୀବର କୋଳରେ ସମର୍ପିଣ ଦେଲେ ।
ଭୋ କପିରାୟେ ଏ ନାରୀର କିଛି ଦୋଷ ନାହିଁତ
ମୁହିଁ ଛୁଇଁବାରୁ ଦୋଷ ଯେ ଗଲା ଯାର ତ ।
ସଂସ୍କାର କରିଣ ଯେ ଏହାକୁ ସମର୍ପିଲୁ
ତାରାର ସଙ୍ଗେ ଯେ ଏହାକୁଟି ଦେଲୁ ।
ମଇତ୍ର ହେ ଏ ନାରୀର ନ ଧରିବ ଦୋଷ
ମୋହର ବୋଇଲେ କରିବ ପୌରୁଷ ।
ତାରାକୁ ପ୍ରଶଂସା ଯେ କଲେ ରାମ ରାୟେ
ସାଧୁ ସାଧୁ ସାଧବୀ ତୁ ଧନ୍ୟ ତୋ ବାପମାଏ ।
ସାକ୍ଷାତେ ସାଧବୀ ତୁ ଗୋ ନୃପତି ଦୁହିତା
ତୋହରି ପଟାନ୍ତର ଗୋ ଦିଶଇ ମୋର ସୀତା ।
ଆଣି ଯେବେ ପାରିବି ଜନକ ରାଜପୁତ୍ରୀ
ଅଇଲେ ଦେଖିବୁ ତୁଗୋ କୁରଙ୍ଗୀ ଚାରୁନେତ୍ରୀ ।
ଏଥୁ ଅନନ୍ତରେ ରାମ ସୁଗ୍ରୀବଙ୍କୁ କହନ୍ତି
ପୁତ୍ର ସମ କି ପ୍ରଜା ପାଳିବ ତୁମ୍ଭେଟି ।
ଏ ଅଙ୍ଗଦ ଅଟେ ଯେ ବାଳୀର ତନୟ
କିଷ୍କିନ୍ଧ୍ୟା କଟକରେ ଅଟଇ ପୁଣ ରାୟ ।
ଏହାଠାରେ କେବେହେଁ ତୁ ନ ଘେନିବୁ ଆନ
ଏ ତୋହର ଭଣଜା ଅଟଇ ହନୁମାନ ।
ଏହାଠାରେ ପୁଣି ତୁ ଦୟା ରଖିଥିବୁ
ଜମ୍ୱେବ ମନ୍ତ୍ରୀ ବୁଦ୍ଧିରେ ପୁଣି ତୁ ରହିବୁ ।
ସେନାପତି କୌରବମାନଙ୍କୁ କରିବୁ ଗୌରବ
ହସ୍ତୀ ଘୋଡ଼ା ରଥୀ ସଙ୍ଗରେ ସର୍ବେ ଥିବ ।
ଆମ୍ଭେ ଯେବେ ପୁଣ୍ୟଙ୍କୁ ଯାଉଛୁ ଏବେ ପୁଣ
ରାବଣ ମାରି ସୀତା ଆଣିବି ଯେ ଜାଣ ।
ଥାଟ ସଜ କରିଣ ଅରଣ୍ୟ ସେ ଯେ ଯିବୁ
ଯେବେ ମଇତ୍ର ମୋର ଘରଣୀ ଆଣିଦେବୁ ।
ଶୁଣିଣ ସୁଗ୍ରୀବ କହଇ କର ଯୋଡ଼ି
ଚାରିମାସ ରହିଲେ ଆଣିବି ସୀତା ଲୋଡ଼ି ।
ଏବେ ଏଠାରେ ଥାଅ ରଘୁପତି
ତୋହର ଚରଣେ ମୋହର ଭକତି ।
ଏ ରାଜ୍ୟ ସମ୍ଭାଳି କର ଏବେ ତୁମ୍ଭେ
ମୁଁ ଯେହ୍ନେ ଜାଣିବି ରାଜ୍ୟ ପାଳିବି ଏବେ ।
ଚତୁର୍ମାସ୍ୟ ସାରିଣ ଥାଟ ଯେ ଆମ୍ଭେ ଘେନି
ଏ ରାଜ୍ୟରେ ରହ ତୁମ୍ଭେ ଭାଇ ବେନି ।
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ମଇତ୍ର
ଯାହା ସେ କହିଲ ଏବେ ହେଲା ଅବିହିତ ।
ଚଉଦ ବର୍ଷକୁ ଯେ ପିତା ଆଜ୍ଞା ଦେଲା
ଦେଶ ରାଜ୍ୟରେ ନ ରହିବୁ ବନରେ ଥିବୁପରା ।
ପିତାର ସତ୍ୟ ଘେନି ମୁଁ ହୋ ବନେ ବୁଲିଲିଟି
ତେରବର୍ଷ ଚାରିମାସ ବନରେ ଗଲା କଟି ।
ଆଠମାସ ଅଛି ଆଉ ସତ୍ୟ ନ ଲଙ୍ଘିବି
ସତ୍ୟ ମୋ ସମ୍ପୂର୍ଣ୍ଣ ହେଲେ ଦେଶ ଫେରିଯିବି ।
ଗହନ ବନେ ରହି ଫଳ ଯେ ମୂଳ ଖାଇ
ନିର୍ଝର ପାଣି ଖାଇ ଯେ ବକଳ ପିନ୍ଧିଲଇଁ ।
ଚୌଦବର୍ଷ ଯେ ପୂରିଲେ ଯିବି ଘର
ଏକଥା ମଇତ୍ର ହେ ଅଟଇ ସତ୍ୟ ମୋର ।
ନଗ୍ରରେ ନ ରହିବି ଯେ ନ ଭୁଞ୍ଜିବି ଅନ୍ନକାର
ଏସନକ ପିତା ମୋତେ କରାଇ ସତ୍ୟଗୀର ।
ତେଣୁ ସେ ମାଲ୍ୟବନ୍ତ ପର୍ବତେ ରହିବି
ବର୍ଷା ସରିଲେ ମୁଁ ଯେ ଲଙ୍କାଗଡ଼ ଯିବି ।

ପ୍ରଥମେ ସେ ଶଙ୍କାର କଟିଛି କପିପତି
ତେବେ ସେ ଦେବ ସ୍ୱାମୀ ପ୍ରାପତି ।
ଏତେ ବୋଲି ହନୁ ଅଙ୍ଗଦ କହନ୍ତି
ସୁଷେଣ ତାରାକ୍ଷ ଯେ ଜମ୍ବେବ କହନ୍ତି ।
ନଳନୀଳ ଗନ୍ଧମାର୍ଦ୍ଦନ ବେଗେ ଆସ
ତୁମ୍ଭେ ଯେ ଥାଅ ସୁଗ୍ରୀବର ରାଜା ପାଶ ।
ତାର ଉମାକୁ କହିଣ ବାହାରେ ବେଗେ ରାମ
ତାରାବତୀ ଉମା ଯେ ଲୋଟିଲେ ଚରଣ
ବୋଇଲେ ଏ ପୁର ଯେ ଅଟେ ତୁମ୍ଭର ଜାଣ
ଏ ପୁରେ ରହିବ ତୁମ୍ଭେ ବେନି ଜନ ।
ତୁମ୍ଭ ଦର୍ଶନ ନିତି ଆମ୍ଭେମାନେ କରି
ଏ ଜନ୍ମରୁ ପାତକ ହରିବୁ ଚାପଧାରୀ ।
ଶ୍ରୀରାମ ବୋଇଲେ ଆଉ ଆଠମାସ ଗଲେତ
ସତ୍ୟ ମୋର ସମ୍ପୂର୍ଣ୍ଣରେ ହୋଇବ ପ୍ରାଣମିତ ।
ଶୁଣିଣ ବେନିନାରୀ ବୋଇଲେ ଦଣ୍ଡେ ରୁହ
ଶୀତଳ ମଣୋହି ଯେ କରିଣ ତୁମ୍ଭେ ଯାଅ ।
ଆସିଲାର ବେଳରେ ଆସିବ ଏହିବାଟେ
କହିଣ ଅଛ ଆଗେ ସୁଦୟା କରି ମୋତେ ।
ନିମ୍ବଗଛ ମୂଳରେ ରାମ ଲକ୍ଷ୍ମଣ ରହିଲେ
ଶୀତଳ ମଣୋହି ତାରା ଆଣିଦେଲେ ।
ଖଜା ପିଠା କଦଳୀ ପାଚିଲା କମଳା
କନ୍ଦମୂଳ ଟଭା ଆମ୍ବ ପଣସ ଦେଲା ।
ନାରିକେଳ ଗଜାମୁଗ ସତୀ ଆଣିଦେଲେ
ଶ୍ରୀରାମ ଲକ୍ଷ୍ମଣ ଯେ ହରଷେ ଭୁଞ୍ଜିଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ନିରସ ଭାବ ଛାଡ଼ି ହରଷ ଭାବ ଧରି ।
ଅଙ୍ଗଦକୁ ଡାକିଣ ବୋଇଲେ ସୁଗ୍ରୀବର
ପିତାର ପିଣ୍ଡ ନେଇଣ ବେଗ ଦାହ କର ।
ଶୁଣିଣ ଅଙ୍ଗଦ ଯେ ଅମାନତ୍ୟ ଡାକି
ପାତ୍ର ମନ୍ତ୍ରୀ ଘେନିଣ ଗଲ ବେଗ ଉଠି ।
ଅଗରୁ ଚନ୍ଦନ ଗୁଆଘୃତ ନେଇ
ପିତାକୁ ଘେନିଣ କେ ଚଳିଲା ଉଦ୍‌ବେଗ ହୋଇ ।
ପିତାକୁ ଦାହକରି ସମସ୍ତେ ସେଠୁ ଗଲେ
କୃଷ୍ଣବେଣୀ ନଦୀରେ ସ୍ନାହାନ କଲେ ।
ଏଥୁ ଅନନ୍ତରେ ପାହିଲା ରଜନୀ
ଅନ୍ତଃପୁରେ ରୋଦନ ଶୁଭିଲା ଘୋର ପୁଣି
ତାରାକୁ ବୋଧ କରିଣ ବାହୁଡ଼ି ଅଇଲେ
ମାଲ୍ୟବନ୍ତ ପର୍ବତରେ ଆଶ୍ରମ କଲେ ।
ସେଠାରେ ବେନିଜନ ରହିଲେକ ପୁଣ
ସ୍ନାହାନ ଶୌଚ ଯେ କଲେ ବେନିଜନ ।
ରଜନୀରେ କନ୍ଦମୂଳ ଭୁଞ୍ଜିଣ ତୋଷ ହେଲେ
ମୃଗଛାଲ ଉପରେ ଶ୍ରୀରାମ ଶୋଇଲେ ।
ରଜନୀ ପାହିଲା ଯେଣୁ ବନରେ ବୁଲି ରାମ
ପର୍ବତ ବୁଲିଣ ଦେଖିଲେ ଦିବ୍ୟସ୍ଥାନ ।
ସେ ସ୍ଥାନରେ ବିଶ୍ରାମ କରିଣ ରାମ ରହି
ଏଥୁଅନନ୍ତରେ ତୁମ୍ଭେ ଶୁଣ ଗୋ ପ୍ରାଣସହୀ ।
ସୁଗ୍ରୀବର ସେନା ସୈନ୍ୟ ଘେନି ବେଗେ ଗଲା
ମାଲ୍ୟବନ୍ତ ଗିରିରେ ପ୍ରବେଶ ଯାଇ ହେଲା ।
ହାତୀ ରଥୀ ପଏକାର ମନ୍ତ୍ରୀ ସଙ୍ଗେ ଘେନି
ଅଙ୍ଗଦ କୁମର ଯେ ଅଛଇ ଆଗେ ପୁଣି ।
ତାରାବତୀ ଉମା ଯେ ହାନ୍ଦୋଳା ଚଢ଼ି ପୁଣି
ଧବଳ ଛତ୍ର ଟେକାଇ ଆଗରେ ପୁଣି ।
ମାଲ୍ୟବନ୍ତ ପର୍ବତେ ସମସ୍ତେ ହେଲେ ଯାଇ
ବାଦ୍ୟନାଦ ଶବଦରେ କୁରୁମ ଉଛୁଳଇ ।
ଶବ୍ଦ ଶୁଣିଣ ରାମ ଲକ୍ଷ୍ମଣ ପଚାରି
କେଉଁ ରାଜା ପାରିଧିକୁ ଏ ବନରେ ଫେରି ।
ଲକ୍ଷ୍ମଣ ବୋଇଲା ଦେବ ଅଇଲା ସୁଗ୍ରୀବର
ସଙ୍ଗତେ ଦୁଇରାଣୀ ଯେ ଅଛି ତାର ।
ଅମାନତ୍ୟେ ସକଳ ଯୂଥପତି ମିଶି
ଅଙ୍ଗଦ ସହିତେ ସଙ୍ଗତେ ଘେନି ଆସି ।
ଶ୍ରୀରାମ ବୋଇଲେ ସେ ମନରେ ଭୟ କଲା
ମୁହିଁ ଆସିବାରୁ ପଛରେ ଗୋଡ଼ାଇଲା ।
ଏମନ୍ତ ସମୟରେ ମିଳିଲେ ସୁଗ୍ରୀବର
ଯାନରୁ ଓହ୍ଲାଇ ନମିଲା ପାଦତଳ ।
ଯୂଥପତି ଘେନିଣ ଅଙ୍ଗଦ ଲୋଟେ ପୁଣି
ମୃଗଛାଲ ଉପରେ ବିଜୟ ରଘୁମଣି ।
ହାନ୍ଦୋଳାରୁ ଉଭୁରି ତାରା ଉମା ଦୁହେଁ
ଆଡ଼ ଉହାଡ଼ରେ ଓଳଗି ଯାଇ ହୁଏ ।
ଶ୍ରୀରାମ ବୋଇଲେ ମିତ ଅଇଲ କିସ ପାଇଁ
ସୁଗ୍ରୀବର ବୋଇଲା ପ୍ରଭୁ ଅଟୁ ତୁହି ।
ପ୍ରଭୁ ଯେବେ ନ ରହିଲେ ମୁଁ କିମ୍ପା ଥିବିଘର
ତାରାବତୀ ଅଙ୍ଗଦ ଯେ ବୋଇଲେ ମ୍ଭୋହର
ରାଜ୍ୟ ଘୋଷ ଛାଡ଼ି ଆମ୍ଭେ ତାଙ୍କ ସଙ୍ଗେ ଥିବା
ରାମକୁ ତେଜିଣ କିମ୍ପା ସୁଖକୁ ତେଜିବା ।
ଶ୍ରୀରାମ ବୋଇଲେ ଯେ ତୁମ୍ଭେ ବେଗେ ଚଳ
ବାଳୀର କ୍ରିୟା କାର୍ଯ୍ୟ ବେଗେ ଯାଇ ସାର ।
ରାଜ୍ୟ ଭଲମନ୍ଦ ବୁଝି ପାଳ ଯେ ପରଜା
ଅଳ୍ପ ଦିନକୁ କିମ୍ପା ପାଉଛୁ ଲଜ୍ୟା ।
ସତୀ ନଥିଲେ ମୋର ମୁଁ ଯେଥାନ୍ତି ତୋରପାଶ
ଏବେ ମୁଁ ତୋଷ ହେଲି ଚଳ ତୁ ନିଜ ଦେଶ ।

ଏମନ୍ତ ଅମାନତ୍ୟ ଗଣକୁ ବୋଧ କଲେ
ଅଙ୍ଗଦ ସଙ୍ଗରେ ଯୂଥପତି ଭଲେ ।
ସମସ୍ତ ବୋଧ କରିଣ ରାମ ଗଲେ
ତାରା ମହାଦେଈ ଆଗରେ ଯାଇ ହେଲେ ।
ବୋଇଲେ କିମ୍ପାଇଁ ତୁମ୍ଭେ ଅଇଲ ଗୋ ନାରୀ
ଉଚିତ କଥା ନୁହେଗୋ ଯାଅ ବେଗେ ଫେରି ।
ମୋହର ନିଜ ପଦ ଯେ ତୋତେ ସମର୍ପିଲି
ଚାରିଯୁଗରେ କଥା ତୋହର ରଖିଲି ।
ଗୌତମ ନାରୀ ବୃହସ୍ପତିର ଘରଣୀ
ତୁମ୍ଭ ଶାଶୁ ଅଟେ ଶଚୀ ଠାକୁରାଣୀ ।
ଏହାଙ୍କର ସଙ୍ଗରେ ସରି ଯେ ତୋତେ କଲି
ପୁଣି ମୋର ନାରୀ ସଙ୍ଗରେ ଗଣିଲି ।
ତୁ ମୋହର ଅର୍ଦ୍ଧ ଅଙ୍ଗ ନ ବିଚାର ଜାଣି
ଏ ଜନ୍ମେ ମଇତ୍ର ଆର ଜନ୍ମେ ଭଗ୍ନୀ ପୁଣି ।
ତାରାବତୀ ବୋଇଲା ମୋର ମନେ ଅବିଶ୍ୱାସ
ଏ ବନରେ ନ ରହି ତୁମ୍ଭେ ଯିବ କେଉଁଦେଶ ।
ଶ୍ରୀରାମ ବୋଇଲେ ମୁଁ ଛୁଉଁଛି କୋଦଣ୍ଡ
ମିତ ସଙ୍ଗେ କପିପଲ ଯେତେବେଳେ ଭୁଣ୍ଡ ।
ତେତେବେଳେ ଲଙ୍କାକୁ ମୁଁ ଯିବଇଁ ତୁରିତ
ତାରାବତୀ ବୋଇଲା ଛୁଅଁ ମୋର ହୃଦୟତ ।
ଶୁଣିଣ ଶ୍ରୀରାମ ଯେ ହସ୍ତ ଧରିଣ କହି
ତୃପତି ହୋଇଣ ତାରା ଓଲଗିଲା ଯାଇ ।
ମାନ୍ୟଧର୍ମ କରିଣ ଚଳିଗଲା ସତୀ
ହାନ୍ଦୋଳା ଭିତରେ ବସିଲା ଝଟତି ।
ଏଥୁ ଅନନ୍ତରେ ସେ ସୁଗ୍ରୀବର ରାୟେ
ଶ୍ରୀରାମ ବୋଧିବାର ନଗ୍ରକୁ ଏବେ ଯାଏ ।
ଅମାନତ୍ୟ ଗଣ ଘେନି ସୁଗ୍ରୀବ ଫେରିଲା
କିଷ୍କିନ୍ଧ୍ୟା ନଗରେ ଯାଇ ତୁରିତ ମିଳିଲା ।
ଚତୁର୍ଥ ଦିନ ଜାଣି କ୍ରିୟା ଯେ ଆରମ୍ଭିଲେ
ଦଶଦିନ କ୍ରିୟା ବିଧି ଯେ ସାରିଲେ ।
ଏକାଦଶ ଦିନରେ ହେଲେ ଯେ ଶଉଚ
ବାରଦିନ ପରିପୂର୍ଣ୍ଣ ବାଳୀର ବିଧିମତ ।
ତେରଦିନ ବାଳୀ କଥା ପାଶୋର ହୋଇଲା
ଚଉଦଦିନେ ସୁଗ୍ରୀବର ନୃପତି ହୋଇଲା ।
ପାର୍ବତୀବୋଇଲେ ଶ୍ରୀରାମ ସେଠାରୁ କିସକଲେ
ମାଲ୍ୟବନ୍ତ ପର୍ବତରେ ଯାଇଣ ରହିଲେ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସୁଗ୍ରୀବର ଆସିବାରୁ ଲେଉଟେ ରଘୁପତି ।
ଜ୍ୟେଷ୍ଠ ଶୁକ୍ଳ ଯେ ସପ୍ତମୀ ଦିନ ଜାଣ
ମାଲ୍ୟବନ୍ତ ପର୍ବତରେ ବିଜୟ ରଘୁନାନ ।
ଲକ୍ଷ୍ମଣକୁ କହିଲେ କୁଡ଼ିଆ ବେଗେ କର
ଶୁଣିଣ ସଉମିତ୍ରୀ ଚଳିଲା ସତ୍ୱର ।
ହାତୀ ଭଙ୍ଗା କାଠ ବୋହି ଆଣିଲେ ସତ୍ୱର
ଶ୍ରମରେ ବହି ଆଣେ ସ୍ଥାନ ଯେ ଶ୍ରୀରାମର ।
ଚିତାପାଣ୍ଡୁ ଗଛମୂଳେ କୁଡ଼ିଆ ନିର୍ମାଣିଲେ
ଶିଆଳି ପତ୍ର ଆଣି ମଡ଼ିଆ ଛାଇଲେ ।
ମାଲ୍ୟବନ୍ତ ପର୍ବତେ ରହିଲେ ରଘୁପତି
ଏଥୁଅନନ୍ତରେ ଶୁଣ ଗୋ ଭଗବତୀ ।
ଆଷାଢ଼ ମାସରେ ମେଘଗଣ ଗର୍ଜନତ
ଛଳ ମେଘମାନେ ଉଇଁଲେ ନୀରଦ ।
ଘନ ଘନ କରିଣ ମାରଇ ବିଜୁଳି
ମହାଘୋର ବର୍ଷାରେ ବିଜୟ ଆର୍ଦ୍ର ବାଳି ।
ହାତୀଶୁଣ୍ଢେ ପକାଇ ପାଣି ଢାଳେ ଘନ ଘନ
ନିର୍ଘାତ ଶବଦ ପୁଣି ଚଡ଼କ ମାରେ ପୁଣ ।
ଶୀତଳ ପବନ ଯେ ବହଇ ନିତ୍ୟ ଆସି
ପୂର୍ବଦିଗ ମେଘମାନେ ପଶ୍ଚିମଦିଗେ ପଶି ।
ଦକ୍ଷିଣଦିଗ ମେଘ ଯେ ସମୁଦ୍ରେ ପାଣି ଢ଼ାଳେ
ଦଶଦିଗକୁ ସେ ଯେ ପାଣି ନେଇ ଚଳେ ।
କୁଙ୍କୁମ ବନରେ ଭଅଁର ଯେ ଖରା
ଶୂନ୍ୟରେ ତାରାମାନେ ତରଳ ହୁଏ ପରା ।
ଚନ୍ଦ୍ରର ଚଉପାଶେ ଧ୍ରୁବମଣ୍ଡଳ ବସେ
ଭିତରେ ବାହାରେ ନକ୍ଷତ୍ରଗଣ ଦିଶେ ।
କେତେବେଳେ ନିର୍ମଳ ଗଗନେ ମେଘ ନାହିଁ
କେତେବେଳେ ଶୂନ୍ୟରେ ମେଘ ଆସୁଥାଇ ।
କେତେବେଳେ ଦିବସ ଗର୍ଜଇ ଦମଦମ
ଧରଣୀ କନ୍ଦାଇ ଯେ ବହଇ ପବନ ।
ଆଷାଢ଼ ମାସ ପ୍ରବେଶ ହୋଇଲାକ ଯହୁଁ
ଝିମିଝିମି କରିଣ ବରଷା କଲେ ତହୁଁ ।
ବିଜୁଳି ଚମକାଇ ମାରଇ ଘଡ଼ଘଡ଼ି
କେଜାଣି ପର୍ବତ କି ପକାଇବ ଟଳି ।
ଘୁଙ୍ଘୁର ଦେଇ ସେ ଯେ ହୁଙ୍କାରେ ଶବଦ
କେତେବେଳେ ଚାରିକର୍ଣ୍ଣ ମେଘରଅଟେଭେଦ ।
କେତେବେଳେ କେକୀ କର୍ଣ୍ଣ ଦିଶଇ ଧଳାକଳା
କେବେ ଚଉଦିଗ ନିରୋଧ କରେ ପରା ।
କଦମ୍ବପୁଷ୍ପ ବନେ ଫୁଟନ୍ତି ନିରନ୍ତର
ଜମ୍ବୁ ଢେଉଟ ଯେ ପାଚିଲେ ଅପାର ।
ଜଳପକ୍ଷୀଗଣ ଯେ ଜାମ ହଂସରାଳୀ
କ୍ଷୀରହଂସେ ପାଣିକୁଆ ଜଳକ୍ରୀଡ଼ା କରି ।
ଏଥୁଅନନ୍ତରେ ଧାରା ଶ୍ରାବଣ ପ୍ରବେଶ
ଘୋର ବୃଷ୍ଟି କରିଣ ବର୍ଷେ ସେତ ।

ଅଖଣ୍ଡିତ ବର୍ଷାଧାରା ଚାରିଯୁଣ ତ
ବନ ପଲ୍ଲବିତ ଲତା ଯେ ତରଙ୍ଗିତ ।
ନଦୀମାନେ ବଢ଼ିଲେ ଯେ ପୂରିଲେ ପୁଷ୍କରିଣୀ
ପର୍ବତ ଉପରୁ ଗଡ଼ି ପଡ଼େ ପାଣି ।
ସୂର୍ଯ୍ୟଙ୍କର ତେଜ ପୁଣି ନ ଦିଶେ ଗଗନ
ବୃକ୍ଷମାନେ ପଲ୍ଲବିଲେ ହିମାଳେ ବରଷଣ ।
ପର୍ବତ ଉପରେ ଯେ ରାମ ଲକ୍ଷ୍ମଣ ବସି
ଅନେକ ଦୁଃଖରେ ଘୋର ବର୍ଷା ସେବୁଥାନ୍ତି ।
ଜାନକୀ ଯେଉଁ ଶାଢ଼ୀ ପକାଇ ପୁଣ ଗଲା
ସେ ଶାଢ଼ୀକୁ ରାମ ଯେ ଅଳଙ୍କୃତ କଲା ।
କେବଣ ଛାଡ଼ିବାକୁ ବୋଲି ହୁଅନ୍ତି ଅସ୍ଥିର
ଜାନକୀ ସୀତା ବୋଲିଣ ବୋଲନ୍ତି ରଘୁବୀର ।
ଭୋ ସଖି ଜାନକୀରେ କେଣେ ଛାଡ଼ିଗଲୁ
ଏ ଘୋର ବର୍ଷାରେ ତୁ ମୋତେ କଷ୍ଟ ଦେଲୁ ।
ମୁନି ଯେ ସଙ୍ଗାତୁଣୀ ତୋତେ ଆଗେ ଛାଡ଼ି
ମୋହର ଉପରେ ପଡୁ ଯେ ଘଡ଼ ଘଡ଼ି ।
ଦଶଦିଗ ଅନ୍ଧକାର ବର୍ଷା ଯେ ଘୋରକାର
ତୋହର ବିହୁନେ ମୋରନସରେ ଚିନ୍ତାଘୋର ।
ତୋହର ବସନ ତ ଅମୂଲ୍ୟ ଘୋରି ହୋଇ
ନିରେଖି ହୋଇଯାଇ ରହିଲୁ କେଉଁଠାଇଁ ।
ଅମଳାଣ ଶାଢ଼ୀକୁ କହନ୍ତି ଦେବରାୟେ
ଉଷ୍ଣକୁ ଶୀତଳ ହୋଇଲୁ ମୋର ଦେହେ ।
ଯେସନେ ଅଗୁରୁ ଚନ୍ଦନ ଅଙ୍ଗେ ବୋଳା
ସାଧୁରେ ସ୍ୱରୂପ ଜାନକୀ ଚଞ୍ଚଳା ।
ପବିତ୍ର ଅଙ୍ଗ ତୋର ଜନକ ଦୁହିତା
କେଣେ ଗଲୁ ସଖିରେ ଯେ କରି ମୋତେ ଏକା ।
ଅଞ୍ଜନ ଘେନି ନୟନେ ଚାହେଣୀ
ଏବେ ତୁ କାହାକୁ ଚାହୁଁ ଥିବୁରେ ସଙ୍ଗାତୁଣୀ ।
ଭୋ ସଖି ମୋହର ଶରୀରେ ପ୍ରାଣ ଥାନ୍ତେ
ମୁହିଁ ଥାନ୍ତେ ଆନ ତୁ ଗୋ ହୋଇଲୁ ଜଗତେ ।
ଅତି ଯେ ସୁକୁମାର ମୋହର ତନୁ
ଦିଶଇ ଶରୀର ତୋର ସୁବର୍ଣ୍ଣ ପୁଷ୍ପ ଏଣୁ ।
ଅଙ୍କ ଚାହିଁଣ ମୋତେ ହସୁ ସଙ୍ଗାତୁଣୀ
ମୋତେ ଲାଗି ଅମୂଲ୍ୟ ରସ ପୁଣି ।
ଗଜ କୁମ୍ଭ ଜିଣିଣ ତୋହର କୁଚ ବେନି
କନକ ବୃଷାଳ ଯେ ଦିଶଇ ମହାମଣି ।
କାହାକୁ ପ୍ରାପତ କଲୁ ଯେ ତାକୁ ଦେଇ
ସତ୍ୟ କରିଣ ଯେ ମୋତେ ଥିଲୁ ଦେଇ ।
କାହା ସଙ୍ଗରେ ଏବେ କରିବୁ ପ୍ରେମ
ମୋହର ତନୁ ଆନ କେ ହୁଏ ତୋତେକ୍ଷୀଣ ।

ଏ ମୋର ଘରଣୀକି କେ ନେଲା ଚୋରାଇ
ସେ କେବେ ବଞ୍ଚିବଟି କାଳକୂଟ ଖାଇ ।
ବେଗେ ପକାଇ ଯିବୁ ତୁରେ ରାବଣ
ଦିନ ପାହିଲେ ତୋତେ ମାରିବ ରଘୁରାଣ ।
ଯେବେ ତୁ ମୋତେ ଲୁଚିବୁ ଏଣେ ତେଣେ
ନିଶ୍ଚେ ପ୍ରାଣ ତୋର ହାରିବୁ ମୋର ବାଣେ ।
ବ୍ରହ୍ମା ସଦାଶିବ ତୋତେ ନ କରିବେ ରକ୍ଷା
ଅବଶ୍ୟ ମାରିଣ ଯେ ବୁହାଇବି କଥା ।
ଏ ବ୍ରହ୍ମାଣ୍ଡେ ମୋତେ ଯେକେ ଅଛି ବଳୀୟାର
ଜାଣିବା ମହିମା ଅଟଇ ତାହାର ।
ମୋହର ଘରୁ ଘରଣୀ ହରି ନେଲା
ସେଦିନୁ ତାର ପ୍ରାଣ ମୋର ହସ୍ତେ ରହିଲା ।
ଏସନକ ସମୟେ ମାଇଲା ଘଡ଼ଘଡ଼ି
ବୁକୁ ଉପରେ ଶ୍ରୀରାମ ଭୁକେ ପଡ଼ି ।
ଆହା ସୀତା ବୋଲି ରାମ କରନ୍ତି ରୋଦନ
ନୟନୁ ଅଶ୍ରୁଜଳ ପଡ଼ଇ ଘନ ଘନ ।
ଅନେକ ତିଆରିଲେ ସୌମିତ୍ରୀର ସୁତ
ଭୋ ସ୍ୱାମୀ ଅକାରଣେ ହେଉଛ ଶୋକାର୍ତ୍ତ ।
ଦଇବ ବିଧାତା ଯେ ଏଡ଼େ କଷ୍ଟ ଦେଲା
ତାହା ଲେଖିବାର ଆନ ଯେ ନୋହିଲା ।
ମୋତେ ଯେବେ ଆଜ୍ଞା ଦିଅନ୍ତି ଦେବସ୍ୱାମୀ
ସ୍ୱର୍ଗପୁର ଦେବତାଙ୍କୁ ମାରନ୍ତି ବଳେ ପୁଣି ।
ସପତ ସାଗର ଯେ ନାରାଚେ ଶୁଖାନ୍ତି
ଦଶ ଦିଗପାଳ ମାରିଣ ବଳି ଦିଅନ୍ତି ।
ଈଶ୍ୱର ବ୍ରହ୍ମାଙ୍କୁ ଯେ ରଖନ୍ତି ରସାତଳେ
ପଛେ ରାବଣକୁ ମାରନ୍ତି ବାହୁବଳେ ।
ଜାନକୀ ଆଣିଣ ତୋହର ପାଶେ ଦ୍ୟନ୍ତି
ରାବଣ ବଂଶ ଯେ ଗୋଟିଏ ନ ରଖନ୍ତି ।
ଦଶଗ୍ରୀବ ଭାରିଯାକୁ ଆଣନ୍ତି ମୁଁ ଧରି
ଅଯୋଧ୍ୟା ମହାରାଣୀଙ୍କୁ ଦିଅନ୍ତି ନେଇକରି ।
ତୁମ୍ଭର ମନେ ମାନ ଖଟନ୍ତା ମନ୍ଦୋଦରୀ
ଦେଖନ୍ତେ ଅଯୋଧ୍ୟାରେ ନରନାରୀ ।
ଶ୍ରୀରାମ ବୋଇଲେ ସାନ ଅବ୍ୟାହିତ ତୁ କହୁ
ସ୍ୱର୍ଗର ଦେବତାଙ୍କର ମନରେ କ୍ରୋଧ ବହୁ ।
ଯାହାଙ୍କର ସକାଶେ ଜନ୍ମ ମଞ୍ଚପୁର
କେତେ ଦୁଃଖ ଦେଇଛି ରାବଣ ତାଙ୍କର ।
ଦଶ ଦିଗପାଳେ କି ଦୋଷ କଲେ ତୋରେ
ଦଶ ଦିଗ ଜିଣିଛନ୍ତି ରାତ୍ର ଦିବସରେ ।
ବିଧାତାକୁ କୋପ କରୁଛ ଲକ୍ଷ୍ମଣ
ବେଦବର ନ ଥିଲେ କି ହୋଇ ରାଜ୍ୟ ପୁଣ ।

ଈଶ୍ୱରଙ୍କୁ କୋପ ସେ କରୁଛ କିମ୍ପାଇଁ
ପରଂବ୍ରହ୍ମ ମୂର୍ତ୍ତି ଯେ ଈଶ୍ୱର ବୋଲାଇ ।
ସପ୍ତ ସାଗରକୁ ଯେ ମନରେ କ୍ରୋଧ ତାର
ମୋହର ବଂଶ ସେ ଭାଗୀରଥି ନୃପବର ।
ସାଗରରାଜା ମୋ ବଂଶେ ଉଦିତ ହୋଇଥିଲା
ସପ୍ତସାଗର ସେହି ଖୋଳାଇଲା ।
ସପତ ବରଷ ଇନ୍ଦ୍ର ଯେ ବୃଷ୍ଟି କଲା
ତେବେ ସେ ସପ୍ତ ସାଗର ଜଳ ହେଲା ।
ସେ ସପ୍ତସାଗର ମୃତ୍ତିକାରେ ପୁଣ
ସପ୍ତ ଦୀପ ନିର୍ଭା ଦଇବ କଲା ଜାଣ ।
ସେ ଯେହ୍ନେ ପୁଷ୍କର ଖୋଳିଲେ ଆନ ହୁଏ
ତାହାର ମୃତ୍ତିକା ଚାରିପାଖରେ ଘେରଥାଏ ।
ସେ ଘୋର ମୃତ୍ତିକା କୁ ବନ୍ଧ ଯେ କହି
ସାଗରମାନଙ୍କ ବନ୍ଧ ଦୀପ ଯେ ଅଟଇ ।
ମେଘ ବରଷଣେ ସାଗର ଯେ ତୃପତି
ସେ ସାଗର ମାଇଲେ ଯେ କୁମ୍ଭ ନାମେଯତି ।
ଯେ ସତୀର କୁମର ଅଟଇ ଅଗସ୍ତି
ପିତା ଶତୃ ବୋଲି ସାଗର ମାଇଲାଟି ।
ସପ୍ତସାଗର ତହୁଁ ଅଗସ୍ତି ନାଶ କଲା
ଖାଲ ଟିଙ୍କର ପୁଣି ଏକତୁଲ ହେଲା ।
ତେଣୁ ସେ ଭାଗୀରଥି ମନରେ ବିଚାରି
ମୋହର ବଂଶ କୀର୍ତ୍ତିକି ରକ୍ଷି ଏବେ ମାରି ।
ଏମନ୍ତ ବିଚାରି ଯେ ଗଙ୍ଗାକୁ ମାତା କଲା
ଜାହ୍ନବୀ ବୁହାଇ ସାଗର ପୂର୍ଣ୍ଣ କଲା ।
ତେଣୁ ସେ ବରୁଣା ଯେ ହୋଇଲେ ତୃପତି
ଏରୂପେ ବଂଶର ଅଟଇ କଥାନିକି ।
ରାବଣ ଯେ ମୋହର ଘରଣୀ ନେଲା ହରି
ତାହା ଘରଣୀକି କହିଲୁ ଆଣ ବୋଲି ।
ଏ କଥା ଉଚିତରେ ନୋହେ ଭାଇ ତୋର
ସୀତାଙ୍କୁ ଆଣିବାକୁ ଏବେ ବିଚାର କର ।
ସୁଗ୍ରୀ ଧର୍ମବନ୍ତ ଯେ ତାହାକୁ ସାହା ଦେଲି
ଦୁଷ୍ଟଜନ ବୋଲି ମୁଁ ବାଳୀକି ମାରଇ ।
ପାତ୍ର ମନ୍ତ୍ରୀ ଅମାନତ୍ୟ ବାଳୀ ବୁଝାଇଲେ
ଘରଣୀ କହିଲା ତାର ଅନେକ ପ୍ରକାରେ ।
କେବେ ବାଳୀ କି ସେ କଥା ନ ମାନିଲା
ରାମ ଲକ୍ଷ୍ମଣ ସୁଗ୍ରୀକି ମାରିବି ବୋଇଲା ।
ତେଣୁ ସେ ତାକୁ ମାରି ତା ଘରଣୀ ପୁଣ
ସୁଗ୍ରୀ ତଳେ ରଖିଲି ଦେଖିଲୁ ନୟନ ।
ଯେତେବେଳେ ରାବଣ ସୀତା ମୋର ନେଲା
ଜନକ ଦୁଲଣୀ ଯେ ତାହାକୁ କହିଲା ।
ବୋଇଲା ଶ୍ରୀରାମ ସଙ୍ଗେ ନୁହରେ ବଇରୀ
ତୋର ବଂଶ ମାରିବ କୋଦଣ୍ଡ ଚାପଧାରୀ ।
ଜାନକୀ ବଚନ ନ ମାନି ଘେନିଗଲା
ମାରିବା ଲୋକର ପର୍ବତ ଚିରା ।
ରାବଣକୁ ମାରି ତାର ଘରଣୀ ମନ୍ଦୋଦରୀ
ଯାହାକୁ ଆନବର ମନୋରଥ ପୁରି ।
ରାଜାର ଘରଣୀକି ରାଜାକୁ ମୁଁ ଦେବି
ଅନ୍ୟକୁ ସମର୍ପିଲେ ଅଧର୍ମ ପାଇବି ।
ଏମନ୍ତ ବଚନ ଯେ ପାଇଲେ ରାମ ରାଣ
ତୁ ଲକ୍ଷ୍ମଣ ବୁଝିଣ ଯିବୁଟି କଥା ପୁଣ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ସେଠାରୁ ରାମ ଲକ୍ଷ୍ମଣ କି କଲେ ପୁଣ ।
ଈଶ୍ୱର ବୋଇଲେ ଶୁଣରେ ଶାକମ୍ଭରୀ
ଶ୍ରୀରାମ ଲକ୍ଷ୍ମଣ ଯେ ସେଠାରେ କୁଡ଼ିଆ କରି
ଶ୍ରୀରାମ ବୋଇଲେ ଶୁଣ ସୁମିତ୍ରା ତନୟୀ ।
ଚାରିଯୁଗ କଥା ଯେମନ୍ତ ରହି ।
ଚୌଦ ଭୁବନରେ ମହିମା ଯେ ବିଖ୍ୟାତ
ତେବେ ସେ ଜାଣିବାରେ ଜଗତ ସୁସ୍ଥ ।
ଶ୍ରୀରାମ କହନ୍ତେ ଯେ ଲକ୍ଷ୍ମଣ ହେଲେ ସୁସ୍ଥ
ବୋଇଲେ ତୁମ୍ଭେ କିମ୍ପା ହୁଅରେ ଅସ୍ଥିର ତ ।
ଶ୍ରୀରାମ ବୋଇଲେ ମୋତେ ଘୋଟିଛି ଅଜ୍ଞାନ
ତେଣୁ ସ୍ଥିର ନୋହେ ମୋର ପୁଣ ।
ଜାନକୀ ଯିବାର ଯେ ବେନିମାସ ହେଲା
ମୋହର ଶରୀର ଅଜ୍ଞାନ ଘୋଟିଲା ।
ଚୌଦମାସ ପର୍ଯ୍ୟନ୍ତ ତାର ମୋର ଦ୍ୱନ୍ଦ
ଏତେ ଭେଟିଲେ ମୁଁ ମାରିବି ଦଶସ୍କନ୍ଧ ।
ସେତେବେଳେ ମୋତେ ସୁଦଶା ପ୍ରାପତ
ସୁଖ ଶିରୀ ସମ୍ପଦ ମୋତେ ହୋଇବ ବହୁତ ।
ଶୁଣିଣ ଲକ୍ଷ୍ମଣ ଯେ କହନ୍ତି ମଞ୍ଜୁବାଣୀ
ଏବେ ନ ଭାଳ ଦେବ ଆମ୍ଭକୁ ତୋର ହାନି ।
ଭୋ ରାମ ତୋଠାରୁ କେ ଅଛି ବଡ଼ ଜ୍ଞାନୀ
ସକଳ କଥା ତୁ ଜାଣୁ ଅନ୍ତର୍ଯ୍ୟାମୀ ।
ସନ୍ତୋଷ ହୋଇଣ ଦେବ ନକର ଶୋକ
ତୋହର ଭାଳନ୍ତେ ଯେ ମୋହର ଦୁଃଖ ।
ସାମାନ୍ୟ ପୁରୁଷ ତୁ ହୋ ନୋହୁ ରଘୁରାଣ
ତୋହର କୋପରେ କି ରହିବ ପୃଥ୍ୱୀ ପୁଣ ।
ସେ ଛାର ରାବଣ ଯେ କେତେକ ଅଟେ ବଳ
ସେ ରାବଣକୁ ଶଙ୍କା କରେ ସ୍ୱର୍ଗର ଦିଗପାଳ ।
ବ୍ରହ୍ମାଣ୍ଡ ଠାକୁର ତୁ ଯେ ଶଙ୍ଖ ଚକ୍ରଧାରୀ
ମହାଲକ୍ଷ୍ମୀ ଅଟଇ ତୋର ଜନକକୁମାରୀ ।

ଏମନ୍ତ ବଚନ ଯେ ଲକ୍ଷ୍ମଣ ଭାଷିଲେ
ଶ୍ରୀରାମଙ୍କୁ ପ୍ରବୋଧି ଯେ ଏମନ୍ତ କହିଲେ ।
ବଳରାମ ଦାସ ଯେ ସେ ପାଦେ ଶରଣ
ଶ୍ରୀରାମ ଲକ୍ଷ୍ମଣ ମୋତେ କରିବେ କାରଣ ।
ଏଥୁ ଅନନ୍ତରେ ପାର୍ବତୀ ପଚାରିଲେ
ସେଠାରୁ ରାମ ଲକ୍ଷ୍ମଣ କିସ ପୁଣ କଲେ ।
ଈଶ୍ୱର ବୋଇଲେ ଶୁଣରେ ଭଗବତୀ
ମାଲ୍ୟବନ୍ତେ ଶ୍ରୀରାମ ଅଛନ୍ତି ।
ସାନୁଜ ଲକ୍ଷ୍ମଣ ଯେ ବୁଝାଇ କହେ ତାଙ୍କୁ
ଦେବତାମାନଙ୍କର ଏ କଥା କରିବାର ହେତୁ ।
ଜାନକୀ ନେବାକୁ କେ ହୁଅନ୍ତା ଭାଜନ
ପକ୍ଷକେ ଅଗ୍ନି ସ୍ନାହାନ ଅଟଇ ଯାର ପୁଣ ।
ଅଲେଖା ଦିନ ଦେବୀ ନଦୀରେ ସ୍ନାନ କରେ
ଅଶୌଚ ହେଲେ ଅଗ୍ନିରେ ସ୍ନାନ କରେ ।
ମୃତ ବେଳରେ ଆସି ନେଲା ରାବଣ
ଦେବତା ସିନା କଲେକ ପ୍ରମାଣ ।
ତେଣୁ କରି ତାର ସରିବ ବିଭୂତି
ଏସନକ ବିଚାର ଯେ କଲେ ଦେବପତି ।
ଏବେ ତୁମେ ଶ୍ରୀରାମ ହେ ନୁହ କି ବିମୁଖ
ତୁ ରାମ ମୋହର ପ୍ରତିଜ୍ଞା ଦେଖ ।
ରାବଣକୁ ମାରିବି ସବଂଶ ସହିତ
ତୋତେ ମୁଁ ଆଣିଦେବି ଜନକ ଦୁହିତ ।
ଯେବେ ସେ ପରିଘାଇ କରିବ ସମର
ଯେବେ ତାର ପକ୍ଷ ହେବ ଦେବ ସୁର ନର ।
ତୋହର ପ୍ରସାଦେ ମୁଁ କାହାକୁ ନ ଡରଇ
ତୋହ କ୍ରୋଧକୁ ମୁଁ ଯେ ଶାନ୍ତି ହୋଇଣ ଥାଇ ।
ଭୋ ସ୍ୱାମୀ ତୁମେ ନ ଭାଳ ଏବେ ମନେ
ଆଜହୁଁ ଜାଣିଥାଅ ତିନିଶ କୋଡ଼ି ଦିନେ ।
ଥାଟ ସଜ କରିଣ ଲଙ୍କାଗଡ଼ ଯେ ଯିବ
ଠଣାକରି ନିଶ୍ଚେ ସେ ରାବଣ ମାରିବ ।
ଜାନକୀ ଘେନିଯାଇ ଅଯୋଧ୍ୟା ଅଭିଷେକ
ତେବେ ସେ ସୁଖ ପାଇବ ତୈଲୋକ୍ୟ ।
ଶୁଣିଣ ରଘୁନାଥ ଯେ ଆନନ୍ଦ ମନ
ମୁଖ ବିକାଶଇ ଯେହ୍ନେ ପୂର୍ଣ୍ଣମୀର ଚନ୍ଦ୍ର ।
ଲକ୍ଷ୍ମଣ ବୋଇଲେ ଅଜ୍ଞାନ ମତି ଧରୁ
ସୁଗ୍ରୀକି ଛଳିଲୁ ଯେ ତୁ ହୁଷ୍ଟ ହୋଇଲୁ ।
କିମ୍ବା ସରୋବରକୁ ହନୁକୁ ପେଶିଦେଲୁ
ପୂର୍ବବଳ ତାକୁ ପ୍ରାପତ କରାଇଲୁ ।
ସିଂହ ଶାର୍ଦ୍ଦୁଳ ଯେ ହନୁ ସାଧ କଲା
ବାଳୀ ପରାକ୍ଷତ୍ରୀକୁ ଧରି ଫିଙ୍ଗି ଦେଲା ।

ଜମ୍ବେବ ମନ୍ତ୍ରୀ ଔଷଧ ପାଶୋରିଲା
ତୋହର ଦର୍ଶନେ ସକଳ ସେ ଗଢ଼ିଲା ।
ସୁଷେଣ ମନ୍ତ୍ରୀକୁ ସାହସ ନ ଦିଶି
ତୋହର ଦର୍ଶନରେ ପ୍ରକାଶ ହେଲା ଆସି ।
ନୀଳର ବଳ ଯେ ନିର୍ମଳ ହୋଇଥିଲା
ପଥର ମେଲନ୍ତେ ଯେ ଜଳରେ ଭାସିଲା ।
ଶୁଣିଣ ରାମ ଯେ ଲକ୍ଷ୍ମଣ କୋଳ କଲେ
ତୁ ସାନୁଜ ମୋର ପ୍ରାଣର ବୋଇଲେ ।
ତୋହର ବାହୁକୁ ମୁଁ ଯେ ସର୍ବଦା କରେ ଆଶା
ତୋତେ ଘେନିଣ ମୁଁ ଅରଣ୍ୟେ କରେ ବସା ।
ସଖା ସହୋଦର ମୋର ତୋ ବିନୁ ଆନନାହିଁ
ତୋହ ପରା ଭାଇରେ ପାଇବି ଆଉ କାହିଁ ।
ତୁ ମୋର ସଙ୍ଗେ ଥିଲେ ରାବଣ ନାଶ ଯିବ
ଜନକ କୁମାରୀ ମୋତେ ସେ ଭୋଗ ହେବ ।
ମୁହିଁ ଆଶ୍ରା ବାବୁରେ କରିଅଛି ତୋତେ
ଆଉ ଏତେ ଆଶ୍ରିତ ନୁହଇ ସର୍ବମତେ ।
ମୋହର ଅଭିମାନ ଯେ ତୋତେ ଜଣା ଅଟଇ
ଯେମନ୍ତ ପାରିବୁରେ ତେମନ୍ତ କର ତୁହି ।
ଶ୍ରୀରାମଙ୍କ ମୁଖରୁ ଏମନ୍ତ ବାଣୀ ଶୁଣି
ସନ୍ତୋଷ ହୋଇଲା ଯେ ଲକ୍ଷ୍ମଣ ବୀରମଣି ।
ତୁମ୍ଭେ ଶୁଣ ଶୂଳଧାରୀ ପାର୍ବତୀ ବୋଇଲେ
ବାଲ୍ୟବନ୍ତ ଉପରେ ରଘୁବୀର ରହିଲେ ।
ବେନିଭାଇ ସାଙ୍ଗ ହୋଇ କଥା ସେ ହୁନ୍ତି ପୁଣ
ହରଷ ବିରସରେ ସରଇ ତାଙ୍କ ଦିନ ।
ଜାନକୀ ସେ ପାଞ୍ଚ ମାସ ହୋଇଲା ଅନ୍ତର
ଅତ୍ୟନ୍ତ ଅଲିଅଳି ଅଟଇ ସତୀବର ।
ରାବଣ ଯେ ଭୟ ଦେଖାଇ ତାକୁ ଘେନିଗଲା
ସତୀର କ୍ରୋଧରେ ଅନଳ ଜାତ ହେଲା ।
ଛୁଇଁବାକୁ ଚାହିଁବାକୁ ନୋହିଲା କାର ଶକ୍ତି
ମନରେ ବିଚାରିଲେ ରାବଣେଶ୍ୱର ଯତି ।
ତାହାକୁ ବଳବନ୍ତ କଲେ ହେବି ମୁଁ ନାଶ
ଛୁଇଁଲେ ଏ ନାରୀକୁ ହୋଇଣ ଯିବି ଭସ୍ମ ।
ଶ୍ରୀରାମକୁ ଲେଉଟାଇ ଦେଲେ ହେବ ଲଜ୍ୟା
ଦେବତାଏ ନ ମାନିବେ ମୋ ପୁରକରି ତେଜ୍ୟା ।
ଏମନ୍ତ ବିଚାରି ଯେ ଅଶୋକ ବନ ଗଲା
ବୈଦୁର୍ଯ୍ୟ ମଣ୍ଡପରେ ଜାନକୀ ସେ ରହିଲା ।
ଶୁଦ୍ଧସ୍ନାନ ଦିନ ଯେ ଡକାଇ ଲଙ୍କପତି
ଅଗ୍ନିରେ ସ୍ନାହାନ କଲା ସୀତା ସତୀ ।
ଦେଖିଣ ରାବଣ ଯେ ରାଣୀହଂସପୁରକୁ
ସମସ୍ତେ ଭୟ କଲେ ଲଙ୍କାରେ ସୀତାକୁ ।

ଦେଖିଣ ରାବଣ ପାହାରୀ ଜଗାଇଲା
ତ୍ରିଜଟା ମୂଳେ ସହସ୍ରେ ଅସୁରୀ ନେଇ ଦେଲା ।
ପୁଣି କିସ କଲା ସ୍ୱାମୀ କହ ମୋ ଆଗରେ
ଶୁଣିବାକୁ ଶ୍ରଦ୍ଧା ଯେ ବଳିଛି ମନରେ ।
ଈଶ୍ୱର ବୋଇଲେ ଶୁଣରେ ଭଗବତୀ
ସତୀ ଆସିଲାଦିନୁ ପଡ଼ିଲା ବିପତ୍ତି ।
ବର୍ଷାକାଳରେ ଯେ ଭୂମିକମ୍ପ ପୁଣ
ରକ୍ତ ବର୍ଷା କରେ ଯେ ମେଘ ପ୍ରତିଦିନ ।
ଦିବସେ ନିର୍ଘାତ ପଡ଼ଇ ଘନଘନ
ରାତ୍ରରେ ଲଞ୍ଜା ନକ୍ଷତ୍ର ଉଦୟ ହୁଏ ପୁଣ ।
ଚନ୍ଦ୍ରର ତେଜଗୋଟି ଦିଶଇ ମଳିନ
ଅଗ୍ନିର ପ୍ରତାପ ଯେ ଅଟେ ପୁଣ ।
ପୁଷ୍ପର ବାସ ମାଳି ବନରୁ ତୁଟିଲା
ଫଳରେ ସ୍ୱାଦମାନ କିଛି ନ ରହିଲା ।
ଲଙ୍କାଗଡ଼ ଗୋଟି ଦିଶଇ ଅଶୋଭା
ବାସୁକୀ ହରିଲା ସେ ରତ୍ନଙ୍କର ପ୍ରଭା ।
ଏଥୁ ଅନନ୍ତରେ ଜାନକୀ ମନ ଦୁଃଖ
ଶ୍ରୀରାମ ଶ୍ରୀରାମ ବୋଲି ହୁଅନ୍ତି ବିମୁଖ ।
ନୟନୁ ଲୋତକ ଯେ ବହଇ ଅନୁକ୍ଷଣ
ବୋଇଲେ ରାମ ଲକ୍ଷ୍ମଣ କି କରୁଥିବେ ବନ ।
କାହାର ହସ୍ତ ଧରି ହୋଇଲି ଏମନ୍ତେ
ସତେ କି ଶ୍ରୀରାମ ଆସିବେକି ଏଥେ ।
ଚୌଦମାସ ଯାଏ ଅନାଇ ରହି ଥିବି
ନଇଲେ ଲଙ୍କାକୁ ଭସ୍ମ କରିଦେବି ।
ବିମାନ ଚଢ଼ିଣ ବୈକୁଣ୍ଠପୁର ଯିବି
ଦେବତାଙ୍କୁ ଦେଖିଲେ ଶାପ ଯେ ମୁହିଁ ଦେବି ।
ଏମନ୍ତ ବିଚାର ଯେ ସତୀ କରେ
ଜାଣିଣ ପବନ ଯେ କହଇ କର୍ଣ୍ଣରେ ।
ବୋଲଇ ସୈନ୍ୟବଳ ସାଧୁଛନ୍ତି ରାମ
ଅଳ୍ପଦିନେ ଲଙ୍କାକୁ ଆସିବେ ଶ୍ରୀରାମ ।
ବାନର ଭାଲୁ ଘେନି ଶ୍ରୀରାମ ଆସିବେ
ଦେବତାମାନଙ୍କୁ ଯେ ଅଭୟ ବର ଦେବେ ।
ଅସୁର ମାରିଣ ସେତ ଧୂଳି କରି ଦେବେ
ରାବଣ ବଂଶରେ ଗୋଟିଏ ନ ରଖିବେ ।
ଏମନ୍ତ ବଚନ ପବନ କହେ ପୁଣି
ଶୁଣିଣ ତୃପତି ହେଲେ ରାମରାଣୀ ।
ଏଥୁଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବିଭୀଷଣ ଦୁହିତା ତ୍ରିଜଟା ନାମେ ନାରୀ ।
ପ୍ରତିଦିନ ଲୋଟେ ଯେ ବାଳୀ ଯାଇ
ସାଙ୍ଗରେ ନେଇ ସ୍ନାହାନ ଶୌଚ କରାଇ ।
ନଦୀରେ ସ୍ନାହାନ କରି ଆସେ ପୁଣ
ଅନେକ ପ୍ରକାରେ କରଇ ବୋଧ ଜାଣ ।
ରାବଣ ଅଇଲେ ତାହାକୁ କହଇ ପୁଣ
ସହଜେ ଜାନକୀ ଅଗ୍ନିରେ ଜଳୁଥାଇ ଜାଣ
ବାହାର ଆଢ଼େ ଥାଇ କହଇ ବିଡ଼ମ୍ବଣ
ରାମନାମ ସୁମରି ହରଇ ଯେ ଦିନ ।
ନିଶାରେ ଦେବତାଏ ଦିଅନ୍ତି ଅମୃତ
କେବଳ ଜାନକୀ ଯେ ଭୋଜନ ଏକମତ ।
ଲଙ୍କାଗଡ଼ ଯାକରେ ହାଲହୋଳି
ରାବଣ ଚୋରାଇ ଆଣିଛି କେଉଁ ନାରୀ ।
ପାଞ୍ଚମାସ ହେଲା ଯେ ନ କରେ ଭୋଜନ
ଆହାର ପ୍ରାଣଶୂନ୍ୟ କରିଛି ନାରୀ ଜାଣ ।
ପବନ ଆହାରରେ ବଞ୍ଚଇ ସେ ସତୀ
ତାହା ଦେଖି ସମସ୍ତେ ଆଚମ୍ବିତ ହୋନ୍ତି ।
ବିଚାରନ୍ତି କେଉଁ ଦେବୀ ଯେ ପୁଣ
ଆସିଲାଦିନୁ ଉତ୍ପାତ ହେଉଛି ବହୁ ଜାଣ ।
ଦଶଗ୍ରୀବ ଆଣି ତା ପାଇଲା କେଉଁ ସୁଖ
ଲଭି ନ ପାରିଲା ସେ ନାରୀକି ଦେଲା ଦୁଃଖ ।
ଅଗ୍ନିପ୍ରାୟେ ଜଳେ ଯାହାର ଶରୀର
ଛୁଇଁବାକୁ ଭାଜନ ନୋହିଲା ଦଶଶିର ।
କିମ୍ପାଇଁ ରଖିଅଛି ବିପତ୍ତି ଏଥିରେ
ନିଶ୍ଚୟ ଏହି ନାରୀ ଧ୍ୱଂସିବି ଏହି ପୁରେ ।
ଏ ନାରୀ ପ୍ରକାଶେ ଏ ପୁର ଯିବ ନାଶ
ଏମନ୍ତ ବିଚାର ଅସୁରୀ କରନ୍ତି ରୋଷ ।
କେଉଁ ନାରୀ ବୋଲନ୍ତି ମରିବ ଶୁଖି
କେଉଁ ନାରୀ ବୋଲନ୍ତି ବଡ଼ ଦୁଃଖୀ ।
କେ ବୋଲେ ସେ ନାରୀଯେ କାହାକୁ କରିଆଶା
ରାବଣଠାରେ ତାହାର ନାହିଁ ଆଶା ।
ଏମନ୍ତ ବିଚାର ଯେ କରନ୍ତି ନାରୀ ଜାଣ
ଏଥୁଅନନ୍ତରେ କଥାଏ ଦେବୀ ଶୁଣ ।
ରାବଣର ତିନିକୋଟି ପାଞ୍ଚ ସସ୍ର ନାରୀ
ସୀତାର ଚରିତ୍ର ସେ ମନରେ ବିଚାରି ।
ଏଡ଼େ ଅସମ୍ଭବ ଗୋ ଦେଖିଲା ନାହିଁ ପୁଣ
ଯେଉଁ ସ୍ତିରୀ ଲଙ୍କାକୁ ଆସିଣ ଅଛି ଜାଣ ।
ସେ ସ୍ତିରୀକୁ ସାକ୍ଷାତେ ଦେଖିଲି ସେ ଯାଇ
ଅଗ୍ନିରେ ସ୍ନାହାନ କଲା ଚାନ୍ଦମୁହିଁ ।
କିଛି ହିଁ ଆହାର ନ କରଇ ପୁଣ
ପବନ ଆହାରରେ ବଞ୍ଚଇ ଦିନ ଜାଣ ।
ଅନୁକ୍ଷଣ ଶରୀର ଅନଳ ପ୍ରାୟେ ଜାଣି
କିଛି ହିଁ ନ କହିଣ ରୋଦନ କରେ ନାରୀ ।

ଏମନ୍ତେ କୁହାକୁହି ହୋନ୍ତି ରାଣୀମାନେ
ଏଥୁ ଅନନ୍ତରେ ଶୁଣ ଗୋ ଦିବ୍ୟରସ ଜନେ ।
ମନ୍ଦୋଦରୀ କହିଲା ଶୁଣ ଗୋ ଏବେ ତୁମ୍ଭେ
ଯେତେବେଳେ ଦେଖିବାକୁ ଗଲଇ ଆମ୍ଭେ ।
ଆମ୍ଭଙ୍କୁ ଦେଖିଣ ସେ ଅଗ୍ନିରେ ସ୍ନାନକଲା
ସ୍ନାହାନ ସାରିଣ ସେ ନାରୀ କହିଲା ।
ବୋଇଲା ରାବଣ ଆଶା ଛାଡ଼ ଗୋ ଏବେ
ଚୌଦମାସ ସରିବ ଦଶଗ୍ରୀବ ଏବେ ।
ବିଭୀଷଣରେ ଆଶା ବଢ଼ାଅ ସର୍ବ ନାରୀ
ରାବଣକୁ ନିଶ୍ଚେ ମାରିବେ ଚାପଧାରୀ ।
ମୁହିଁ ଯେ କମଳା ରାମ ଯେ ନାରାୟଣ
ଲକ୍ଷ୍ମଣ ଭାଇ ତାର ଈଶ୍ୱର ଅଟେ ଜାଣ ।
ଏମନ୍ତ ବଚନ କହିଲା ଶୁଣିଲା
ଅଗ୍ନିରେ ସ୍ୱରୂପ ତା ଦେହରେ ଦେଖିଲା ।
ଆହାର ନ କରଇ ପାଞ୍ଚମାସ ହେଲା
ଉତ୍ପାତ ଏଠାରେ ଅନେକ ଉପୁଜିଲା ।
ସ୍ତିରୀନାରୀ ପୁରୁଷ ଦେଖିଲେ କ୍ରୋଧ ତାର
ଅନୁକ୍ଷଣ ସ୍ୱାମୀ ଭଜଇ ମନ ତାର ।
ଏହା ଦେଖି ମୁହିଁ ଯେ ନାରଦ ସୁମରିଲି
ତାଙ୍କର ମୁଖୁ ମୁଁ ଯେ ସିଦ୍ଧାନ୍ତ ଶୁଣିଲି ।
ସେ ବୋଇଲେ ସ୍ୱାମୀ ଯେ ତୋହର ମରିବ
ଏ ପୁରେ ବିଭୀଷଣ ରାଜା ଯେ ହୋଇବ ।
ତାଙ୍କଠାରୁ ଶୁଣିଲି ନିର୍ବିକାର ମୁହିଁ
ରକ୍ଷିମାନେ ମିଛ ନ କରନ୍ତି କେହି ।
ଏମନ୍ତ ବଚନ ଯେ ମନ୍ଦୋଦରୀ କହି
ଶୁଣିଣ ସମସ୍ତେ ସ୍ୱାମୀକୁ ତେଜି ରହି ।
ବିଭୀଷଣ ସାଙ୍ଗରେ ପୀରତି ବଢ଼ାଇଲେ
ଦିନୁଦିନ ପୁଣି ସ୍ନେହ ଯେ ଦିଅରରେ ।
ପାର୍ବତୀ ବୋଇଲେ ଶୁଣ ହେ ଈଶାନ
ସେଠାରୁ ଶ୍ରୀରାମ ସେ କିସ ହିଁ କଲେ ପୁଣ ।
ଜାନକୀ ରହିବାରୁ ଜାଣିଲେ ଏବେ ଦୁଇ
ଅସୁରଙ୍କୁ ନିର୍ଦ୍ଦୟା ଯେ କରଇ ବଇଦେହୀ ।
ନିଶ୍ଚୟ ରାବଣ ଯେ ମରିବା କାଳ ହେଲା
ଉପାୟ କରି ରାମ ଯେ କେମନ୍ତେ ମାରିଲା ।
ଈଶ୍ୱର ବୋଇଲେ ଶୁଣରେ ଭଗବତୀ
ମାଲ୍ୟବନ୍ତ ଉପରେ ଶ୍ରୀରାମ ଅଛନ୍ତି ।
ରଜନୀ ଦିବସରେ ସୀତାକୁ ସୁମରି
ମନରେ ଧଇର୍ଯ୍ୟ ଯେ ନୁହନ୍ତି ଚାପଧାରୀ ।
ମାରିବି ଦାରା ବଇରୀ କରିବି ଯଶ ଯେବେ
ଦେବେ ସୁଖୀ ହୋଇଲେ ମୋହର ସୁଖ ତେବେ ।
ଏମନ୍ତ ବିଚାରି ଯେ ମନରେ କରି ତୋଷ
ତୁଣ୍ଡରେ ମଧୁର କହେ ଦଶରଥ ସୁତ ।
ଶୁଣିଣ ପାର୍ବତୀ ଶଙ୍କରଙ୍କୁ ଚାହିଁ
ଭୋ ନାଥ ଶ୍ରୀରାମ ଯେ ତୈଲୋକ୍ୟ ଗୋସାଇଁ ।
ସେ କିମ୍ପା ଆପଣାର ମନରେ ବିଚାରି
ନିରେଖ ପ୍ରାଣୀ ପ୍ରାୟେ ଲକ୍ଷ୍ମଣ କର ଧରି ।
ଯାହାର ନାରାଚରେ କମ୍ପଇ ତିନିପୁର
ସେ ଛାର ରାବଣର ଯେତେକ ମାତର ।
ଯେହୁ ଦେବ ବ୍ରହ୍ମାଙ୍କୁ ନାଭିରୁ ଜାତ କଲେ
ଛପନ କୋଟି ଜୀବ ଜନ୍ତୁ ଯେ ଭିଆଇଲେ ।
କୀଟ ପତଙ୍ଗ ଖଗ ମୃଗ ଯେ ଜାତ କଲେ
ସତ ରଜ ତମ ସକଳ ଭିଆଇଲେ ।
ଲୋଭ ମୋହ କାମ କ୍ରୋଧ ଯେ ବିମୁଖ
ଏମାନଙ୍କ ଠାକୁର ଶ୍ରୀବତ୍ସ ।
ପାଞ୍ଚଶକୋଟି ଯୁଗ ସେ ବସୁନ୍ଧରୀ
ବିଧାତା ବିଚାରି କଲା ସେ ସପତପୁରୀ ।
ଚନ୍ଦ୍ର ସୂର୍ଯ୍ୟ ଯେ ବରୁଣ ପବନ
ଇନ୍ଦ୍ରାଦି ଦଶଦିଗପାଳ ଯେ ଅଟେ ପୁଣ ।
ଗିରି କନ୍ଦର ପର୍ବତ ସହିତ ସାଗର
ସଚରାଚର ଘେନିଣ ଅଟେ ଏ ସଂସାର ।
ଏଥିର ଠାକୁର ଯେ ଅଟନ୍ତି ଚକ୍ରପାଣି
ତାହାକୁ ଅଜ୍ଞାନ କିମ୍ପା ଘୋଟିଅଛି ପୁଣି ।
ଯାହାର ନାରାଚ କମ୍ପଇ ତିନିପୁର
ରାବଣ ଦାନବଙ୍କୁ କିମ୍ପା ଯେ ଡର ।
ଗୁଣ ଦେଖି ସିଦ୍ଧ ନିର୍ମଳ ଯେ ପ୍ରସିଦ୍ଧି
ଏ କଥା ବିଚାରି ମୋତେ କହ ହେ କୃପାନିଧି ।
ଈଶ୍ୱର ବୋଲନ୍ତି ଶୁଣରେ ଭଗବତୀ
ଯାହା ତୁ ପଚାରିଲୁ ଶୁଣରେ ସେଥି ଗତି ।
ତୋହର ଆଗରେ କହିବା ଗୋସାମଣି
ପୂର୍ବେ ଯେଉଁକଥା ଅଛଇ ମୁହିଁ ଶୁଣି ।
ମରତ ବୋଲିକରି ଏକି ନୃପବର
ଦାନର ଦାତା ଅଟେ ବୀରରେ ବୀରବର ।
ତିନିପୁରେ ଯାର ମହିମା ପ୍ରଗାଢ଼
ରାଜାରେ ଦିଗଶୂଳ ଧର୍ମରେ ଅଟେ ଦୃଢ଼ ।
ଜଗତରେ ତାର ଯେ ନୋହିଲା ସନ୍ତତି
ତାହା କୋଳରେ ଦୁହିତା ଉତ୍ପତ୍ତି ।
ଶହେ ଅଶ୍ୱମେଧ ଯଜ୍ଞ ସେ କଲା
ମୁଷଳଧାରା ପ୍ରମାଣେ ଆହୁତି ସେ ଦେଲା ।
ସେ ଧର୍ମରେ ଦୁହିତା ଯେ ହୋଇ ପ୍ରାପତ
ନବ ଅବତରେ ସୁନ୍ଦର ସେ ଦୁହିତ ।

ରୂପ ଗୁଣ ଆନ ଯେ ନୋହିବ ପଟାନ୍ତର
ଯୁବା ବୟସ ଯହୁଁ ହୋଇଲା ତାହାର ।
ପିତା ପଚାରିଲା ଏ କନ୍ୟା କାରେ ଦେବି
କେବଣ ମହାତ୍ମାକୁ ବରଣ କରିବି ।
ଏସନକ ସମୟରେ ନାରଦ ମହାଋଷି
ମହତ୍ୱ ଋଷି ସନ୍ନିଧେ ମିଳି ପୁଣି ଆସି ।
ସେଠାରେ ମହତ୍ୱ ଋଷି ମାନ୍ୟ କଲେ
ସନ୍ତୋଷ ହୋଇଣ ମୁନି ସେଠାରୁ ଚଳିଗଲେ ।
ମରତ ରାଜା ମନ୍ଦିରେ ପ୍ରବେଶ ହେଲେ ମୁନି
ମରତ ରାଜା ଦେଖିଣ ସନ୍ତୋଷ ହେଲେ ପୁଣି ।
ଶତ ଅର୍ଘ୍ୟ ଦେଇଣ ମୁନିଙ୍କି ପୂଜିଲେ
ଆଶ୍ୱାସନା ପାଇଣ ମହାଯତି ବସିଲେ ।
ଏସନକ ସମୟେ ପର୍ବତ ଋଷି ଆସି
ଦେଖି ମରତ ରାଜା ପୂଜା କରିଣ ତୋଷି ।
ଗୌରବ କରିଣ ବସାଇଲା ଯେ ନେଇ
ଆପଣେ କରଯୋଡ଼ି ରହିଲା ଉଭା ହୋଇ ।
ଆସନ ଉପରେ ବସିଲେ ଦୁଇ ଋଷି
ମରତ ନନ୍ଦିନୀ ଯେ ମିଳିଲା ତହୁଁ ଆସି ।
ଆଡ଼ ଉହାଡ଼ରେ ଚାହିଁଇ ଚାନ୍ଦମୁହିଁ
ମାନ୍ୟ ଧର୍ମ କରିଲା ସେ ଋଷିଙ୍କି ଅନାଇ ।
ମରତ ବୋଇଲା ମୁନି ଏ ଦୁହିତା ମୋର
ତୁମ୍ଭରି ଚରଣେ କରଇ ନମସ୍କାର ।
ଶୁଣିଣ ଶୁଭ୍ରକେଶୀ ଯେ ସଲଜ୍ଜ ଭାବ ହୋଇ
ଋଷିଙ୍କର ଆଗରେ ଉଭା ହେଲା ଯାଇ ।
ଉଠିଣ ନୃପତି ଯେ ମୁନିଙ୍କି ପୂଜା କଲା
ସୁବର୍ଣ୍ଣ ସିଂହାସନେ ନେଇଣ ବସାଇଲା ।
ବେନିଋଷି ବୋଇଲେ ଶୁଣ ହେ ନରସାଇଁ
ତୋହର ଦୁହିତାକୁ ଆସିଛି ନେବାପାଇଁ ।
ଶୁଣିଣ ମରତ ରାଜା ତୋଷ ହୋଇ
ଅମାନତ୍ୟଗଣକୁ ବୋଇଲା ରାଜା ଚାହିଁ ।
ବିଭାର ବେଶ କରିଣ କନ୍ୟାକୁ ଆଣ
ପାତ୍ରମନ୍ତ୍ରୀଗଣ ବୋଇଲେ ନୃପରାଣ ।
ବେନି ଋଷିଙ୍କୁ କହିଲେ ସେ ନୃପତି
ଯାହାକୁ ମୋର ଦୁହିତା ବରିବନିକି ଆସି ।
ସେହୁ ଯେ କନ୍ୟାନେବ ଏ କଥା ସତ୍ୟ ମୋର
ନ ବରିଲେ କନ୍ୟା ଯେ ନୁହଇ ତୁମର ।
ତୁମ୍ଭଙ୍କୁ ବଡ଼ ମାନ କରେ ମୁଖରିତ
ଏମନ୍ତ ବଚନ କହେ ନୃପନାଥ ।
ଏମନ୍ତ ସମୟରେ ଚଣ୍ଡ ଯେ ପୁତ୍ର ଭେଟି
ବୋଇଲା ନୃପତି ଆଜି ଅଭାଗ୍ୟଦିନ ଗୋଟି ।

କାଲି ଆସନ୍ତୁ ସାତଘଡ଼ି ବେଳ ଯେ ପୁଣ
ଏମନ୍ତ ବଚନ ଯେ ବୋଲଇ ନୃପରାଣ ।
ତାହା ଶୁଣି ବୋଇଲେ ବେନି ଯେ ତପୋବନ୍ତ
କାଲି ଆସିବାକୁ କି ଅଟଇ ନିଶ୍ଚିତ ।
ତୁମ୍ଭେ ସାକ୍ଷୀ ହୋଇଲ ଅମାନତ୍ୟଗଣ
ବେନିଜନରୁ ଯାହାକୁ କରିବ ବରଣ ।
ସେହି ଯେ ନାରୀକି ସୁଖେ ଘେନିଯିବ
ଯେହୁ ନ ପାଇବ ସେ ବିରଷ ହୋଇବ ।
ସେହୁ ଯେ କନ୍ୟା ନେବ ସଂଶୟ ଏଥେ ନାହିଁ
ଶୁଣିଣ ନୃପତି ହୋଇଗଲେ ତପୀସାଇଁ ।
ଏଥୁ ଅନନ୍ତରେ ଶୁଣଗୋ ଦେବୀ ଉମା
ଦିନ ଶେଷ ହୁଅନ୍ତେ ରଜନୀ ଶେଷ କିନା ।
ମରତ ନୃପତିର ଦୁହିତା ଲୀଳାବତୀ
ଅନ୍ତର୍ଗତେ ବିଚାର କଲା ସେହୁ ସତୀ ।
ପୂର୍ବର ଜନ୍ମବେଳେ ଜାଣିଛି ମୁହିଁ ଜାଣ
ମୋହର ସ୍ୱାମୀ ହେବେ ବୈକୁଣ୍ଠ ନାରାୟଣ ।
ପିତା ଏବେ ଋଷିଙ୍କୁ ସତ୍ୟ କଲା ମୋର
ଏ କଥା ବିଡ଼ମ୍ବଣ ଅଶୁଭ ସେ ପ୍ରକାର ।
ଏମନ୍ତ ବିଚାରି ସତୀ ବସିଲା ନିଶ୍ଚଳେ
ନାରାୟଣଙ୍କୁ ସୁମରଣା କଲାକ ମନରେ ।
ଲୀଳାବତୀ ସୁମରନ୍ତେ ନାରାୟଣ ଜାଣି
ବୈକୁଣ୍ଠପୁରେ ବିଚାର କଲେ ଚକ୍ରପାଣି ।
ମୋହର କମଳା ଅଂଶେ ଜାତ ଲୀଳାବତୀ
ମରତ ରାଜାର ଯେ ଅଟଇ ଦୁହିତୀ ।
ସେ କନ୍ୟାକୁ ଦେବାକୁ ମରତ ରାଜା ପୁଣ
ବେନି ଋଷିଙ୍କି ସତ୍ୟ କଲାଏ ଯେ ଜାଣ ।
ରଜନୀ ପାହିଲେ ସାତ ଯେ ଘଡ଼ିଠାରେ
ଆସିଣ ବେନିଋଷି ମିଳିବେ ସେଠାରେ ।
ସେତେବେଳେ ମୁହିଁ ଯାଇ ହୋଇବି ପ୍ରବେଶ
ଏମନ୍ତ ବିଚାର କଲେ କମଳା ବିଳାସ ।
ଏଥୁ ଅନନ୍ତରେ ଯେ ରଜନୀ ଶେଷ ହେଲା
ପୂର୍ବଦିଗେ ଦୀନମଣି ତେଜ ପ୍ରକାଶିଲା ।
ନାରାୟଣ ଉଠିଣ ସ୍ନାହାନ ବେଗେ କଲେ
ଅମ୍ଳାନ ପିନ୍ଧିଣ ନିତ୍ୟକର୍ମ ସେ କରିଲେ ।
ଗରୁଡ଼ ଡକାଇ ବୋଇଲେ ଚକ୍ରଧର
ମରତ ରାଜା ପୁରକୁ ବିଜେ ଆଜ ମୋର ।
ଶୁଣିଣ ଗରୁଡ଼ ଯେ ଆନନ୍ଦ ହୋଇଲା
ଗରୁଡ଼ ପୃଷ୍ଠରେ ବସିଲେ ଚକାଡୋଳା ।
ଗଗନ ମାର୍ଗରେ ବିକ୍ରମି ପୁଣ ଗଲେ
ମରତ ରାଜା ନବର ସଳଖେ ରହିଲେ ।

ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ବେନିଋଷି ରଜନୀ ଶେଷରେ ଉଠିକରି ।
ନିତ୍ୟକର୍ମ ସାରିଣ ବିଜୟେ ବେନିଋଷି
ମରତ ରାଜା ଦ୍ୱାରେ ପ୍ରବେଶ ହେଲେ ଆସି ।
ଏସନ ସମୟରେ ସାତଘଡ଼ି ବେଳ
ଦୁହିତାକୁ ଆଣିବାକୁ ନୃପତି ବ୍ୟାକୁଳ ।
ନୃପତି ହାତ ଧରି ଦୁହିତାକୁ ଯେ ଆଣେ
କୋମଳ କରି କହେ ବର ଗୋ ମାଏ ଜଣେ ।
ତୁ ମୋର ଦୁହିତା ଗୋ ଅଟୁ ଲୀଳାବତୀ
ଯୁବାକାଳେ ତୋତେ ମିଳିଲାକ ପତି ।
ଏ ଦୁଇ ଋଷି ଯେ ଅଛନ୍ତି ତପନିଷ୍ଠ
ଏମାନଙ୍କୁ ପ୍ରଶଂସା କରେ ସପ୍ତଋଷି କାଷ୍ଠ ।
ଏ ତୋତେ ବିଭା ହୋଇବେ ଆସିଛନ୍ତି
ଯେ ତୋତେ ରୁଚଇ ବରରେ ରୂପବତୀ ।
ଏ ମୋର ସତ୍ୟ ଯେ ନୁହଇ ପୁଣ ଆନ
ଶୁଣିଣ ସୁନ୍ଦରୀ ଯେ ବିଚଳିତ ମନ ।
ମନରେ ବିଚାରିଲେ ଯୁବତୀ ରତ୍ନକାନ୍ତ
ମୁହିଁ କେହ୍ନେ ବରିବି ବର ତପବନ୍ତ ।
ରାଜାର ଦୁହିତା ମୁଁ ଯେ ରୂପ ଗୁଣରେ ସାର
ନ ବୁଝିଣ ଧାତା ମୋତେ ଦେଉଛି ଋଷିବର ।
ସେ ଦେବ ନାରାୟଣ କର ମୋତେ ଦୟା
ତୁ ସ୍ୱାମୀ ଭୋଗ କର ଏ ମୋର କାୟା ।
ଆଜନ୍ମ କାଳରୁ ତୋତେ ମୋର ଆଶା
ମନ କର୍ତ୍ତବ୍ୟରେ ମୋ ଚିନ୍ତା ପୀତବାସ ।
କୌଶିକ ମୁନି ଯେ ଗଲେ ମୋତେ କହି
ସ୍ୱୟଂ ନାରାୟଣ ଯେ ହୋଇବେ ତୋର ସାଇଁ
ସେ ନାରାୟଣଙ୍କୁ ଭାବନା କରୁଥିବ ମନେ
ତୋତେ ସେ ସୁଦୟା କରିବେ ଭଗବାନେ ।
ଏତେ ବୋଲି ମୁନି କର୍ଣ୍ଣେ ମନ୍ତ୍ର ଦେଲେ
ଶ୍ରୀକୃଷ୍ଣ ପ୍ରାପତ ହେଉ ତୋତେ ଭଲେ ।
ସେହିଦିନୁ ମୁହିଁ ଜପଇ ସେହି ମନ୍ତ୍ର
ଋଷି କହିଗଲେ ମୋତେ ଯେବଣ ବାଗେ ମନ୍ତ୍ର ।
ହେଲେ ହେଳା ନ କରିବୁ ଯେଉଁମତି
କେମନ୍ତେ ହରି ହୁଅନ୍ତି ମୋହର ପ୍ରାଣପତି ।
କୌଶିକ ମୁନିର ବଚନ ଏବେ ଆନ
ଏବେ ପିତା ମୋର ବରଇ ତପୋଧନ ।
ଏ ଦୁଇ ଜଣଙ୍କୁ ମୁଁ ଯେ ନ ଏବେ ବରଇ
ଏତେ ବୋଲିଣ ବିସ୍ମୟ ମୁଖ ଯେ କରଇ ।
ଲୀଳାବତୀ ବୋଇଲା ଶୁଣ ହେ ବେନି ଋଷି
କାହାର ଘରଣୀକୁ କେହୁ ଯେ ଘେନିଆସି ।

ତୁମ୍ଭେ ତପୋବନ୍ତ ଅବଶ୍ୟ ପୁରୁଷ ଅଟ
ବାସୁଦେବ ଘରଣୀକୁ ନେବାକୁ କର ଆଣ୍ଟ ।
ମୁହିଁ ତ କମଳା ଅଂଶେ ଅବତାର ପୁଣ
କୌଶିକ ମୁନି ଯେ କହିଲେ ଆଗ ମୋର ଜାଣ ।
ବେନି ଋଷି ବୋଇଲେ ତୋ ପିତା ସତ୍ୟକଲା
ଦୁହିତା ଗୋଟି ଦେବି ସେ ବୋଇଲା ।
ସେ ରାଜାର ସତ୍ୟକୁ ଆମ୍ଭେ ଅଛୁ ଆସି
ତୁ କିମ୍ପା ବିରୋଧ କରୁଛୁ ଶୁଭ୍ରକେଶୀ ।
ଲୀଳା କହିଲା ପିତା କହିବାର ସତ୍ୟ
ଦୋଷର କଥା ତୁମକୁ କହୁଛି ନିରତ ।
ବୋଇଲା ମୋ ଦୁହିତା ଯାହାକୁ ବରିବ
ସେହିଟି କନ୍ୟା ନେବ କଳି ନ କରିବ ।
ମୋହର ବରିବାର ଯେ ନୋହିଲା ତୁମ୍ଭଙ୍କୁ
ବରିଲେ ସିନା ହୁଅନ୍ତ ମୋର ବଳ ବପୁ ।
ବେନିମୁନି କହିଲେ ତୋର ପିତା ଯେକହିଲେ
ଦୁଇ ମୁନିରୁ ଜଣେ ନେବହିଁ ବୋଇଲେ ।
ଶୁଣିଣ ଲୀଳାବତୀ ବୋଇଲା ଏବେ ଦେଖ
ଯାହାର ଘରଣୀ ମୁଁ ନେବଟି ପ୍ରତ୍ୟକ୍ଷ ।
ଏତେ ବୋଲି ପୁଷ୍ପମାଳ ଘେନିଣ ଉଭାହୋଇ
ଏମନ୍ତ ସମୟେ ଶ୍ରୀବତ୍ସ ମିଳିଲେ ଯାଇଁ ।
ପର୍ବତା ନାରଦ ଯେ ଅଛନ୍ତି ତହିଁ ପୁଣ
ତାହାଙ୍କ ମଧ୍ୟରେ ବିଜେ କଲେ ନାରାୟଣ ।
ବାହୁଟି ତାଡ଼ ଖଡୁଯେ କଟୀରେ ମେଖଳୀ
ଚନ୍ଦ୍ରହାର ବଇଡୁର୍ଯ୍ୟ ବିରାଜେ ବକ୍ଷସ୍ଥଳୀ ।
ଦେଖିଣ ଲୀଳାବତୀ ମାନରେ ହରଷ
ଦେଖିଣ ସୁନ୍ଦରୀ ଯେ ହେଲା ହସ ହସ ।
ଲକ୍ଷେକ ଶଙ୍ଖ ଶୁଭଇ ଘନ ଘନ
ଦେଖିବାକୁ ଆସନ୍ତି ନରନାରୀଗଣ ।
ବ୍ରାହ୍ମଣ ଚାରିବେଦ ଅଧ୍ୟନ କରନ୍ତି
ଯୁବତୀଗଣ ମିଶି ହୁଳହୁଳି ଦ୍ୟନ୍ତି ।
ଏସନ ସମୟେ ଲୀଳାବତୀ ବାଳୀ
କରେ ଘେନିଥିଲା ଏକ ପୁଷ୍ପକର ମାଳି ।
ଶ୍ରୀହରି ଗଳାରେ ଲମ୍ବାଏ ମାଳି ନେଇ
କନ୍ୟାର ଭୁଜ ଧଇଲେ କମଳାର ସାଇଁ ।
ଗରୁଡ଼ ପିଠିରେ ନେଇଣ ବସାଇଲେ
ତତକ୍ଷଣ ସେଠାରେ ବିଜେ କରାଇଲେ ।
ଗଲାବେଳେ ନାରାୟଣ କହିଣ ଗଲେ ପୁଣ
ମୋହର ଘରଣୀକି ନେବ ରେ କର ମନ ।
ଜଣାଗଲା ତୁମ୍ଭରି ଯେ ବଳ ପୁଣି
ମୋରଠାରେ ବିମାନ ହୋଇଲେ ଦେବମୁନି ।

ଏତେ କହି ସେଠାରୁ ଗଲେ ଚକ୍ରଧର
ବିଜୟ କଲେକ ଯାଇ ବଇକୁଣ୍ଠପୁର ।
ଏଥୁଅନନ୍ତରେ ଶୁଣ ଆହେ ଭଗବତୀ
କନ୍ୟାକୁ ନାରାୟଣ ନବାର ସେ ଦେଖି ।
ପର୍ବତା ନାରଦ ଯେ ପାଇଲେ ଲାଜ ତହିଁ
ମରତକୁ ବୋଇଲେ ଶୁଣ ନୃପ ସାଇଁ ।
ଏଡ଼େକ ଅଜ୍ଞାନ ବୁଦ୍ଧି କିମ୍ପା ତୁ କଲୁ
ଆମ୍ଭକୁ ଦୁହିତା ଦେବୁ ବୋଲି କହିଥିଲୁ ।
ପ୍ରତେ ଉପୁଜାଇ ବିଚାରୁ ମନେ ମନେ
ଗୁପତେ ଗୋବିନ୍ଦ ଡାକି ଆଣିଲୁ ମନେ ।
ତାହାକୁ କନ୍ୟା ଆଜି କରିଲୁ ପ୍ରଦାନ
ମିଥ୍ୟାରେ ସ୍ୱୟମ୍ବର ଆରମ୍ଭ କରୁମନ ।
ଏତେ ମାୟା କରିଣ ଭଣ୍ଡିଲୁ ତୁ ଆମ୍ଭଙ୍କୁ
ଘେନ ଶାପ୍ୟ ଆମ୍ଭର ହେଉ ଯେ ତୁମ୍ଭଙ୍କୁ ।
ଏବେ ତୋହର ବିବେକ ହରାଇଲୁ
ଧର୍ମବନ୍ତ ହୋଇଣ ଅଧର୍ମ ଆଚରିଲୁ ।
ଅଜ୍ଞାନ ହୋଇଣ ତୁରେ ନ ଜାଣିଲୁ କିଛି
ଯେବେ ତୁ ହୃଦରେ ଥିଲୁ ପାପ ପାଞ୍ଚ ।
ଚଉଦମାସ ପର୍ଯ୍ୟନ୍ତ ଅଜ୍ଞାନ ହୋଇବୁ
କୌଣସି କଥା ତୋର ମନେ ନ ରଖିବୁ ।
ଶୁଣିଣ ମରତ ରାଜା କହଇ ବଚନ
ମାୟା ଥିଲେ ମୋତେ ଅଜ୍ଞାନ ଯୁଟୁ ପୁଣ ।
ନୋହିଲେ ଅଜ୍ଞାନ ଯେ ବେନି ଭାଗ ହେବ
ବେନି ଋଷିଙ୍କ ଅଧେ ପ୍ରାପତ ହୋଇବ ।
ସେ କଥାକୁ ଶୁଣିଗଲେ ଦୁଇ ଯେ ତପଚାରୀ
ରକ୍ତବର୍ଣ୍ଣ ନେତ୍ର କ୍ରୋଧ ହୁଏ ତାଙ୍କରି ।
ମରତ ରାଜାକୁ ଦେଇଣ ଗଲେ ଶାପ୍ୟ
ତତକ୍ଷଣେ ନୃପତିକୁ ଆକର୍ଷିଲା ପାପ ।
ପଳାଏ ମରତ ଯେ ପାପକୁ ଭୟକରି
ପ୍ରବେଶ ହୋଇଲା ଯାଇ ବୈକୁଣ୍ଠ ନାମେପୁରୀ ।
ଶ୍ରୀହରି ପାଦେ ଯାଇ ପଶିଲା ଶରଣ
କର ଯୋଡ଼ି ବୋଇଲା ରଖ ହେ ନାରାୟଣ ।
ପର୍ବତା ନାରଦ ମୋତେ କନ୍ୟା ମାଗିଥିଲେ
ସେ ବେନି ଋଷିଙ୍କୁ କହିଲି ଶୀତଳେ ।
ବୋଇଲେ ବେନିଜନ ଋଷି ଯେ ଅଟ ତୁମ୍ଭେ
ଦୁହିତାର ଯାହାକୁ ମନ ବରିବ ସେ ତାକୁ ନେବେ ।
ଏତେ ବୋଲି ଦୁହିତାକୁ ବେଶ କରି ଆଣି
କୁସୁମ ମାଳ ଗୋଟି ହସ୍ତରେ ସେ ଘେନି ।
ତିଆରି ବୋଇଲି ମୁଁ ଯେ ମୁନିକିରେ ବାଛି
ବିଧାତା ଲେଖନ ଯେ ତୋ କର୍ମେ ଯତାଅଛି ।
ଯୁବାକାଳରେ ତୋର ବର ଯେ ପ୍ରବେଶ
ଏ ଦୁଇ ମୁନିରୁ ଗୋଟିଏ ବରି ଆସ ।
ସେ କନ୍ୟା ଆସିଣ ମୁନିଙ୍କି କହିଲା
ହରି ଘରଣୀକି ନେବାକୁ ତୁମର ମନ ହେଲା ।
ଶ୍ରୀହରି ବିନେ ଯେ ନ ବରଇ ଆନ
ତୁମ୍ଭେ ବେନିମୁନି ଯାଅ ହେ ନିଜସ୍ଥାନ ।
ଏସନ ସମୟେ ତୁମେ ହୋଇଲ ପ୍ରବେଶ
ଦେଖିଣ ଦୁହିତା ମୋର ମନରେ ହେଲାତୋଷ ।
ରତ୍ନମାଳା ଗୋଟି ଯେ ଗଳାରେ ନେଇଦେଲା
ଗରୁଡ଼ ପିଠିରେ ବସି ଆସିଲ ତୁମ୍ଭେ ଭଲା ।
ତୁମ୍ଭେ ଆଣିବାରୁ ମୋତେ କ୍ରୋଧେ ବହୁତ
ତୋତେ ସେ କନ୍ୟା ଦେବ ହୋଇଲା ପ୍ରାପତ ।
ବୋଇଲେ ଶ୍ରୀହରିଙ୍କି ଗୁପତେ ଅଣାଇଲୁ
ଆମ୍ଭଙ୍କୁ କହିଣ କନ୍ୟା ଶ୍ରୀବତ୍ସି ଦେଲୁ ।
ଆଜଠାରୁ ଅଜ୍ଞାନ ହୁଅରେ ନୃପବର
ଧର୍ମକୁ ଲଘିଣ ତୁରେ କଲୁ ଅବିଚାର ।
ଏତେ ବୋଲି ସେ ଯେ ଗଲା ନିଜସ୍ଥାନ
ଗଲାବେଳେ କହିଗଲେ ଚୌଦମାସ ପୁଣ ।
ଚୌଦମାସ ଅନ୍ତରେ ଅଜ୍ଞାନ ତୋର ଯିବ
ସେତେବେଳେ ବୋଇଲି ଶୁଣ ହେ ମୁନିଦେବ ।
ଦୁହିତା ନ ବରିଲା ମୋହର କି ଦୋଷ
ନ ବୁଝି ଶାପ୍ୟ ମୋତେ ଦେଲେ ସେ ସନ୍ୟାସ ।
ତୁମ୍ଭ ଅଜ୍ଞାନ ଯେ ଏତିକି ଦିନ ହେଉ
ବେଦବିଦ୍ୟା ଜପ ଯେ ମନରେ ନ ରହୁ ।
ଏମନ୍ତ ବଚନ ମୁଁ ଯେ କହିଲି ତାଙ୍କୁ କେତେ
ଏସନ ସମୟେ ପାପ ଘୋଟିଲା ପୁଣି ମୋତେ
ଡରିଣ ଅଇଲି ତୁମ୍ଭ ପାଶ
ମୋତେ ରକ୍ଷାକର କମଳା ବିଳାସ ।
ତୁମ୍ଭଙ୍କୁ ଜଣା ଯେ ମୋହର ଯହିଁ ଦୋଷ
ଦୁହିତା ତୁମ୍ଭଙ୍କୁ ବରିଲା ପୀତବାସ ।
ମରତ ରାଜା ପଛେ ଅଜ୍ଞାନ ଆସେ ପୁଣି
ଦେଖିଣ ଅଜ୍ଞାନ ବୋଲନ୍ତି ବନମାଳୀ
ତୁହୋ ଅଜ୍ଞାନ ହୋ ମୋର ବୋଲକର
ପାପୀ ନୋହେ ଯେ ମରତ ନୃପବର ।
ଦୁଇ ଋଷି ନ ଜାଣି ଏବେ ଯେ ଶାପ୍ୟଦେଲେ
ଆମ୍ଭେ କନ୍ୟା ଆଣନ୍ତେ ସେ ଅହନ୍ତା ବହିଲେ ।
ସେ କନ୍ୟା ଅଟଇ ଯେ ମୋହର ପ୍ରିୟବତୀ ।
କେବଣ କାରଣେ ତାଙ୍କୁ ବିଭା ହୋନ୍ତି ତପୀ
ନ ଜାଣି ସୁନ୍ଦରୀ ଯେ ବରନ୍ତା ମାଳା ଦେଇ
ବ୍ରହ୍ମା ଇନ୍ଦ୍ରରୁଦ୍ର ହେଲେ ଯାଆନ୍ତା ପ୍ରାଣ ପାଇ ।

ସେ କଥା ଜାଣିବା ଆମ୍ଭେ ଗଲୁଟି ଖରେ
ବସାଇ ଆଣିଲୁ ଗରୁଡ଼ ପିଠିରେ ।
ମାୟା ପ୍ରାୟ ମଣି କେ ତାକୁ ଦେଲେ ଶାପ୍ୟ
ଅପାପୀ ଅଟଇ ସେ ମରତ ନାମେ ନୃପ ।
ସେ ବେନି ମୁନି ଯେ ବରିଷ୍ଠ ତପଚାରୀ
ତାହାଙ୍କ ବଚନ କି ଅନ୍ୟଥା ଆମେ କରି ।
ଏବେ ତୁ ଅଞ୍ଜାନ ହୁଅ ମୋହର ବୋଲକାରୀ
ଥୋକାଏ କାଳ ସମ୍ଭାଳି ଭୋଗ କରୀ ।
ମରତକୁ କିମ୍ପାଇ ଆସୁ ଘୋଟି
ଏଥିରେ ଦୋଷ ନାହିଁ କିମ୍ପା ନ ଲେଉଟି ।
ଶୁଣିଣ ଅଞ୍ଜାନ ଯେ କମ୍ପଇ ଥରହର
କିମ୍ପା ମୋତେ ବୋଇଲୁ ଏକଥା ଚକ୍ରଧର ।
ଅଶେଷ ବ୍ରହ୍ମାଣ୍ଡର ଠାକୁର ତୁ ବୋଲାଉ
ଋଷିର କଥା କେମନ୍ତେ ମେଣ୍ଟେ ଆଉ ।
ଶ୍ରୀହରି ବୋଇଲେ ମୋର ଅଙ୍ଗରେ ବିଜେକର
ପବିତ୍ର ଅଙ୍ଗ ଗୋଟି ଅଟେ ମରତ ରାଜାର ।
ଶୁଣିଣ ଅଞ୍ଜାନ କହଇ ଯୋଡ଼ି କରେ
ମୁହିଁ ପଛେ ଅଙ୍ଗରେ ବିଜେକି କରିପାରେ ।
ଯିବି ପଛେ ବାହୁଡି ତୁମର ଆଜ୍ଞାଘେନି
ଶୁଣିଣ ଶାନ୍ତି ତାକୁ ହୋଇଲେ ଚକ୍ରପାଣି ।
ଶ୍ରୀକୃଷ୍ଣ ବୋଇଲେ ପାପ ଯେ ନୁହଇ ଉଚିତ
ସେମାନଙ୍କର ବୋଲ ଯେ ନୁହଇ ଲଘିତ ।
ତୋହର ବାହୁଡ଼ାଗଲେ ମୁନିଯେକୋପନୋହି
ଏ କଥା ଅଞ୍ଜାନରେ ମୋହର ନ ଯୋଗାଇ ।
ଯେବେ ଆମ୍ଭଙ୍କୁ ଉପ୍ରୋଧ ନ କଲୁ ଅଞ୍ଜାନ
ଯେତେବେଳେ ଦଶରଥ ଘରେ ମୁଁ ହେବି ଜନ୍ମ ।
ମାନବ ଜନ୍ମ ଆମ୍ଭେ ମରତେ ଚକ୍ର ଲେଖିଛି
ତେବେ ମାରିବୁ ଯାଇ ଚାରି ରାବଣ ପଶି ।
ସେତେବେଳେ ତୁ ମୋରଅଙ୍ଗରେ ଭୋଗକର
ଭୋ ମାହାତ୍ମା ମନରେ ଆନ ତୁ ନ ଧର ।
ଏବେ ତୁ ସହିଣ ଯାଅରେ ପାପ
ରାମ ଅବତାରେ ମୋର ଅଙ୍ଗରେ କର ଆପ ।
ଦେଖ ଯେବେ ରାବଣ ସୀତାକୁ ନେବ
ବନବାସ ଶେଷ ଯେ ମୋହର ହୋଇଥିବ ।
ବାରବର୍ଷ ଦଶମାସ ମୋର ଭଲ ଯିବ
ଦଣ୍ଡକା ଅରଣ୍ୟରେ ସୀତୟା ଛାଡ଼ି ଯିବ ।
ଚୌଦ ବର୍ଷରୁ ଚୌଦ ମାସ ଥିବ
ସେତେବେଳେ ମୋଠାରେ ଗ୍ରାସିବୁ ସର୍ବଶୁଭ ।
ଚଉଦମାସ ମୋ ଅଙ୍ଗରେ କରିବୁ ଭୋଗ
ତେବେ ତାଙ୍କ ଶାପ୍ୟଗୋଟି ହୋଇଯିବ ଭୋଗ ।

ଶୁଣିଣ ସନ୍ତୋଷ ହେ ହୋଇଲା ଅଞ୍ଜାନ
ବାହୁଡ଼ିଣ ଗଲା ସେ ଯେ ନିଜ ସ୍ଥାନ ।
ମରତ ନୃପତିକୁ ସେଠାରୁ କହିଲେ ଭଗବାନ
ମୋହର ଶରୀରେ ତୋତେ କରିଦେବି ଲୀନ ।
ଏବେ ସମୟେ ଯାଇ ମୃତ୍ୟୁପୁରେ ଥାଅ
ଜପ ତପ ଯଜ୍ଞ କରି ସୁଖେ ଥାଅ ।
ବେନି ଗୋଟି ବାଳକ ହେବେ ତୁମ୍ଭର
ଅଂଶ ରଖି ମୋରପୁରେ ଆସିବୁ ନୃପବର ।
ଅନ୍ତେଣ ବୈକୁଣ୍ଠ ପ୍ରାପ୍ତ ତୋତେ ହେବ
ଏ ମୋର ଦେଲା ବର ନିଷ୍ଫଳ ନୋହିବ ।
ଶୁଣିଣ ମରତ ରାଜା ବୋଲଇ ବଚନ
ମୁଁ ଯେ କରଇ ଦେବ ଦୁହିତା ପ୍ରଦାନ ।
ଶୁଣିଣ ଦେବହରି ବ୍ରହ୍ମାଙ୍କୁ ସୁମରିଲେ
ତତକ୍ଷଣେ ବ୍ରହ୍ମା ଆସି ସେଠାରେ ମିଳିଲେ ।
ବେଦବର ଆସନ୍ତେ ଆସିଲେ ସଦାଶିବ
ତ୍ରିଦଶ ଦେବତାଏ ଅଇଲେ ସଦଭାବ ।
ବ୍ରହ୍ମଋଷି ଦେବଋଷି ନାଗଋଷିମାନେ
ପ୍ରବେଶ ହୋଇଲେ ଆସି ବୈକୁଣ୍ଠ ଭୁବନେ ।
ତାଙ୍କ ସଙ୍ଗତରେ ପାର୍ବତୀ ନାରଦ
ଋଷିଙ୍କର ପଛରେ ରହିଣ ନିଜ ଭାବ ।
ସମସ୍ତେ ଯାଇଣ ଶ୍ରୀହରି ବିଭା କଲେ
କନ୍ୟାକୁ ପ୍ରଦାନ ଯେ ମରତ ରାଜା ଦେଲେ ।
ସେଠାରୁ ଦେବତା ଯେ ସଦାଶିବ ଗଲେ
ସକଳ ଋଷିମାନେ ମେଲାଣି ମାଗିଲେ ।
ବେଦବର ବୋଇଲେଶୁଣ ହେ ନାରାୟଣ
ପର୍ବତା ନାରଦ ଯେ କିମ୍ପାଇ ରୋଷମନ ।
ନାରାୟଣ ବୋଇଲେ ମୋ ଘରଣୀ ନେବାକୁ
ସତ୍ୟ କରାଇଲା ଯାଇ ମରତ ରାଜାଙ୍କୁ ।
କମଳା ଅଂଶରେ ଜନ୍ମ ଯେ ଲୀଳାବତୀ
ସେ ମୋତେ ସୁମରଣା କଲାକ ତତଡି
ଶୁଣିଣ ଗରୁଡ଼ ପିଠିରେ ମୁଁ ଯେ ଗଲି
ସତୀର ଆଗରେ ଯାଇଣ ଛିଡ଼ା ହେଲି ।
ମୋତେ ବରଣ କଲା ବେଗେ ନାରୀ
କୋଳରେ ବସାଇ ଆଣିଲି ନିଜପୁରୀ ।
ମୁହିଁ ଆଣିବାକୁ ଏ ବେନି ମୁନି ପୁଣି
ମରତ ରାଜାକୁ ବିହିଲେ ଶାପ୍ୟ ପୁଣି ।
ସେ ଅଞ୍ଜାନ ମରତ ରାଜାକୁ ଯାଇ ଘୋଟି
ତେଣୁ ସେ ରାଜନ କହିଲାକ ଏଠି ।
ଶ୍ରୀରାମ ଅବତାର ଯେତେବେଳେ ହେବି
ସେତେବେଳେ ଅଞ୍ଜାନକୁ ମୋ ଅଙ୍ଗେ ବହିବି ।

ବେଦବର ବୋଇଲେ ମରତ ଶାପ୍ୟ ଦେଲା
ତୁମ୍ଭେ ଅଜ୍ଞାନ ଭୋଗ ସେ ବୋଇଲା ।
ଶ୍ରୀହରି ବୋଇଲେ ସେ କଥା ନୋହେ ଆନ
ଅଙ୍ଗେ ଭୋଗ ସେହି ଦଶମାସ ପରିପୂର୍ଣ୍ଣ ।
ବାଳୀକି ମାରି ମୁଁ ଯେ ସୁଗ୍ରୀକି ରାଜା କରି
ମାଲ୍ୟବନ୍ତ ପର୍ବତେ ଥିବି ବାସ କରି ।
ବେନିଋଷି ମୋ ପାଖେ ଭେଟ ହେବ ଯେତେବେଳେ
ମୋର ଅଙ୍ଗୁ ଅଜ୍ଞାନ ତୁଟିବ ସେତେବେଳେ ।
ଏହାଙ୍କର ଅଙ୍ଗେ ବିଶ୍ରାମ ଯାଇକରି
ବିଶାଣଏ ଦିନ ପାପ ଅଙ୍ଗରେ ଥିବ ଘେରି ।
ଏତେଦିନ ସରିଲେ ଏହାଙ୍କ ଅଙ୍ଗ ଯିବ
ଚୌଦମାସ ତାର ଲେଖାରେ ପୂରିବ ।
ଶୁଣିଣ ବେଦବର ହରଷ ହୋଇଲେ
ଅନ୍ୟାୟ କଲ ବୋଲି ଋଷିଙ୍କି କହିଲେ ।
ବେନିଋଷି ଘେନିଣ ନିଜପୁରେ ଗଲେ
ଲୀଳାବତୀ ବିଭାଗର ସରିଲା ଶୁଭରେ ।
ସନ୍ତୋଷ ହୋଇଣ ସେ ମଗନ୍ତ ରାଜା ଗଲା
ନିଜ ଆଶ୍ରମରେ ଯାଇଣ ମିଳିଲା ।
ଏମନ୍ତ କିଛିଦିନ ଗଲାକ ବହିଣ
ବେନିଗୋଟି କୁମର ଜନ୍ମ ହେଲେ ପୁଣ ।
କିଛିଦିନ ଅନ୍ତରେ କୁମର ରାଜା କରି
ବେନିଜନ ବୈକୁଣ୍ଠପୁରକୁ ଗଲେ ଚଳି ।
ନାରାୟଣ କୃପାରୁ ନିଶ୍ଚିନ୍ତ ହୋଇ ରହି
ସେ ଆସ୍ୱାଦ ଶ୍ରୀରାମରେ ଘୋଟିଛି ପ୍ରାଣସହୀ ।
ଏ ଯୁଗରେ ଅବତାର ଦଶରଥ ଘରେ
ଅଜ୍ଞାନ ଆଚ୍ଛାଦି ଅଛି ମୁନିଙ୍କ ଶାପ୍ୟରେ ।
ସୀତାଙ୍କୁ ରାବଣ ଯେଉଁଦିନୁ ଦେଲା
ସେହିଦିନୁ ଅଜ୍ଞାନ ଯେ ରାମଙ୍କୁ ଘୋଟିଲା ।
ଚାରିମାସ ଏଥି ଯେ ବହିଗଲା
ଛଡ଼ମାସ ଭୋଗ ଆଉ ରାମର ରହିଲା ।
ପୁଣି ସେ ରାମ ନ ଜାଣି ପାରେ କିଛି
ନିରେଖି ଜନ ପ୍ରାୟେ ଲକ୍ଷ୍ମଣଙ୍କୁ ପୁଛି ।
ଶୁଣଗୋ ଭଗବତୀ ଶ୍ରୀରାମଚନ୍ଦ୍ର କଥା
ସ୍ୱୟଂ ପରଂବ୍ରହ୍ମ ଅଟେ ଦଶରଥ ସୁତା ।
ତେଣୁ ସେ ଶ୍ରୀରାମ ଯେ ଜାଣି କିଛି ନ ପାରେ
ଏମନ୍ତ ଅଟଇ ଯେ ବ୍ୟବସ୍ଥା ପ୍ରକାରେ ।
ପୂର୍ବରେ କହିଥିଲେ ଏ ଜନ୍ମେ ଭଙ୍ଗକଲେ
ଏଡ଼େ ବଡ଼ଠାକୁର ହୋଇତପୀଙ୍କି ଭୟକଲେ ।
ତେଣୁ ସେ ଲକ୍ଷ୍ମଣରେ ଧରନ୍ତି ଜ୍ଞାନୀକରି
କହନ୍ତି ରଘୁବୀର ବହୁତ ଚାଟକରି ।

ତୁ ବାବୁ ଲକ୍ଷ୍ମଣରେ ନ ଛାଡ଼ିବୁ ମୋତେ
ମୋର ବୋଲେ ଥିବୁ ଯେ କହୁଣ ଅଛି ତୋତେ ।
ଆସିବାବେଳେ ମୋତେ ସମର୍ପିଛନ୍ତି ଜନନୀ
ବନବାସରେ ଆମ୍ଭେ ଯେ ତିନିଜଣ ପୁଣି ।
ବାରବରଷ ଦଶମାସ ବନରେ ଜାଣ ଗଲା
ଅଯୋଧ୍ୟାକୁ ଗଲାବେଳେ ବିପତ୍ତି ପଡ଼ିଲା ।
କେହୁ ଆସି ନେଲାରେ ହରାଇଲି ସତୀ
ଅଯୋଧ୍ୟାକୁ ଯିବାକୁରେ ନ ବଳେ ମୋର ମତି ।
ଏବେ ଦୁଇ ଭାଇରେ ଥାଇ ବନରେ
ନିଜଘରକୁ ଫେରିଯିବା କି ମନରେ ।
ତୁ ମୋହର ସଖା ଅଟୁରେ ସଉମିତ୍ରୀ
ଆମ୍ଭଙ୍କୁ ଦଇବରେ ଲଗାଇ ବାଦ କୃତୀ ।
ଲକ୍ଷ୍ମଣ ବୋଇଲେ ଶୁଣ ହେ ଗୋସାଇଁ
ମୋହର ନାରାଚ ଯେ ସହନ୍ତା କେହି ନାହିଁ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ପାରଇ ଦେବ ଜିଣି
ଅଗ୍ନିଶରେ ଶୁଖାଇବି ସାଗର ଯେ ପୁଣି ।
ହାବଡ଼ା ଶର ମାରି ଯେ ମେରୁ କରିବ ଚୂର
ତୀକ୍ଷଣ ଶରରେ ଖଣ୍ଡ ଖଣ୍ଡ କରିବି ମର୍ତ୍ତ୍ୟପୁର ।
ଏ ଛାର କଥାରେ ଭାଳ ରଘୁସାଇଁ
ଛାର ଲକ୍ଷ୍ମଣ ରାବଣ ଅଟଇ ।
କଥା ଜାଣିବାଯାଏ ତୁନି ହୋଇଅଛି
ଏବେ ଚିନ୍ତା ନ କର କଉଶଲ୍ୟା ବଛି ।
ସୁଗ୍ରୀବର ପ୍ରତିଜ୍ଞା ଯାହା ସେ ବୋଇଲା
ରାବଣକୁ ମାରି ସୀତା ଆଣିଦେବି ପରା ।
ମୋହର ଶତ୍ରୁଦେବ ଯେ କରିଛି ପ୍ରାଣେ ହତ
ତ୍ରୈଲୋକ ଭିତରେ ତୋତେ ବୋଲଇ ମହତ ।
ଅନେକ ଦୁଃଖ ପରେ ଯେ ପାଇଲି ଏବେ ସୁଖ
କିଷ୍କିନ୍ଧ୍ୟା କଟକେ ଏବେ ଭୋଗ କରେ ସୁଖ ।
ଏମନ୍ତ କହିଣ ଯେ ବୋଇଲା ସୁଗ୍ରୀବର
ଏବେ ରାଜା ହୋଇଣ ଭୁଞ୍ଜଇ ନୃପବର ।
ତାହାର ବଡ଼ପଣ ଜାଣିବା ହେ ଗୋସାଇଁ ।
ଚତୁର୍ମାସ୍ୟା ଯିବାଯାଏ ଅଛଇ ବାଟଚାହିଁ
ନୋହିଲେ ଆମ୍ଭେ ପୁଣି କରିବା ଉପାୟ ତ ।
ପ୍ରତ୍ୟକ୍ଷ ଜଣାଯାଉ ହେ ଜାନକୀ କାନ୍ତ
ଶୁଣିଣ ସନ୍ତୋଷ ଯେ ହୋଇଲେ ରଘୁମଣି ।
ଲକ୍ଷ୍ମଣ କୋଳ ସେ କରନ୍ତି ପୁଣପୁଣି ।
ମୁଖେ ଚୁମ୍ବ ଦେଇଣ ଆଉଁସେ ପୁଣ କାୟେ
ତୁହି ସିନା ଭାଇରେ ସୋଦର ମୋର ହୁଏ ।
ତୋତେ ଆଶ୍ରା କରିଣ ଦେହ ରଖି
ତୁହି ସିନା ମୋହର ନିରେଖ ବଳସାଥି ।

ତୋହର ବଳରେ ମାରିବି ଅସୁର
ତେବେ ମୋତେ ସାଧୁ ବୋଲିବେ ତିନିପୁର ।
ଶ୍ରୀରାମଠାରୁ ଶୁଣିଣ ବୋଇଲେ ସଉମିତ୍ରୀ
ତୁମ୍ଭେ ତିନିପୁରେ ଅଟ ଯେ ଏକ କ୍ଷତ୍ରୀ ।
ତୁମ୍ଭଙ୍କୁ ବଳୀୟାର ନାହିଁ ଏ ତିନିପୁରେ
ସଂସାର ଜିଣିପାରୁ ଏ ଭୁଜବଳେ ।
ଚାରି ରାବଣ ଅଟନ୍ତି ତିଳେ ମାତର
ସବୁରି ଜୀବନ ଯେ ଅଛଇ ତୁମ୍ଭ କର ।
ଦିନ ପାହିଲେ ପୁଣି କରିବା ଆମ୍ଭେ କାର୍ଯ୍ୟ
ତୁମ୍ଭେ ଏବେ ଆରତ ନୁହଁ ହେ ଦେବରାଜ ।
ପାର୍ବତୀ ବୋଇଲେ ତୁମ୍ଭେ ଶୁଣ ହେ ଶୂଳଧର
ଲକ୍ଷ୍ମଣ ବୋଧିବାରୁ ଶ୍ରୀରାମ ହେଲେ ସ୍ଥିର ।
କଥାଏ ପଚାରିବି କହ ହେ ତୋଷକରି
ମନଦୁଃଖେ ଜାନକୀ ରହିଲା ଲଙ୍କାପୁରୀ ।
ରାବଣ ସେଠାକୁ କଲାକ ଗମନ
ଜାନକୀ ଆଗରେ କିସ କହିଲାକ ପୁଣ ।
ପାର୍ବତୀ ଆଗରେ କହନ୍ତି ତ୍ରିଲୋଚନ
ଶୁଣଗୋ ଶାକମ୍ଭରୀ ସେଠାର କଥାମାନ ।
ବେନିମାସ ଯିବାରୁ ରାବଣ ମନେ ଭାସି
ବୋଇଲା ଜାନକୀ ଆଣିଲି ମନେ ରସି ।
ତାହାର ତେଜରେ ହୋଇଲି ନ୍ୟୂନ
ତାହାକୁ ପାଇଲେ ସିନା ପାଇବି କାରଣ ।
ଏତେ ବୋଲି ରାବଣ ମନରେ ଚିନ୍ତାକରେ
ଅଶୋକ ବନରେ ପ୍ରବେଶ ହେଲା ଖରେ ।
ଦେଖିଣ ଅସୁରୀମାନେ ଆଡ଼ ହୋଇଗଲେ
ଆଡ଼ ଉହାଡ଼ରେ ଅସୁର ଯାଇ ମିଳେ ।
ବିଂଶପାଣି ସୀତାଙ୍କୁ ବଚନ କହେ ଧୀରେ
ତୋତେ ଶ୍ରଦ୍ଧାକରି ଆଣିଲି ଯେ ଘରେ ।
କିମ୍ପାଇଁ ସୁନ୍ଦରୀରେ ନ କହୁ କଥା ହସି
ସତେକି ରାମ ଲକ୍ଷ୍ମଣ ନେବେକି ତୋତେ ଆସି ।
ଚଉପାଶେ ସମୁଦ୍ର ମଝିରେ ଗଡ଼ ମୋର
ଆସିବାକୁ ବାଟ ଯେ ନାହିଁଟି ତାଙ୍କର ।
ମୋହଠାରେ ସଖିରେ ଭଜୁସି ହୋଇବୁ
ଏ ଲଙ୍କଗଡ଼ରେ ଠାକୁରାଣୀ ହେବୁ ।
ତୋହର ପାଦତଳେ କେତେ ଯେ ଦାସି ଖଟି
ମୁହିଁ ତୋର ଆଜ୍ଞାରେ ଥିବି ଚାନ୍ଦମୁଖି ।
ତୋତେ ଦେଖି ମୋର ଦେହ କାମରେ ଅସ୍ଥିର
ଲିଭାଅ କାମ ଅନଳ ଚିତ୍ତ ମୋ ହେଉ ଥିର ।
ଏମନ୍ତ ବଚନ ରାବଣେଶ୍ୱର କହଇ
କ୍ରୋଧରେ ଜାନକୀ ଯେ ଅନଳ ସରି ହୋଇ ।
ଶୁଣିଣ ଜାନକୀ ଯେ କହଇ ବଚନ
ମୋହର ଅଗ୍ନିସ୍ନାନ ଦେଖିଲୁରେ ପୁଣ ।
ତୁ ଯେବେ ଅଗ୍ନିରେ ସ୍ନାନ କରିବୁରେ ଜାଣ
ଅଗ୍ନିରେ ମରି ଜାଣ ଶରୀର ଜଳେ ପୁଣ ।
ତେବେ ମୋତେ ତୁରେ ହୋଇବୁ ସମାନ
କହିଲେ କି ତୃପତ ହୁଅଇ ମୋର ମନ ।
ସ୍ୱାମୀ ପ୍ରତିଜ୍ଞାରେ ମାରିବେ ତୋତେ ଭଲେ
ନୋହିଲେ କି ବଞ୍ଚିଥାନ୍ତୁ ମୋହର ଛାମୁରେ ।
କହିଲେ ଭସ୍ମ ହୋଇ ସାରନ୍ତୁଣ ତୁହିଁ
ପଞ୍ଚବଟୀ ବନରେ ଲୁଚିଥାନ୍ତା ଦେହୀ ।
ଅଳ୍ପଦିନ ରହିଲା ମୃତ୍ୟୁ ଯେ ତୋର
ପାଞ୍ଚମାସ ହେଲା ମୁଁ ଅଇଲି ଏଠାର ।
ଆହୁରି ନବମାସେ ମରିବୁ ରାମ ହସ୍ତେ
ଏଥକୁ ବିଚାର କରରେ ଦଶମାଥେ ।
ସପ୍ତପୁରେ ତୋତେ ରେ କେହୁ ନ ରଖିବ
ଦେବତାଏ କହିଲେ ନିଶ୍ଚୟ ମରିବ ।
ଅସୁର ଜାତି ସିନା ତୁ ଅଟୁରେ ଚାଣ୍ଡାଳ
ଆନ ଘେନିଯିବରେ ଘରଣୀ ତୋହର ।
ନୋହିଲେ ଦିଅର ସଙ୍ଗରେ ମେଳ ହେବେ
ତୋହର ମୁର୍ଦ୍ଧନୀ ନାରାଚ ଖାଇବ ଏବେ ।
ପୁତ୍ର ଦୁହିତା ସ୍ତ୍ରୀଙ୍କ ସଙ୍ଗେ ଘେନି
ଭାଇ ବନ୍ଧୁ କୁଟୁମ୍ବ ସଙ୍ଗତେ ନେବୁ ପୁଣି ।
ପାତ୍ରମନ୍ତ୍ରୀ ସାମନ୍ତ ଯେତେକ ସେନାପତି
ଅମାନତ୍ୟଗଣ ତୋର ଯେତେକ ଅଛନ୍ତି ।
ଗୋଟିଏ ନ ବର୍ତ୍ତିବେ ରାମ ଲକ୍ଷ୍ମଣ କୋପେଣ
ପାଞ୍ଚମାସ ହୋଇଲା ନ ଦେଖେ ମୋତେ ପୁଣ ।
ନବମାସ ତୋର ରହିଲା ମୃତ୍ୟୁ ଜାଣ
ଚଉଦମାସ ପୂର୍ଣ୍ଣହେଲେ ମରିବୁ ତୁହି ପୁଣ ।
ହିରଣ୍ୟ ହିରଣାକ୍ଷ୍ୟକୁ ନୋହୁ ତୁହି ବଡ଼ ।
ସଦାଶିବ ବରରେ ହୋଇଲା ଅମର ବର
ତିନିପୁର ସାଧିଲା ସାଧିଲା ସାଗର ।
କ୍ଷୀର ସାଗର ପର୍ଯ୍ୟନ୍ତ ଧାପ ତାହାର
କର୍ମରେ ତାହାର ବିଧାତା ଲେଖିଦେଲା
ଜଳ ସ୍ଥଳ କାହିଁରେ ନ ମର ବୋଇଲା ।
ଦେବ ଅସୁର ନର ଯକ୍ଷ ଯେ କିନ୍ନର
କାହାରି ହସ୍ତେ ମୃତ୍ୟୁ ଯେ ନୋହିବ ତୋହର ।
କେବଳ ତୋର ପୁତ୍ର ତୋତେ ଯେ ମରାଇବ
ଯେତେବେଳେ ନାରାୟଣ ସିଂହରୂପ ହେବ ।
ସେତେବେଳେ ମରିବୁରେ ନ ରଖିବେ କେହି
ଏମନ୍ତ ବଚନରେ ବିଧାତା କହିଯାଇ ।

ନୌଯୁଗ ପର୍ଯ୍ୟନ୍ତ ସେ ଦୈତ୍ୟ ରହିଲାଇଁ
ପ୍ରଥମେ ସ୍ୱର୍ଗେ ଇନ୍ଦ୍ରପଣ କଲା ଯାଇ ।
ସ୍ୱର୍ଗରୁ ଯାଅ ରାଜା ବୋଲିଣ ବୋଇଲେ
ନିଶ୍ଚେ ମୃତ୍ୟୁ ତୋର ସ୍ୱର୍ଗରେ ରହିଲେ ।
ସ୍ୱର୍ଗପୁର ଛାଡ଼ି ଯାଅ ତୁ ବେଗେର
ଈଶ୍ୱର ବୋଇଲେ ସ୍ୱର୍ଗ ଛାଡ଼ି ଗଲା ବୀର ।
ପାତାଳପୁରେ ପ୍ରବେଶ ହୋଇଲା
ନାଗରାଜାକୁ ପେଲି ଦେଇ ଧରଣୀ ଧଇଲା ।
ବାଇଶିଯୁଗ ପର୍ଯ୍ୟନ୍ତ ଧଇଲା ଧରଣୀ
ନାଗବଳ ଉପରେ ହୋଇଲା ଶିରୋମଣି ।
ବେଦବର ଯାଇଣ ଦୈତ୍ୟକୁ ଯେ କହିଲା
ପାତାଳ ଭୋଗ ନାହିଁ ଯାଅରେ ବୋଇଲା ।
ଶୁଣିଣ ହିରଣ୍ୟ ସେ ପୁର ତେଜିଗଲା
ବାସୁକୀ ନାଗ ଶିରରେ ଧରିଣୀ ନେଇ ଦେଲା ।
ମୃତ୍ୟୁପୁରରେ ଦୈତ ଆସି ହୋଇଲା ପ୍ରବେଶ
ମଧ୍ୟପୁରରେ ଭୋଗ କଲା ଯୁଗସେତ ପଞ୍ଚାଶ ।
ମୃତ୍ୟୁକାଳ ତାର ହୋଇଲା ଆସି ପୁଣ
ସେତେବେଳେ ପ୍ରହ୍ଲାଦ କୁମର ଜାତ ପୁଣ ।
ସେ କୁମର ବିଷ୍ଣୁର ଯେ ପୁରାଣ ପଢ଼ିଲା
ତେଣୁ ସେ ହିରଣ୍ୟ ତାହାକୁ କୋପ କଲା ।
ବୋଇଲା ନାରାୟଣ ଦେଖାଅ ଯେ ତୋହର
ନୋହିଲେ ମୃତ ଆଜି ହୋଇବ ତୋହର ।
ଶୁଣିଣ ପ୍ରହଲାଦ ଜପେ ନାରାୟଣ
ସିଂହରୂପ ଧରିଣ ମାରିଲେ ନାରାୟଣ ।
ତେଡ଼େ ବଡ଼ ଅସୁର ଗଲା ଯେ ନ ରହିଲା
ପୁତ୍ର ପ୍ରହଲାଦ ବିଚାରି ମାରିଲା ।
ତୋତେ ଯେ ବିଧାତା କହିଣ ଥିଲା ଜାଣ
ଛପନଯୁଗ ଗଣ୍ଡାକୁ ଆୟୁଷ ଦେଲା ପୁଣ ।
ବୋଇଲା ଶ୍ରୀରାମ ନାରୀ ସୀତାକୁ ନ ଆଣିବୁ
ଆଣିଲେ ରାମହସ୍ତେ ନିଶ୍ଚୟ ମରିବୁ ।
ତୁ ବୋଇଲୁ ଶ୍ରୀରାମ ଅଟଇ କେହୁ ପୁଣ
ବିଧବା ବୋଇଲେ ଅଟନ୍ତି ସେ ନାରାୟଣ ।
ତୁ ବୋଇଲୁ ଜାନକୀ ଅଟେ କିଏ
ବିଧାତା ବୋଇଲା ସେ କମଳା ଜାତହୁଏ ।
ତୁ ବୋଇଲୁ ସେ ଯେବେ ମାନବ ଜାତ ହେବ
ମାନବ ଶରୀର ସ୍ତିରୀଙ୍କ ଆଚାର କରିବ ।
ବିଧାତା ବୋଇଲେ ଦେଖିବୁ ନେତ୍ରପଟ
ଅଶୌଚ ସ୍ନାହାନେ ଅଗ୍ନିରେ ସମ୍ଭୁତ ।
ତେଣୁ ସେ ଶୁଦ୍ଧାସ୍ନାନ ବୋଲିଣ ତାକୁ କହି
ଜନ୍ମରୁ ମୃତ୍ୟୁଯାଏ ସେ କଥା ସେ କରଇ ।
ତୁ ବୋଇଲୁ ଦିନେ ସିନା ସ୍ନାହାନ କରିବ
ପୁଣି ତ ଏଗାର ଦିନ ଭଲରେ ରହିବ ।
ଏ ଦିନମାନଙ୍କରେ ଆଣିଲେ ତାକୁ ପୁଣ
ଏଥିରେ ବିରୁଦ୍ଧ ନାହିଁ ଭଲେ ତୁମ୍ଭେ ଜାଣ ।
ବିଧାତା ବୋଇଲା ସେ ଶ୍ରୀରାମ ବିହୁନେ
ଅନ୍ୟକୁ ଅନେକ ହୋଇବ ସେହୁ ତେଣେ ।
ସେଠାରୁ ବେଦବରକୁ ତୁହି ସେ ଜଣାଇ
ଏ କଥା ମନେ ମୋର ନ ରହେ ତୁ ବୋଲଇ ।
ତେଣୁ ବିଧାତା ଲେଖିଛି ଚିତ୍ରପଟ
ସୀତାକୁ ଆଣିଲେ ମରିବୁ ଦୈତ୍ୟଶ୍ରେଷ୍ଠ ।
ସେ କଥାମାନ ତୁରେ ମନରୁ ପାଶୋରିଲୁ
ମୃତ୍ୟୁକାଳରେ ହେତୁ ନ ପାରିଲୁ ।
କହିବାର ନ ମାନିଲୁ ପୁଣ
ଏବେ ତୁ ଜାଣିଗଲୁ ବିଧାତାର ବଚନ ।
ଶୁଦ୍ଧଦିନରେ ଅଗ୍ନି ସ୍ନାହାନ ତୁ ଦେଖିଲୁ
ଅଗ୍ନିର ସ୍ୱରୂପ ମୋର ଏବେ ତୁ ଦେଖିଲୁ ।
ଆଉ କିମ୍ପା କହୁଛୁ ବଳବନ୍ତ ଯେ ପୁଣ
ଭସ୍ମକରି ଦେବିଟି ଆଗରୁ ପଳାଯାଣ ।
ମୋହର ହସ୍ତେ ମଲେ ଲଙ୍କରୁ ଏବେ ଯିବୁ
ଶ୍ରୀରାମ ହସ୍ତେରେ କାରଣୁ ତୁ ପାଇବୁ ।
ରାବଣ ବୋଇଲା ଏ କଥା ମୋର ସତ୍ୟ
ମୃତ୍ୟୁହେଲେ ପୁଣ ଅଛଇ ନର୍କପଥ ।
ଜାନକୀ ବୋଇଲେରେ ଶୁଣ ତୁ ରାବଣ
ଦୁର୍ଗାର ହସ୍ତେ ମଲା ମୈଷା ଯେ ଦୈତ୍ୟ ପୁଣ ।
ଜନ୍ତୁପତି ନେଇଣ ନର୍କରେ ବାସ ଦେଲା
ପଞ୍ଚଚାଳିଶ ଯୁଗ ନର୍କରେ ରହିଲା ।
ଏକଦିନେ ବାସୁଦେବ ସଞ୍ଜୀବନୀପୁର ଗଲେ
ସେ ପୁର ନର୍କବାସୀଙ୍କି ଉଦ୍ଧାର କରିଦେଲେ ।
ସେତେବେଳେ ମୈଷାସୁର ମୁକ୍ତି ଯେ ପାଇଲା
ସ୍ୱର୍ଗପୁର ଗନ୍ଧର୍ବ ଯେ ହୋଇଣ ରହିଲା ।
ସେକଥାକୁ ନ ମାନିଲେ ତୋତେ ଶାପ୍ୟଦେଇ
ଷୋଳଯୁଗ ନର୍କରେ ବାସ ଯେ କରଇ ।
ଶ୍ରୀରାମ ଆସିଲେ ମୁଁ ଯେ କରିବି ଭସ୍ମ ରାଶି
ଆମ୍ଭେ ମୁଁ କରିଛି ଯେ ଶ୍ରୀରାମ ଲକ୍ଷଣ ଏଥି ଆସି ।
ତୋତେ ମାରିଣ ଯେ ମୋତେ ଏଠାରୁ ଘେନିଯିବେ
ତୋହର ବଂଶରେ ଜଣେ କେହି ନ ରହିବେ ।
କୁମ୍ଭକର୍ଣ୍ଣ ବଂଶରେ ରହିବ ଏକ ଜଣ
ବୀରବାହୁ ବଂଶରେ ହେ ଗୋଟିଏ ରହୁ ପୁଣ ।
ଶ୍ରୀରାମ ଦୟାକରି ଛାଡ଼ିବେ ମୁଁ ଜାଣେ
ଏ ରାଜ୍ୟେ ରଜା ହୋଇବ ଭାବ ଯେ ବିଭୀଷଣେ ।

ତୋହର ବଇରୀରେ ଅଟଇ ମୁହିଁ ଜାଣ
ଲଙ୍କାକୁ ଆସିଅଛି ସେଥିରେ କାରଣ ।
ପୂର୍ବଜନ୍ମ କଥା ହେତୁ ଯେ କରାଇଲି
ଜାଗ୍ରତ ହୁଅ ବୋଲି ତୋତେରେ କହିଲି ।
ଯାଅ ତୁ ମୋ ଆଗରୁ ନ ରହ ତୁ ପୁଣି
ଏତେ ବୋଲିଣ କ୍ରୋଧ ହୋଇଲେ ଠାକୁରାଣୀ ।
ସୀତାଙ୍କ କ୍ରୋଧ ଦେଖିଣ ରାବଣ ପଳାଇଲା
ଅସୁର ଯିବାରୁ ସତୀ ନିର୍ଗତ ପୁଣି ହେଲା ।
ଅସୁରୀମାନେ ଦେଖିଣ କାକୁସ୍ଥ ରୂପ ହୋଇ
ଜାନକୀ ଦୃଷ୍ଟାନ୍ତର କହିଲେ ପୁଣି ଯାଇ ।
ନୃତ୍ୟ ଗୀତ କରି ଜାନକୀ ଛାମୁରେ
ମାସକେ ମନ୍ଦୋଦରୀ ଦେଖଇ ଆସି ଥରେ ।
ପଚାରେ ମନ୍ଦୋଦରୀ ଶୁଣରେ ତ୍ରିଜଟା
କି କରଇ ଜାନକୀ ଯେ ଶ୍ରୀରାମର ବନିତା ।
ତ୍ରୈଲୋକ୍ୟର ଠାକୁରାଣୀ ଅଟନ୍ତି ରାମମଣି
ବିନତି ଭାବରେ ଶାନ୍ତ କରୁଥିବୁ ଯେ ପୁଣି ।
ତୋହର ଉଦୟ ନବମାସ ଯେ ବହିଗଲେ
ପାଞ୍ଚମାସ ହେଲା ସତୀ ପଡ଼ିଲା ବନ୍ଧନରେ ।
ନବମାସ ଗଲେ ପିତା ତୋ ହେବ ରାଜନ
ମୁହିଁ ତୋ କୋଳେ ଅଭିଷେକ ଜାଣ ।
ରାବଣ କୁମ୍ଭକର୍ଣ୍ଣ ବଂଶ ଯେ ନ ରହିବେ
ଏହା ମୋତେ ନାରଦ କହିଗଲେ ଏବେ ।
ଏ ଲଙ୍କାଗଡ଼ରେ ତୁ ଯେ ହୋଇବୁ ରାଜା
ତୋର ପିତା ଏ ଗଡ଼ରେ ପାଇବ ପାଦପୂଜା ।
କାହାରି ଆଗେ ନ କହିବୁ ଗୁପ୍ତକଥା ଏହି
ତୋର ମୋର ବିନୁ ଯେ ନ ଜାଣେ ଆନ କେହି ।
ଏତେକ ତ୍ରିଜଟାକୁ ବେଗେ କହିଣ ଗଲା
ଶୀତଳ ମଣୋହି ଆଣି ତ୍ରିଜଟା ହସ୍ତେ ଦେଲା ।
ଘେନିଣ ତ୍ରିଜଟା ଯେ ବେଗେ ଚଳିଗଲା
ବୈଦୁର୍ଯ୍ୟ ମଣ୍ଡପରେ ବେଗେ ଯାଇ ମିଳିଲା ।
ଜାନକୀ ବୋଇଲେ ତୁ ଯେ କେଣେ ଯାଇଥିଲୁ
ପ୍ରଭାତ ସମୟେ ତୁ ଯେ ଏଠାରେ ନଥିଲୁ ।
ତ୍ରିଜଟା ବୋଇଲା ମୋର ପିତା ଯେ ଆସିଥିଲା
ତାଙ୍କ ସଙ୍ଗରେ କଥା ହେଉଥିଲି ପରା ।
ମାତାକୁ ବୋଧ କରିଣ ଫେରି ମୁଁ ଅଇଲି
ତୁମ୍ଭ ଦର୍ଶନରେ ସନ୍ତୋଷ ମୁଁ ହେଲି ।
ଶୁଣିଣ ଜାନକୀ ଯେ ହୋଇଲା ଶୋକଭର
କେଣେ ଗଲ ସ୍ୱାମୀ ମୋର ନ ଦେଖି ପୟର ।
ଲକ୍ଷ୍ମଣକୁ ଗାଳି ଦେଇ ଯେ ପେଷିଲି ପାପୀଷ୍ଟି
ସେ କଥାରୁ ଯେ ଉପୁଜିଲା କଷ୍ଟି ।
ଲକ୍ଷ୍ମଣ ଥିଲେ କି ରାବଣ ମୋତେ ଆଣିଥାନ୍ତା
ଦଣ୍ଡକା ଅରଣ୍ୟରେ ବସି ମୃତ୍ୟୁ ନିଅନ୍ତା ।
ଶ୍ୱାନ ଶୃଗାଳ ଯେ ମାଉଁସ ଥାନ୍ତେ ଖାଇ
ମୋତେ କି ଦଶା ଆଣି ଦେଲୁ ବିହି ।
ଏତେବୋଲି ବଇଦେହୀ କରଇ ରୋଦନ
କହଇ ତ୍ରିଜଟା ଦନ୍ତରେ ଧରି ତରିଣ ।
ଚରଣତଳେ ପଡ଼ି କହଇ ସତୀ
ସାତମାସେ ସ୍ୱାମୀକୁ ଦେଖିବୁ ଆରେ ସଖି ।
ସ୍ତିରୀକୁ ତିନିଦଶା ପଡ଼ଇ ଆଗୋ ମାତ
ଚିନ୍ତା ଛାଡ଼ ମନରୁଗୋ ହୋଇଣ ଶାନ୍ତ ।
ଶୋକ ସମ୍ଭାଳିଣ ବୋଲନ୍ତି ରାମରାଣ
ଅପୂର୍ବ କଥା ଏକ କହିଲୁ ଆଜ ପୁଣ ।
ଜନକ ଘରଣୀ ଯେ ଅଟଇ ମାତ ମୋର
ସେ ମୋତେ ନ କହେ ଏ ଖବର ।
ତାକୁ ବଳି ତୁ ମୋହର ହୋଇଲୁ ଜନନୀ
ତିନିଦଶା କଥା କହିଲୁ ମୋତେ ପୁଣି ।
ତ୍ରିଜଟା କହିଲା ତୁମ୍ଭେ ଶୁଣ ଗୋ ଠାକୁରାଣୀ
କାଞ୍ଚି କର୍ଣ୍ଣାଟରେ ଭୀମହିଁ ରାଜା ପୁଣି ।
ଲୀଳାବତୀ ନାମରେ ତାହାର ପାଟରାଣୀ
ହସ୍ତରେ ଅନେକ ପଦ୍ମ ଫୁଟଇ ପୁଣି ।
ମୁଖତାର ଦିଶଇ ଯେ ଚନ୍ଦ୍ରର ଆକାର
ସୁଲକ୍ଷଣା ସ୍ତିରୀ ଯେ ଅଟଇ ଜାତ ତାର ।
ଏକବର୍ତ୍ତୀ ସତୀ ଯେ ଧର୍ମରେ ପୁଣ ଥାଇ
ନବ ସହସ୍ର ବର୍ଷ ଏଥିରେ ଗଲା ବହି
ଏତେଦିନ ତା ଜାଣ ଫଳେ ପେଟ। ତାର
ମନରେ ଚିନ୍ତା କଲା ସେ ସତୀ ଅପାର ।
ଚିନ୍ତାକରି ରାଣୀ ବସିଛନ୍ତି ଅନ୍ତଃପୁରେ
ନାଗତୁଟା ଋଷି ଯେ ପ୍ରବେଶ ହେଲେ ଖରେ ।
ଋଷିଙ୍କୁ ଦେଖି ସେ ଯେ ନମସ୍କାର ହେଲା
ଗଙ୍ଗାଜଳ ଆଣିଣ ଚରଣ ଧୋଇ ଦେଲା ।
ଆସନ ଦେବାରୁ ଋଷି ବସିଲେ ସେଠାର
ରାଣୀ ପଚାରିଲା ବିଜେ କିମ୍ପା ମୋର ପୁର ।
ନାଗଋଷି ବୋଇଲେ ତୁମ୍ଭ ଚିନ୍ତା ମନରେ
ପୁତ୍ର ଦୁହିତା ନୋହିଲା ବୋଲି ମନ ଦୁଃଖ କର ।
ବେନି ଗୋଟି କୁମର ଶରୀରୁ ତୋର ଜାତ ।
ଗୋଟିଏ ଦୁହିତା ହେବ ପଦ୍ମିନୀ ସାଦୃଶ୍ୟ
କପାଳରେ ସାତ ରେଖା ରେଖା ଯେ ଅନିନ୍ଦିତ ।
ସତୀରେ ଗଣିତା ସେହୁ ହୋଇବ ସମ୍ମତ ।
ଏତେ ବୋଲି ନାଗଋଷି ବଚନ କହିଲେ
ତିନିଗୋଟି ଲିଙ୍ଗ ଅନ୍ନ ତା କରରେ ଦେଲେ ।

ଦେଇଣ ନାଗରଷି ପାତାଳକୁ ଗଲେ
ଭୀମରାଜା ରାଣୀ ଚିନ୍ତାକୁ ଛାଡ଼ିଲେ ।
ସେତିକି ଗୋଟି ଲିଙ୍ଗ ଅନ୍ନ ସେହିକ୍ଷଣି ଖାଇ
ଭୀମରାଣୀ ଯେ ଗର୍ଭବାସ ହୋଇ ।
ଚାରିମାସ ଯିବାରୁ ଜନ୍ମ ସେ ଦୁହିତା
ସାତମାସେ ଏକପୁତ୍ର ସ୍ୱରୂପ ଜନ୍ମ ତା ।
ଦଶମାସେ ଏକପୁତ୍ର ଜନ୍ମ ପୁଣି ହେଲା
ଭୀମରାଜ ରାଣୀର ଯେ ଗର୍ଭଶୂନ୍ୟ ହେଲା ।
ଦେଖିଣ ରାଜରାଣୀ ବଡ଼ ସନ୍ତୋଷ ହୋଇଲେ
ଦୁହିତାର ନାମ ଗୋଟି ଦମୟନ୍ତୀ ଦେଲେ ।
ତାର ହସ୍ତେ ଦେଖିଲେ ଅବେଶୁ ପଦ୍ମ ପୁଷ୍ପ
କପାଳେ ସାତରେଖା ଦେଖି ହୋଇଲେ ସନ୍ତୋଷ ।
ବେନି ବାଳଙ୍କ ନାମ କଲେ ଧବଳ ଯେ ନୀଳ
ମନରେ ବିଚାରେ ରାଜକୁଳ ହୋଇଲା ନିର୍ମଳ ।
ସପ୍ତବର୍ଷ କୁମାରୀ ହୋଇଲେ ନବଯୋଗ୍ୟା
ସ୍ୱୟମ୍ୱର କଲା ରାଜା ବଜାଇ ବୀରବାଜା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ବରୀ
ସୀତା ଆଗେ ତ୍ରିଜଟା କହଇ ବିଚାରି ।
ରାଜାର ସ୍ୱୟମ୍ୱର ଜାଣିଣ ବେଦବର
ମନରେ ବିଚାରିଲେ କେମନ୍ତ ପ୍ରକାର ।
ଦେବତା ମାନ ଯେ ହୋଇବ ଏକ ଠୁଳ
ଦେବତାଏ କୂଟ ଯେ ଜାଣନ୍ତି ଅପାର ।
ସେ କନ୍ୟାର କର୍ମେ ଯେ ଲେଖିଣ ଅଛି ଯେହୁ
ନଳରାଜାର ଅଟେ ସହୋଦର ସେହୁ ।
ଏମନ୍ତ ବିଚାରି ଯେ ହଂସକୁ ଚାଳିଦେଲା
ଦମୟନ୍ତିକୁ କହି ଆସ ବୋଇଲା ।
ଶୁଣିଣ ପରମହଂସ ବେଗେ ଚଳିଯାଇ
ଦମୟନ୍ତୀକୁ କହିଲା ସ୍ନାହାନ କର ଯାଇ ।
ତୋହର ପିତା ଯେ କଲାକ ସ୍ୱୟମ୍ୱର
ନଳକୁ ବରିବୁ ଯେ କହିଲେ ବେଦବର ।
ସେଠାରୁ ଦମୟନ୍ତୀର ମନରେ ଚିନ୍ତା ହେଲା
ସ୍ନାହାନ ସାରିଣ ଯେ ଅନ୍ତଃପୁରେ ଗଲା ।
ମଞ୍ଚରେ ଲକ୍ଷେ ନୃପତି ହେଲେ ଠୁଳ
ସ୍ୱର୍ଗର ଚାରି ଦେବତା ହୋଇଲେ ଏକମେଳ ।
ମାଳା ଘେନି ଦମୟନ୍ତୀ ସେଠାରେ ମିଳିଲା
ଦେଖିଣ ନଳରାଜା କଣ୍ଠରେ ମାଳା ଦେଲା ।
ଦମୟନ୍ତୀ ନଳ ବିଭା ହୋଇଲେ ସେଠାରେ
କନ୍ୟା ଗଲେ ସେ ଯେ ବୈକୁଣ୍ଠ ନଗରେ ।
ରାଜାମାନେ ଗଲେ ଯେ ଯାହା ସ୍ଥାନେ
ଦେବତା ଚଳିଲେ ସ୍ୱର୍ଗର ଭୁବନେ ।

କଳି ଦ୍ୱାପର ଯେ ଶୂନ୍ୟେ ଆସୁଥିଲେ
ଇନ୍ଦ୍ର ଅଗ୍ନି ବରୁଣ କୁବେର ସେ ଭେଟିଲେ ।
ବୋଇଲେ ଦେବତା ତୁମ୍ଭେ କେଣେ ଯାଇଥିଲ
ଚାରି ଦେବତା ବୋଇଲେ ଆମ୍ଭେଥିଲୁ ଭୀମରାଜ ପୁର ।
ନଳରାଜା କୁବେର କନ୍ୟା ନେଉଥାଇ
ଧର୍ମବନ୍ତ କନ୍ୟା ବିଚାରେ ବୁଝିଲୁ ସେହି ।
ଶୁଣିକରି ଦୁଇଜଣ ବେଗେ ଚଳିଗଲେ
ଅଜ୍ଞାନ ରୂପରେ ତାର ବିବରେ ବିଜେକଲେ ।
ଘୋଟନ୍ତେ ପଶାଖେଳେ ରାଜନ
ସବୁ ହରାଇଲା ଯେ ବୁଲାଇ ବଦନ ।
ଦମୟନ୍ତୀ ଯେ ତା ପଛରେ ଗୋଡ଼ାଇଲା
ଅରଣ୍ୟ ଭିତରେ ନଳ ଛାଡ଼ିକରି ଗଲା ।
ଅଜ୍ଞାନରେ ବାଇ ହୋଇ ବୁଲିଲା ଦମୟନ୍ତୀ
ସାତବରଷ ଯାଏ ହୋଇଲା ନିରୀମାକ୍ଷୀ ।
ପିତା ଘରେ ତିନିବର୍ଷ ରହିଲା ଯାଇଁ
ତେବେ ନଳ ରାଜାକୁ ଭେଟ ସେ ନୁହଇ ।
ଗୁରସ୍ତ ଘରଦଶା ଏମନ୍ତ ପ୍ରକାର
ବାପଘରେ ଗଲେ ବନେ ଦୁହିତା ଅଟେ ପୁଣ ।
କର୍ମର ଦଶାରେ ବିହି ଯେତେ ଦୁଃଖ ଦେଲା
ଅକାରଣେ ଦୁଃଖଦେଇ ସେହି ଯେ ଦୁଃଖିହେଲା ।
ଜାନକୀ ବୋଇଲେ ତୁମେ ଶୁଣ ଗୋ ତ୍ରିଜଟା
ନିଷ୍ଠୋରଣେ କଳିଯେ ଦ୍ୱାପର ନେଲେ ଗୋଟା ।
ସେ ବେନିଜଣ ଶୁଣି କେମନ୍ତେ ଦୁଃଖ ପାଇ
ସେ କଥା ମୋର ଆଗେ କହ ଗୋ ବୁଝାଇ ।
ତ୍ରିଜଟା ବୋଇଲା ଶୁଣ ଗୋ ଜନନୀ
କଳି ଦ୍ୱାପରକୁ ଶାସ୍ତି ଦେଲା ଯେ ନଳ ପୁଣି ।
କଳି ଦ୍ୱାପରକୁ ବାନ୍ଧିଲା ନଳ ବନେ
ହରିଡ଼ା ବାହାଡ଼ା ଦୁହିଙ୍କର ବନେ
ବାନ୍ଧିଣ ନଳରାଜା କର୍ଣ୍ଣାଟକୁ ଗଲା
ଦମୟନ୍ତୀକୁ ଘେନି ନିଜ ରାଜ୍ୟରେ ମିଳିଲା ।
ଶତ୍ରୁକୁ ଘଉଡ଼ି ନିଜ ରାଜ୍ୟରେ ରାଜା ହେଲା
ପ୍ରଜା ପାଳନ କରି ନାମ ବିଖ୍ୟାତ କଲା ।
ସାତବର୍ଷ ଏଥିରେ ଯେ ବହିଣଗଲା
ସେ କପିଳାସ ଈଶ୍ୱର ଜାଣିଲା ।
ପାର୍ବତୀ ସଙ୍ଗେ ଘେନି ସେ ବନରେ ପ୍ରବେଶ
କଳିଦ୍ୱାପର ବନ୍ଧନ ଫେଡ଼ିଲେ ହୋଇ ହରସ
ସେହି ଦିନରୁ କଳି ଦ୍ୱାପର ଦୁଇଜଣ
ନଳ ନାମ ଶୁଣିଲେ ନ ରହନ୍ତି ସେହିସ୍ଥାନ
ଶୁଣିଣ ନଳ ଦମୟନ୍ତୀ କଥା ସୀତା ହେଲେ ତୋଷ
ବୋଇଲେ କଥା ଏତେ କରିଲୁ ପ୍ରକାଶ ।

ସ୍ୱାମୀର ଘର କଥା ଏବେ ଯେ ଜାଣିଲେ
ପିତାର ଘର କଥା କିଛି ହିଁ ନଜାଣିଲେ ।
ତ୍ରିଜଟା ବୋଇଲା ସେ କଥା ଏବେ ଶୁଣ
ପିତାର ଘରେ ଦୁହିତା ଦୁଲାଳୀ ଅଟେ ପୁଣ ।
ପୁଣି ଆସି ବଳେ କୋଳରେ ଖେଳେ
ହୁଏ ଅପାର ଯୁବତୀ ଲଜ୍ଜା ଯେ ହୋଇଲେ ।
ପିତା ମାତାଙ୍କ ବଚନ ହୁଅଇ ସଲେ
ଚିନ୍ତାକରେ ସ୍ୱାମୀଯେ ହେଉମୋର ଅନୁକ୍ଷଣେ ।
ଚିନ୍ତା ସ୍ୱାମୀ ତାକୁ ହୁଅଇ ପ୍ରାପତ
ସ୍ୱାମୀର ସଙ୍ଗେ ଲୀଳା କରଇ ବହୁତ ।
କେତେ ଦିନ ଉତାରୁ ଦୁହିତା ପୁତ୍ର ହୋଇ
ସ୍ୱାମୀର ଲୀଳା ସେହୁ ପାଶୋରଇ ।
ସେଠାରୁ କର୍ମକୁ ସେହୁ ନାରୀ
ବିଚାରେ କର୍ମ ଯେ ମୋର ଥିଲା ଏହିପରି ।
ପିତା ଘରେ ଅଳିଅଳ ସ୍ୱାମୀର ଭକ୍ତିଣ
ପୁତ୍ରବଧୂ ହୋଇବାରୁ ଲାଗିଲା ବଡ଼ ଚିନ୍ତା ।
ଆଦରେ ନ ଦିଅନ୍ତି ଅନ୍ନ ପାଣି
ବିଚାରେ ମଲେ କର୍ମ ସରିବ ମୋର ପୁଣି ।
ଏରୂପେ ତିନିଦଶା ସରିଗଲା କହି
ତୈଲୋକ୍ୟ ଠାକୁରାଣୀ ବିଚାର ମନେ ତୁହି ।
ଶୁଣିଣ ଜାନକୀ ଯେ ପରମ ତୋଷ ହେଲେ
ବାଳକ ଯୁବତୀ ମୋତେ ବଧିଲୁ ବୋଇଲେ ।
ତ୍ରିଜଟା ବୋଇଲେ ଶୁଣ ଗୋ ଠାକୁରାଣୀ
ସର୍ପର ନିଃଶ୍ୱାସ ଯେ ସ୍ତିରୀର କାଳ ପୂରୀ ।
ରାବଣକୁ ଦଣ୍ଡ ଯେ ଆସିଣ ପ୍ରବେଶ
ବିଂଶପାଣି ମରିବାର ରହିଲା ନବମାସ ।
ଷଡ଼ମାସ ଗଲେ ତୁମ୍ଭେ ବାର୍ତ୍ତା ଯେ ପାଇବ
ସେଥିରୁ ମାସେ ଗଲେ ଶ୍ରୀରାମ ଆସିବ ।
ବେନିମାସେ ସଂଗ୍ରାମ ରାବଣ ମାରିକରି
ତୋତେ ନେଇ ବିଳାସ କରିବେ ଚାପଧାରୀ ।
ସପ୍ତପୁରରେ ରାଜାଧି ରାଜେଶ୍ୱର
ତୁମ୍ଭର ସ୍ୱାମୀହେବ ସବୁ ସବୁରି ଠାକୁର ।
ତ୍ରିଜଟା ବାଣୀ ଶୁଣି ଜାନକୀ ତୋଷ ହେଲେ
ଈଶ୍ୱର କହିବାରୁ ପାର୍ବତୀ ଯେ ତୋଷ ହେଲେ ।
ସେଠାରୁ ପାର୍ବତୀ ହସିଣ ପୁଣି କହି
ତ୍ରିଜଟାକୁ ଅଳ୍ପ ବୟସ ଯେ ହୋଇ ।
କି ରୂପେ ଏତେ କଥା ଜାଣିଲା ସେ ପୁଣି
ଜାନକୀର ଦୁଃଖ ଏବେ ନିବାରି ।
ଈଶ୍ୱର ବୋଇଲେ ଶୁଣରେ ଭଗବତୀ
ବାଲୁକା ପୂଜା ନିତି କରଇ ତ୍ରିଜଟାଟି ।

ଏକଦିନେ ମହାମାୟା ପ୍ରସନ୍ନ ହେଲେ
ସର୍ବଜ୍ଞ ପଣେ ତାକୁ ବର ଯେ ଆସି ଦେଲେ ।
ଏକଗୋଟି ଚିତ୍ରପଟ ତାହାକୁ ଦେଲେ ପୁଣ
ତ୍ରିଜଟା ଚାହିଁଲେ ସକଳ ଦିଶେ ପୁଣ ।
ମଣାଇ ମହାମାୟୀ ସକଳ କହିଗଲା
ଜାନକୀ ଦୁଃଖ ଦେଖି ସକଳ ପ୍ରକାଶିଲା ।
ପାର୍ବତୀ ବୋଇଲେ ଶୁଣରେ ତ୍ରିଲୋଚନ
କଳହ ଋଷି ଉକ୍ତି ମନ୍ଦୋଦରୀ ପୁଣ ।
ରାବଣ ଗଲାବେଳେ ଋଷିଙ୍କୁ ସୁମରିଲା
ଋଷିଠାରୁ ଶୁଣିଣ ସ୍ୱାମୀକି ପ୍ରବୋଧିଲା ।
ନ ମାନି ରାବଣ ଯେ ଗଲା ପଞ୍ଚବଟୀ
ମାୟାରେ ରାବଣ ସୀତାଙ୍କୁ ଆଣିଲାଟି ।
ପାଞ୍ଚମାସ ହେଲା ନ ଆସିଲେ ଯତି
କିମ୍ପାଇ ମନ୍ଦୋଦରୀ ହୋଇଲା ଭକତି ।
ଈଶ୍ୱର ବୋଇଲେ ଶୁଣରେ ନାରୀମଣି
ନାରଦ ସୁମରଣା କଲାକ ସତୀ ପୁଣି ।
ପ୍ରବେଶ ହୋଇଲେ ଯେ କଳହ ଋଷି ପୁଣି
ଉଠେ ଯଥାଶୀଘ୍ର ଦେଖିଣ ନାରୀ ।
ମୁଁ ଯେ ନିସ୍ତରିଲି ମନ୍ଦୋଦରୀ ବୋଲେ
ବସିବାକୁ ଆସନ ବେଗେ ଆଣିଦେଲେ ।
ଗଙ୍ଗାଜଳ ଅଣାଇଲା ଚରଣ ଧୋଇଲା
ଶୁଣ ବିଶ୍ରବା ଋଷି ବୋହୂ ନାରଦ ବୋଇଲା ।
ମନ୍ଦୋଦରୀ ବୋଇଲେ ଚିନ୍ତା କରିଥିଲି
ତୁମ୍ଭଠାରୁ ଶୁଣି ମୁଁ ନିଶ୍ଚିନ୍ତ ହୋଇଲି ।
ଏ ରାମଲକ୍ଷ୍ମଣ କେଉଁଠାରେ କହ
ଶୁଣିଲେ ସନ୍ତୋଷ ହେବେ ବ୍ରହ୍ମାଙ୍କର ପୁଅ ।
ଶୁଣଗୋ ମନ୍ଦୋଦରୀ ଶ୍ରୀରାମଙ୍କର ବାଣ
କିଷ୍କିନ୍ଧ୍ୟା ନଗ୍ରରେ ପ୍ରବେଶ ଯାଇ ପୁଣ ।
ସୁଗ୍ରୀବର ସାଙ୍ଗରେ ରାମ ହୋଇଲେ ମଇତ୍ର
ମଇତ୍ର ଛଳେ ରାମ ବାଳୀ କଲେ ହତ ।
ସୁଗ୍ରୀଙ୍କୁ ରାଜା କରିଣ ମାଲ୍ୟବନ୍ତରେ ରହି
ଅନୁକ୍ଷଣେ କ୍ରୋଧ ରାବଣପରେ ବହି ।
ବିଚାରନ୍ତି ପଡ଼ିବ ସେ ମୋ ପାଦରେ
ତୁଳା ପ୍ରାୟେ ଭିଣିଥାନ୍ତି ମୁଁ ତାହାରେ ।
ଏତେ ବୋଲି କ୍ରୋଧମନେ ଚାପଧାରୀ
ବୋଲନ୍ତି କେମନ୍ତେ ଯିବି ମୁଁ ଲଙ୍କାପୁରୀ ।
ଲକ୍ଷ୍ମଣ ତିଆରିଲେ ବର୍ଷକାଳ ଯାଉ
ରାବଣ ବଂଶ ଯେ ମାରିବ ରାମବାହୁ ।
ସୁଗ୍ରୀବର ଅଇଲେ ଅଣାଇବା ଯେ ଥାଟ
ଲଙ୍କା ଗଡ଼ ଉପରେ ବରିବା ଯୁଦ୍ଧ ଆଣ୍ଟ ।

ସାତମାସ ଗଲେ ଲଙ୍କାକୁ ଆସିବେ ରଘୁମଣୀ
ସପ୍ତମାସ ଭିତରେ ଆସିବେ ଚାପଧାରୀ ।
ଷଡ଼ମାସ ଭିତରେ ଦୂତ ଯେ ପ୍ରବେଶ
ଲଙ୍କାକୁ ଆସିଣ ବାନର ସୁତ ।
ସୀତାଙ୍କୁ ଠାବ କରିଣ ଗଡ଼ ଦେଖି ଯିବ
ଶ୍ରୀରାମ ଛାମୁରେ ବାରତା କହିବ ।
ତେବେ ସେ ଲଙ୍କାକୁ ଆସିବେ
ସେତୁବନ୍ଧ ବାନ୍ଧିଣ ରଘୁରାୟେ ଆସିବେ ।
ବେନିମାସ ଯୁଦ୍ଧ ହେବ ଲଙ୍କାଗଡ଼େ ପୁଣ
ଏମନ୍ତ କହି ଋଷି ଗଲେ ସ୍ୱର୍ଗ ଭୁବନ ।
ପାର୍ବତୀ କହିବେ ତୁମ୍ଭେ ଶୁଣହେ ଶୂଳଧରୀ
ସେଠାରୁ କିସ ହେଲା କହ ଗୋ ବିଚାରି ।
ଈଶ୍ୱର ବୋଇଲେ ଶୁଣଗୋ ସିଂହବାହିନୀ
ମାଲ୍ୟବନ୍ତ ଉପରେ ଅଛନ୍ତି ରାମ ପୁଣି ।
ଏକମାୟା ଯେ ଜାଣି ନ ପାରିଲେ
ପୂର୍ବର କଥାମାନ ମନେ ନ ରଖିଲେ ।
ତେଣୁ କରି ଲକ୍ଷ୍ମଣଙ୍କୁ ହୁଅନ୍ତି ବିନତି
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ ।
ଲକ୍ଷ୍ମଣ ବୋଇଲେ ନୁହଇ ବିକଳ
ଦୁହେଁ ଏଥର ମାରିବା କୋଦଣ୍ଡଧର ।
ଗଗନରେ ଉଦୟ ହୋଇଲେ ଆଦିତ୍ୟ
କରଯୋଡ଼ି ବୋଇଲା ଯେ ସୁମିତ୍ରାର ସୁତ ।
ଧୈର୍ଯ୍ୟଧରି ଦେବ ହେ କର ଏବେ କାର୍ଯ୍ୟ
ଆପଣାକୁ ହାନି ଯେ ପଛନ୍ତେ ବଡ଼ ଲାଜ ।
ଶ୍ରୀରାମ ବୋଇଲେ ତୁମର ନ ଜାଣ ଭାଇ
ଜାନକୀ ବିନେ ମୋର ମନ ସ୍ଥିର ନାହିଁ ।
ସେ ମୋର ପ୍ରାଣଧନ ମୁଁ ତାର ଜୀବନ
ପାଣି କି ପିଟିଲେ ହୁଏ କିରେ ଭିନ୍ନ ।
ଶ୍ରୀରାମ ସୀତାରେ ବାବୁ ଏକା କାୟେ
ତୁ ଏହା ମଣୁକିରେ ବେଣ୍ଟାନ ପରାଏ ।
ସୀତାକୁ ନ ଦେଖି ନ ରହେ ମୋର ଦେହ
ତୁହିରେ ଲକ୍ଷ୍ମଣ ସୁଗ୍ରୀକି ଯାଇ କହ ।
ଏବେ ବୋଲି ଶ୍ରୀରାମ କୁଟୀରୁ ବାହାର
ପଛରେ ସଉମିତ୍ରୀ ଗୋଡ଼ାଇଲେ ତାଙ୍କର ।
ଖଣ୍ଡେ ଦୂର ଯାଇ ଉଭା ହେଲେ ବେନିଭାଇ
ଚାହିଁଲେ ପ୍ରହରେକ ରଜନୀ ଅଛଇ ।
ଦକ୍ଷିଣ ଦିଗରେ ଯେ ଉଦୟ ଏକ ତାରା
ଧ୍ରୁବତାରା ଯେ ଉଡ଼ଇ ଫରଫରା ।
ଶ୍ରୀରାମ ବୋଇଲେ ଲକ୍ଷ୍ମଣ ବେଗେ ଅନା
ଧ୍ରୁବକେତୁ ବୋଲି ବୋଲିଣ ଏ ତାରା ସିନା ।

କେବଣ ଦିଶେ ଏ ଉଦୟ ହୋଇଥାଇ
ସେ ଦିଗରେ ଅବଶ୍ୟରେ ପ୍ରମାଦ ପଡ଼ଇ ।
ଏମନ୍ତ ସମୟରେ ମେଘ ଘୋର ବରଷଣ
ଚିନ୍ତାପାଣ୍ଡୁ ବୃକ୍ଷମୂଳେ ବସିଲେ ବେନିଜନ ।
ଝୀମି ଝୀମି ହୋଇଣ ଟୋପି ପାଣି କଲା
ପୁଣି ତତକ୍ଷଣେ ସେ ଟୋପା ରହିଗଲା ।
ଆକାଶକୁ ଚାହିଁଣ କହନ୍ତି ରଘୁସାଇଁ
ଭୋ ମେଘମାନେ ତୁମ୍ଭର ଦୟା ନାହିଁ ।
ମୁହିଁ ପ୍ରବାସୀ ଯେ ନିରେଖ ଦେଶାନ୍ତର
ଅରଣ୍ୟ ପର୍ବତେ ମୁଁ ଯେ ଅଛି ବସାକରି ।
ତୁମ୍ଭେ ଯେ ଏ ଦିଗରୁ ସେ ଦିଗକୁ ଯାଅ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ପୂରୁବରେ ଥାଅ ।
ମୋହର ଘରଣୀ ଯେ ନାମ ତାହାର ସୀତା
କେବଣ ଦେଶେ ଅଛି ତୁମ୍ଭକୁ କି ବାର୍ତ୍ତା ।
ଚମ୍ପାଫୁଲ ପ୍ରାୟେ ତାର ଦିଶଇ ଶରୀର
ମଝି ଯୌବନ ଅଟଇ ଗରୁ ତାର ।
ପୂର୍ଣ୍ଣିମା ଚନ୍ଦ୍ର ପ୍ରାୟେ ଦିଶେ ମୁଖ ତାର
ବିଶେଷ ନୟନ ପ୍ରାୟେ ଯେ ମୃଗଙ୍କର ।
ତେଣୁ ସେ ଜାନକୀ ବୋଲାଏ ମୃଗନେତ୍ରୀ
ଆୟ ଅଳଙ୍କାର ଯେ ତାର ଶରୀର ଦିଶି ।
ପୁଷ୍ପମାଳା ମାନ ଯେ ବେଢ଼ାରେ କେଶ
କୃଷ୍ଣ ଚାମର ପ୍ରାୟେ ଦିଶେ ତାର କେଶ ।
ନାସା ଯେହ୍ନେ ତିଳପୁଷ୍ପ ଦର୍ଶନେ ମୁକୁତା
ବଧୂଲୀ ପୁଷ୍ପ ପ୍ରାୟେ ଅଧର ତାର ତା ।
ସର୍ବାଙ୍ଗ ସୁନ୍ଦରୀ ସେ ବାହୁନିବି କିସ
ଜାଣିଥିଲେ ମୋତେ କହ ହେ ସନ୍ଦେଶ ।
ଏ ତୁମ୍ଭ ବିଜୁଳି ପରାୟେ ଶିଖର ଦେହ କାନ୍ତି
ଆନ ସ୍ତିରୀ ଦେଖିଲେ କରନ୍ତି ପୁଣି ଭ୍ରାନ୍ତି ।
ଅଣ୍ଡିରା କୋକିଳ ଯେହ୍ନେ ବଚନ ଭାଷଇ
ଜାନକୀ ମୁଖରୁ ତେସନ ବାର୍ତ୍ତା ଯେ ଶୁଭଇ ।
ଅଳକା ବେଢ଼ିଣ ଯେ ମସ୍ତକ ଶୋଭା ଦେଖି
ଅନ୍ୟ ଅଷ୍ଟଗଣ ଯହିଁ ଯେ ତାର ନାହିଁ କିଛି ।
ଏବେ ଦେଖିଲେ ତାହାଙ୍କୁ ସମସ୍ୟା କହିବ
ଭେଟିବା ବେଳେ ବାରତା ଆଣି ଦେବ ।
ମୁହିଁ ତୁମ୍ଭଙ୍କୁ କହୁଛି ମେଘମାନ
ଶ୍ରୀରାମ ନାମ ମୋର ଦଶରଥ ନନ୍ଦନ ।
ସାବତ ଜନନୀ ମୋତେ ଅରଣ୍ୟକୁ ପେଷି
ତେଣୁ ହରାଇଲି ଯେ ସୀତା ଶୁକ୍ଳକେଶୀ ।
ଏମନ୍ତ ବଚନ ଯେ କହିଲେ ରଘୁନାଥ
ଶୁଣିଣ ଚାରିମେଘ ବିଚାର କଲେ ଚିତ୍ତ ।

ଏହିତ୍ରୈଲୋକ୍ୟ ଠାକୁର ଚାପଧାରୀ
ଅଜ୍ଞାନ ପାପ ସକାଶେ ବିହ୍ୱଳ ମତି କରି ।
ଆମ୍ଭେ ଚାଲ ଚାରିମେଘ ତାଙ୍କ ପାଶେ ଯିବା
ସକଳ କଥା ତାହାଙ୍କୁ ବୁଝାଇ କହିବା ।
ଏମନ୍ତ ବିଚାରି ଯେ ଛାୟାରୂପ ଧରି
ଚାରିଗୋଟି ରୂପ ହୋଇଲେ ବିଚାରି ।
ଶ୍ରୀରାମ ଆଗରେ ପ୍ରବେଶ ଯାଇ ହେଲେ
ଚିତାପାଣ୍ଡୁ ବୃକ୍ଷମୂଳେ ରାମଙ୍କୁ ଭେଟିଲେ ।
ଦେଖିଣ ଶ୍ରୀରାମ ଯେ ହରଷ ହୋଇଲେ
ଯେଉଁ ଦିଗକୁ ବିପ୍ର ତପଚାରୀ ଅଇଲେ ।
ଦ୍ୱିଜବର ବୋଇଲେ ଶୁଣହେ ରାମରାହୁ
ବର୍ଷକ ଆଠମାସ ନିଶ୍ଚିନ୍ତ ଘରେ ରହୁ ।
ବର୍ଷା ଚାରିମାସେ ପ୍ରବାସେ ଯାଏ ଦିନ
ସଂସାର ଭଲମନ୍ଦ ବୁଝୁ ଯେ ପ୍ରତିଦିନ ।
ଏବେ ରାଜ୍ୟରୁ ଅଇଲୁ ଚାରିଜଣ
ସବୁଠାରେ ବୁଲିଣ ଦେଖିଲୁ ଆମ୍ଭେ ପୁଣ ।
ଲବଣ ସମୁଦ୍ର ଏ ଦ୍ୱୀପ ଅଟେ ହ୍ରଦ
ବନ କନ୍ଦର ତରୁଲତା ଅଛଇ ବହୁତ ।
ସକଳ ସ୍ଥାନେ ଆମ୍ଭେ ବୁଲିଣ ଦେଖିଲୁ
ଦେବତାଙ୍କ ମୁଖରୁ ପୂର୍ବରୁ ଶୁଣିଥିଲୁ ।
ଅସୁର ମାରିବାକୁ ଶ୍ରୀହରି ହେବେ ଜାତ
ନାମ ତାଙ୍କର ହୋଇବ ରଘୁନାଥ ।
ଦଶରଥ ରାଜାର ହୋଇବେ ନନ୍ଦନ
ପିତାର ସତ୍ୟରେ ବନକୁ ଯିବେ ପୁଣ ।
ଅସୁର ରାବଣ ତାର ଘରଣୀ ଘେନିଯିବ
ତେବେ ସେ ରଘୁକୁଳ ଦୈତ୍ୟ ଯେ ମାରିବ ।
ଏକଥା ପୂର୍ବରୁ ଅଛୁ ଯେ ଆମ୍ଭେ ଶୁଣି
ସାଗର ଭିତରେ ଭ୍ରମଣ କଲୁ ପୁଣି ।
ଦେଖିଲୁ ରାବଣ ଅଛଇ ଲଙ୍କାଗଡ଼ରେ
ରାମ ଘରଣୀ ଅଛି ସେ ଲଙ୍କା ଭିତରେ ।
ବଡ଼ଭୁଜ ମଣ୍ଡପର ଅଶୋକ ବନରେ
ଅଗ୍ନିର ସ୍ୱରୂପ ଧରିଅଛି ସେ ବନରେ ।
ସହସେ ଅସୁ ରୀ ଜଗିଣଛନ୍ତି ତାକୁ
ଅଗ୍ନିର ଗୁପତରେ ନ ଯାନ୍ତି ପାଶକୁ ।
ସେ ଜ୍ୟୋତିକୁ ପବନ ଅଗ୍ନିନୁହେ
ଦୈତ୍ୟ ଦେଖିଲେ ନାରୀ ମନରେ ରାଗୀ ହୁଏ ।
ରାମ ନାମ କେବଳ କରଇ ସ୍ମରଣ
ବିଧାତା ପୁରୁଷ ବୋଧ କରଇ ଆସିକିଣ ।
ବିଭୀଷଣ ଦୁହିତା ନାମ ତ୍ରିଜଟା ତାର
ସେ କେବଳ ଜାନକୀଠାରେ ସେବାକର ।

ନଦୀକୁ ସଙ୍ଗରେ ଘେନିଯାଇ
ବାରଦିନ ପର୍ଯ୍ୟନ୍ତ ସ୍ନାହାନ କରାଇ ।
ଅଶୌଚ ଦିନରେ ଖଟଇ ପାଦତଳେ
ସନ୍ଧ୍ୟା ସ୍ନାନଦିନ ଅଗ୍ନି ସଂପାଦନ କରେବଳେ ।
ଯେତେବେଳେ ଜାନକୀ ଅଗ୍ନିରେ ସ୍ନାନକରି
ସ୍ୱର୍ଗରୁ ବଡ଼ ଗୁଣ ଦିଶେ ତା ଦେହ ପୁଣି ।
ସେ ନାରୀ ପ୍ରତିଜ୍ଞା ଯେ ଅଟଇ ବହୁତ
ଅଗ୍ନିରେ ସ୍ନାହାନ ଦେଖି ଅସୁର ଡରେତ ।
ବୋଲଇ ଶ୍ରୀରାମ ମୋର ଲଙ୍କାକୁ ଆସିବ
ଦୈତ୍ୟବଳ ମାରିଣ ମହୀ ଶୋଧନ କରିବ ।
ସେତେ ଦର୍ଶନ ଭୋଜନ ମୋର ସୁଘ୍ନ
ଏମନ୍ତ ନିଷ୍ଠାରେ ଅଛି ତ୍ରୈଲୋକ୍ୟର ମାତ ।
ନିଃଶବ୍ଦ ରଜନୀରେ ସ୍ୱର୍ଗରୁ ଇନ୍ଦ୍ର ଆସେ
ଅମୃତ ହୋଇଣ ବୋଧଇ ନାନା ରସେ ।
ବରୁଣ ସୁବାସିତ ଜଳ ଯେ ଦେଇ ପୁଣ
ଯେବେ ସେ ତୁମ୍ଭ ନାରୀ କରଇ ଭୋଜନ ।
ଆଚମନ ସାରିଣ ବସଇ ଚାନ୍ଦମୁହିଁ
ସୁବାସିତ ବିଡ଼ିଆ ପାନ ନେଇ ଦେଇ ।
ବେଦବର ମନାଇ କହେ ସେତେବେଳେ
ଦେବତାଏ ଯାଆନ୍ତି ସେଠାରୁ ସ୍ୱର୍ଗପୁରେ ।
ଦେବତାଏ ଯିବାରୁ ତୁମ୍ଭ ନାରୀପୁଣ
ଅଗ୍ନି ସ୍ୱରୂପ ଧରେ ସେହିକ୍ଷଣ ।
ଏ ସକଳ ଚରିତ୍ର ଜାଣଇ ତ୍ରିଜଟା
ରଜନୀ ପୁହାଏ ସେ କହିଣ ନାନା କଥା ।
ଦିବସ ଅନୁକ୍ଷଣେ ଖଟିଣ ଥାଏ ପାଶ
ଉଚ୍ଛିଷ୍ଟ ପୋଛଇ ଧୁଅଇ ପାଲଟା ବସ୍ତ୍ର ।
ଗୁପ୍ତ କଥାମାନ ପ୍ରଘଟ ନ କରଇ
ଶୋକକଲେ ତୋର ନାରୀ ବୋଧ ସେ କରଇ ।
ଆଗତ ଭବିଷ୍ୟ କହେ ଚିତ୍ରପଟ ଦେଖାଇ
ବାରମାସେ ଦେଖୁ ସ୍ୱାମୀ କି ତୋର ବୋଲଇ ।
ଚୌଦମାସ ସମ୍ପୂର୍ଣ୍ଣେ ଅଯୋଧ୍ୟାକୁ ଯିବୁ
ଏଗାର ମାସରେ ମାଳେ ଦୂତକୁ ଦେଖିବୁ ।
ଏମନ୍ତ ବଚନ ଯେ ତାଠାରୁ ଶୁଣି ସତୀ
ପଚାରଇ ସ୍ୱାମୀ କେଉଁଠାରେ ଛନ୍ତି ।
ତ୍ରିଜଟା ବୋଇଲେ ବୁଲେ ବନ ଯେ କନ୍ଦିର
ତୁମ୍ଭଙ୍କୁ ଖୋଜିଲେ ସେ ଅନେକ ପ୍ରକାର ।
ଜଟାୟୁଷ ମୁଖରୁ ସେ ବାରତା ପାଇଲେ
ଋଷ୍ୟମୂକ ପର୍ବତରେ ସୁଗ୍ରୀବକୁ ଦେଖିଲେ ।
ମଇତ୍ରହୋଇଣ ସେ ବାଳୀକୁ କଲେ ହତ
କିଷ୍କିନ୍ଧ୍ୟାରେ ରାଜା କଲେ ଆଦିତ୍ୟର ସୁତ ।

ଏବେ ସେ ମାଲ୍ୟବନ୍ତେ ଅଛନ୍ତି ବେନିଭାଇ
ରାତ୍ର ଦିବସରେ ତୋହର ଚିନ୍ତା ଗୁଣଇ ।
ଏମନ୍ତ ବୋଲିଣ ସେ ତ୍ରିଜଟା କହଇ
ଏ କଥାମାନ ଆମ୍ଭେ ଯାଣିଲୁ ତହିଁ ।
ତୁମ୍ଭେ କିମ୍ପା ଭାଳେଣି କରୁଛ ରଘୁନାଥ
ଯେଉଁ ଦେବୀ ଅଟଇ ଅଗ୍ନିର ପ୍ରତାପ ।
ଯେଉଁ ଦେବୀକୁ ପ୍ରତିଦିନ ଦେବତା ବୋଧନ୍ତି
ଅଗ୍ନି ପବନ ଯାହାକୁ ଜଗିଣ ଅଛନ୍ତି ।
ଯାହାର ନାମ ଶୁଣି ଅସୁର ଡରିଲେଣି
ବିଭୀଷଣ ଦୁଲଣୀ ଖଟିଛି ଯାକୁ ପୁଣି ।
ସେ କଥା ଚିନ୍ତା ନକର ଦାଶରଥି ଜାଣି
ଦେବକାର୍ଯ୍ୟ ନିମନ୍ତେ ଯାଇଛି ଦେବୀ ପୁଣି ।
ଅସୁର ମରିବାକୁ ବିଚାର ତୁମ୍ଭେ କର
ଆମ୍ଭେ ଚାରିମେଘ ଅଟୁ ତୋ କିଙ୍କର ।
ତେଣୁ ତୁମ୍ଭ ଭଙ୍କାରରେ ଶବଦ ଯେଣୁ ହେଲା
ଶୂନ୍ୟରୁ ଓହ୍ଲାଇ ଅଇଲୁ ସେହିଠାରୁ ଭଲା ।
ବିଚାରିଲୁ ବେଳରେ ସ୍ୱାମୀର କୋପ ହେବ
ଦେଖିଲା କଥା ଏବେ କହିବା ତୁମ୍ଭ ଆଗ ।
ଏତେକ ବିଚାରି ମେଘ ନମସ୍କାର କଲେ
ଧଳାକଳା ନୀଳରଙ୍ଗ ରଙ୍ଗ ଯେ ହେଲେ ।
ଚଉଦିଗ ଆଚ୍ଛାଦିଣ ବର୍ଷା କଲେ ତହିଁ
ଘଡଘଡ଼ି ବିଜୁଳି କଲେ ଯେ ରଡ଼ି ଦେଇ ।
ବେନି ଘଡ଼ି ଉତାରୁ ନିର୍ବଳ ପୁଣି ହେଲା
ଦାଶରଥି ମନରେ ବିଚାର କଲେ ଭଲା ।
ଏ ଚାରି ମେଘ କହିଲେ ଯାହା ମୋତେ
ସେ କଥା ସତ୍ୟ ଯେ ଅଟଇ ଯୁକତେ ।
ଏମନ୍ତ ବିଚାରି ମନକୁ କଲେ ସ୍ଥିର
ବୋଇଲେ ଲକ୍ଷ୍ମଣରେ ଶୁଣିଲୁ କର୍ଣ୍ଣର ।
ଦେବତାକୁ ପରାରେ ହୋଇଣ ଥିଲୁ କ୍ରୋଧ
ଦେଖିଲୁ ଦେବତାଏ କହିଲେ ହିତ ବୋଧ ।
ତେଣେ ଦେବତାଏ ମୋ ଘରଣୀ ଜଗିଛନ୍ତି
କିମ୍ପାଇ ତାଙ୍କ ପରେ କପଟ କରୁଛନ୍ତି ।
ବିଚାରି ଦେବତାଏ କରିଛନ୍ତି କୂଟ
କେବେହେଁ ନ ପଶଇ ବିଶ୍ୱବାର ଚାଟ ।
ସେଠାରୁ ବେନିଭାଇ ସନ୍ଧ୍ୟାକୁ ଗଲେ
ଜାନକୀ ସମ୍ବାଦ ମେଘଠାରୁ ଶୁଣିଲେ ।
ପାର୍ବତୀ ବୋଇଲେ ଶୁଣ ଈଶ୍ୱର ମୋର କଥା
ସେଠାରୁ କିସ ହେଲା କହ ହେ ପଞ୍ଚମଥା ।
ଈଶ୍ୱର ବୋଇଲେ ଶୁଣରେ ଭଗବତୀ
ପତ୍ର କୁଟୀରେ ରାମ ଲକ୍ଷ୍ମଣ ଯାଇ ଅଛନ୍ତି ।

ବେନିଭାଇ ବିଚାରିଲେ ମେଘଙ୍କ କଥା ସତ
ଅଗ୍ନି ସ୍ୱରୂପ ଜାନକୀ ହେବାର ନୋହି ମିଛ ।
ଅଗ୍ନିସ୍ନାନ କରିବ ସଙ୍କଳ୍ପ ଦିନ ଦେଖି
ଅଗ୍ନି ଦେବତା କହିବାରୁ ଗଲା ସେ ଚନ୍ଦ୍ରମୁଖୀ ।
ଶ୍ରୀ ରାମବଚନେ କହନ୍ତି ସଉମିତ୍ରୀ
ତୁମ୍ଭେ ସ୍ୱାମୀ ଏବେ ହୁଅ ହେ ନୃପତି ।
ଶ୍ରୀରାମ ବୋଇଲେ ମୋତେ ନ କହି ସତୀଗଲା
ଏଡ଼େ ଅବିଚାର କିମ୍ପା ତେଡ଼େ ନାରୀକଲା ।
ଲକ୍ଷ୍ମଣ ବୋଇଲେ ତାହା ନୁହଇ ତ ଆୟତ
ଏ କଥାମାନ ସବୁ ଦେବତାଙ୍କ କୃତ୍ୟ ।
ଶ୍ରୀରାମ ବୋଇଲେ ଦେବତାଏ ତାତେ ବଳି
ଥଇଲା ରାବଣ ସୀତାକୁ ଘେନିକରି ।
ତେତେବେଳେ ଦେବତାଏ ଆସେ ତାର ପାଶ
ସୀତାଙ୍କୁ ଭୟ ସେ କରନ୍ତି ତ୍ରିଦଶ ।
ଲକ୍ଷ୍ମଣ ବୋଇଲେ ତେମନ୍ତ ନୁହେଁ ଭାଇ
ସଙ୍ଗେ ସଙ୍ଗେ ଦେବତା ଆମ୍ଭର ଥିଲା ରହି ।
ଯେଉଁ ଦୋହରା ଅଗ୍ନି ସର୍ବଦା ଆମ୍ଭ ପାଶ
ସେହିଟି ଜାନକୀଙ୍କି କହିଲା ସନ୍ଦେଶ ।
ଜାନକୀ ଅଙ୍ଗରେ ଯାଇଣ ବିଜେ କଲା
ତେଣୁ ସେ ଜାନକୀ ଅଗ୍ନିମତ ହେଲା ।
ତେଣୁ ସେ ରାବଣ କଟାଳ କଲା ବସି
ଦେବକାର୍ଯ୍ୟ ନିମନ୍ତେ ଗଲାକ ଶୁଭ୍ରକେଶୀ ।
ଯାହାକୁ ଦେବତାଏ ହୁଅନ୍ତି ନିଜନ
ରାବଣ ଛୁଇଁବାକୁ ଅଟେ କି ଭାଜନ ।
ଦେବକାର୍ଯ୍ୟ ନିମନ୍ତେ ଦେବତା ସର୍ବେ ଜଗି
ଅମୃତ ଭୋଜନରେ ଦେବତା ନିଯୋଗୀ ।
ଅମୃତପାନ କଲେ ତୃଷା ଯେ ଭୁଖ ନାହିଁ
ତେଣୁ ସେ ଅସୁର ନ ଜାଣନ୍ତି କେହି ।
ନଜାଣିଥିବାରୁ ଲଙ୍କାରେ ପଡ଼ିଥିଲାହାଲ ହୁରି
ପାଞ୍ଚମାସ ହେଲା ନାରୀ ଭୋଜନ ନାହିଁ କରି ।
ଏବେ ଅଗ୍ନିସ୍ନାନ କରୁଣ ଅଛି ସତୀ
ଘୃଣିତ ଶରୀରେ ଦାବାନଳ ଘୋଟି ।
ଦେବତାଙ୍କ ମାୟା ସତୀ ଯେ ଜାଣି ପୁଣ
ତେଣୁ ଦମ୍ଭ ହୋଇଛି ଜନକ ଝିଅ ଯାଣ ।
ଏମନ୍ତ ବଚନ କହିଲେ ଲକ୍ଷ୍ମଣ
ଶୁଣିଣ ଶ୍ରୀରାମ ଯେ ହୋଇଲେ ତୋଷମନ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଏମନ୍ତ ସମୟରେ ନାଗରଷି ଯେ ମିଳି ।
ଦେଖିଣ ଶ୍ରୀରାମ ଯେ ନମସ୍କାର କଲେ
ହସ୍ତ ନାହିଁ ବେନିଗୋଡ଼ ଅଛି ସେ ବୋଇଲେ ।

ଲକ୍ଷ୍ମଣ ଆଣିଣ କୋମଳ ପତ୍ର ଦେଲେ
ସେ ଆସନ ଉପରେ ମୁନି ବିଜେ କଲେ।
ରାମ ନାମ ସୁମରଣ କଲେ ମୁନିବର
ତକ୍ଷଣେ ଚାରିଭୁଜ ହୋଇଲେ ବାହାର ।
ସର୍ପର ମୁଖଗୋଟି ତକ୍ଷଣେ ଫୁଟିଗଲା
ଦେବଙ୍କ ମୁଖପ୍ରାୟ ତା ମୁଖ ଦିଶିଲା ।
ଦେଖିଣ ଶ୍ରୀରାମ ଯେ ପରମ ତୋଷ ହେଲେ
ରାଜୀବଲୀ ନାଗ ଋଷିଙ୍କି ଯେ ପଚାରିଲେ ।
କେଉଁଠାରୁ ଆସିଲେ କହ ହେ ମୁନିବର
ନାଗଋଷି ବୋଇଲେ ପାତାଳପୁରେ ଘର ।
ତୁମ୍ଭଙ୍କୁ ଦେଖିବା ପାଇଁ ଅଇଲି ମର୍ତ୍ତ୍ୟପୁର
ଦେଖିଣ ମୁକ୍ତି ଲଭିଲା ମୋ ଶରୀର ।
ମାଦଳ ତପଗୋଟି ସବୁଦିନ ମୋର
ତାପରେ ବେଦବର ଭେଟିଲି ରଘୁବୀର ।
ବ୍ରହ୍ମାଙ୍କ ଦର୍ଶନରେ ବେନି ଯେ ଚରଣ
ମୋହର ଉଦେ ହେଲା ଜାଣ ହେ ରଘୁରାଣ ।
ସେ କୁଶପାଣିକି ସେଠାରେ ପଚାରିଲି
ହସ୍ତ ମୁଖ ସୁଖେ କର ଯେ ବୋଇଲି ।
ସେ ବୋଇଲେ ରାମ ନାମ ସୁମରା କର
ଶ୍ରୀରାମ ଦର୍ଶନରେ ସକଳ ହେବ ତୋର ।
ଏତେ କହି ବେଦବର ଗଲେ ନିଜପୁର
ତିନିଯୁଗ ରାମ ନାମ ସୁମରେ ମୁଁ ତୁଣ୍ଡର ।
ଏବେ ତା ସୁଯୋଗ ହୋଇଲା ମୋହର
ନାରଦ ବିଜେ କଲେ ପାତାଳ ନାମେ ପୁର ।
ସେ ମୋତେ କହିଲେ ତୁମ୍ଭର ସବୁ କଥା ତ
ମାଲ୍ୟବନ୍ତ ପର୍ବତେ ଦଶରଥ ସୁତ ।
ତେଣୁ ସେ ପାତାଳ ପୁରରୁ ଅଇଲି
ମର୍ତ୍ତ୍ୟପୁରେ ଆସିଣ ତୁମ୍ଭଙ୍କୁ ଭେଟ ହେଲି ।
ତୁମ୍ଭର ଦର୍ଶନରେ ମୋହ ପାପ ଗଲା
ଦେଖ ମୁଖ ହସ୍ତ ମୋର ପ୍ରବେଶ ହୋଇଲା ।
ଆଜ୍ଞା ଦେଲେ ମୁହିଁ ଯିବଇଁ ସ୍ୱର୍ଗପୁର
ଶ୍ରୀରାମ ବୋଇଲେ ଏବେ ନୁହଇ ବେଭାର ।
ଆମ୍ଭଙ୍କୁ ଅଜ୍ଞାନ ପାତକ ଘୋଟେ ବାବୁ
ଏତେବେଳେ ମୁକ୍ତ ହୋଇ ବାବୁ ନପାରିବୁ ।
କ୍ରୋଟରେ ଶରୀର ଅଟେ ଦାବାନଳ
ଚତୁର୍ଦ୍ଧା ମୂର୍ତ୍ତି ଯେ ନାହିଁ ମୋର ବଳ ।
ଆହୁରି ଏଗାର ମାସ ଗଲେ ମୃତ ହେବୁ
ଲଙ୍କାଗଡ଼କୁ ନାଗଋଷି ସଙ୍ଗତେ ଆସିବୁ ।
ସେତେବେଳେ ବାଉଁଶ ସେ ପୁରେ ନେବୁ
ଋଷି ନାଗଋଷି ଲଙ୍କାଗଡ଼ ଆସିବେ ସବୁ ।

ସେତେବେଳେ ପାତାଳରୁ ହେବେ ଋଷି ମୁକ୍ତ
ଏମନ୍ତ ବଚନ କହେ ଦଶରଥ ସୁତ ।
ଶୁଣିଣ ନାଗଋଷି ଆନନ୍ଦ ହୋଇଲା
ମାର ତିନିପୁର ଦୈତ୍ୟ ବୋଲି ସେ ବୋଇଲା ।
କମଳା ତୁମ୍ଭର ଅଟଇ ଘରଣୀ
ଦେବକୂଟରେ ବଳି ଲଙ୍କାଗଡ଼ ପୁଣି ।
ସକଳ ଦେବତାଙ୍କୁ ଆଜ୍ଞା ଯେ ଆଣି ଦେଲୁ
ବାନର ଭାଲୁ ଜନ୍ମ ହୁଅ ହେ ବୋଇଲ ।
ତେଣୁ ସେ ଦେବତାଏ ବାନର ଭାଲୁ ହେଲେ
ବାଷଠି ସାଗର ବାନର ଜନ୍ମ ହେଲେ ।
ଅଠାଇଶି ସାଗର ଜନ୍ମ ହେଲେ ଭାଲୁ
ତେଣୁ ସେ ନାରାୟଣ ଅଯୋଧ୍ୟା ଜନ୍ମ ହେଲୁ ।
ଏବେ ଯେ ରାମାୟଣ ଯୁଦ୍ଧରେ ଦୈତ୍ୟମାର
ଦେବଙ୍କର କଷ୍ଟ ବେଗେ ପାରି କର ।
ପ୍ରାନ୍ତରେ ଚାରିଭାଇ ଲକ୍ଷେ ରାଜା ପୁଣ
ଲଙ୍କାଗଡ଼େ ଠୁଳ ହେବେ ଶ୍ରୀରାମଚନ୍ଦ୍ର ଜାଣ ।
ତିନିରାବଣକୁ ମାରିବେ ସେ ତିନିଭାଇଙ୍କି
ଶୁଣିଣ ଶ୍ରୀରାମ ଯେ ପଚାରେ ଋଷିଙ୍କି ।
ଆମ୍ଭେତ ଜାଣିଲୁ ଗୋଟାଏ ରାବଣ
ଦଶମୁଖା ଚୋରାଇ ନେଲା ଘରଣୀପୁଣ ।
ତୁମ୍ଭେ କହିଲ ଚାରି ରାବଣ ମାରିବ
ନାମ ତାଙ୍କର କିସ ମୋତେ ଯେ କହିବ ।
ନାଗଋଷି ବୋଇଲେ ଶୁଣହେ ଚାପଧାରୀ
ଦଶମୁଖା ରାବଣ ଘରଣୀ ନେଲା ତୋହରି ।
ସୁବର୍ଣ୍ଣ ଲଙ୍କାରେ ଅଛଇ ଘରଣୀ ତ
ସେ ରାବଣ ଅଟେ ବିଶ୍ରବାର ସୁତ ।
ସେ ରାବଣ ତୋର ହସ୍ତେ ମରିବ ଜାଣ
ତୋହର ବୈରୀ ସେ ଅଟଇ ଜାଣ ।
ସେ ରାବଣ ଜ୍ୟେଷ୍ଠପୁତ୍ର ଅଟଇ ଇନ୍ଦ୍ରଜିତ
ମହୀରାବଣ ଅଟଇ ଇନ୍ଦ୍ରଜିତର ସୁତ ।
ଅଗ୍ନିର ବଳରେ ସେ ଅଟଇ ପ୍ରବଳ
ବିଲଙ୍କା ଗଡ଼ରେ ଅଟଇ ମହୀପାଳ ।
ଲକ୍ଷ୍ମଣ ହସ୍ତରେ ମରିବ ସେହୁ ଦୈତ୍ୟ
ଏକମୁଖା ନାମ ତାର ଅଟଇ ସମ୍ଭୂତ ।
ବିଲଙ୍କା ଗଡ଼ରେ ଶତେମୁଖା ରାବଣ
ଜୟନ୍ତା ଋଷିଠାରୁ ଜନମ ସେହୁ ପୁଣ ।
ତୁମ୍ଭର ସାନଭାଇ ଅଟଇ ଶତ୍ରୁଘନ
ତାହାର ହସ୍ତରେ ମରିବ ସେହୁ ପୁଣ ।
ବଡ଼ରାବଣ ଯେ ସହସ୍ର ମୁଖ ଅଟେ
ସହସ୍ରମୁଖ ଈଶ୍ୱର ଦେଲେ ଆଣ୍ଟେ ।

ପିତାର ମେଘାସୁର ବର ଯେ ଯମଦେଲେ
ଆଗ ଈଶ୍ୱର ବର ପାଇଣ ଥିଲେ ଭଲେ ।
ତେଣୁ ଅଜୟ ନାମରେ ତୁମ୍ଭ ହସ୍ତେ
ଜନକର ଦୁହିତା ମାରିବ ତାକୁ ନିଶ୍ଚେ ।
ଏମନ୍ତେ ଚାରି ରାବଣ ପାଇବେ ମରଣ
ସାତସାଗରଲୋକେଣ ଦୈତ୍ୟ କ୍ଷୟଜାଣ ।
ନାଗରଷି କହିଣ ଗଲେପାତାଳପୁରେ
ମାଦଳ ରୂପଛାଡ଼ି ଶ୍ରୀରାମ ଦର୍ଶନରେ ।
ଈଶ୍ୱର ବୋଇଲେ ଶୁଣଗୋ ଭଗବତୀ
ଶ୍ରୀରାମ ଯାହା କଲେ କହିବା ସେହୁ ରୀତି ।
ସେ କଥାମାନ ରାମ କ୍ଷଣକେ ପାଶୋରିଲେ
ଅଜ୍ଞାନ ଥିବାରୁ ଚେତନା ନ ରଖିଲେ ।
ମଢ଼ିଆ ଭିତରୁ ବାହାରି ରାମ ରାଣ
ଲକ୍ଷ୍ମଣକୁ ସଙ୍ଗେ ଘେନି ବିଜୟେ ରାମ ରାଣ ।
ବଟବୃକ୍ଷ ମୂଳରେ ବେନି ଯେ ଭାଇ ଭଭା
ବୋଇଲେ ଲକ୍ଷ୍ମଣ ଏ ବୃକ୍ଷ ଦିଶେ ଶୋଭା ।
ଏମନ୍ତ ସମୟେ ସେ ବଟବୃକ୍ଷ ପୁଣି
ଏକ ବକପକ୍ଷୀ ଥିଲା ବସିଣ ଜାଣି ।
ଶ୍ରୀରାମଙ୍କୁ ଦେଖିଣ ସେ ବକ ଭଣି
ମୋହର ବାଣୀ ଏବେ ଶୁଣହେ ରଘୁମଣି ।
କିମ୍ପାଇ ମହାତ୍ମା ହେଉଛ ଆରତ
ମୂର୍ଖଜନଙ୍କ ପ୍ରାୟେ ହୋଇଣ କାନ୍ଦ ତ ।
କର୍ମକୁ ନ ବିଚାରି ବିଧାତାକୁ ନିନ୍ଦ
ତୁମ୍ଭର କର୍ମରେ ଥିଲା ବିଚାରି ନ କାନ୍ଦ ।
ଶ୍ରୀରାମ ବୋଇଲେ ତୁମ୍ଭେ ଧର୍ମବକ ଶୁଣ
ଅଯୋଧ୍ୟା କଟକରେ ଅଟଇ ମୋର ସ୍ଥାନ ।
କର୍ମ ଦୋଷରେ ମୁଁ ପ୍ରବାସ କରଇ
ଘରଣୀକି କିଏ ମୋର ଘେନିଗଲା ଚୋରାଇ ।
ସେହିଦିନୁ ମନ ମୋର ଅସ୍ଥିର ହୋଇଲା
ତେଣୁ ଯାହାକୁ ଦେଖିଲେ ପଚାରଇ ପରା ।
ଅତି ଦୁଃଖରେ ପର୍ବତେ ଅଛି ରହି
ପର୍ବତ କନ୍ଦରେ ମୋର ଦିନ ନ ସରଇ ।
ଏ ଯେ ଲକ୍ଷ୍ମଣ ଅଟଇ ସାନ ଭାଇ
ଏହାର ବିହୁନେ ଅନ୍ୟ ଆଶ୍ରା ନାହିଁ ।
ତୁହୋ ପକ୍ଷି ଏବେ ପଚାରିଲୁ ମୋତେ
ମୋହର ଯେତେ କଥା କହିଗଲି ତୋତେ ।
ତୁହିଯେ ଉଚ୍ଚ ବୃକ୍ଷରେ ବସିଥାଉ
ଅନେକ ଦୂରରୁଯେ ବାର୍ତ୍ତାମାନ ପାଉ ।
ଜାନକୀର ବାର୍ତ୍ତା ପାଉକିରେ ଖଗ
ଏ ବଚନ ଶୁଣିଣ ବୋଇଲା ସେ ବଗ ।

କୋଦଣ୍ଡ ଚାପଧାରୀ ଶୁଣ ହେ ମୋର ବାଣୀ
କଥାଏ ଏକ ଅଛଇ ମୁହିଁ ଜାଣି ।
ଲଙ୍କାର ରାବଣ ଯେ ସୀତାକୁ ଘେନିଗଲା
ଆକାଶ ମାର୍ଗରେ ରଥରେ ଯାଉଥିଲା ।
ଉପରେ ତୋର ନାରୀ ତଳରେ ରାବଣ
ବେନି ମନ୍ତ୍ରୀ ତାର ରଥ ବାହେ ପୁଣ ।
ରାମ ରାମ ପଦ ଯେ ସ୍ମରେ ସୁନ୍ଦରୀ
ତାଙ୍କର ଅଶ୍ରୁଜଳ ଯେ ମୋହର ଦେହେ ପଡ଼ି ।
ତେଣୁ ମୋର ଶରୀର ହୋଇଲା ଧବଳ
ଏ ମୋର ଜାତି ଏବେ ହୋଇଲା ଉଜ୍ଜ୍ୱଳ ।
ସେ ନାରୀ କହିଲା ଯେ ଦଶଦିଗକୁ ଚାହିଁ
ଅଯୋଧ୍ୟାର ଶ୍ରୀରାମ ଅଟନ୍ତି ମୋର ସାଇଁ ।
ଲକ୍ଷ୍ମଣ ସାଙ୍ଗରେ ଆମ୍ଭେ ଯେ ତିନିଜଣ
ମାୟାମୃଗ ଦେଖାଇ କୂଟେ ନେଉଛି ରାବଣ ।
ଦେଖିଲେ କହିବ ତୁମ୍ଭେ ପକ୍ଷୀ ଯେ ବୃକ୍ଷମାନେ
ଏମନ୍ତ ବଚନ ଦେବୀ କହିଲା ଗଗନେ ।
ଏଥିର ସଂଶୟ ମୁଁ ଯେ ଅଇଛ ପାଇ
ବିକଳ ହୋଇବାର ତୁମ୍ଭର କାର୍ଯ୍ୟ ନାହିଁ ।
ଏକମନ ହୋଇଣ ତୁମ୍ଭେ ଲଙ୍କାଗଡ଼କୁ ଯାଅ
ତୁପନର ଦୟାରେ ଜାନକୀ ଭେଟପାଅ ।
ଶୁଣିଲେ ଶ୍ରୀରାମ ଯେ ଖଗବର ବାଣୀ
ପୁଣି ସେ ପଚାରିଲେ ରଘୁକୁଳମଣି ।
ଭୋ ପକ୍ଷୀଜୀବ ଯେ ଅଟୁ ହିତକାରୀ
ଦେଖିଲୁ ପ୍ରିୟବତୀ ଜନକ କୁମାରୀ ।
ମାଗ ତୁ ବର ଏବେ ହେବ ଯେ ପ୍ରାପତ
ବକ ବୋଇଲା ତୁମ୍ଭେ ଶୁଣ ହେ ନରନାଥ ।
ବର୍ଷାକାଳେ ମୋତେ ଅଟଇ ବଡ଼ ଦୁଃଖ
ଆହାର ବିମୁଖେ ପାଇବି କି ସୁଖ ।
ବସିଲା ଠାବରେ ଆହାର ଯେ ପାଇ
ଏବେ ତୁମ ବରେ ମୋହର ମନ ସୁସ୍ଥ ହୋଇ ।
ଶ୍ରୀରାମ ବୋଇଲେ ଯେ ଅସ୍ତୁ ବାଣୀ ହେଉ
ଚତୁର୍ମାସ୍ୟାରେ ଆହାର ଘରଣୀ ତୋତେ ଦେଉ ।
ତୁ ଶୂନ୍ୟ ଗଛ ଉପରେ ବସିଥିବୁ
ଦିନ ପାହିବାଯାଏ କାହିଁକି ନ ଯିବୁ ।
ବକ ବୋଇଲା ତୁମ୍ଭର ବଚନ ହେଲା ନଷ୍ଟ
ଲୋକେ ବୋଲିବେ ଖାଇଲା ଘରଣୀ ଉଚ୍ଛିଷ୍ଟ ।
ଜଗତରେ ଉପହାସ୍ୟ ବିଚାର ଧର୍ମ ନାହିଁ
ସଞ୍ଜୀବନୀ ଗଲେ ନର୍କେ ପଡ଼ିବି ଯେ ମୁହିଁ ।
ଶ୍ରୀରାମ ବୋଇଲେ ନ ଜାଣୁକିରେ ଖଗ
ମୁଁ ଯାହା କହିଲି ଶୁଣ ତୁ ଏବେ ବେଗ ।

ତୁମ୍ଭେ ଏବେ ଆତ୍ମା ଅଟଇ ବେନିଜନ
ଜଗତ ନିନ୍ଦାକୁ ତୁ ମନରେ ଗୁଣ ଘେନ ।
ଗୃଗସ୍ତ ଭାରିଯା ଯେ ଅଟନ୍ତି ଏକ ଆତ୍ମା
ତୁ ପୁଣି କିଛି ଯେ ନ ଜାଣୁ ମହାତ୍ମା ।
ଏ ମୋର ବଚନ ନୁହଇ ଆନ ଜାଣ
ଘରଣୀ ଆହାର ତୋର ଦେବଇ ପ୍ରମାଣ ।
ଅଲଗେ ଭୁଞ୍ଜିବୁ ତୁ ଥଣ୍ଡ ନ ଲାଗିବ
ଯେମନ୍ତ ପ୍ରକାରେ ଘରଣୀ ତୋଷ ଲାଗିବ ।
ବକ ପକ୍ଷୀ ବୋଇଲା ଘରଣୀ ମୋତେ ରଖ
କଥାଏ କହିବି ଦେବ ନୋହେବ ବିମୁଖ ।
ଏକଥା ନ କରି ମୋତେ ଆହାର ଦେବ
ଯେଉଁଠାରେ ବସିଥିବି ସେଠାରେ ସୁଖ ହେବ ।
ଶ୍ରୀରାମ ବୋଇଲେ ତୋର କଥା ହେଉ
ଯେଉଁଠାନେ ମିଳିବୁ ସେଠାରେ ତୋଷହେଉ ।
ଏ କଥା ନକଲେ ନପୂରେ ତୋର ପେଟ
ଚତୁର୍ମାସ୍ୟା ହେଲାଯାଏ ପୂରୁଯେ ତୋରପେଟ ।
କାର୍ତ୍ତିକ ଶୁକ୍ଳ ଯେ ଦଶମୀଠାରୁ ଜାଣ
ପୂର୍ଣିମା ପର୍ଯ୍ୟନ୍ତ ଅଟଇ ପାଞ୍ଚଦିନ ।
ଏ ପାଞ୍ଚଦିନ ଭୁଞ୍ଜନ୍ତି ଯେ ଆମିଷ
ତୋହର ପାତକ ସେ ଦେବି ଅବଶ୍ୟ ।
ବିଶେଷ ଦୋଷୀ ସେହୁ ଅଟନ୍ତି ପ୍ରାଣୀ
ଅବଶ୍ୟ ତୋର ପାପରେ ହୋଇବ କାରେଣୀ ।
ଏମନ୍ତ ବଚନ ମୋର ଅଟଇ ନିଶ୍ଚିତ ଜାଣି
ଏ ପାଞ୍ଚ ଦିନରେ ଆମିଷ ନ ଭକ୍ଷିବେ ପ୍ରାଣୀ ।
ଏ ପାଞ୍ଚଦିନ ପାଳିବେ ଯେ ନରନାରୀ
ବଗ ପଞ୍ଚକ ନାମ ହୋଇଲା ତୋହରି ।
ଯେ ଅବା ବଳିକରି ଆମିଷ ଭକ୍ଷେ ପୁଣ
ସେହୁ ଚଣ୍ଡାଳ ବୋଲିଣ ଖଗ ତୁ ଜାଣ ।
ଏଥିର ଉତ୍ତାରୁ ରୋହିଣୀ ପ୍ରଭାତ
ଗଗନେ ଉଦିତ ହୋଇବେ ଆଦିତ୍ୟ ।
ଏମନ୍ତେ ମେଘ ଧରି ଉହାଡ଼େ ତାରା
ଘୋର ବୃଷ୍ଟି ସେତେବେଳେ କଲାକ ବସୁନ୍ଧରା ।
ଚଉଦିଗ ନ ଦିଶଇ ଯେ ମାରଇ ବିଜୁଳି
ଚଞ୍ଚଳେ ଜୀମୂତ ଚଉଦିଗରେ ମିଳି ।
ଅଖଣ୍ଡିତ ଧାରା ଯେ ଶ୍ରାବଣ ମାସେ କଲା
ପ୍ରହରେ ବର୍ଷା କରି ମେଘ ଯେ ଭାଙ୍ଗିଗଲା ।
ଅଙ୍ଗୁଳି ଗଣି ଦିନ ଲେଖିଲେ ରାମ ପୁଣ
ଦୁଇମାସ ଗଲେ ଚତୁର୍ମାସ୍ୟା ଯେ ଶେଷ ଜାଣ ।
ଏବେ ଭାଦ୍ରବମାସ ଆଦ୍ୟ ଯେ ହେଲା ଆସି
ଜଳଙ୍କର ମଧରେ କୁମୁଦ ବିକାଶି ।

ଅଏଳା ବଉଳିଲା ପାଚିଲା କରମଙ୍ଗା
ପତର ବଉଳ ସେ ଯେ ଦେଲାକ ମୂଳଗା ।
ବୃକ୍ଷର ତାଳ ଫଳ ସେ ଭକ୍ଷ୍ୟତା ହେଲା
ଫଳିଲେ ଯେ ରୁଦ୍ର ବାହୁଙ୍ଗା ଫୁଲ ଦେଲା ।
ସେ ଯାହା ଋତୁ ପଲ୍ଲବିଲା ତରୁ ବନେ
ଏସବୁ ଦେଖିଣ ବିଚାରେ ରାମ ମନେ ।
ସେଠାରୁ ବେନିଭାଇ ପର୍ଣ୍ଣକୁଟୀରକୁ ଗଲେ
ମୃଗଛାଲ ଉପରେ ଶ୍ରୀରାମ ବିଜେକଲେ ।
ଏଥୁ ଅନନ୍ତରେ ଶୁଣ ହେ ଭଗବତୀ
ବଟବୃକ୍ଷ ଉପରେ ବକ ଯେ ଥିଲ ବସି ।
ଶ୍ରୀରାମ ଯିବାରୁ ବିଚାର କଲା ମନେ
ଏ ମହାତ୍ମା ମୋତେ କହିଲେ ସୁପ୍ରସନ୍ନେ ।
ଏତେବୋଲି ଧର୍ମବଗ ଉଡ଼ିଗଲା
ପାଣିର ସ୍ରୋତରେ ଯାଇଣ ବସିଲା ।
ଦଣ୍ଡକରେ ଉଦର ହୋଇଲା ପରିପୂର୍ଣ୍ଣ
ବିଚାରିଲା ରାମ କଥା ସତ୍ୟ ଅଟେ ପୁଣ ।
ସେଠାରୁ ଧର୍ମବକ ବଟପରେ ବସି
ଏଥୁଅନନ୍ତରେ ଶୁଣରେ ଶୁଭ୍ରକେଶୀ ।
ଶ୍ରୀରାମ ଲକ୍ଷ୍ମଣ ଯେ ପତ୍ର କୁଟୀରେ ବସି
ସେଥିରେ ବିଚାର କରନ୍ତି ଦାଶରଥି ।
ଶ୍ରୀରାମ ବୋଇଲେ ତୁରେ ସାନୁଜ ଏବେ ଶୁଣ
ଗିରି କନ୍ଦରେ ଆମ୍ଭେ ରହିଲେ ପୁଣ ।
ସୁଗ୍ରୀବ ରଜା ହେବାରୁ ହେଲା ଭୋଳ
ହନୁମନ୍ତ ଜମ୍ବେବ ନଳ ନୀଳ ଯେ ପୁଣ ।
ପାତ୍ରମନ୍ତ୍ରୀ ଅମାନତ୍ୟ ସକଳେ ତାର ଛନ୍ତି
ଆମ୍ଭଙ୍କୁ ସମ୍ଭୋଳାରେ ନ କଲା ସାନୁଜଟି ।
ପୂର୍ବର କଥା ଯେ ମନରେ ପଡ଼ିଲା
ସମସ୍ତେ ଭୋଳ ହେଲେ ସମ୍ପତ୍ତିରେ ପରା ।
ଭାଦ୍ରବ ମାସରୁ ଯେ ପନ୍ଦର ଦିନ ଗଲା
ରବିର କିରଣ ଯେ ଶରଦ ଆଚ୍ଛାଦିଲା ।
ତେଜବନ୍ତ ହୋଇଣ ରବି ଯେ ଆକ୍ରମଇ
କି ଜାଣି ରବି ତେଜେ ସଂସାର ହେବ ଦହି ।
ଆକାଶରେ ତାରାଗଣ ବହୁତ ପ୍ରକାଶ
ନ ବରଷି ମେଘ ଗର୍ଜନରେ ତୋଷ ।
ରଜନୀରେ ଶୀତ ସେ ଦିବସେ ବଡ଼ ଖରା
ତରୁ ଲତାମାନ ଯେ ଦିଶନ୍ତି ବଡ଼ ତୋରା ।
ସୁଗ୍ରୀବ ଏତେକାଳେ ନ ବିଚାରେ ଆମ୍ଭଙ୍କୁ
କିମ୍ବା ଭୟ ଯେ ନକଲା ମନକୁ ।
କେବଣ କାଳରେ ମୋତେ ସୀତାୟା ଆଣିଦେବ
ବର୍ଷା ସରିଲା ତୋହର କଷ୍ଟଭାବ ।

ଥାଟ ଗୁଣ୍ଡ କରନ୍ତେ ଯିବ କେତେଦିନ
ଲଙ୍କାଛାଡ଼ିଣ ପୁଣ ପଳାଏ ଦଶାନନ ।
ଜାନକୀ ନ ପୁଣ ପ୍ରାପତ ହୁଏ ମୁଁ ତ
ମୋହର ନବାଡୁ ଏଡ଼େ ଶତୃତ ।
ନ ପୁଣ ଲକ୍ଷ୍ମଣରେ ଆମ୍ଭେ କି ହୋଇ ହତ
ସୁଗ୍ରୀବର ଯାଇଣ ଯମ ପାଶ ତ ।
ଆତ୍ମଘାତକୀ ହୋଇ ନ ମରେ ରାବଣ
ଏଡ଼େ ଶତୃକୁ ମୁହିଁରେ ନ ପାରେ ପୁଣ ।
ସୀତୟା ନ ପୁଣରେ ଦହଇ ଲଙ୍କାପୁରୀ
ନ ପୁଣ ନାଶ କରେ ନ ଯାଏ ଦଶଶିରୀ ।
ଏଡ଼େ କ୍ରୋଧ ମୋର ନିଷ୍ଫଳ କି ଯିବ
ନ ପୁଣ ପାତାଳରେ ପଶଇ ଦଶଗ୍ରୀବ ।
ସ୍ୱର୍ଗରେ ଲୁଚିଲେ ଯେ ଆଣିବି ତାକୁ ଧରି
କେ ମୋର ଶତୃକୁରେ ରଖିବ ସମ୍ଭାଳି ।
ରାବଣ ସଙ୍ଗରେ ଯେବେ ପଡ଼ିବ ମୋର ଭେଟ
ତେବେ ସେ ଜାଣିବା ଉତ୍ତମ କୁଳ ଶ୍ରେଷ୍ଠ ।
ନ ପୁଣ ମରଣ ତାର ହୋଇଥାଇ
ତହିଁକି ଭାବି ମୁଁ ଯେ ହେଉଣ ଅଛି ଭାଇ ।
ଲକ୍ଷ୍ମଣ ବୋଇଲେ ଭାଇ ସୁଗ୍ରୀର କି ଦୋଷ
ତୁମ୍ଭେ ବୋଇଲ ବର୍ଷା ସରୁ ଏ ଚାରିମାସ ।
ତେଣୁ ସେ ଉଶ୍ୱାସ ପାଇଲା କପିରାଜ
ବିଚାରିଲା ଦିନ ପାଇଲେ ସିନା କାର୍ଯ୍ୟ ।
ଆଶ୍ୱିନକାର୍ତ୍ତିକ ଯେ ଭାଦ୍ରବ ଅଛି ପକ୍ଷେ
ସୁଗ୍ରୀର ଲେଖାରେ ଅଛଇ ଅଢ଼ାଇ ମାସେ ।
ଶୁଣିଣ ଶ୍ରୀରାମ ଯେ ଲକ୍ଷ୍ମଣ ବାଣୀ ଶୁଣି
ଏ କଥା ସତ୍ୟ ଯେ ବୋଇଲେ ରଘୁମଣି ।
ଶୁଣନ୍ତି ପାର୍ବତୀ ଯେ କହନ୍ତି ମହେଶ୍ୱର
ଜାନକୀ ହରାଇ ଦୁଃଖୀ ହୋଇଲେ ରଘୁବୀର ।
ମାଲ୍ୟବନ୍ତ ପର୍ବତରେ ବଞ୍ଚିଲେ ଚତୁର୍ମାସ୍ୟା
ସୁଗ୍ରୀବର ଯା କରୁଛନ୍ତି ଆଶା ।
ହନୁମନ୍ତ ଯେ କହିଛନ୍ତି ବୁଝାଇ
ରାଜା ପାଶୋରିଲେ ତୋତେଦେବୁଟି ଚେତାଇ ।
ସେ କଥା ସୁମରିଲା ଯେ ପବନର ସୁତ
ବିଚାରି ଶରଦ ହୋଇଲା ଆସି ତ ।
ଶ୍ରୀରାମ ଘରଣୀକି ରାବଣ ଘେନିଗଲା
ତହିଁକି କଟାଇ ନିକଟ ହୋଇଲା ।
ଏତେ ବିଚାରି ହନୁ ଯେ ସୁଗ୍ରୀବର ପାଶେ
ଶିରେ କରଯୋଡ଼ିଣ କହଇ ବିଶେଷେ ।
ଶୁଣ ତୁ ସୁଗ୍ରୀବର ଯେ କିଷ୍କିନ୍ଧ୍ୟାର ସାଇଁ
ଶ୍ରୀରାମ ବାଳୀକି ମାଇଲେ ତୋର ପାଇଁ ।

ତୁମ୍ଭେ ବୋଇଲ ମୁଁ ଆଣିଦେବି ସୀତା
ସେ କଥାକୁ ମନରେ କିଛି ନ କର ଚିନ୍ତା ।
ହନୁମନ୍ତଠାରୁ ଶୁଣି ସୁଗ୍ରୀବର ତୋଷ
ତାହାର ମନରେ ପାଇଲା ସେ ପ୍ରାଣ ।
ନୀଳ ସେନାପତିକି ରାଇଲା ବେଗେ ପାଶ
ତୁହେ। ଥାଟ ଯାଇଣ ଘେନି ଆସ ।
ନୀଳ ସେନାପତି ବୋଇଲା କିଛି
ଲକ୍ଷେ ରାଜା କପିଙ୍କି ଜଣେ କେ ଆଣିଅଛି ।
ପଚିଶ ମଉଡ଼ମଣି ମାଲ ଯେ ମହାମାଲ
ସମସ୍ତେ ଆସିଲେ ସୈନ୍ୟ ହେବ ଠୁଳ ।
ଜାଣିଣ ସୁଗ୍ରୀବର ଯେ ମନେ ବିଚାରିଲା
ପଚିଶ ମଉଡ଼ମଣି ବାନର ସାରା ପରା ।
ତାଙ୍କର ପୁତ୍ରମାନେ ମୋହର ପାଶେ ଛନ୍ତି
ଏମାନଙ୍କୁ ପେଷିଲେ ବାନର ଆସନ୍ତି ।
ପଚିଶ ଯୂଥପତି ଡାକିଲା କପିରାୟ
ବୋଇଲା ତୁମ୍ଭେ ରାଜ୍ୟକୁ ଏବେ ଯାଅ ।
ପିତାମାନଙ୍କୁ ତୁମ୍ଭର ବୁଝାଇ କହିବ
ଚାରିସହସ୍ର ରାଜା ଘେନିଣ ସୈନ୍ୟଜବ ।
ଏମାନଙ୍କୁଘେନିଣ ଆସ ବେଗ କରି
ନ ଆସିଲେ ରାମ ମାରିବେ ସବୁଙ୍କୁ ବିଚାରି ।
ଚନ୍ଦନ ଗୁଆମାନ ଦେଇଣ ପେଷ ପୁଣ
ଭରତଖଣ୍ଡ ମଣ୍ଡଳ ଦଶସସ୍ର ଯୂଣ ।
ଦେଶ ବିଦେଶ ଯେ ପର୍ବତ ବନ ଘୋର
ଯେତେ ରକ୍ଷ ମର୍କଟ ଏ ବନ ଭିତର ।
ସବୁଙ୍କୁ ହକାରି ତୁମେ ଆସ ଯାଇ
ତିନି ପକ୍ଷ ମିଳିବ ସବୁ ଚଳ ଆନ ଥାଇ ।
ସୀତାର ସନ୍ଦେଶ ଯେହୁ ଯେ ଆଣିଥିବ
ତାହାକୁ ବହୁତ ମୋର ଅଟଇ ଗୌରବ ।
ଏମନ୍ତ ବଚନ ଯେ ଯୂଥପତିକି କହି
ଶୁଣି ଲକ୍ଷେ ଶର୍ଦାର ସୁଗ୍ରୀ ଯେ ଡକାଇ ।
ତାଙ୍କର ହସ୍ତରେ ଲକ୍ଷେ ପାନ ଦେଲା
ଗୋଟିକେ ଗୋଟିଏ ରାଜା ଆଣରେ ବୋଇଲା ।
କପି ରାଜାମାନଙ୍କୁ ରେ କହିବ ବୁଝାଇ
ଶ୍ରୀରାମ ଲକ୍ଷ୍ମଣ କିଷ୍କିନ୍ଧ୍ୟାରେ ଛନ୍ତି ରହି ।
ବାଳୀକି ମାରିଣ ସୁଗ୍ରୀକି ରାଜା କଲେ
ରାବଣକୁ ମାରିବାକୁ ବିଚାରେ ମନେ ଭଲେ ।
ରାମ ରାବଣ ଯୁଦ୍ଧ ଘୋର ହେବ ଟାଣ
ମାରିବେ ଦୈତ୍ୟବଳ ଶ୍ରୀରାମ ଲକ୍ଷ୍ମଣ ।
ତୁମ୍ଭମାନଙ୍କୁ ପୌରୁଷ ହେବ ଏବେ
କଥା ରହିଥିବ ଚାରିଯୁଗରେ ତେବେ ।

ଅସୁରଙ୍କୁ ବାନରେ ମାଇଲେ ପୁଣ
ସପ୍ତପୁରରେ କଥା ବିଖ୍ୟାତ ହେବ ଯାଣ ।
ଶ୍ରୀରାମ ଲକ୍ଷ୍ମଣ ଯେ ଅଟନ୍ତି ନାରାୟଣ
ପ୍ରଶଂସା କରିବେ ତୁମ୍ଭଙ୍କୁ ଦେବଗଣ ।
ଶ୍ରୀରାମ ନାରାୟଣ ଗତି ଯେ ମୁକ୍ତି ଦେବେ
ଦର୍ଶନ କଲେ ତୁମ୍ଭର ପାତକ ଖଣ୍ଡିବେ ।
ଏ କଥାମାନ କହି ବୁଝାଇ ତାଙ୍କୁ ଆଣ
ନ ଆସିଲା ଲୋକଙ୍କୁ ଜିଣିକରି ଆଣ ।
ଏମନ୍ତ ବଚନ ଯେ କହିଲେ ସୁଗ୍ରୀବର
ଶୁଣିଯୂଥପତି ସର୍ଦ୍ଦାର ହେଲେ ମେଳ ।
ଏଥୁ ଅନନ୍ତରେ ଶୁଣ ଗୋ ଜୟଦୁର୍ଗା
ସମସ୍ତଙ୍କୁ କହିଣ ବୋଧିଲେ ଋକ୍ଷରାଜ ।
ଭାଲୁସରଦାର ଯାଅ ହେ ଯେତେ ଭାଲୁ
ଏମାନଙ୍କୁ ଆଣିବ ନ ଛାଡ଼ିବରେ ବାବୁ ।
ଗନ୍ଧର୍ବ କିନ୍ନର ଯେ ଯକ୍ଷ ଦେବଗଣ
ଏମାନେ ବିରୋଧ କଲେ କରିବ ରଣ ।
ରାମ ନାମ ସୁମରିଲେ ଅନେକ ବଳ ହେବ
ଏମାନଙ୍କୁ ଜିଣି ଆଣିବ ଜାଣ ସର୍ବ ।
ଦୈତ୍ୟଗଣଙ୍କୁ ଦେଖିଲେ କପିବଳଙ୍କୁ କଳି
ଅସୁରଗଣମାନେ ଆମ୍ଭର ବଇରୀ ।
ମାରିବ ଅସୁରରେ ନ କରିବ ଭୟେ
ରାମ ନାମ ଧଇଲେ ଅନେକ ବଳ ହୁଏ ।
ଜାନକୀ ଯେବେ ଦେବତା ଆଳେ ଥିବ
ତାହାକୁ ଦେଖିଲେ ତୁମେ ବାରତା ଆଣିଦେବ ।
ଗନ୍ଧର୍ବ କିନ୍ନର ଦେବ ଯେ ବିଦ୍ୟାଧର
ଏମାନଙ୍କୁ ଭୟ ଯେ ନ କରିବ କପିବର ।
ଦଶଦିଗପାଳ ରବିଚନ୍ଦ୍ର ଯେ ଆଦି ପୁଣ
ଇନ୍ଦ୍ର ସଙ୍ଗରେ ଅଷ୍ଟବସୁ ଦେବ ଜାଣ ।
ଏମାନଙ୍କୁ ନିରୋଧିବ ନ ମାନି କରି
ଆଗେ ରାମ ନାମ କହିବ ତୁମ୍ଭେ ଫେଡ଼ି ।
ତୁମକୁ ନ ମାନି ହିମାଳ ପୁରେ ଯିବ
ଗନ୍ଧମାର୍ଦ୍ଦନ ହେମାଳ ବୁଲି ବାନର ଆଣିବ ।
ଯେବେ ସୁବର୍ଣ୍ଣ ଗିରିରେ ସୁମର ରାମ ନାମ
ମନ କାଟିବ ହିମ ଉଷ୍ମ ହେବ ଜାଣ ।
ଜାନକୀ ଥିବା ଜାଗାରେ ନ କରିବ କଳି
ଶ୍ରୀରାମଙ୍କୁ କହିଲେ ମାରିବ ଚାପଧାରୀ ।
ଏମନ୍ତ ବଚନ କହିଲେ ସୁଗ୍ରୀବର ।
ମଣାଇ କହିବାରୁ ଜାଣିଲେ ସକଳ
ଏଥୁଅନନ୍ତରେ ଗୋ ଶାକମ୍ଭରୀ ଶୁଣ
ଋକ୍ଷପୁରକୁ ସୁଗ୍ରୀବର ସର୍ଦ୍ଦାର ପଠାଣ ।

ପଚିଶ ଯୂଥପତି ସେ ମେଲାଣି ଦେଲା
ବିଳମ୍ବ ନକରି ଆସ ସତ୍ୱରେ ସେ ବୋଇଲା ।
ସମସ୍ତେ ଯିବାରୁ ଅଙ୍ଗଦଙ୍କୁ କହି
ଶ୍ରୀରାମ କାର୍ଯ୍ୟ ନିର୍ଭାକର ବେଗେ ଯାଇ ।
ଦୂତ ତୁ ବରଗିଲେ ଆଳ ସେ କରିବେ
ଆପଣେ ଯାଇ ତୁରେ ଥାଟ ଆଣ ବେଗେ ।
ସାଥେକ ରାଜାମାନଙ୍କୁ ଶାଢ଼ୀଦେଇ ଆଣ
ଅସାଧ ବାନରଙ୍କୁ ସମର କରି ପୁଣ ।
ତୋତେଯେବେ ଅମାନ୍ୟ ବାନରଭାଲୁ କରିବେ
ରାମ ନାମ ସୁମରିଲେ ସମସ୍ତେ ସାଧ ହେବେ ।
ପୃଥିବୀରେ ଯେତେ ଅଛନ୍ତି ବାନରେ
ସବୁଙ୍କୁ ଆଣ ତୁରେ ତିନିପକ୍ଷ ଭିତରେ ।
ପୁତ୍ର ସମ ତୋତେ କରିଛି ରାମ ରାଣ
ମୁକ୍ତି ଗତି ଦେଇଣ କରିବେକାରଣ ।
ଅନ୍ୟାୟ ଦେଖିଣ ସେ ପିତାକୁ ନାଶ କଲା
ଦୟାକରି ପୁଣି ମୁକ୍ତି ଗତି ଦେଲା ।
ଦେବତାଏ ଯାନ ନ ଭେଦିବାରୁ ପୁଣି
ଭେଦିଲେ ହନୁମନ୍ତରେ ସ୍ୱର୍ଗକୁ ଗଲେ ପୁଣି ।
ଦେବତାଙ୍କ ମନ୍ଦିରୁ ଯାନ ସେ ଅଣାଇଲା
ସେଥିରେ ବସି ପିତା ସ୍ୱର୍ଗପୁର ଗଲା ।
ମାତାର ଦୁଃଖ ଦେଖି ସେ ଦୟା କଲା
ପଞ୍ଚକନ୍ୟା ସତୀରେ ଗଣି ସେ ରଖିଲା ।
ତୋତେ ପ୍ରବୋଧ କରି ଦାଶରଥି ରଖିଲେ
ତୋତେ ରାଜା କରିବି ଲଙ୍କା ଆସିଲେ ।
କିଷ୍କିନ୍ଧ୍ୟା ରାଜ୍ୟ ତୋର ଆଜଠାରୁ ହେଲା
ଏମନ୍ତ ବଚନ ସେ ଶ୍ରୀରାମ ବୋଇଲା ।
ଦୟାଳୁ ପୁରୁଷରେ ଅଟଇ ନାରାୟଣ
ସେ କଥାକୁ ମନେ ବିଚାର କର ପୁଣ ।
ଭାଦ୍ରବ କୃଷ୍ଣପକ୍ଷ ଦଶମୀ ଆଜଦିନ
ପରସ୍ଥାନକୁ ଗମନ ନ କରରେ ନନ୍ଦନ ।
ଖୋଜିଆଣ ବାବୁରେ ବାନର ଭାଲୁ ଦଳ
ଶୁଣିଣ ତୋଷ ହେଲା ଯେ ଅଙ୍ଗଦ କୁମର ।
ପିତାର ଆଜ୍ଞା ପାଇ ଶିରରେ ଶାଢ଼ୀ ପାଇ
ଶ୍ରୀରାମଙ୍କୁ ନମସ୍କାର କଲା ମନରେ ଧ୍ୟାଇ ।
ସୁଗ୍ରୀବର ଚରଣରେ ଓଳଗି ହୋଇଲା
ସେଠାରୁ ଚଳିଯାଇ ମାତାଙ୍କୁ କହିଲା ।
ନମସ୍କାର କରିଣ କହଇ କରଯୋଡ଼ି
ଥାଟ ସାଜିବାକୁ ଯାଉଛି ଯୁଗ ଫେରି ।
ବାନର ଭାଲୁ ଅଇଲେ ଯିବା ଲଙ୍କାଗଡ଼
ଶୁଣିଣ ତାରାବତୀ ଯେ କହଇ ଉତ୍ତର ।

ଯାଅ ବାବୁ ବେଗରେ ହେଳା ତୁ ନକର
ଯେଉଁ ରାମ ଅଟଇରେ ତୈଲୋକ୍ୟ ଠାକୁର ।
ଯାହାର ନାମଗୋଟି ତିନିପୁରରେ ସାର
ତାହାର କାର୍ଯ୍ୟ ବେଗେ କରନ୍ତେ କୁମର ।
ଶୁଣିଣ କୁମର ଯେ ହରଷ ହୋଇଲା
ମାତାକୁ ମେଲାଣି ମାଗି ମେଲାଣି ହୋଇଲା ।
ଦିଗଦହନ ରଥ ଅଣାଇ ବହନ
ସାଜେଣୀ କରାଇଲା ବାଳୀର ନନ୍ଦନ ।
ଚିରାଳ ଉଲ୍ଲୋଖରେ ରଥପରେ ଥୋଇ
ଧବଳ ବର୍ଣ୍ଣ ଦର୍ପଣ ଖଞ୍ଜିଲା ମାଳ ନେଇ ।
ହୀରାନୀଳା ମୋତି ମାଣିକ୍ୟ ଅଷ୍ଟରତ୍ନ
ଖଞ୍ଜିବାରୁ ରଥ ଦିଶିଲା ବଡ଼ ଯତ୍ନ ।
ସାତଗୋଟି ଅଶ୍ୱ ଯେ ସେଥିରେ ଖଞ୍ଜି
ଡାକିଦେଲେ ତିନିପୁରୁ ଆସିବେ ସେହୁ ଖସି ।
ରଥକୁ ସଜକରି ରାଜାର ଆଗେ ଗଲା
ସୁଗ୍ରୀବର ଚରଣରେ ନମସ୍କାର କଲା ।
ଫେରିଆସି ଦିଗ ଦହନ ରଥେ ବସି
ପିତାକୁ ବଳି ଭାରି ତେଜ ଯେ ବିକାଶି ।
ସଙ୍ଗତେ ଅମାନତ୍ୟ ଘେନିଗଲା ବହୁତ
ରାମନାମ ସୁମରି ବାହଇ ବାଳୀସୁତ ।
ପାଟଛତ୍ର ଆଲଟ ଚାମର ନିରନ୍ତର
ଢ଼ୋଲ ଟମକ ଯେ ବାଇଦ ଅପାର ।
ଅନେକ ସମ୍ଭର୍ବରେ ବେଗେ ଚଳିଗଲା
ପଞ୍ଚାଶ ମଉଡ଼ମଣିକି ଜାଗ୍ରତ କଲା ।
ମେଦିନୀ ବୁଲିଣ ଯେ ସକଳ ପୁର ଦେଖି
ଲକ୍ଷ୍ୟ ରଖି ରାଜାଙ୍କୁ କହିଲା ବୃତ୍ତାନ୍ତଟି ।
ଅଯୋଧ୍ୟା ବାରାଣସୀ ପଶ୍ଚିମ ଜାଣ
ବୁଲିଣ ଅଙ୍ଗଦ ଯେ ଦେଖଇ ସକଳ ପୁଣ ।
ମେଦିନୀ ବୁଲିଣ ଯେ ବାନର ଭାଲୁ ସାଧୁ
ଆସିବାର ଯିବାର ଜାଣଇ ସର୍ବସିଦ୍ଧି ।
ଏଥୁ ଅନନ୍ତରେ ସୁଗ୍ରୀବର ରାଏ
ଅଙ୍ଗଦକୁ ପେଷିଣ ନିଶ୍ଚିନ୍ତ ହୋଇ ରହେ ।
ରାଜ୍ୟଭୋଗ ସାରିଣ ପାଶୋରି ସର୍ବେ ରହି
ଶ୍ରୀରାମଠାକୁ ଯିବାକୁ ମନ ବଳେ ନାହିଁ ।
ଏଥୁ ଅନନ୍ତରେ ଶୁଣ ଗୋ ଚାନ୍ଦମୁହିଁ
ମାଲ୍ୟବନ୍ତ ପର୍ବତେ ଶ୍ରୀରାମ ଛନ୍ତି ରହି ।
ଶ୍ରୀରାମ ଲକ୍ଷ୍ମଣ ଯେ ବିଚାର କଲେ ତହିଁ
ସୁଗ୍ରୀବର ରାଜାର ଆମ୍ଭଠାରେ ଦୟା ନାହିଁ ।
ଶ୍ରୀରାମ ବୋଲେ ଶୁଣ ବୀର ଲକ୍ଷ୍ମଣ
ସୁଗ୍ରୀବର ପ୍ରକୃତି ବାନର ଅଟେ ପୁଣ ।
ନିଶ୍ଚିନ୍ତ ହୋଇବାରୁ ପାଶୋରିଲା ମୋତେ
ଡାଳକୁ ବାନର ସିନା ଅଟଇ ଯୁକତେ ।
ସେ ବଂଶେ ସମ୍ପଦରେ ତାହାକୁ ଏବେ ଦେଲି
ବାଳୀକି ମାରିଣ ଯେ କିଷ୍କିନ୍ଧ୍ୟା ରାଜା କଲି ।
ସେ ମୋତେ ପାଶୋରିଲା ସୁଖଭୋଗ ପାଇ
ଏତେଦିନ ଗଲା ଯେ ସଙ୍ଖୋଳା ମୋର ନାହିଁ ।
ଶତ୍ରୁ ହତ ହେବାରୁ ହୋଇଲା ନିଶ୍ଚିନ୍ତ
କିମ୍ପାଇ ଆମ୍ଭପାଶେ ଆସିବ ରକ୍ଷନାଥ ।
ଏଢେ ବୋଲି ରାମ ଯେ ମନରେ ବିଚାରଇ
ଏଥିର ମଧ୍ୟେ ମାସେ ଗଲା ବହି ।
ତୁ ଏବେ ସଉମିତ୍ରୀ ଆଣରେ ତାକୁ ଯାଇ
ନଗଲେ ନ ଆସିବ କିଷ୍କିନ୍ଧ୍ୟାର ସାଇଁ ।
ଲକ୍ଷ୍ମଣ ବୋଇଲେ ଦେବ ତୁମ୍ଭର ସିନାଦୋଷ
ଅକାରଣେ ବାଳୀକି ପ୍ରାଣରେ କଲ ନାଶ ।
ଭୟ ଛାଡ଼ି ହୋଇଲା ନିର୍ଭୟ ସୁଗ୍ରୀବର
କିଷ୍କିନ୍ଧ୍ୟା କଟକରେ ଯେ ଦିନୁ ଈଶ୍ୱର ।
ତାହାକୁ ନ ଦେଇ ବାଳୀରେ ସଇଥାନ୍ତ
ସେହି କଟକରେ ସୀତାଙ୍କୁ ପାଇଥାନ୍ତ ।
ବଳୀ ବଳୀୟାର ଜାଣନ୍ତି ଜଗତ
ଲଙ୍କାଗଡ଼ର ନାଥ ଯେ ଅଟଇ ତାର ମିତ ।
ପ୍ରୀତିପଣରେ ସମର୍ପିଥାନ୍ତା ଆଣି
ନୋହିଲେ ଯୁଦ୍ଧକଲେ ଜିଣନ୍ତା କପିମଣି ।
ତୁମ୍ଭେ ଦେବ ଜାଣୁ କଥାରେ ପ୍ରତେ ଗଲ
ବାଳୀ ହାନି କଥା ବିଚାର ନ କଲ ।
ବାଳୀର ପୁରେ ଯେବେ ପେଶିଥାନ୍ତ ଦୂତ
ସେ ବାଳୀ କହିବାର ପାଆନ୍ତୁ ବାରତ ।
ସତ ଶାନ୍ତି ହେଲେ ତୁମେ ନ ମାନନ୍ତି ପ୍ରାଣ
ଟାଣ କହିଲେ ତାକୁ ଛେଦନ୍ତେ ତୀକ୍ଷ୍ଣ ବାଣ ।
ସୁଗ୍ରୀ ବାଳୀକୁ ସେଠାରୁ କରିଥାନ୍ତ ହତ
ତୁମ୍ଭ କାର୍ଯ୍ୟ ହୁଅନ୍ତା ଶ୍ରୀରାମ ନିଶ୍ଚିତ ।
ଏବେ ଏକ ମାରିଣ ଦିଅ ହେ ଏକ
ଭୋଗ କଲା ଏବେରେ କିଷ୍କିନ୍ଧ୍ୟା କଟକ ।
ଆମ୍ଭର କଥା ଯେ ମନରେ ତାର ନାହିଁ
ଏ ବଚନ ଶୁଣି ବୋଲେ ଜାନକୀର ସାଇଁ ।
ତୁ ହୋ ଲକ୍ଷଣ ବୋଇଲୁ ଯେମନ୍ତ
ମୁଁ ଯାହା କଲି ତାକୁରେ ଜାଣନ୍ତି ଜଗତ ।
ନିସାଥି ଲୋକକୁ ମୁଁ ଯେ ଅଇଶ୍ୱର୍ଯ୍ୟ ଦେଲି
କେଡ଼େ ବଡ଼ ଶତୃକୁ ମାରି ଅକୃତ୍ୟ କଲି ।
ସେ ଯେବେ ମୋର ନୋହିବ ହିତକାରୀ
ଜଗତେ ନିନ୍ଦା ପାଇବ ବାନର ଅଧିକାରୀ ।

ଧର୍ମ ହିଁ ନ ସହିବ ନ ସହେ ତାକୁ ମହୀ
ବାଳୀର ପ୍ରାୟେ ହୋଇ ନାଶ ଯିବ ସେହି ।
ତୁ ବୋଇଲୁ ବାଳୀ ଯେ ବଳରେ ବଳୀୟାର
ଜାନକୀକି ଆଣିଣ ଦେଇଥାନ୍ତା ମୋର ।
ସେ ବାଳୀ ବଞ୍ଚିଲେ ଦୈତ୍ୟ ଯେ ହୋଇଥାନ୍ତେ
ଚାରି ରାବଣ ତ୍ରିଜୀବୀ ହୋଇ ରହନ୍ତେ ।
ଦେବଙ୍କର କାର୍ଯ୍ୟ କି ନୁହନ୍ତା
ଆମ୍ଭେ ଜନ୍ମ ହେବାର ଅକାରଣ ହୁଅନ୍ତା ।
ଯେତେବେଳେ ମାନବ ତିନିପୁରେଛନ୍ତି
ବାଳୀ ଭୟରେ ସମସ୍ତେ ମୋତେ ଖଟିଛନ୍ତି ।
ନ୍ୟୁନ ହେଲେରେ ନ ମାରନ୍ତି ତାକୁ
ବାସୁକୀ ନାଗ ଚିନ୍ତା ନ ଯାନ୍ତା ସେ କାଳକୁ ।
ଦେବତାଙ୍କର କଷ୍ଟରେ ନ ସରେ ଦିନ
ମୋହର ଜନ୍ମ ଯେ ଗୋପ୍ୟ ହୋନ୍ତା ପୁଣ ।
ମୋହନ ବଦନ ରୂପ ଦେଖିଣ ପର୍ଶୁରାମ
ମୋତେ ଭାଇ ଦେଇଣ ନିଶ୍ଚିତ ହେଲା ଜାଣ ।



ମୋତେ ନ ଦେଖିଲେ ସେ ଅସୁର ସାଧିଥାନ୍ତା
ମୋହର ଘରଣୀ ରାବଣ କିମ୍ପା ନ୍ୟନ୍ତା ।
ବାଳୀ ଜୀଇଥିଲେ ହାସ୍ୟ ଯେ କରନ୍ତା
ପର୍ଶୁରାମ ଜମଦଗ୍ନି ସୁତ କ୍ରୋଧ କରନ୍ତା ।
କାହାକୁ ନ ମାନି ବ୍ରହ୍ମା ବିଷ୍ଣୁ ମହେଶ୍ୱର
ଏକାରେ ସପ୍ତପୁର କରିପାର ।
ଏବେ ତୁ ସଉମିତ୍ରୀରେ ସେ କଥା ମନୁ ଛାଡ଼
ଯେପରି ଅସୁର ମରିବେ ସେ କଥା ଲୋଡ଼ ।
ତୁ ଏବେ ସଉମିତ୍ରୀରେ କିଷ୍କିନ୍ଧ୍ୟାକୁ ଯିବୁ
ମୋହର ଆଜ୍ଞା ବୋଲିଣ ସୁଗ୍ରୀକୁ କହିବୁ ।
ବୋଲିବୁ ପ୍ରାଣକୁ ତେବେ ଆଶାରେ ପୁଣ
ଥାଟ ସଜ କରି ବାହାର ହୋଇ ଆଣ ।
ନ ଆସି ଅଳସ କରିବ ଯେବେ କପିମଣି
ଭାଇର ସଙ୍ଗରେ ଯିବାର କହିବୁ ତାକୁ ପୁଣି ।
ଏତେ ବୋଲି ଶ୍ରୀରାମ ଯେ ଲକ୍ଷ୍ମଣର ହସ୍ତେ
ବାଳୀକୁ ମାରିଲେ ଯେବଣ ଶରଘାତେ ।
ସେ ନାରାଚ ଦେଇଣ କହିଲେ କଥାମାନ
ଏହାକୁ ନେଇଣ ଦେଖାରେ ସୁଗ୍ରୀବ ରାଜନ ।
ସେ ଯେଉଁ କଥାରେ ଅଳସ ଘେନିଥିବ
ଏ କାଣ୍ଡ ଦେଖିଲେ କେବେହେ ନ ରହିବ ।
ଯାଅ ବାବୁ ଏବେରେ ହୁଅ ସୁକଲ୍ୟାଣ
ତିନିଦିନ ଭିତରେ ସୁଗ୍ରୀବକୁ ଯାଇ ଆଣ ।
ମୂର୍ଖପଣ କଲେ ନ ବୋଲିବୁ କିଛି
ତୁ ତାକୁ କୋପରେ ନ କରିବୁ ସାନୁଜଟି ।
ଆଜନ୍ମ କାଳରୁ ସେ ଯେ ଦୁଃଖୀ
ମୋହର ପ୍ରସାଦେ ଯେ ଅଟଇ ସୁଖୀ ।
ତୋତେ ଦେଖି ସାନୁଜରେ ହୋଇବ ସେ ବଶ୍ୟ
କୋପ ନ କରିବାଁରୁ ତାହାକୁ ଘେନି ଆସ ।
ସେ ମୋର ମଇତ୍ର ଯେ ଅଟଇ ଯେଣୁ ଭାଇ
ଅପରିଷାର ବଚନ ନ ବୋଲିବୁ ତୁହି ।
ଜାମ୍ବେବ ହନୁମନ୍ତ ସୁଷେଣ ନଳ ନୀଳ
ଏ ରୂପଭେଟ ମୋତେ ଥାଗେ ଯେ ପାଞ୍ଚବୀର ।
ଏମାନଙ୍କୁ ଡାକିଣ କହଇ ସର୍ବକଥା
ବୁଲିବୁ କେମନ୍ତରେ ଆଣିଦେବ ସୀତା ।
ରାଜ୍ୟ ପାଇବାଯାଏ ସବୁଙ୍କୁ କହୁଥିଲ
ଆପଣା କାର୍ଯ୍ୟ ପାଇଲାରୁ ଆମ୍ଭଙ୍କୁ ପାଶୋରିଲ ।
ଏସନ କହିଲେ ସେ ସଙ୍କୋଚ ହୋଇବ
ତୋହର ସଙ୍ଗେ ପଛେ ଗୋଡ଼ାଇ ଆସିବ ।
ଯାଅ ତୁ ସାନଜୁରେ ନ କର ବିଳମ୍ବ
ତୁ ଏଥୁ ଗଲେ ମୁଁ ଯେ ଏକା ଯେ ରହିବ ।
ଆଜ ଦିନ ଭିତରେ ଯାଇଣ ଆସିବୁଟି
ତୋହର ଆସିବା ଯାଏ ମୋହର ତିଥି ।
ତୋତେ ଦେଖିଲେ ସାନୁଜରେ ଆହାରମୋର
ତୋତେ ଦେଖିଲେ ସ୍ନାହାନ ଯେ ମୋହର ।
ଯାଅ ବେଗେ ସାନୁଜରେ ସୁଗ୍ରୀବକୁ ଘେନିଆସ
ସେ ଆସିଲେ ଆମ୍ଭଙ୍କୁରେ ସୀତୟା ପ୍ରାପତ ।
ଶୁଣିଣ ଲକ୍ଷ୍ମଣ ଯେ ବଚନ ପ୍ରକାଶି
ମୁଁ ସଙ୍ଗରେ ଥିବାରୁ ବିଁରଳ ତୁମ୍ଭରମତି ।
ମୁଁ ଗଲେ ଦେବ ହେ କପିଙ୍କ ଯୁଗ ଯିବ
ତୁମ୍ଭଙ୍କୁ ନ ଦେଖିଲେ ମରିବି ପୁଣ ଦେବ ।
ଜାନକୀକି ଅଣାଇ ମୃଗ ମାରିଗଲ
ଜନକର ଦୁହିତା ଶବଦ ଶୁଣେ ତୋର ।
ବୋଇଲା ସାନୁଜରେ ବେଗ ହୋଇ ଯାଅ
ଶ୍ରୀରାମଠାରେ ବେଗେ ଅଛଇ ତୋର ସ୍ନେହ ।
ଅନେକ ପ୍ରକାରେ ମୋତେ କହିଣ ଗଲେ ପୁଣ
ନ ଗଲାରୁ କ୍ରୋଧ ସେ ସ୍ତିରୀରତ୍ନ ପୁଣ ।
ଅନେକ ଦୁର୍ଭାଷା କହିଣ ଗାଳି ଦେଲା
ଯାହାକୁ ଶୁଣେ ମାଇଲା ଖଟିବା ଲୋକଭଲା ।
ଆଜ୍ଞା ନିୟମ ରଖିଣ ତୁମ୍ଭର ପାଶେ ଗଲି
ଲେଉଟି ଆସି ପୁଣି ସତୀକି ନ ଦେଖିଲି ।
ସେ କାଳର କଥା ତୁ ଏବେ ଆସି ଘୋଟି
ଶୁଣିଣ ଶ୍ରୀରାମ ଯେ ବୋଇଲେ ବଚନଟି ।
ଶୁଣିଣ ଲକ୍ଷ୍ମଣ ଯେ ହରଷ ମନ ହେଲା
କୋଦଣ୍ଡ କାଣ୍ଡ ଘେନି ବାହାରେ ସୁମିତ୍ରାବଳା ।

ଶ୍ରୀରାମ ଆଜ୍ଞାରେ ଲକ୍ଷଣ ତତକ୍ଷଣି
ଶ୍ରୀରାମର ଚରଣେ ପ୍ରଣାମ କରେଟି ।
ବାମକରେ ଧନୁ ଯେ ଦକ୍ଷିଣ କରେ ଗଦା
ଖଡ୍‌ଗ କଟୀ ମାଝେ କଠାଉ ପାଏ ଶୋଭା ।
ଲକ୍ଷ୍ମଣ ବୋଇଲେ ଦେବ ନ ଯିବଟି କାହିଁ
ଶୁଣିଣ ଶ୍ରୀରାମ ଯେ ହରଷ ମନେ କହି ।
ଶ୍ରୀରାମ ବୋଇଲେ ଚଳି ଯା ଆରେ ଭାଇ
ସୀତୟାକୁ ସିନା ଚୋର ଚୋରାଇ ନେଇଯାଇ ।
ମୋତେ ଯେ କେହୁ ନେବ ମୁହିଁ କର୍ମହୀନ
ଯାଅ ତୁ ଲକ୍ଷ୍ମଣରେ ମନରେ ନଧର ଆନ ।
ଶୁଣିଣ ଲକ୍ଷ୍ମଣ ମନରେ ଚିନ୍ତା କଲା
କେଣିକି ନ ଯିବି ବୋଲି ପୁଣି ସେ ବୋଇଲା ।
ଶ୍ରୀରାମଙ୍କୁ ଓଳଗିଣ ପ୍ରଦକ୍ଷିଣ କରି
ସୂର୍ଯ୍ୟକୁ ଚାହିଁ ବୋଲଇ ରଖ ଚାପଧାରୀ ।
ଅଗସ୍ତିକୁ ସୁମରଇ ସୁମିତ୍ରାର ସୁତ
ତୁମ୍ଭେ ମହାମୁନି ବେଗ ହୋଇ ଆସ ।
ମାର୍କଣ୍ଡ ଋଷିଙ୍କି ସୁମରେ ଲକ୍ଷ୍ମଣ
ଯମ ନିକଟରୁ ଆସହେ ପୁଣ ।
ଶ୍ରୀରାମ ସଙ୍ଗରେ ଆସିଣ ଭେଟ ହୁଅ
କିଷ୍କିନ୍ଧ୍ୟାରୁ ଆସିବାଯାଏ ଶ୍ରୀରାମ ପାଶେ ଥାଅ ।
ଏମନ୍ତ ମନରେ ଯେ ଲକ୍ଷଣ ସ୍ତୁତି କଲା
ଅଗସ୍ତିଙ୍କି ମନେ ଯେ ଚଞ୍ଚଳେ ଧଇଲା ।
ଜାଣିଲେ ଅଗସ୍ତି ଲକ୍ଷ୍ମଣ ସୁମରଣ
ବିଚାରିଲେ ଶ୍ରୀରାମଙ୍କୁ ଛାଡ଼ିଛି ଲକ୍ଷ୍ମଣ ।
ରାମଙ୍କୁ ଅଜ୍ଞାନ ଯେ ଘୋଟିଅଛି ଏବେ
ଲକ୍ଷ୍ମଣ ଗଲେ ରାମ ସେଠାରେ ନ ରହିବେ ।
ଏମନ୍ତ ବିଚାରିଣ ଅଗସ୍ତି ମହାମୁନି
ଦୋହରା ଅଗ୍ନିକୁ କହିଲେ ଯାଅ ପୁଣି ।
ବୋଇଲେ ବୈଶ୍ୱାନର ପତ୍ରକୁଟୀରେ ରହୁ
ରଘୁନାଥ ଠାରେ ହୋଇବି ମୁଁ ଭେଟ ସେହୁ ।
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ
ମାର୍କଣ୍ଡ ଋଷିର ଆସନ ଜମିଲାଟି ।
ଯୋଗରେ ଜାଣିଣ ଋଷି ହୋଇଲେ ବାହାର
ଋଷ୍ୟମୂକ ପର୍ବତେ ମିଳିଲେ ମୁନିବର ।
କୋକିଳ ଚଢ଼ାଇ ଯେ ବୃକ୍ଷପରେ ଥିଲା
ଲକ୍ଷ୍ମଣଙ୍କୁ ପୁଣ ସେ ସଙ୍କେତ କହିଲା ।
କିମ୍ବା ବିକଳେ ତୁରେ ହେଉଛି ସଉମିତ୍ରୀ
ବ୍ରହ୍ମାଣ୍ଡ ଠାକୁରଙ୍କୁ ଅଜ୍ଞାନ ଘୋଟିଅଛି ।
ଏଥରୁ ଗଲେ ତୁ ଆସିବେ ଅଗସ୍ତି ମାର୍କଣ୍ଡ
ଶ୍ରୀରାମଙ୍କୁ ବୁଝାଇ କରାଇବେ ଦଣ୍ଡ ।
ଶୁଣିଣ ସଉମିତ୍ରୀ ସନ୍ତୋଷ ହୋଇଲେ
ଶ୍ରୀରାମଙ୍କୁ କହିଣ ବେଗେ ଚଳିଗଲେ ।

ମାନଭର ହୋଇ ଉଠିଲେ ରଘୁନାଥ
ଆସିଣ ସେ ଧଇଲେ ଲକ୍ଷ୍ମଣର ହସ୍ତ ।
କୋଳକରି ବହୁତ ସେ ବୋଲନ୍ତି
ପଥରେ ତୋତେ ସାହା ହୁଅନ୍ତୁ ହିମବନ୍ତୀ ।
ଅପ୍ରମାଦେ ଯାଇ ସେ କିଷ୍କିନ୍ଧ୍ୟାରେ ହୁଅ
ଏ ମୋହର ଦୁଃଖ ବାବୁ ସୁଗ୍ରୀବକୁ କହ ।
ଏତେ ବୋଲି ନେତ୍ର ଯେ ଥନ ଥନ କଲେ
ମୁଖ ଚୁହା ଚୁହି ବେନି ଭାଇ ହେଲେ ।
ଲକ୍ଷ୍ମଣ ବୋଇଲେ ଶୁଣ ସୀତୟାର କାନ୍ତ
ନ ଜାଣିଲା ଭଳି ଦେବ କରୁ ଯେ ଚିତ୍ତ ।
ଅଜ୍ଞାନ ମତିରେ ପୁଣ ଏଣେ ତେଣେ ଯାଉ
ମୁଁ ତୁମ୍ଭ ସଙ୍ଗେ ଥାଉ ବିହ୍ୱଳିତ ହେଉ ।
ବାହୁଡ଼ିଣ ପୁଣି ଯେ ନ ଦେଖଇ ତୋତେ
ତୁ ଦେବ ସମ୍ପତେ ଯେ ଉପୁଯାଅ ମୋତେ ।
ଶ୍ରୀରାମ ବୋଇଲେ ଏବେ ଶୁଣରେ ସାନୁଜ
ତୋତେ ଛାଡ଼ିଲେ କି ସୀତା ମିଳେ ସହଜ ।
ଏ ଘୋର ଅରଣ୍ୟ ଯେ ନ ଜାଣେ ମୁଁ ଦେଶ
କାହିଁ ଯାଇ ପଶିବ କେଉଁଠାରେ ଆସ ।
ତୋତେ ଛାଡ଼ିଗଲେ କିରେ ରହଇ ମୋର ପ୍ରାଣ
ଏଥିରେ କିଛି ତୁ ନ ଭାଳରେ ଲକ୍ଷ୍ମଣ ।
ଶୁଣିଣ ସଉମିତ୍ରୀ ଗଲାକ ପିଠ ଦେଇ
ପଛେ ପଛେ ଗୋଡ଼ାଇଲେ ରଘୁକୁଳ ସାଇଁ ।
ଲକ୍ଷ୍ମଣ ବୋଇଲେ ଆସ ହେ କିସ ଅର୍ଥେ
ନିଶ୍ଚିନ୍ତ ହୋଇଣ ତୁମ୍ଭେ ଥାଅ ଏବେ ।
ଆଶ୍ୱିନ ତୃତୀୟା ଆଜର ଦିନ ତିଥି
ଆନ ଦୁଇ ଦିନରେ ଆସଇ ଲେଉଟି ।
ଏତେ ବୋଲି ଶ୍ରୀରାମ ଚରଣ ତଳେ ପଡ଼ି
ବାହୁଡ଼ି ଯାଅ ଯେ ବୋଇଲା କରଯୋଡ଼ି ।
ଶୁଣିଣ ଶ୍ରୀରାମ ଯେ ଆସିଲେ ଲେଉଟି
ବକ୍ଷସ୍ଥଳ ତିନ୍ତଇ ଯେ ଅଶ୍ରୁଜଳ ଲୋଟି ।
ଉଡା ଦଣ୍ଡ ଆସିଣ ଯେ ଲେଉଟି ଚାହାନ୍ତି
ଦୁଇ ଭାଇର ତହିଁ ସମ୍ବାଦ ସେ କରନ୍ତି ।
ଶ୍ରୀରାମ ବୋଇଲେ ଭାଇରେ ବେଗହୋଇ ଆସ
ତୁ ଯିବାରୁ ଦିଶିଲା ଅନ୍ଧାର ଦଶଦିଶ ।
ଏତେ କ୍ଳେଶ ମୋର କର୍ମେ ଲେଖିଛି ବିଧାତା
ତୁ ମୋହର ସଙ୍ଗେରେ ଥିବାରୁ ମୁଁ ଥିଲି ସୀତା ।
ଦେଶ ଶୂନ୍ୟ କରିଣ ରହିଲି ବନେ ବାବୁ
ଦୁଇଦିନେ ନ ଆସିଲେ ମୋତେ ନ ଦେଖିବୁ ।
ଅଗ୍ନି ଲଗାଇଣ ମରିବି ମୁଁ ନିୟତ
ସୁଗ୍ରୀବର ନ ଆସିଲେ ଆସ ତୁ ତୁରିତ ।
ଶୁଣି ସଉମିତ୍ରୀ ଯେ ଉଚ୍ଚେ ଡାକି ଦେଲା
ଭୋ ଦେବ ଏକଥା ଯେ ପ୍ରମାଦ ମୋତେ ହେଲା ।

ଭୋ ଦେବ ମୁହିଁ ଆସିବାଯାଏ ଥିବୁ
ସୀତୟା ଆଣିଦେବୁ ଯେ ପ୍ରତିଜ୍ଞା ଦେଖିବୁ ।
ସୁଗ୍ରୀ ନ ଆସିଲେ କାଟିବି ତାର ମୁଣ୍ଡ
ଅଙ୍ଗଦକୁ ଦେବି ଯେ କିଷ୍କିନ୍ଧ୍ୟା ରାଜଖଣ୍ଡ ।
ହନୁମନ୍ତ ଅଣାଇଣ ଆଣିବି ଯେ ତାରମୁଣ୍ଡ
ମୋର ଶରେ ନାଶଯିବ ପାପିଷ୍ଠ ରାବଣ ।
କୁହାକୁହି ଦୁଇଭାଇ ଏମନ୍ତ ବଚନ ।
ସେଠାରେ ବଳରାମ ଦାଶ ଶରଣ ପଶଇ
କୋକିଳ ଚଢ଼ାଇ ଯେ ଉପରେ ତାଳେ ଦେଇ ।
ବେନି ଭାଇଙ୍କ ଚରଣ ତଳେ ଶୋଇଲା ଯାଇଣ
ଏଥୁ ଅନନ୍ତରେ ଶାକମ୍ଭରୀ ଗୋ ଶୁଣ ।
କୋକିଳ ଚଢ଼ାଇ ଯେ ଚରଣେ ଥିଲା ପଡ଼ି
ଶ୍ରୀରାମ ବୋଇଲେ ପକ୍ଷୀ ବେଗେ ଯାଅଚଳି ।
ବୋଧ ହୋଇ କୋକିଳ ଯେ ବୃକ୍ଷପରେ ଗଲା
ସେହି ବଳରାମଦାସ ହୋଇ ଜନ୍ମ ସେ ହୋଇଲା ।
ପାର୍ବତୀ ବୋଇଲେ ସେଠାରୁ ବେନିଭାଇ
କିସ କଲେ ମୋତେ କହ ତ୍ରୈଲୋକ୍ୟର ସାଇଁ ।
ଈଶ୍ୱର କହିଲେ ଶୁଣଗୋ ଭଗବତୀ
ଶ୍ରୀରାମଙ୍କୁ ଲକ୍ଷ୍ମଣ କହିଣ ବୁଝାନ୍ତି ।
ଏଦେହ ଥିଲେ ଦେବ ସକଳ ଭୋଗ ଅଛି
ପ୍ରାଣ ଗଲେ ଘରଣୀ କି କରେ ଦାଶରଥୀ ।
ମାନ ଉଦ୍ଧାରି ପାରେ ଯେ ଶରୀରେ ପ୍ରାଣଥିଲେ
ସବୁ ଅକାରଣ ଯେ ପିଣ୍ଡରୁ ପ୍ରାଣ ଗଲେ ।
ଭୋ ଦେବ ଏ ବୁଦ୍ଧି ନ ଧର ଆନମନେ
ମୁଁ ଆସିବି ବାର୍ତ୍ତା ଦେବି ଦୁଇଦିନେ ।
ଏତେ କହି ଲକ୍ଷ୍ମଣ ଯେ ପଥ ବାହିଗଲେ
ପର୍ଣ୍ଣ କୁଟୀରକୁ ଶ୍ରୀରାମ ବାହୁଡ଼ି ଅଇଲେ ।
ଶୁଣିଣ ପାର୍ବତୀ ଯେ ଈଶ୍ୱରଙ୍କୁ ଭଣି
କଥାଏ ପଚାରିବି ଶୁଣ ହେ ଶୂଳପାଣି ।
ଶ୍ରୀରାମ କହିବାରୁ ଲକ୍ଷ୍ମଣ ଚଳିଗଲେ
ପର୍ଣ୍ଣ କୁଟୀର ଭିତରେ ରାମ ଯାଇଣ ବସିଲେ ।
କୋକିଳ କହିବାରୁ ଲକ୍ଷ୍ମଣ ମନେ ଧୀର
ଶ୍ରୀରାମ ମନରେ ହୋଇଣ ଚିନ୍ତା ଘୋର ।
ମୃଗପଲଙ୍କୁ ସରାଗେ ପଚାରନ୍ତି ଶ୍ରୀରାମ
ବକ ତ କହିଦେଲା ଦେଖିଲା କଥାମାନ ।
ଚାରିମେଘଙ୍କୁ ପଚାରିଲୁ ସେହୁ କହିଗଲେ
ତରୁଲତାମାନେ ଲଙ୍କାର ଶବଦ କହିଲେ ।
ତ୍ରିଲୋଚନ କହିଲେ ଶୁଣରେ ମନଦେଇ
ସେ ତରୁଲତାମାନେ ଯେ କିଛି ନ କହି ।
କ୍ରୋଧରେ ଶ୍ରୀରାମ ଯେ ତାହାଙ୍କୁ ଶାପ୍ୟଦେଲେ
ପର୍ବତ ଉପରେ ତୁମେ ନ ରହ ବୋଇଲେ ।

ଯେତେକାଳ ଚନ୍ଦ୍ର ସୂର୍ଯ୍ୟ ଆତଙ୍କାତ ହେବେ
ତେତେକାଳ ପର୍ବତରେ ନ ରହିବ ଏବେ ।
ଯେଉଁଠାରୁ ସୀତା ମୋତେ ଛାଡିଗଲା ପୁଣ
ସେହିଠାରୁ ପର୍ବତରେ ନ ରହ ପୁଣ ।
ଶ୍ରୀରାମ ବାଣୀ ଶୁଣି ତରୁଲତା ଗଲେ
ପର୍ବତରୁ ଓହ୍ଲାଇ କନ୍ଦରେ ରହିଲେ ।
ପୁଣି ଶୁଣିଲଟିକି ମୈଷାସୁର ମର୍ଦ୍ଦନୀ
ସନ୍ତୋଷ ହୋଇଲାଟି ରାମ କଥା ଶୁଣି ।
ପାର୍ବତୀ ବୋଇଲେ ତୁମେ ଶୁଣ ହେ ତ୍ରିପୁରାରୀ
ଦାଶରଥି ରହିଲେ ମାଲ୍ୟବନ୍ତ ଗିରି ।
ଲକ୍ଷ୍ମଣ ଚଳିଗଲେ କିଷ୍କିନ୍ଧ୍ୟା ନଗରେ
ଏଥିର ମଧର କଥା ପଡ଼ିଲା ମୋ ମନରେ ।
ପିତାର ସତ୍ୟରେ ରାମ ଅଯୋଧ୍ୟା ଛାଡ଼ିଲେ
ଭାଇ ଭାରିଯା ଘେନିକରି ଅରଣ୍ୟବାସ କଲେ ।
ପିତା ନାଶ ଗଲା ଭ୍ରତ ରାଜା ଯେ ନୋହିଲା
ଅଯୋଧ୍ୟା ଛାଡ଼ି ରହେ ନନ୍ଦି ଗ୍ରାମେ ଭଲା ।
ତେରବର୍ଷ ପାଞ୍ଚମାସ ଏଥିରେ ବହିଗଲା
ଭ୍ରତ ରାଜା ନୋହିଲା ରାଜ୍ୟ କେ ପାଳିଲା ।
ମାତାମାନେ କିସ ଯେ କଲେ ତାଙ୍କର
ପରଜାମାନେ କେହ୍ନେ ଯେ ବଞ୍ଚିଲେ ଦିନକାଳ ।
ଈଶ୍ୱର ବୋଇଲେ ତୁମେଶୁଣ ଗୋ ମହାମାୟୀ
ସେ କଥା ତୁମ୍ଭଙ୍କୁ ଯେ କହିବା ବୁଝାଇ ।
ଭ୍ରତ ରାଜା ନ ହେଲା ଶ୍ରୀରାମ ପାଶେ ଗଲା
ରାମ ଫେରି ନ ଆସି ପାଦୁକା ତାକୁ ଦେଲା ।
ପାଦୁକାକୁ ଧରିଣ ଫେରିଲା ଭ୍ରତ ବୀର
ନଗ୍ରକୁ ନ ଯାଇ ବନସ୍ତେ କଲା ଘର ।
ସାନ ନନ୍ଦିଗ୍ରାମ ବୋଲିଣ ନାମ ଦେଲା
ନଗର କରିଣ ଭ୍ରତ ସେଥିରେ ରହିଲା ।
ରାଜ୍ୟର ଭଲମନ୍ଦ ନବୁଝେ ଭ୍ରତ କିଛି
ମଉନେ ତପ କଲା ଜଗତୀ ପରେ ବସି ।
ରାଜଭୋଗ ଛାଡ଼ିଣ ତପସ୍ୱୀ ଦୀକ୍ଷା କଲା
ଅନ୍ନ ଛାଡ଼ି ଶାକ ଭୋଜନେ ରହିଲା ।
ବାଡ଼ିରୁ କାନିଶିରୀ ଶାକ ଆଣଇ ନିତ୍ୟ ତୋଳି
ଭ୍ରତ ସେହି ଶାକ ଖାଅଇ ଖରଡ଼ି ।
ସେମାନ ଦେଖିଣ ସାମନ୍ତ ପାତ୍ରଗଣ
ବଶିଷ୍ଠଙ୍କୁ ଘେନିଣ ବିଚାର କରେ ପୁଣ ।
ଅମାନତ୍ୟ ରଥୀ ଯେ ସାରଥୀ ଗଣ ମିଶି
ପ୍ରଜାଜନସଙ୍ଗେ ହଟାରୀ ବଜାରୀ ବସି ।
ସମସ୍ତ ମେଳ ହୋଇ ଭରତ ପାଶେ ଗଲେ
ତପ ଭଗ୍ନ କରାଇଣ ବୁଝାଇ କହିଲେ ।
ତେଣୁ ଯେ ଭ୍ରତ ହୋଇଲା ତୋଷମନ
ଯୁବରାଜ ପଣେ ରହେ ଶତ୍ରୁଘନ ।

ଜନନୀ ଲୀଳାବତୀ ରାଜ୍ୟ ଯେ ପାଳିଲା
ଭରତ ଅଯୋଧ୍ୟା କଟକ ଛାଡ଼ିଲା ।
ହସ୍ତୀ ରଥ ପଦାତି ସେନାପତି ଗଣ
ରାଜ୍ୟର ଚାରିପାଶେ ଜଗାଏ ନେଇଣ ।
ପରଥାଟ ନିମନ୍ତେ କରିଛି କଟାଳ
ରାତ୍ରରେ ଭରତ ଯେ ଦେଖି ସର୍ବଠାର ।
କନକଧ୍ୱଜ ରଥ ପରେ ବିଜେକରି
ଧନୁ କମାଣ ବାଟୁଳି ବାମକରେ ଧରି ।
ରଜନୀରେ ସର୍ବସ୍ଥାନ କରଇ ଭ୍ରମଣ
ରଜନୀ ଶେଷରେ ନବରେ ଆସେ ପୁଣ ।
ସ୍ନାହାନ ନିତ୍ୟକର୍ମ ସାରିଣ ତତକାଳ
ବିରଞ୍ଚ ନାରାୟଣ ଦର୍ଶନ କରେ ପୁଣ ।
ସେଠାରୁ ଶ୍ରୀରାମ ପାଦୁକା ଯାଇ ପୂଜେ
ନିର୍ମଳ ସ୍ଥାନରେ ଭରତବୀର ଯାଇ କରି ବିଜେ ।
ଶ୍ରୀରାମ ସୁମରି କରଇ ତପ ଜାଣ
ଏମନ୍ତ ତେରବର୍ଷ ଗଲା ବହିଣ ।
ପାଞ୍ଚମାସ ଯାଆନ୍ତେ ବିଚାରେ ଭରତବୀର
ସାତମାସ ଗଲେ ଆସିବ ଶ୍ରୀରାମ ଏହୁ ପୁର ।
ପୁତ୍ର ସମ କରି ଜାଣ ପାଳିବେ ପରଜା
ରାମ ପାଦୁକା ନିତ୍ୟ ଭରତ କରେ ପୂଜା ।
ପାଦୁକା ରାଜା ବୋଲିଣ ଜଗତେ ବିଖ୍ୟାତ
ପାଦୁକା ନାମେ ହୁକୁମ ଫେରଇ ଦେଶ ତ ।
ଶ୍ରୀରାମ ଯିବାରୁ ପାଦୁକା ହେଲେ ରାଜା
ଅଭିଷେକ ହୋଇ ପାଇଲେ ପୂଜା ।
ପ୍ରତିଦିନ ତିନିବେଳେ ପାଞ୍ଚ ଅବକାଶ
ଚନ୍ଦନ ଲାଗି କରାଇ ବଡ଼ ସିଙ୍ଗାର ବେଶ ।
ଶ୍ରୀରାମ ପାଦୁକା ହେଲେ ରାଜ୍ୟରେ ରାଜା
ଭରତ ଦିଶେ ତୋରା କରି ପାଦୁକା ପୂଜା ।
ଭରତର ତଳେ ଶତ୍ରୁଘ୍ନ ଯୁବ ଯେ ରାଜା ହୋଇ
ସଭିଙ୍କି ବରିଲା ଲୀଳାବତୀ ରାମରାୟ ।
ପ୍ରଜାଜନ ପାଳଇ ଭଲମନ୍ଦ ଯେ ବୁଝଇ
ସପତଣୀମାନଙ୍କୁ ସମ୍ଭାଳି ରଖଇ ।
ହଟାରୀ ବଜାରୀ ଯେ ପଦାତି ରଥୀଗଣେ
ଘୋଡ଼ା ସରଣୀ ରଖଇ ଯତନେ ।
ପାଦୁକା ରଜାର ସିଦ୍ଧି ଯେମନ୍ତ ପ୍ରକାରେ
କରନ୍ତି ବିଜୟ ବରଷକେ ଥରେ ।
ଢ଼ୋଲ ଦମାଲୁ ଯେ ଟମକ ନିଶାଣ
ବାଦ୍ୟ ନାନା ରଙ୍ଗେ ଯେ ବାଜଇ ନିପୁଣ ।
କାହାଳି ଶଙ୍ଖ ସ୍ୱର ସେ ମହୁରୀ
ତେଲଙ୍ଗୀ ବାଦ୍ୟମାନ ବଜାନ୍ତି ଭେରୀ ତୁରୀ ।
ଛତ୍ରୀ ତ୍ରାସ ଯେ ଆଡ଼େଣୀ ବଇରଖ
ଆ‌ଟ ବିଞ୍ଚଣୀ ଯେ ପଡ଼ଇ ଆଗରେ ତ ।
ମୟୂର ଚୁଳଲାନ ଚାମର ଆଗେ ପଡ଼ି
ଚଉଦଳ ଉପରେ ପାଦୁକା ବିଜେ କରି ।
ଅଯୋଧ୍ୟା କଟକକୁ ଭ୍ରମଣ କରି ପୁଣ
ନିଜସ୍ଥାନେ ସିଂହାସନେ ବିଜେ କରେ ପୁଣ ।
ହସ୍ତୀ ରଥୀ ସାମନ୍ତ ପାତ୍ର ଯେ ଅମାନ୍ୟ
ସମସ୍ତ ସମ୍ବର୍ଦ୍ଧରେ ପାଦୁକା ରାଜା ନାମ ।
ଏମନ୍ତ ଉତ୍ସବ ଯେ ବରଷକେ ଥରେ
ପାଦୁକା ରାଜା ନାମ ବିଖ୍ୟାତ ଏମନ୍ତରେ ।
ତେରବର୍ଷ ପାଞ୍ଚମାସ ଗଲା ବହି
ଚଉଦ ଅଙ୍କ ଅଯୋଧ୍ୟାରେ ପାଦୁକା କଟାଇ ।
ଶ୍ରୀରାମର ସତ୍ୟ ଯହୁଁ ଆସିଣ ଶେଷ ହେଲା
ଅଳ୍ପଦିନରେ ସତ୍ୟ ଯେ ହୋଇଯିବ ପୂରା ।
ଦିନଗଣି ଭରତ ମନରେ ବିଚାରି
ସାତମାସରେ ଏ ପୁରେ ଆସିବେ ଚାପଧାରୀ ।
ନଗ୍ର ପରିମଳ ଦାଣ୍ଡ ଯେ ନିର୍ମଳ
କଳସ ଚିରାଳ ଯେ ବସାନ୍ତି ସର୍ବଘର ।
ସୁବର୍ଣ୍ଣ ଚଉରା ଯେ ଧାଡ଼ି ଧାଡ଼ି ଶୋଭା
ରାଜାମାନେ ଦେଖିଲେ ମନରେ ହେବେଲୋଭା ।
ବିଶ୍ୱକର୍ମା ଡକାଇ ନଗର କଲେ ସଜ
ଦେଖିକରି ସନ୍ତୋଷ ଯେ ହୋଇବେ ରଘୁରାଜ ।
ଶୁଣିଣ ବିଶ୍ୱକର୍ମା ପାତ୍ର ଯେ ମନ୍ତ୍ରୀ ରାଇ
ବୋଇଲେ ନଗର ସଜ କରରେ ବେଗେଯାଇ ।
ଆଜ୍ଞା ପାଇ ବିନ୍ଧାଣୀ ବେନି ଯେ ଘିଡି ଗଲେ
ରତ୍ନମୟ ନବର ସଜ ଯେ କଲେ ଭଲେ ।
ତିଆରି କଲା ସେ ଯେ ରତ୍ନ ସିଂହାସନ
ନାନା ପୁଷ୍କରିଣୀ କୂପ ଯେ ବାମ୍ପୀପୁଣ ।
ଅନ୍ତଃପୁର ରାଣୀପୁର ଦାସୀ ଧାଈପୁର
ବସିବା ହସିବା ଯେତେକ ପୁର ତାର ।
ଭିତରେ ଖିଡ଼ିକୀ ଯେ ସ୍ଥାନମାନ ପୁଣି
ଭୁଞ୍ଜିବା ଶୋଇବା ସ୍ଥାନମାନ ଦ୍ୱିତଳଯେପୁଣି ।
ଜଗତୀ ଅଟାଳି ଯେ କେତରୀ ଅଟେ ପୁଣ
ରାଜ୍ୟର କଥା ବୁଝିବାକୁ ବାହାର ଘର ଜାଣ ।
ଏମନ୍ତ ବିଶ୍ୱକର୍ମା ଲାଗି ନିର୍ଭା କଲେ
ଦାଣ୍ଡ କନ୍ଦି ବିକନ୍ଦି ଯେ ଲାଗି ନିର୍ଭା କଲେ ।
ଖାଲ ଖମା ପୋତାଇ ସମତୁଲ କଲେ
ଯେଉଁରୂପେ ଭରତ ତାହାଙ୍କୁ ଆଜ୍ଞା ଦେଲେ ।
ନଗ୍ରକୁ ଯତ୍ନ କରି କହିଲେ ବିଶ୍ୱକର୍ମା
ଗୁଣମଣି ଗୁଣରେ ଦିଶଇ ରାଜ୍ୟ ଶୋଭା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ରାଜ୍ୟ ପରିମଳ ଭରତ ବୁଲି ଦେଖି ।
ବଶିଷ୍ଠଙ୍କୁ ଡକାଇ ପଚାରେ ଭରତ ବୀର
ରାଜାମାନଙ୍କୁ ବରଣୀ କରିବା ଏଥର ।

ଲକ୍ଷେ ରାଜା ବରଣ ଋଷି ଯେ ବେଗେ କର
ଅଯୋଧ୍ୟା ନବରକୁ ଅଣାଅ ଏଥର ।
ବଶିଷ୍ଠ ବୋଇଲେ ଏ କଥା ନୋହେ ଭଲ
ଲକ୍ଷେ ରାଜା ଅଇଲେ ହୋଇବ ଗହଳ ।
ଦ୍ୱିଜବର ଋଷି ଯେ ଆସିବେ ବହୁତ
ହସ୍ତୀ ଘୋଡ଼ା ଅମାନତ୍ୟ ରାଜାର ସଙ୍ଗତ ।
ପାତ୍ରମନ୍ତ୍ରୀ ପଦାତି ଅନେକ ବଳ ଆସି
ଏମାନଙ୍କ ପାଇଁ କହେ ଯେ ବିଶେଷି ।
ଶୁଣି ଭରତ ବୀରକୁ ବଶିଷ୍ଠ ପଚାରିଲେ
ଏଥିର ଚରିତ୍ର କହ ମୁନି ଭଲେ ।
ବଶିଷ୍ଠ ବୋଇଲେ ତୁମ୍ଭେ ମୋର ବୋଲକର
ରାଜାଙ୍କ ପାଇଁ ନବର ଭିନ୍ନ ଭିନ୍ନ କର ।
ପାତ୍ରଙ୍କୁ ଉଆସ ସେ ଅମାନତ୍ୟଙ୍କୁ ଘର
ପଦାତି ସୈନ୍ୟବଳ ପାଇଁ ଠାବ ଯତ୍ନ କର ।
ଶୁଣିଣ ଭରତ ଯେ ମନେ ସନ୍ତୋଷ ହେଲା
ବିଧାତା ପୁରୁଷଙ୍କୁ ସ୍ମରଣା କଲା ।
ତେଣୁ ସେ ବିଧାତା ଯେ ସ୍ୱର୍ଗପୁର ଗଲା
ଦେବଙ୍କୁ ଘେନିଣ ସେଥିରେ ବିଚାରିଲା ।
ବୋଇଲେ ନବମାସେ ଅସୁର ବଳ ମାରି
ଦଶମାସେ ଶ୍ରୀରାମ ଅଯୋଧ୍ୟାପୁରେ ମିଳି ।
ସେଥିପାଇଁ କି ଭରତ ନବର କଲା ସଜ
ଲକ୍ଷେ ରାଜା ବରଣ କରିବାକୁ ସଜ ।
ବଶିଷ୍ଠଙ୍କୁ ପଚାରିବାରୁ ସେ ଋଷି କହିଲେ
ରାଜାମାନଙ୍କ ପାଇଁ ପୁର ଭିଆଅ ଭଲେ ।
ଋଷିଙ୍କଠାରୁ ଶୁଣି ଭରତ ମୋତେ ଚିନ୍ତି
ସେ କଥାରେ ଆମ୍ଭର କରିବା କି ତୃପତି ।
ଏମନ୍ତ କହିଣ ଡାକିଲେ ବିଶ୍ୱକର୍ମା
ଜମ୍ବୁଦ୍ୱୀପକୁ ବେଗେ ଚଳିଯିବ କିନା ।
ନବକୋଟି ବିନ୍ଧାଣୀ ସଙ୍ଗତେ ଘେନିଯିବ
ଅଯୋଧ୍ୟା ଲେଖାଏଁ ପୁରି ନିର୍ଭା ଯେ କରିବ ।
ନବକୋଟି ପୁର ଯେ କରିବ ନିର୍ମାଣ
ଲକ୍ଷେ ଷାଠିଏ ନବର ରଜାଙ୍କର ପୁଣ ।
ପାତ୍ରମାନଙ୍କ ଉଆସ କର ଜାଣି
ସୈନ୍ୟବଳ ରହି ଯେମନ୍ତେ ପୁଣି ।
ନିର୍ମଳ ଶିରୀ ଚଉପାଶେ ଲତା ବୃକ୍ଷମାନ
ନିର୍ମଳ କରିବ ରକ୍ଷୀ ରହିବେ ସେହି ସ୍ଥାନ ।
ଶୁଣିଣ ବିଶ୍ୱକର୍ମା ବେଗେ ଚଳିଗଲେ
ଲକ୍ଷେ ଷାଠିଏ ନବର ସ୍ୱର୍ଣ୍ଣେ ନିର୍ଭା କଲେ ।
କୋଟିଏ ଉଆସ ନିର୍ଭା କଲା ତହିଁ
ନବ କୋଟି ଘର ଯେ ଉଜ୍ଜ୍ୱଳ ବର୍ଣ୍ଣ ହୋଇ ।
ନୀଳଗିରି ଚଉପାଶେ ନିର୍ମଳ ପୁଣି କଲା
ମୁକ୍ତ ବେଦୀ କରିଣ କର୍ପୁର ଧୂପ ଦେଲା ।
ଚାରିପାଶେ ଚାରିଯୁଣ ନିର୍ମଳ କରି ପୁଣ
ଋଷିମାନେ ରହିବାକୁ କଲେ ଯେ ଯତନ ।
ଅଯୋଧ୍ୟା ନବରରେ ପଶିଲା ଯାଇ କରି
ବେନିଗୋଟି ନବର ରତ୍ନରେ ତିଆରି କରି ।
ପୁଷ୍କରିଣୀ ଅଟ୍ଟାଳି କୂପ ଯେ ବାମ୍ପୀ କଲା
ନନ୍ଦିଗ୍ରାମ ଯେ ଯାଇ ସେଠାରୁ ମିଳିଲା ।
ସୁବର୍ଣ୍ଣମୟ ନବରେ ସେଠାରୁ ବେନିଗୋଟି
ନିର୍ଭାକରି ବିଶ୍ୱକର୍ମା ଅଇଲେ ଲେଉଟି ।
ରଜନୀ ପାହିଲା ଦେଖିଲା ଭରତବୀର
ଚଉଦଯୁଣ ପର୍ଯ୍ୟନ୍ତ ହୋଇଛି ନବର ।
ଅଯୋଧ୍ୟାକୁ ଲାଗିଣ ନନ୍ଦିଗ୍ରାମ ଯାଏ
ସମସ୍ତ ରତ୍ନପୁର ସ୍ୱର୍ଗକୁ ସମ ହୋଏ ।
ଚାରିଭାଇଙ୍କ ପାଇଁ ଚାରି ଯେ ନବର
ସମାନ ନୋହିବ ତାକୁ ବାରସ୍ୱତୀ ପୁର ।
ରତ୍ନ ସିଂହାସନ ସବୁ ଦୂରେ ସୁବର୍ଣ୍ଣ ଚଉରା
ଉପରେ କଳସମାନ ଦିଶନ୍ତି ତୋରା ।
ଧ୍ୱଜ ଆମ୍ବ ଯେ ମାତଙ୍ଗ ଦିବ୍ୟଚିହ୍ନ
ଦେଖିଣ ଭରତ ବୀର ବିଚାର କଲା ମନ ।
ଶ୍ରୀରାମ ନାରାୟଣ ଅଟନ୍ତି ନିଶ୍ଚେ ପୁଣି
ନୋହିଲେ କି ଦେବତାଏ କୃତ୍ୟ କଲେଯାଣି ।
ଏମନ୍ତ ବିଚାରି ଯେ ବଶିଷ୍ଠ ଅଣାଇଲା
ପାତ୍ରମନ୍ତ୍ରୀ ସାମନ୍ତ ଡକାଇ ଆଣିଲା ।
ବୋଇଲା ଏବେ ପୁର ହୋଇଲା ଯତନ
ଏତେ ବୋଲି ବଶିଷ୍ଠଙ୍କୁ ହୋଇଲା ଯତନ ।
ନବର ଦେଖିବାକୁ ବାହାର ହୋଇଲା
ଭରତ ବଶିଷ୍ଠଙ୍କୁ ନମସ୍କାର କଲା ।
ବୋଇଲା ଯେଉଁରୂପେ ରାଜାଙ୍କ ଆର୍ଦ୍ଧୋଳି
ଏ କଥା ଲାଗି ହୋଇ କିବା ଗାଳି ।
ଶୁଣିଣ ବଶିଷ୍ଠଙ୍କୁ ଭରତ ଯେ ଆଜ୍ଞା ଦେଲେ
ଅନ୍ୟାୟ ଦିନ ଆଜି ନ ଦେଖି ବୋଇଲେ ।
କାଲିର ପ୍ରଭାତେ ନଗର ଦେଖିବା
ରାଜାମାନଙ୍କୁ ବରଣୀ ଅନୁକୂଳେ ଆଣିବା ।
ଏଥୁ ଅନନ୍ତରେ ସେଦିନ ବହିଗଲା
ରଜନୀରେ ବଶିଷ୍ଠ ସୁରଭୀ ଅଇଲା ।
ବଶିଷ୍ଠ ବୋଇଲେ ସୁରଭୀ ଏବେ ଶୁଣ
ଶ୍ରୀରାମ ଅଟନ୍ତି ପରମ ବ୍ରହ୍ମ ଜାଣ ।
ଦେବତାଏ ବିଚାରି ମନ୍ଦିର ତୋଳି ଗଲେ
ଲକ୍ଷେ ରାଜା ଅଇଲେ ଶ୍ରୀରାମ ଅଭିଷେକ ତୁଲେ
ତୁ ଏବେ ଯାଇଣ ସକଳ ପୁରେ ପଶ
ଯାହାକୁ ଯେଉଁରୂପେ ସେଥିରେ ଦ୍ରବ୍ୟ ସଞ୍ଚ ।
ଶୁଣିଣ ସୁରଭୀ ଯେ ବେଗେ ବିଜେ କଲା
ସକଳ ପୁର ବୁଲି ଦ୍ରବ୍ୟ ସମ୍ପାଦିଲା ।

ନିର୍ମଳ ଗିରି ତଳେ ହୋଇଲେ ପ୍ରବେଶ
ଚନ୍ଦନ ଅଗୁରୁ ଫଳ ମୁନି ଖାଇଣ ବିଶେଷ ।
ଘୃତଭାଣ୍ଡମାନଙ୍କୁ ବୃକ୍ଷତଳେ ରଖି
ଚାରି ନବରେ ମିଳିଲେ ହୋଇ ସୁଖୀ ।
ସ୍ୱର୍ଗର ସମ୍ପଦ ଚାରି ନବରେ ଠୁଳ ହେଲା
ବଶିଷ୍ଠ ନବରେ ଯାଇଣ ସେ ମିଳିଲା ।
ଏଥୁ ଅନନ୍ତରେ ରଜନୀ ଶେଷ ହେଲା
ପାତ୍ରମନ୍ତ୍ରୀ ବଶିଷ୍ଠ ମିଳିଲେ ହୋଇ ତୋରା ।
ଶତ୍ରୁଘନ ଭ୍ରତ ସଙ୍ଗରେ ଘେନି ପୁଣ
ନବର ଉଆସ ଯେ ଦେଖିଲେ ଜାଣ ପୁଣ ।
ନାନା ବର୍ଣ୍ଣ ଦ୍ରବ୍ୟ ପୁଣି ସେଥି ସଞ୍ଚା ପୁଣ
ଯେଉଁସ୍ଥାନେ ଯେ ରହିବ ସକଳ ଭାଗ୍ୟ ପୁଣ ।
ଦେଖିଣ ନିର୍ମଳ ଗିରି ତଳକୁ ଗଲେ
ଲତା ବୃକ୍ଷମାନ ଦେଖି ନିର୍ମଳ ସେଥି ଭଲେ ।
ପଦାତି ବଳ ଜଗାଇ ଅଇଲା ସେଥିରେ
ବୋଇଲା ସର୍ବେ ଥିବ ଯତନ ପ୍ରକାରେ ।
ଅମାନତ୍ୟଗଣ ନବର ଜଗେ ପୁଣ
ଅଯୋଧ୍ୟାରେ ଚାରି ନବର ତୁମ୍ଭେ ଜାଣ ।
ସେ ନବରରେ ପଶିଣ ଦେଖିଲେ ଭ୍ରତ ସଭା
ଜନନୀମାନଙ୍କୁ ଚାରି ଭାଗରେ କଲେ ପ୍ରଭା ।
ନିଜ ନବରେ କୌଶଲ୍ୟା ଦ୍ୱିତୀୟେ ସୁମିତ୍ରା
ଅଯୋଧ୍ୟା ନବରେ ରହିଲେ ଅନ୍ୟ ମାତା ।
ଅଧେକ ଜନନୀ ଯେ ନନ୍ଦିଗ୍ରାମେ ରହି
କୟ କୟା ଭରତ ଯେ ନବରେ ରହଇ ।
ଶତ୍ରୁଘନ ନବରେ ରହିଲେ ଲୀଳାବତୀ
ଚାରି ନବରେ ଚାରିମାତା ବାଛିଣ ରହିଲେଟି ।
ଶୁଣିଣ ଲକ୍ଷେ ନୃପ ଥଣାଏ ଭ୍ରତ ବୀର
ଲକ୍ଷେ ରାଜାଙ୍କୁ ତୁମ୍ଭେ ଯିବରେ ସତ୍ୱର ।
ରାମ ଅଭିଷେକେ ରାଜାଙ୍କୁ ବରିଆଣ
ଫୁଲମାଳ ଗୁଆ ପାନ ଚନ୍ଦନ ନେଇଣ ।
ଯେତେକ ରାଜା ଅଛନ୍ତି ଜମ୍ବୁଦ୍ୱୀପରେ
ସମସ୍ତଙ୍କୁ ବରିବରେ କହିଲି ସତ୍ୱରେ ।
ଶୁଣିଣ ଦୂତମାନେ ଭ୍ରତ ଆଗେ କହି
ପାତ୍ର ସାମନ୍ତ ଗଲେ ରାଜା ବରଣ ପାଇଁ ।
ଶୁଣିଣ ଭ୍ରତବୀର ଆନନ୍ଦ ହୋଇଲେ
ସାମନ୍ତ ପୁତ୍ରଙ୍କୁ ଯାଅ ବୋଲିଣ ବୋଇଲେ ।
ରାଜପୁତ୍ର ନ ଗଲେ ରାଜା ନୁହନ୍ତି ବରଣ
ରାଜାମାନେ ନିନ୍ଦା କରିବେ ତୋତେ ପୁଣ ।
ଶୁଣିଣ ଭ୍ରତବୀର ହରଷ ମନ ହେଲେ
ଶତ୍ରୁଘ୍ନ ବୋଇଲେ ଯାଅ ତୁ ସଙ୍ଗମେଳେ ।
ଅମାନତ୍ୟଗଣ ଯେ ସଙ୍ଗରେ ରଥିଗଲେ
ଧନରତ୍ନ ଭରତ ସଙ୍ଗରେ ବହୁତ ନେଲେ ।

ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ଅଯୋଧ୍ୟାର କଥା ଯେ ଶୁଣିଲ ହେତୁ କରି ।
ସାମନ୍ତ ପାତ୍ର ମନ୍ତ୍ରୀ ଅମାନତ୍ୟ ଗଣ
ସଙ୍ଗତରେ ଘେନି ସଘନେ ଚଳିଲାକ ପୁଣ ।
ସେ ଯିବାରୁ ଭ୍ରତ ମନରେ ବିଚାରିଣ
ଋଷିଙ୍କୁ ବରିବାକୁ କେହୁ ଯେ ଯିବ ପୁଣ ।
ବଶିଷ୍ଠ ଋଷିଙ୍କୁ ଭ୍ରତ କହିଲେ ବଚନ
ମୁନିଗଣମାନଙ୍କୁ ତୁମ୍ଭେ କରହେ ବରଣ ।
ଦେବଋଷି ନାଗଋଷି ବାମଦେବ ବରି
ବେନିମାସେ ଘେନି ଆସିବ ଏ ପୁରି ।
ସୁମନ୍ତ୍ର ମନ୍ତ୍ରୀଙ୍କୁ ବୋଇଲେ ବେଗ ହୋଇଚଳ
ଯେତେକ ବିପ୍ର ଛନ୍ତି ଏ ମହୀମଣ୍ଡଳ ।
ସେମାନଙ୍କୁ ମାସକେ ଆଣ ଯାଇ ପୁଣ
ଶୁଣିଣ ସୁମନ୍ତ୍ର ମନ୍ତ୍ରୀ ଚଳିଗଲା ପୁଣ ।
ବାମଦେବ କଶ୍ୟପ ସେଠାରୁ ଚଳିଗଲେ
ଈଶ୍ୱର କହିବାରୁ ପାର୍ବତୀ ତୋଷ ହେଲେ ।
ପାର୍ବତୀ ବୋଇଲେ ଦେବ ଶୁଣ ମୋ ବଚନ
ଅଯୋଧ୍ୟାରେ ଦେବତା ନାହାନ୍ତି କି ପୁଣ ।
ଦେବୀମାନେ ନାହାନ୍ତି କି ଅଯୋଧ୍ୟା ନଗରେ
ଅପାତ୍ରଙ୍କ ନାମ କି ଅଯୋଧ୍ୟାପୁରେ ।
ଈଶ୍ୱର ବୋଇଲେ ନଷ୍ଟ ପ୍ରତିମା ହୋଇଛି
ମହେଶ୍ୱର ଲିଙ୍ଗ ଯେ ସେ ପୁରେ ଘୋଟିଅଛି ।
ଚଉଷଠି ଦାଣ୍ଡରେ ଚଉଷଠି ଦେବୀ
କନ୍ଦି ବିକନ୍ଦିରେ ଅଛନ୍ତି ଗ୍ରାମଦେବୀ ।
ସେ ରାଜାର ଇଷ୍ଟ ଯେ ବିରଞ୍ଚି ନାରାୟଣ
ସେ ପ୍ରଭୁଙ୍କୁ ଘେନି ପୂଜା କରନ୍ତି ରାଜା ପୁଣ ।
ଏକାଦଶ ରୁଦ୍ର ହେ କରୁଣାକର ଲିଙ୍ଗ
ଗଙ୍ଗାକୁ ସୁମରି ବହି ଯେ ଆଲିଙ୍ଗ ।
ଅଯୋଧ୍ୟାରେ ସେ ଦେବ ଯେ ହୁଅଇ ପ୍ରସିଦ୍ଧି
ଆଉ ଲିଙ୍ଗମାନେ ଯେ ହୁଅନ୍ତି ସର୍ବସିଦ୍ଧି ।
ତାହାର ସଙ୍ଗେ ମେଳ ସକଳ ଦେବୀ ଦୁର୍ଗା
ପାର୍ବତୀ ବୋଇଲେ ଏମାନଙ୍କୁ କିମ୍ପା ।
ମାଜଣା ନ କରଇ ଦଶରଥ ସୁତ
ବୁଝାଇ କହ ହେ ପଞ୍ଚମାଥ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ସେ କଥା ତୋର ଆଗେ କହିବ ଶୁଣ ତୁଟି ।
ରାଜାଗଣ ବିପ୍ରଗଣ ଋଷିଗଣ ପୁଣି
ଏମାନଙ୍କୁ ଆଣିବାକୁ ପେଶିଲା ଭ୍ରତମଣି ।
ପୁଣି ସେ ମନ୍ତ୍ରୀ ଯେ ପୁତ୍ରକୁ ଆଣିଲା
ଦେବାଦେବୀଙ୍କି ଭୋଗ ଦିଅରେ ବୋଇଲା ।
ଦେବତାମାନେ ସର୍ବ ଭୋଗରାଗରେ ରତ
ଦେବୀମାନଙ୍କୁ ତୃପତି କରାଅ ତୁରିତ ।

ଈଶ୍ୱର ଲିଙ୍ଗମାନଙ୍କୁ କୋମଳ କହିବ
ଧେନୁ କ୍ଷୀର ଦେଇଣ ଭୋଗରାଗ କରିବ ।
ସ୍ତିରୀମାନେ ସମସ୍ତ ସ୍ୱଭାବ ଶୁଚିବନ୍ତ
ପ୍ରସନ୍ନରେ ଥିବେ ସେ ନୋହିବେ ରେ ପକ୍ଷ ।
ପୁରୁଷମାନେ ସ୍ୱଭାବେ ଯାହା ଅନୁରୂପେ
ହଟାରୀ ବଜାରୀ ଯେ ହରଷରେ ଥିବେ ।
ଯେ ଯାହା ଲୋଡ଼ିବେ ନାହିଁ ନ କରିବେ
ଏମନ୍ତ କହିଣ ଭୂତମନ୍ତ୍ରୀ ପୁତ୍ରକୁ ଶାଢ଼ୀଦେବେ ।
ଯାହା ତୁ ପଚାରିଲୁ କହିଲୁ ତୋର ଆଗେ
ଶୁଣିଣ ଦୃପତି ଯେ ସଙ୍ଗାତ ହେଲୁ ଏବେ ।
ପାର୍ବତୀ ବୋଇଲେ ଶୁଣହେ ମହେଶ୍ୱର
ଲକ୍ଷେ ପଦ୍ମ ସମ୍ପୂର୍ଣ୍ଣ ହୋଇଲା ଯେ ମୋର ।
ବାଳୀର କୁମର ଯେ ଅଙ୍ଗଦ ନାମେ ବୀର
ଋକ୍ଷ ଭାଲୁ ଆଣିବାକୁ ଚଳିଲା କୁମର ।
ନେପାଳ ଦେଶରେ ଯାଇ ପ୍ରବେଶ ହୋଇଲା
ଅମାନତ୍ୟ ଗଣ ଯେ ସଙ୍ଗରେ ଛନ୍ତି ତାର ଭଲା ।
ସେ ଦେଶରେ କୋମଦ ନାମରେ ଅଟେ ରାଜା
ଅଙ୍ଗଦ ବୋଲେ ସୈନ୍ୟ ସଜକରି ଯାଯା ।
ରାଜାର ଆଜ୍ଞାରେ ତୁ ଯିବୁ ବେଗେ ହୋଇ
ତୋର ଯେବେ ବାନର ସଙ୍ଗରେ ଅଛଇ ।
ସେଠାରୁ ଅଙ୍ଗଦ ଯେ ପଶ୍ଚିମଦିଗେ ଗଲା
କୋମଦ କପି ଶୁଣିଣ ସନ୍ତୋଷ ହୋଇଲା ।
ବନର କନ୍ଦର ଦେଶ ଲୋଡ଼ିଣ ସେ ବାନର
କିଷ୍କିନ୍ଧ୍ୟା ନଗ୍ରକୁ ଚଳିଲା ସତ୍ୱର ।
ଅଯୋଧା ନଗ୍ରବାଟେ କଲାକ ଗମନ
ଦେଖିଲେ ସେ ପୁର ସ୍ୱର୍ଗକୁ ଜିଣେ ପୁଣ ।
ଶୁଣିଲୁଟିକି ମୋତେ ପଚାରିଲୁ ଯେତେ
ସନ୍ତୋଷ ହୋଇଲାଟିକି ଶୁଣି ତୋର ଚିତ୍ତେ ।
ପାର୍ବତୀ ବୋଇଲା ଅଙ୍ଗଦ ପଶ୍ଚିମ ଦିଗେ ଗଲା
କେଉଁ ଦିଗରେ ବାନର ସେ ବରଣ କଲା ।
ଈଶ୍ୱର ବୋଇଲେ ଶୁଣଗୋ ଭଗବତୀ
ଜେନାମଣି ପାଟଣାରେ ଅଙ୍ଗଦ ମିଳିଲାଟି ।
କନକମୟ ବାନର ସେ ଦେଶର ରାୟ
ବାଳୀର କୁମରକୁ ଓଳଗି ଆସି ରାୟ ।
ଅଙ୍ଗଦ ବୋଇଲେ ତୁରେ କିଷ୍କିନ୍ଧ୍ୟା ଏବେ ଯିବୁ
ବିଳମ୍ବ କଲେ ତୁମର ତୁରେ ଜୀବନ ନ ପାଇବୁ ।
ଶୁଣିଣ ବାନର ଯେ ବେଗେ ସଜ ହେଲା
ସୈନ୍ୟବଳ ସଜକରି ଚଳିଣ ଅଇଲା ।
ସେଠାରୁ ଅଙ୍ଗଦ ଯେ ପୂର୍ବଦିଗେ ଗଲା
ଡଙ୍କାରୀ ଦେଶେ ଯାଇ ପ୍ରବେଶ ହୋଇଲା ।
ସେ ଦେଶର ବାନର ଅଟେ ରଙ୍ଗନାମେ ହୋଇ
ସୂନ୍ଦରମୁଖା କପି ତାହାକୁ ଅଟେ ତହିଁ ।

ଅଙ୍ଗଦକୁ ଦେଖିଣ ଯେ ନମସ୍କାର କଲା
କେଣେ ଅଇଲୁ ବୋଲି ତାହାଙ୍କୁ ପଚାରିଲା ।
ଅଙ୍ଗଦ ବୋଇଲେ ରାଜା ଲୋଡ଼ିଲେ ବାନର
ଲଙ୍କାରେ ରାବଣ ସଙ୍ଗେ କରିବେ ରଣଗୋଳ ।
ଶୁଣିଣ ବାନରେଶ୍ୱର ବେଗେ ସଜ ହେଲା
ବେଶ ବନ କନ୍ଦର ଲୋଡ଼ିଣ ଅଇଲା ।
ରଂଗମୁଖା ବାନର ସଙ୍ଗତରେ ଘେନି
କିଷ୍କିନ୍ଧ୍ୟା ନଗ୍ରକୁ ଚଳିଲା କପିମଣି ।
ସେଠାରୁ ଅଙ୍ଗଦ ଯେ ଦକ୍ଷିଣ ଦିଗେ ଗଲା
କର୍ଣ୍ଣାଟ ଦେଶରେ ସେହୁ ପ୍ରବେଶ ହୋଇଲା ।
କର୍ଣ୍ଣାଟ ଦେଶର ମର୍କଟ ରାଜା ଜାଣ
କପି ବୋଲି ବୋଲିଣ ନାମ ଅଟେ ପୁଣ ।
ଶୁଣିଣ ବାଟକୁ ପାଛୋଟି ବେଗେ ଗଲା
ଅଙ୍ଗଦକୁ ଦେଖିଣ ଓଳଗି ସେ ହୋଇଲା ।
ଅଙ୍ଗଦ ବୋଇଲା ଶୁଣରେ ଋକ୍ଷ ରାଜା
କିଷ୍କିନ୍ଧ୍ୟା ନଗ୍ରକୁ ଚଳ ତୁ ବେଗେ ରଜା ।
କଳାମୁଖା ବାନର ଯେତେକ ତୋହର
ଗୋଟିଏ ନ ଛାଡ଼ି ସଭିଙ୍କୁ ଘେନି ଚଳ ।
ବାନର ବୋଇଲା ତୁମ୍ଭର ଦୂତ ଆସିଅଛି
ମୋତେ କହିବାରୁ ମୁଁ ସବୁଙ୍କୁ ଲୋଡ଼ିଅଛି ।
ସୈନ୍ୟଠୁଳ ହେଲେ ମୁଁ ଯିବଇଁ ରାଜା ନଗ୍ର
ଶୁଣିଣ ଅଙ୍ଗଦ ଯେ ହୋଇଲା ଅତିବେଗ୍ର ।
ସେଦିନ ସେଠାରେ ରହିଣ ଚଳିଗଲା
ମଛରୀ ଦେଶରେ ଯାଇଣ ରହିଲା ।
ଏଥୁଅନନ୍ତରେ ଶୁଣ ଗୋ ପାର୍ବତୀ
ଲକ୍ଷେ କପିରାଜା ପୁରେ କପିଦୂତ ଯାନ୍ତି ।
ବାନର ଭାଲୁ ସୈନ୍ୟମାନଙ୍କୁ ଜଣାଇଲେ
ସୈନ୍ୟମାନ ସଜକରି ରାଜାମାନେ ବାହାରିଲେ ।
ପାଞ୍ଚସାତ ମାହୁନ୍ତ ଜାଣି ସେ ଆସେ ପୁଣ
ରାଜାମାନେ ତାଙ୍କ ସଙ୍ଗେ ଅଇଲେ ଏବେ ପୁଣ ।
ସୈନ୍ୟଙ୍କ ସଙ୍ଗରେ ମଲ୍ଲ ଯେ ମହାବୀର
ପଛରେ ଘେରି ସଙ୍ଗେ ଅଇଲେ ସର୍ଦ୍ଦାର ।
ଜମ୍ବୁଦ୍ୱୀପ ଛାଇ ଯେ ମର୍କଟ ଭାଲ ଦିଶେ
ଯେସନେ ସାଗର କୂଳ ଲଙ୍ଘିଣ ଆସେ ।
କେ ବୋଲଇ ଚାଲ କେ ବୋଲଇ ଆସ
ଅଙ୍ଗଦ ପାଖରେ ଲକ୍ଷେ ଦୂତ ଯେ ପ୍ରବେଶ ।
ଦୂତମାନେ ଆସିବାର ରାଜାମାନେ ଭେଟି
ପାଞ୍ଚଶ ମଉଡ଼ମଣି ଅଙ୍ଗଦ ପାଦେ ଲୋଟି ।
ଯୁଥପତି ମାନଙ୍କୁ ଦେଖିଣ ଅଙ୍ଗଦ
ବାନରସେନା ବନେ ରହିଲେ ହୋଇ ରୁଣ୍ଡ ।
ପାର୍ବତୀ ବୋଇଲେ ଏକାଦାଶରୁଦ୍ର ଶୁଣ
ଶ୍ରୀରାମର ବୋଲେ ଯେ ଗଲେ ଲକ୍ଷ୍ମଣ ।

ଶ୍ରୀରାମଚନ୍ଦ୍ର ଯେ ଏକାକୀ ରହିଲେ
ମାଲ୍ୟବନ୍ତ ଉପରେ କିସ କଲେ ।
କେତେବେଳେ ଲକ୍ଷ୍ମଣ କିଷ୍କିନ୍ଧ୍ୟାରୁ ଫେରି
ଏହା ମୋତେ ସଂକ୍ଷେପେ କହ ହେ ଶୂଳଧାରୀ ।
ଇଶ୍ୱର ବୋଇଲେ ରାମ ଆଜ୍ଞାରେ ଲକ୍ଷ୍ମଣ
କିସ୍କିନ୍ଧ୍ୟା ଆସିବାରୁ ବାହୁଡ଼େ ରାମ ପୁଣ ।
ପର୍ଣ୍ଣକୁଟୀ ଦ୍ୱାରେ ରାମ ଆସି ବସିଥିଲେ
ବିଚାରିଲେ ଭଲା ମୋତେ ଦଇବ ପାଞ୍ଚିଲେ ।
ଘରଣୀ ଲଙ୍କା ଗଲା ଭାଇ ଗଲା କିଷ୍କିନ୍ଧ୍ୟା
ମାଲ୍ୟବନ୍ତ ଗିରିରେ ଲାଗିଲା ମୋତେ ବଡ଼ଧନ୍ଦା ।
ବିଶାଦ ହୋଇଣ ରାମ ଭାଳନ୍ତି ମନେ ବସି
ଅଗସ୍ତି ମହାମୁନି ମିଳିଣ ଗଲେ ଆସି ।
ଦେଖିଣ ଶ୍ରୀରାମ ଉଠିଲେ ତଡ଼ତି
ନମସ୍କାର କରିଣ ଯେ ଉଭା ରଘୁପତି ।
ସୁକଲ୍ୟାଣ କରିଣ ଯେ ପୁଚ୍ଛନ୍ତି ରଘୁନାଥ
ଅତ୍ୟନ୍ତ ଦୁର୍ବଳ ତୁମେ ହୋଇଲ ସୀତାକାନ୍ତ ।
ସର୍ବାଙ୍ଗ କଳା ତ ଦିଶଇ ଅସୁନ୍ଦର
ଶୋଭା ପାଉନାହିଁ ଯେ ତୁମ୍ଭର ଧନୁଶର ।
ରକ୍ତମାଂସ କ୍ଷୀଣ ଦିଶୁଣ ଅଛି ଅସ୍ଥି
ଶ୍ରୀରାମ ବୋଇଲେ ତୁମ୍ଭେ ଶୁଣ ହେ ଅଗସ୍ତି ।
ତୁମ୍ଭର ହିତରୁ ଶରୀର କ୍ଷୀଣ ମୋର
ବୋଇଲ ପଞ୍ଚବଟୀ ବନରେ ଘର କର ।
ନିର୍ମଳ ଶଉଚ ଜଳ ଅଟଇ ଗୋଦାବରୀ
ସେ ନଦୀ ପାଶେ ରହିଲେ ସୁଖେ ଯେ ତୁମ୍ଭରି ।
ତୁମ୍ଭରି ବଚନେ ମୁଁ ସେ ବନେ ଘର କଲି
ଦେବତାଙ୍କ କୂଟ କଥା ଜାଣି ନ ପାରିଲି ।
ମୁହିଁ ରାଜକୁମାର ଯେ ରାଜ୍ୟରେ ନ ରହିଲି
ଦେଶ ଘୋଷ ଛାଡ଼ିଣ ଯେ ବନ ବାସ କଲି ।
ଦଶରଥ ପ୍ରାୟେ ପିତା ମୋହର ମରିଲା
ପ୍ରିୟବତୀ ଭାରିଯାକୁ ଅସୁର ହରି ନେଲା ।
କେବଣ ଯୋଗରେ ଯେ ଅଛଇ ଦେହ ଧରି
ଦେହ ଭାଗିବାର ଯେ ପଚାରୁ ତପଚାରୀ ।
ମୋହର ଉପର ବଂଶେ ସଗର ରାଜା ଥିଲା
ସପତ ସାଗର ବିଚାରି ଖୋଳାଇଲା ।
ଆପଣାର ନାମ ଯେ ସଗର ଦେଇଗଲା
ଯୁଗେ ଯୁଗେ କୀର୍ତ୍ତି ଯେ ତାହାର ରହିଲା ।
ତାର ଚାରି ପୁରୁଷେ ଯେ ଭଗିରଥ ଜାତ
ତାହାଙ୍କର ମହିମା ଯେ ତିନିପୁରେ ଖ୍ୟାତ ।
ବିଷ୍ଣୁଙ୍କର ଚରଣୁ ଆଣିଲା ସୁରାସୁରୀ
ତେଣୁ ସେ ସପତ ସାଗର ପୂରି ।
ସେ ବେଳେ ମୋର କୀର୍ତ୍ତି ମନରେ ଶୁଖାଇଲା
ବାପ ବୁଢ଼ି ମରିବାର କ୍ରୋଧ ଯେ ଯାତ ହେଲା ।
ମୋ ବଂଶ କୀର୍ତ୍ତିରେ ତୋର ଲାଗିଲା ହିଂସା
ଶୁଣିଣ ପ୍ରଜାଜନେ କରିବେ ଲୋକ ହସା ।
ଦିଲୀପ ରାଜା କଥା ଅଟଇ ବଡ଼ ପୁଣ
ଶିବି ରାଜା ଦାତାପଣରେ ଗାଢ଼ ଜାଣ ।
ହରିଚନ୍ଦନ ଯେ ଦୟାଳୁ ସେ ପୁରୁଷ
ମାନଧାତା ଅଟଇ ଯେ ଅଯୋନି ସମ୍ଭୂତ ।
ରଘୁରାଜା ଯାଗରେ ହୋଇଲା ନିର୍ମାଣ
ତାର ପୁତ୍ର ଅଜ ଯେ ସ୍ୱର୍ଗର ଇନ୍ଦ୍ର ପୁଣ ।
ପିତାର ବଚନେ ସ୍ୱର୍ଗକୁ ତେଜ୍ୟାକଲା
ବାସବ ଦେବତାଙ୍କୁ ସ୍ୱର୍ଗ ଯେ ଦାନ ଦେଲା ।
ପୁଣି ସେହି ଇନ୍ଦ୍ରରାଜା ରାଜାଙ୍କୁ କୃପାଞ୍ଚିଲା
ମୁନିଙ୍କି କହିଣ ମୃତ୍ୟୁ ଯେ ତାଙ୍କୁ ଦେଲା ।
ତାହାର ନନ୍ଦନ ଯେ ଦଶରଥ ପୁଣ
ପିତା ମରିବାରୁ ମୁନି ସଙ୍ଗରେ କଲା ରଣ ।
ମୁନିଙ୍କୁ ଜିଆଇଣ ପିତାଙ୍କୁ ଜିଆଇଲେ
ସୁର ରାଜା ମୁଖରେ କାଳୀ ଯେ ଲଗାଇଲେ ।
ଭାଗିରଥୀ ତୁମ୍ଭଙ୍କୁ ଯେ ବରିଲା କୁମ୍ଭବାଳ
ସପ୍ତସାଗର ସେ ଯେ କଲାକ ଜଳ ।
ମୋତେ ଏବେ କହିଣ ପଞ୍ଚବଟୀରେ ରଖି
ଅସୁର ହସ୍ତରେ ଦେଲୁ ଘରଣୀକି ପାଞ୍ଚି ।
ଜଣାଗଲା ତୁମ୍ଭେ ମୋର ଅଣହିତକାରୀ
ଜାଣିବା ଶତୃକୁ ଯେବେ ରଖିବ ବିଚାରି ।
ଦେବତା ନରରାଜା କାହାକୁ ନ ଡାକିବି
ବାନର ଭାଲୁ ବଳ ଘେନିଣ ମାରିବି ।
ଦାରା ବଇରୀ ଯେବେ ସପ୍ତପୁରେ ଲୁଚି
ଖୋଜିକରି ମାରିବି ନିୟମ କରିଅଛି ।
କେହୁ ତାର ପାଇଁ କରିବ ଲଢ଼ାଇ
ତା ସଙ୍ଗରେ ମାରିବି ନିଶ୍ଚେ ତାକୁ ଯାଇଁ ।
ଏମନ୍ତ ବଚନ ଯେ କହିଲେ ଶ୍ରୀରାମ
ଶୁଣିଣ ଅଗସ୍ତି ଯେ ବିଚାର କଲେ ମନ ।
ବୋଇଲେ ଅଜ୍ଞାନ ଯେ ଏହାଙ୍କ ଦେହେ ଅଛି
ନୋହିଲେ କିନ୍ତୁ ଭାଷା କହଇ ମୋତେ ବାଛି ।
ଅଗସ୍ତି ବୋଇଲେ ଶୁଣହେ ଦାଶରଥି
ସହସ୍ରେ ବର୍ଷ ପିତାର ଆୟୁଷ ଥିଲା ନିକି ।
ବିଚାରି ପିତାକୁ କିମ୍ପା ନ ଜୀଆଉ
ପୂର୍ବର କଥା ଯେବେ ଭେଦ ପାଉ ।
ବେନିଗୋଟି ଭାଇ ତୁମ୍ଭେ ଜାନକୀସଙ୍ଗେ ଥିଲ
ମୃଗମାଂସ ଲଭିବାକୁ ଗୋଡ଼ାଇ ପୁଣ ଗଲ ।
ଘରଣୀରେ ଲୋଭ ଯେବେ ଥାଆନ୍ତା ତୁମ୍ଭର
ରାବଣ ଛାର କି ନିଅନ୍ତା ଲଙ୍କାଗଡ଼ ।
ଶ୍ରୀରାମ କହିଲେ କହିବା ତୁମ୍ଭର ହେଲା
ପିତା ମରିବାବେଳେ ରାଜ୍ୟେ ମୁଁ ନାହିଁ ପରା ।

ଭରତ ଦାହକରି ମୋ ଆଗେ କହିଲା
ପିତାର ଅସ୍ଥି ଯେ ଅଗ୍ନିରେ ଭସ୍ମହେଲା ।
ଅସ୍ଥି ଭସ୍ମ ହେଲା ଜୀଆନ୍ତି କେମନ୍ତେ
ନୋହିଲେ କି ଶନିରାଜା ଥାଆନ୍ତେ ନିୟତେ ।
ସହସ୍ରେ ବର୍ଷକୁ ଚାରିସହସ୍ର ଆୟୁଷ ତ
ବଦଳେ ନେବି ମୁଁ ଯେ ଶୁଣହେ ନିଶ୍ଚୟ ତ ।
ଏଗାର ସହସ୍ରବର୍ଷ ଚାରିଭାଇ ଭୋଗ
ବିଧାତା ସଦାଶିବ ନ ପାଇବେ ଯୋଗ ।
ତୁମ୍ଭର ବୋଲ ପାଞ୍ଚ ନିଶ୍ଚିନ୍ତ
ନୋହିଲେ ଘରଣୀ ମୋର ଘେନିଯାନ୍ତା ଦୈତ୍ୟ
ମୋହର ଠାରୁ କର୍ମରେ ଦୁର୍ଯ୍ୟୋଗ ଘମିତ
ଏକ ଭାରିଯାକୁ ମୁଁ ଯେ ନ ପାରେ ରଖି ତ ।
ମୋହର ଠାରୁ ତହୁଁ କେହି ନାହିଁ ଦୁଃଖୀ
ତୁମ୍ଭଙ୍କୁ ମାନ କଲେଟି କର୍ମ କି ମୋର ସୁଖି ।
ଜନ୍ମ ହେବାର ମୋର ନୁହଇ ପୁଣି ସୁଖ
କର୍ମରେ ବିଧାତା ଲେଖିଅଛି ମନ୍ଦତ ।
ଏତେବୋଲି ଶ୍ରୀରାମ ଯେ କଲେକ ରୋଦନ
ନୟନରୁ ଅଶ୍ରୁଜଳ ବହେ ଘନଘନ ।
ଦେଖିଣ ଅଗସ୍ତି ଯେ ମନରେ ବିଚାରିଲେ
ଅଜ୍ଞାନଯୋଗରେ ବିଭୋଳିତ ଏହୁ ଭଲେ ।
ମୁନି ବୋଇଲେ ରାମ ହୋଇଲ କି ବାଇ
ସନ୍ଥଜନମାନଙ୍କର ଏମନ୍ତ ଗତି ନାହିଁ ।
ମାୟା ମୋହ ସଂସାର ଏ ଯେ ଅନିତ୍ୟ ସଂସାର
ଏ କଥାରେ ଶ୍ରୀରାମ ନୁହ ହେ ବିକଳ ।
ମୋହର ମାୟା ତୋତେ ନୁହଇ ଗୋଚର
ଖଳ ଦୁଷ୍ଟ ଲୋକଙ୍କର ପ୍ରକୃତି ଯେ ପ୍ରକାର ।
ରୋଦନ କଲେ କି ପାଇବ କାରଣ
ସବୁଦିନେ ପ୍ରାଣୀ ଯେ ନୁହନ୍ତି ତରୁଣ ।
ଯୁବତୀ ନବଯୌବନ କିଛିଦିନ ଥାଇ
ଅଳ୍ପ ସୟମରେ ସେ ରୀତି ଭାଗିଯାଇ ।
ଏମନ୍ତ ସ୍ୱଭାବରେ ସ୍ଥିତି ଯେ ସାଜିଲା
ଏତେ ମାୟା ରଖି ହୃଦେ ସନ୍ଦେଶ କରାଇଲା ।
ତୁମ୍ଭେ କିମ୍ପା ରଘୁନାଥ ହେଉଛ ନିଷେଧ
ପୁଣି ସକଳ ସମ୍ପତ୍ତି ହୋଇବ ପ୍ରାପତ ।
ରାଜ୍ୟରେ ରାଜା ହେବୁ ପାଇବୁ ସୀତୟା
ପିତାଙ୍କୁ କେବଳ ନ ଦେଖିବୁ ଛାୟା ।
ତିନିଥର ତୋତେ ଯେ ପିତା ଦେଖା ଦେବେ
ଚଉଷଠି ପୀଠେ ଦେଖିବୁ ତୁରେ ତେବେ ।
ତୁ ରାମ ପ୍ରତ୍ୟକ୍ଷେ ଅଟୁ ସେ ବାସୁଦେବ
ମନୁଷ୍ୟ ଜନ୍ମ ହେଲେ ଯେ ଦେବତାଙ୍କ ଭାବ ।
ଦେବତାଙ୍କୁ ଦୁଃଖ ଦେଲା ବିଶ୍ରବା ତନୟ
ସୁରଗଣ ହିତରେ ତୁହି ଜନ୍ମ ପୁଣ ।
ତୁମ୍ଭେ ଦୁଃଖ ନ ପାଇଲେ ଦୈତ୍ୟ ଯେ ନମରଇ
ଏତେ ବୋଲି ଅଗସ୍ତି ଋଷି ଶ୍ରୀରାମଙ୍କୁ କହଇ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ଯାମନିକ ତୀର୍ଥବାସୀ ଅଟନ୍ତି ବ୍ରହ୍ମଚାରୀ ।
ନୀଳଗିରି ପରବତ ଉତ୍ତର ପାର୍ଶ୍ୱରେ
ତପକରେ ବସି ଯେ ଋଷି ନିମଗ୍ନରେ ।
ଏସନଙ୍କ ସମୟରେ ପବନ ତାଙ୍କୁ କହି
ମାଲ୍ୟବନ୍ତ ପର୍ବତକୁ ଯାଅ ବେଗ ହୋଇ ।
ଘରଣୀ ହରାଇ ରାମ ଯେ ହୋଇଛି ବାତୁଳ
ତାଙ୍କ ପାଖରୁ ଲକ୍ଷ୍ମଣ ହେଲା ଯେ ଦୂର ।
ବାସୁଦେବ ଜନ୍ମ ପ୍ରତ୍ୟକ୍ଷ ଶ୍ରୀରାମ
ଅଜ୍ଞାନ ଘୋଟିବାରୁ ମତି ଯେ ଭ୍ରମ ପୁଣ ।
ଲକ୍ଷ୍ମଣ ଆସିବାଯାଏ ପ୍ରବୋଧ କର ଯାଇ
ଶୁଣିଣ ମାର୍କଣ୍ଡ ଋଷି ମିଳିଲେକ ତହିଁ ।
ମାଲ୍ୟବନ୍ତ ପର୍ବତେ ପ୍ରବେଶ ମାର୍କଣ୍ଡ
କନ୍ଧରେ ଧରି ଅଛନ୍ତି ବାଉଁଶର ଦଣ୍ଡ ।
ଏ ବାଏ ଭ୍ରମଣ ଯେ ଅଗ୍ନି ଋଷିର ଶିଷ୍ୟ
ସଙ୍ଗରେ ଗୋଡ଼ାଇ ଆସେ ସୁରଭୀର ଅଂଶ ।
କନା କଉପିନୀ ଯେ ରୁଦ୍ରାକ୍ଷର ମାଳା
ପିଙ୍ଗଳ ଜଟାଭାର ଅଟଇ ସେ ବୃଷାଳ ।
ଶରୀରେ ବିଭୂତି ଶୋହେ କୀଖେଣ ଆଧାରୀ
ଦେଖି ମୁନୀଙ୍କୁ ରାମ ନମସ୍କାର କରି ।
ମୁନିଙ୍କୁ ଶ୍ରୀରାମ ଯେ ଆସନ ଆଣିଦେଲେ
ମୃଗଛାଲ ଉପରେ ମୁନି ଯେ ବସିଲେ ।
କଣ୍ୱୁଋଷି ପଚାରିଲେ ଅଗସ୍ତିଙ୍କୁ ଚାହିଁ
ଏହିପରା ଶ୍ରୀରାମ ଯେ ଜାନକୀର ସାଇଁ ।
ଭାଇ ଯେ ସଙ୍ଗେ ନାହିଁ କେଉଁ କତି ଯାଇ
ଏହାଙ୍କ ଘରଣୀକୁ ରାବଣ ପରା ନେଇ ।
ରାଜା ଦଶରଥ ଯେ ପିତା ଯେ ଏହାଙ୍କର
ଅଯୋଧ୍ୟା କଟକରେ ଅଟେ ପରା ଘର ।
ଏ ରାମଙ୍କୁ ବିଶ୍ୱାମିତ୍ର ନେଇଥିଲେ ପରା
ଯାଗ ରଖି ଅହଲ୍ୟାକୁ ତାରିଲେ ଏ ପରା ।
ଶିବଧନୁ ଭାଙ୍ଗିଣ ଜାନକୀ ହେଲେ ବିଭା
ଲକ୍ଷେ ରାଜା ମଧ୍ୟରେ ପାଇଲେ ଏ ଶୋଭା ।
ପର୍ଶୁରାମକୁ ପରା ବଳରେ ଜିଣିଲେ
ପିତାର ସତ୍ୟପାଳି ଆସି ବନରେ ରହିଲେ ।
ଶୁଣିଣ ଅଗସ୍ତି ବୋଲନ୍ତି ବଚନ
ଏହି ଶ୍ରୀରାମ ଅଟେ ସ୍ୱୟଂ ନାରାୟଣ ।
ଦେବଙ୍କ ହେତୁରୁ ଅନେକ କଷ୍ଟ ପାଇ
ବିଧାତା ଲେଖିଲା କଥା ଆନ ଯେ ନୁହଇ ।
ଅସୁର ମାରିବାକୁ ଦେବ ହେଲେ ଜାତ
ଦେଖ ଏ ଅନର୍ଥ ଲାଗିଛି ବହୁତ ।

ଅଗସ୍ତିଙ୍କ ବଚନରେ ଭଣନ୍ତି ମାର୍କଣ୍ଡ
ଯେଉଁ କଥା କହିଲ ଅଟଇ କେଉଁ ଦାଣ୍ଡୀ ।
ଯେଉଁ ନାରାୟଣ ଗର୍ଭେ ସପତ ବ୍ରହ୍ମାଣ୍ଡ
ସେ ନାରାୟଣ କିମ୍ବା ଅବତାର ସେ ଭଣ୍ଡ ।
ଅଗସ୍ତି ବୋଇଲେ ଶୁଣ ହେ କଣ୍ଡୁଋଷି
ବେଦକୁ ପୁରାଣ କରିବେ ବୋଲି ସେଟି ।
ତେଣୁ ସେ ଜନମ ହୋଇ ଲୀଳା କଲେ
ଏ ଲୀଳାମାନ ପଢ଼ି ନରଙ୍କୁ ହେବ ଭଲେ ।
ଏ ରାମନାମ ଗୋଟି ଜପିବେ ନର
ପାତକ ହରଣ ହେବ ଅଙ୍ଗୁ ତାଙ୍କର ।
ଶୁଣିଣ ମାର୍କଣ୍ଡ କହନ୍ତି ବଚନ
ଏ ରାମ ଗର୍ଭେ ସପ୍ତ ବ୍ରହ୍ମାଣ୍ଡ ଅଛି ଜାଣ ।
ନୋହିଲେ କେଉଁଠାରେ ଥୋଇଲେ ନାରାୟଣ
ସେ କଥା ମୋର ଆଗେ କହ ହେ ତୁମ୍ଭେପୁଣ ।
ଅଗସ୍ତି ବୋଲଇ ଅଛଇ ସଙ୍କେତର
ଗୁପ୍ତ କରି ଅଛନ୍ତି ମାନବ ଅବତାର ।
ଦେଖିଲେ ପ୍ରତେ ଯିବ ରାମର ଗର୍ଭେ ଅଛି
ଶୁଣିଣ କଣ୍ଡୁଋଷି ମନରେ ବଡ଼ ଖୁସି ।
ରାଘବଙ୍କ ମୁଖ ଚାହିଁ କହନ୍ତି ଅଗସ୍ତି
ଏହିଟି ଶ୍ରୀରାମ ହୋ ମାରକଣ୍ଡ ଋଷି ।
ପ୍ରଳୟକାଳେ ଏ ଯେ ସୁମରେ ନାରାୟଣ
ଗର୍ଭରେ ସମ୍ଭାଳିଲେ କମଳା ରମଣ ।
ସେ ଗର୍ଭରେ ଏ ଋଷି ସପ୍ତପୁର ଦେଖି
ଚଉଦ ବ୍ରହ୍ମାଣ୍ଡ ଦେଖି ମନରେ ହୋଇ ଖୁସି ।
ତେଣୁ ସେ ପ୍ରଳୟ ତୁଟାଇ ନାରାୟଣ
ସପତ ପୁର ଶୂନ୍ୟ ଯେ ହୋଇଲା ପୁଣ ।
ତେଣୁ ସେ ନାଭି କମଳୁ ବ୍ରହ୍ମାଙ୍କୁ ଜାତ କଲା
ସପ୍ତ ବ୍ରହ୍ମା ରଚିଲେ ସପତ ପୁର ହେଲା ।
ସେତେବେଳୁ ଏ ଋଷି ଗର୍ଭ ଭିତରୁ ଆସିଲେ
ସ୍ୱର୍ଗର ସୁରରାଜା ନଭ ଯେ ଯୁଗ ହେଲେ ।
ତ୍ରିଦଶ ଦେବତାଙ୍କୁ ତ୍ରିଜୀବୀ ସେ ପାଳିଲେ
ସେଠାରୁ ନାରାୟଣ ଅନ୍ୟ ଯେ ଇନ୍ଦ୍ର କଲେ ।
ସେ ଋଷିଙ୍କି ନେଇଣ ଯତନପୁର ଦେଲେ
ତେଣୁ ଏ ମାରକଣ୍ଡ ଦଣ୍ଡ ଯେ ନ ବହିଲେ ।
ଛପନକୋଟି ଜୀବଙ୍କୁ ଗତି ଯେ ମୁକ୍ତି ଦେଲେ
ନିର୍ଭୟେ ଜୀବ ଜନ୍ତୁ ଆନନ୍ଦ ରହିଲେ ।
ତେଣୁ ସେ ଦେବତାଏ କହିଲେ ନାରାୟଣ
ସୈନ୍ୟଙ୍କୁ ରାଜା କଲେ ଯାତନା ପୁରେ ଜାଣ ।
ପ୍ରବଳ ଶନି ହେଲା ଦେବତାଙ୍କୁ ନ ମାନିଲା
ପାର୍ବତୀ ନନ୍ଦନକୁ କଟାକ୍ଷ ଯାଇ କଲା ।
ତେଣୁ ସେ ଗଣପତି ହୋଇଲେ କ୍ରୋଧମନ
ଫାଶରେ ବାନ୍ଧି ଅଙ୍କୁଶରେ ମାଇଲେ ହୃଦପୁଣ ।

ଅଙ୍କୁଶ ମାରିବାରେ ଅଚେତନ ଶନି ହେଲା
ପ୍ରବଳ ପଣ ତାର ସେଠାରୁ ହଜିଗଲା ।
ଦେଖିଣ ପିତା ତାର ଦେବଙ୍କୁ ସଙ୍ଗେ ଘେନି
ପଞ୍ଚାନନ କୁମର ଚରଣେ ପ୍ରଣମି ।
ନ୍ୟୂନ ଦେଖିଣ ଗଣପତି ଯେ ପୁଣ
ବଞ୍ଚାଇ ସେ ଶନିକୁ କଲେ ବାହନ ।
ଯାତନା ପୁର ଗୋଟି ଶୂନ୍ୟ ଯେ ହୋଇଲା
ସକଳ ଦେବ ବସି ବିଚାର କଲେ ଭଲା ।
ଏଂ ଋଷିଙ୍କୁ ଆସିଣ କହିଲେ ସର୍ବଦେବ
ଯାତନା ପୁରକୁ ଚଳହେ ସର୍ବଦେବ ।
କେବେହେଁ ଏ ଋଷି ସେ କଥା ନ କରେ
ନାରାୟଣ ସୁମରଣା ବାଞ୍ଛିଣ ସେ ରହିଲେ ।
ତେଣୁ ସେ ଦେବତାଙ୍କୁ ରବିଜି କହିଲେ
ଦ୍ୱିତୀୟ ପୁତ୍ର ଜାତ କର ହେ ବୋଇଲେ ।
ତେଣୁ ସେ ଦିବା ରବି ଛାୟାର ଗର୍ଭେ ପୁଣ
ପୁତ୍ରେକ ଜାତ କଲେ ଅଗ୍ନିର ପ୍ରାକର୍ମ ।
ତେଣୁ ସେ କୁମର ହୋଇଲା ଜନ୍ତୁରାଜା
ଭଲମନ୍ଦ ଦୁଇକଥା ରାଜ୍ୟରେ ବୁଝା ।
ଶୁଣିଣ ଶ୍ରୀରାମ ଯେ ହରଷ ହୋଇଲେ
ନିଶ୍ଚଳ ଋଷି ଆଜି ଦେଖିଲି ବୋଇଲେ ।
ଶ୍ରୀରାମ ବୋଇଲେ ଶୁଣ ହେ ବ୍ରହ୍ମଚାରୀ
ମାର୍କଣ୍ଡଙ୍କ ଦର୍ଶନେ କଷ୍ଟ ଗଲା ମୋରି ।
କମଳଲୋଚନ ଯେବେ ଗର୍ଭରେ ରଖିଥିଲେ
ତାଙ୍କର ସୁଦୟା ଯେ ଏହାଙ୍କଠାରେ ଭଲେ ।
କେଉଁଠାରେ ଆଶ୍ରମ ଯେ ଏବେ ଏହାଙ୍କର
ସେ କଥା ମୋର ଆଗେ କହ ହେ ମୁନିବର ।
ଶ୍ରୀରାମ ବଚନ ଯେ କହନ୍ତି ଅଗସ୍ତି
ଶଙ୍ଖନାଭି ମଣ୍ଡଳେ ମହୋଦଧିରେ ସ୍ଥିତି ।
କଳ୍ପବଟରେ ଅଛି ସେହୁ ଯେ ସ୍ଥାନ ପୁଣି
ବଟଙ୍କ ଉତ୍ତରରେ ଏହାଙ୍କ ରହଣି ।
କଲୋକଲ୍ୟ ଋଷି ଏଯେ ଶ୍ରୀରାମଚନ୍ଦ୍ର ଜାଣ
ଦିଗାମ୍ବର ଦେଶ ଏ ଋଷିର ଅଟେ ଜାଣ ।
ଏ ଋଷିର ହୃଦେ ମାୟା ଯେ ନାହିଁ ପୁଣି
ଶୁଣିଣ ଶ୍ରୀରାମ ଦେହ ଉଶ୍ବାସ ଯେ ପୁଣି ।
ଧନ୍ୟ ମୋର ଜୀବନ ଦେଖିଲି ବେନି ମୁନି
ଏ ଜନ୍ମରେ ଦେଖାନାହିଁ ତୋତେ ଭୋ ମୁନି ।
ଏତେ କାଳ ଆସି କଲ୍ୟାଣ କଲୁ ତୁହି
ଅଗସ୍ତି ବୋଇଲେ ଶ୍ରୀରାମ ଶୁଣ ମୁଁ କହଇ ।
କଥାଏ କହିବି ମୁଁ ଯେ ହୋଇବୁ ପ୍ରସନ୍ନ
ଅଗ୍ନି ଋଷିର ଶିଷ୍ୟ ଯେ ମାରକଣ୍ଡ ଜାଣ ।
ନାରାୟଣ ବୋଲି ତୁମ୍ଭେ ନୋହିଲେ ତୋଷମନ
ମନରେ ବିଚାରିଲା ଏ ଯେବେ ନାରାୟଣ ।

ନ୍ୟୂନ ହୋଇଣ କିମ୍ବା ଆପଣାକୁ ଭାବି
ବଦନ ବିସ୍ତାରିଲେ ଗର୍ଭକୁ ମୁଁ ଚାହିଁବି ।
ତେବେ ମୁଁ ପୂର୍ବକଥା ମନରେ ହେତୁକରି
ଶୁଣିଣ ଶ୍ରୀରାମ ଯେ ମନରେ ହର୍ଷ ଭରି ।
ଅଳ୍ପ ହସିଣ ଯେ ବୋଇଲେ ଆସି ଦେଖ
ବେନିପାଟି ବିସ୍ତାର କଲେକ ଜଗମୟୁଖ ।
ଝଟିଣ କଣ୍ଡୁଋଷି ଚାହିଁଲେ ଗର୍ଭକୁ
ଦେଖିଲେ ମାର୍କଣ୍ଡ ଯେ ଗର୍ଭରେ ତାହାଙ୍କୁ ।
ଅଶେଷ ବ୍ରହ୍ମାଣ୍ଡ ପୂରିଛି ଗର୍ଭରେ
ଦେଖିଣ ବ୍ରହ୍ମଚାରୀ ଅଚେତ ବିସ୍ମୟରେ ।
ଶ୍ରୀରାମ ବଦନ ବୁଜିଲେ ବେଳଜାଣି
ଜୟ ଶ୍ରୀରାମ ଜୟ ଜୟ କମ୍ବୁପାଣି ।
ଚେତା ପାଇ ଋଷି ଆସନେ ଯାଇଣ ବସି
ମନରେ ବିଚାରିଲେ ଅଟନ୍ତି ବ୍ରହ୍ମରାଶି ।
ଅଗସ୍ତି ବୋଇଲେ ମୁନି ବିଚାରିଲ କି ଆନ
ଅଜ୍ଞାନ ଘୋଟିବାରୁ ବିଭୋଳିତ ଜାଣ ।
ମାର୍କଣ୍ଡ ବୋଇଲେ କେତେ ଯେ ଭୋଗହେଲା
ଅଜ୍ଞାତ କେତେକାଳ ପ୍ରମାଣ ଦେଇଥିଲା ।
ଅଗସ୍ତି ବୋଇଲେ ପର୍ବତା ସେ ନାରଦ
ଶାପ୍ୟ ଦେଲେ ରାଜା ସେ ଦେଖିଣ ସେବିଲା ବିଷ୍ଣୁପଦ ।
ଶ୍ରୀରାମ ବୋଇଲେ ଶୁଣ ହେ ତପୋବନ୍ତ
ଅତି ଦୁଃଖ ସହି ଭେଟିଲି ରବିସୁତ ।
ତାହାଙ୍କୁ ଦେଖିଣ ମୁଁ ମଇତ୍ର ଭାବ ହେଲି
ବାଳୀ ନୃପତିକୁ ମୁଁ ଯେ ନାରାଚେ ମାଇଲି ।
କିଷ୍କିନ୍ଧ୍ୟା ରାଜ୍ୟରେ ସୁଗ୍ରୀକି ରାଜା କଲେ
ସେ ବୋଇଲା ତୋହର ଘରଣୀ ମୋତେ ଲାଗିଲେ
ଚତୁର୍ମାସ୍ୟା ସରିଲେ ମାରିବି ରାବଣ
ତୋହର ଘରଣୀକୁ ଆଣିଦେବି ପୁଣ ।
ଏତେ ବୋଲି ସୁଗ୍ରୀବର ନିଜରାଜ୍ୟେ ରହି
ଚତୁର୍ମାସ୍ୟା ଶେଷ ହେଲା ନ ଆସିଲା ସେହି ।
ରାଜଭୋଗ ପାଇ ସେ ମୋତେ ପାଶୋରିଲା
ମୋହର କର୍ମକୁ ସେହି ଭୋଳହେଲା ।
ନ ଆସବା ଦେଖି ତାକୁ ପେଷିଲି ଲକ୍ଷ୍ମଣ
ଭୋମୁନି ସଉମିତ୍ରୀ ଯେ ଗଲାଣି ଏକଦିନ ।
କେତେଦିନେ ଜାନକୀ ପାଇବି ମୋହର
ଏ ଦେହ ଥିବାର ମୋର ଅଟେ ଅବେଭାର ।
ଏତେ ବୋଲି ଶ୍ରୀରାମ ଯେ ମନରେ କ୍ରୋଧ ହେଲନ୍ତି
ଅଗସ୍ତି ମାର୍କଣ୍ଡ ଯେ ତାହାକୁ ତିଆରନ୍ତି ।
ତୁ ରାମ ନିଶ୍ଚଳ ହୋଇଣ ଏବେ ରହ
ଆଠମାସରେ ତୋର ଫିଟିବ ସନ୍ଦେହ ।
ସାତମାସରେ ତୋର ପାଇବୁ ଘରଣୀ
ଦେବଙ୍କୁ ଉଦ୍ଧାରି ଅଯୋଧ୍ୟା ଯିବ ପୁଣି ।

ଏ ଆମ୍ଭର କଥା ଅଟଇ ସତ
ଏମନ୍ତ ବଚନ କହିଲେ ତପୋବନ୍ତ ।
ଶୁଣିଣ ଶ୍ରୀରାମ ଯେ ମୁନିଙ୍କି କହେ ବାଣୀ
ମୋହ ସମାନେ ଦୁଃଖୀ ସଂସାରେ ନାହିଁ ପୁଣି ।
ଅଗସ୍ତି ବୋଇଲେ ସେ ଯେ ତୋଠାରୁ ଦୁଃଖିତ
ସତ୍ୟଯୁଗର କଥା ଶୁଣହେ ସୀତାକାନ୍ତ ।
ବିରାଟ ବୋଲି ନୃପ ଅଟଇ ଏ ଦେଶର
ହେମବକ୍ର ରାଣୀ ଗର୍ଭୁ ଜାତ ଏକଇ କୁମର ।
ସେ କୁମର ନାମ ଯେ ଅଟଇ ବସନ୍ତ
ବସନ୍ତ ଯହୁଁ ଶରୀର ଅଟଇ ସେ ବିଦିତ ।
ସେ କୁମର ଶତେକ ଯାଗ ପୁଣି କଲା
ହସ୍ତୀ ଶୁଣ୍ଢ ପ୍ରକାର ଘୃତ ଯେ ବରଷିଲା ।
ଯେ ଯଜ୍ଞରୁ ଦୁହିତା ଗୋଟି ହେଲା ଜାତ
ସେ ଦୁହିତା ନାମ ଗୋଟି ନଳିନୀ ସୁପ୍ରୀତ ।
ସେ ଦୁହିତା ପ୍ରଦାନ କରିବାକୁ ମନ
ବେଣବର ପୁରକୁ କଲାକ ଗମନ ।
କୁଶପାଣିକି ଅନୁସରି ଯୁଗେ ସେ ରହିଲା
ପବନ ଆହାରରେ ସେଟି ଦିନ ନେଲା ।
ସେଠାରେ ରାଜାଙ୍କର ଓଙ୍କାର ହେଲା ସୈନ୍ୟ
ନୀଳ ବୃକ୍ଷ ହୋଇ ସେଠାରେ ହେଲା ଜନ୍ମ ।
କେତେକାଳେବେଦବର ତପ ଯେ ସିଦ୍ଧହେଲା
ଆସନ ଉପରେ ବେଦବ୍ରହ୍ମା ଯେ ଉଠିଲା ।
ସେତେବେଳେ ସାବିତ୍ରୀ ଜଣାଏ କୁଶଧାରୀ
ଯୁଗ ହରିରାଜା ତୋତେ ସେବିଛି ଆଶ୍ରେକରି ।
ଆହାର ଶୂନ୍ୟକରି ପବନେ ବଞ୍ଚୁଥିଲା
ଏବେ ଓଙ୍କାର ଶବଦ ତାହାର ହରଣ ହେଲା ।
ଶୁଣିଣ ବେଦବର ମନରେ ବିଚାରିଲା
ମୃତ ସଞ୍ଜିବନୀ ପାଣି ଉପରେ ସିଞ୍ଚିଲା ।
ତେଣୁ ସଚେତ ହୋଇଲା ସେ ରାଜନ
କରଯୋଡ଼ି ଆଗରେ ଉଭା ହୋଇଲା ପୁଣ ।
ବେଦବର ବୋଇଲେ ତୁ ଅଇଲୁ ଯହିଁପାଇଁ
ସେ କଥା ସିଦ୍ଧି ହେଲା ଯା ତୁ ପଳାଇ ।
ସୂର୍ଯ ବଂଶେ ଜାତ ଯେ ମାନଧାତା ରାଜା
ସ୍ତ୍ରୀ ଗର୍ଭେ ଜାତ ନୁହେଁ ପୁରୁଷ ତୁ ରାଜା ।
ସେ ରାଜାଙ୍କୁ ଯାଇଣ ଦୁହିତା ବିଭାକର
ଆଗରୁ ତା କର୍ମରେ ଲେଖା ଯେ ମୋହର ।
ଶୁଣିଣ ବସନ୍ତ ରାଜା ବେଗେ ଚଳିଗଲା
ଅଯୋଧ୍ୟା ନବରେ ଯାଇ ପ୍ରବେଶ ହୋଇଲା ।
ମାନଧାତା ରାଜାଙ୍କୁ ବରଣ ମାଳା ଦେଇ
ରଥରେ ବସାଇ ରାଜ୍ୟକୁ ନେଲା ସେହି ।
ବିବାହ ଉତ୍ସବ କଲାକ ବେଗ ପୁଣି
ନବଗ୍ରହ ଅଷ୍ଟବସୁ ମିଳିଲେ ସେଠି ଜାଣି ।

ଦେବକନ୍ୟା ବୋଲିଣ ସେଠାରେ ଦ୍ୱନ୍ଦ କଲେ
ଦେବତା ଆମ୍ଭେ ବିଭା ହୋଇବୁ ବୋଇଲେ ।
ତୁହିତ ନର ରାଜା ବୟସରେ ସାନ
କନ୍ୟାକୁ ବୟସ ସତରଲକ୍ଷପୁଣ ।
ମାନଧାତା ବୋଇଲେ ନୁହଇ ଏ ବେଭାର
ଯୁବା ନାହିଁ ବୃଦ୍ଧା ଯେବେ କନ୍ୟାର ଶରୀର ।
ମୋତେ ବୟସ ଯେ ଅଟଇ ଦଶବାର
ବୟସାଧିକ ନାମ ଯେମନ୍ତ ହେବ ମୋର ।
ବସନ୍ତ ବୋଇଲା ରାଜା ଦେବଙ୍କ କଳହ
ଏତେ ପର୍ଯ୍ୟନ୍ତ ନ ଥିଲାକ ସନ୍ଦେହ ।
ମୋହର ଦୁହିତା ଅଟଇ ନବଯୁବା
ଦେଖହେ ମହାରାଜା ପ୍ରତି ଏବେ ଯିବା ।
ବୃଦ୍ଧା ସ୍ତିରୀ ଦେଖିଲେ ଫେରିଯିବୁ ପୁଣ
ଯୁବା ସ୍ତିରୀ ଦେଖିଲେ ଦୁହିତା ବିଭା ଜାଣ ।
ତୁମ୍ଭେତ ନରରାଜା ଏ ଅଟେ ଦେବତା
ତୋର ସଙ୍ଗେ କଳି ଏବେ କରିବାର ଚିନ୍ତା ।
ଶୁଣିଣ ମାନଧାତା କହିଲେ ବସନ୍ତକୁ
ଅଣାଅ ଦୁହିତା ତୋର ଦେଖିବା ତାହାକୁ ।
ଶୁଣିଣ ବସନ୍ତ ଯେ ଦୁହିତା ଅଣାଇଲା
ରବିର ତେଜେ ଦୁହିତା ରୂପରେ ଲୁଚିଲା ।
ନବଯୁବା ବୟସ ଯେ ଅଳପ ସେ ବୟସ
ଦେଖିଣ ମାନଧାତା ହୋଇଲା ସନ୍ତୋଷ
ବୋଇଲା ଦେବତାଏ ମୋତେ ଅହନ୍ତା କରି
ମୋହର ଘରଣୀକୁ ନେବାକୁ ବିଚାରି ।
ମାୟା କଥା କହିଣ ହୋଇଛନ୍ତି ତମୀ
ଏହାକୁ ମାଇଲେ ଦୋଷ ନାହିଁ ପୁଣି ।
ଏମନ୍ତ ବିଚାରି ଯେ ରଥରେ ଯାଇ ବସି
କୋଦଣ୍ଡ ଧରିଣ ରାଜା ଟଙ୍କାର କଲା ହସି ।
ବୋଇଲା ଆସି ତୁମ୍ଭର ନାମ ଯେ ଲିଭାଇଲା
ସଞ୍ଜିବନୀ ପୁରକୁ ପଠାଇବି ଦେଖ ଭଲା ।
ଏମନ୍ତ ବଚନ ଯହୁଁ କହିଲା ମାନଧାତା
ସରବ ଦେବତାଏ ହୋଇ ସାମରଥା ।
ମାନଧାତା ସଙ୍ଗରେ ଅନେକ ଯୁଦ୍ଧ କଲେ
ତିନିପୁର କମ୍ପିଲା ତାଙ୍କର ଯୁଦ୍ଧରେ ।
ବାରଦିନ ପର୍ଯ୍ୟନ୍ତ ସକଳ ଜୀବଜନ୍ତୁ
ଅଚେତ ହୋଇଣ ଯେ ନରହିଲା ହେତୁ ।
ସାହେର ଲହରୀ ଯେ ହୋଇଲା ତେଣେ ସ୍ଥିର
ଅନ୍ଧାର ହୋଇଲା ତେଣେ ଜାଣ ତିନିପୁର ।
ସ୍ୱର୍ଗରେ ଦେବତାଏ ମଉନେ ରହିଲେ
ମୁନିମାନେ ତପରୁ ଭଗ୍ନ ହେଲେ ।
ପାର୍ବତୀ ହର କୋଳରୁ ନ ଉଠିଲେ ଆଉ
ବାସୁକୀ ବିକଳ ଯେ ହୋଇଲାକ ତହୁଁ ।

ଗଗନ ତାରାମାନେ ରୂପ ଯେ ଲୁଚାଇଲେ
ଚତୁପତି ସଭା ଭାଙ୍ଗି ନିମଗ୍ନ ରହିଲେ ।
ବିଧାତା ଜାଣିଣ ଯେ ବିଚାର କଲା ମନେ
ଦେବତାଏ ମରିବେ ମାନଧାତାର ବାଣେ ।
ଶୟନ ସ୍ଥାନ ବିଚାର କଲାକି କମଳା
ଶ୍ରୀହରି ପାଶରୁ ସେ ଅନ୍ତର ନ ହେଲା ।
ଏକା ମାନଧାତା ଯେ ସତର ଦେବତା
ଯୁଦ୍ଧକରି ଦେବତାଏ ପାଇଲେ ବଡ଼ ଚିନ୍ତା ।
ଦେବତାଙ୍କ ବଳ ନ୍ୟୁନ ଦେଖିଣ ସୂର୍ଯ୍ୟଗୋତ୍ରୀ
ବାୟସଫାଶରେ ବାନ୍ଧିଲା ନିବିଡ଼ଚି ।
ଭିନ୍ନ ଭିନ୍ନ କରି ରଖିଲା ବନ୍ଧନରେ
ତିନିପୁର ସମ୍ଭାଳ ହୋଇଲା ଅସ୍ଥିରରେ ।
ସେତେବେଳେ ବେଦବର ବିରାଟପୁର ଗଲା
ମାନଧାତାକୁ ସେ କନ୍ୟା ବିଭା କରାଇଲା ।
ମାନଧାତା କହିଲେ ଚଳ ତୁ ନିଜପୁର
ତୋ ସଙ୍ଗେ କଳି କରିବେ ଦେବତାଏ ଅପାର ।
ଶୁଣିଣ ମାନଧାତା ଚଞ୍ଚଳ ମନ ହେଲା
କନ୍ୟାକୁ ଘେନିଣ ଯେ ନିଜପୁରେ ଗଲା ।
ହସ୍ତୀ ରଥୀ ପଦାତି ଘୋଡ଼ା ଯେ ଏ ପ୍ରକାର
ଅତି ସମ୍ଭର୍ବରେ ଚଳିଲା ନୃପବର ।
ପକ୍ଷେ ପର୍ଯ୍ୟନ୍ତ ସେ ବସନ୍ତ ରାଜନ
ଧନରତ୍ନ ଚାଳିଲା ଅଯୋଧ୍ୟା ପୁର ପୁଣ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ସତର ଦେବତାଙ୍କୁ ମାନଧାତା ବଳିକରି ।
ବାୟ ଫାଶରେ ତାଙ୍କୁ ବାନ୍ଧିଗଲା
ଦେଖିଣ ବେଦବର ମନରେ ବିଚାରିଲା ।
ବୋଇଲେ ଏ ଦେବଙ୍କୁ କରିବ ପରାସ୍ତ
ଏ ଫାଶ ଫେଡ଼ିବାକୁ କେ ଅଛି ଉପଯୁକ୍ତ ।
ସର୍ବଜ୍ଞ ଶକ୍ତିରେ ଜାଣିଲେ ବେଦବର
ଭୂଷଣ୍ଡ କାକକୁ ଯେ ସୁମରେ ସତ୍ୱର ।
ତକ୍ଷଣେ ଭୂଷଣ୍ଡ ଯେ ସେଠାରେ ପ୍ରବେଶ
ବ୍ରହ୍ମାଙ୍କ ଚରଣେ ଓଳଗି ବିଶେଷ ।
ବେଦବର ବୋଇଲେ ଦେବଙ୍କ କଷ୍ଟ ଦେଖ
ଅଯୋଧ୍ୟା ନରନାଥ କଲା ଯେ ଏତେ କୃତ୍ୟ ।
ଦେବତା ନ ଜାଣି ତା ସଙ୍ଗେ କଳି କଲେ
ତେଣୁ ସେ ତୋର ଫାଶେ ବନ୍ଧ ନ ଲଭିଲେ ।
ଶୁଣିଣ ଭୂଷଣ୍ଡ ଯେ କହିଲେ ବଚନ
ଏ ଫାଶ ମାନଧାତା ମୋ ଠାରୁ ନେଲାପୁଣ ।
ଦେବାର ଦ୍ରବ୍ୟରେ କି ଅଛଇ ମୋର ବଳ
ପାର୍ବତୀ ଜାଣିଲେ ଫିଟିବ ଫାଶ ମୋର ।
ଶୁଣିଣ ବେଦବର ଈଶ୍ୱର ସୁମରିଲେ
ପାର୍ବତୀ କୋଳରେ ଈଶ୍ୱର ବିଜେ ଥିଲେ ।

ଅକ୍ଷୟ ତ୍ରୋଣ ଘେନିଣ ଯେ ପାଳଟା ଶରବିନ୍ଧି
ବାୟସଫାଶ ଫିଟି ପଳାଇ ଗଲାକ ବେଗି ।
ମାନଧାତା ତ୍ରୋଣରେ ଯାଇଣ ରହିଲା
ତେଣୁ ସତର ଦେବତା ଦ୍ୱରା ହୋଇ ଉଠିଲା ।
ଶଙ୍କର ବେଦବରଙ୍କୁ କଲେକ ନମସ୍କାର
ଲଜ୍ୟାରେ ଦେବତାଏ ଗଲେ ସ୍ୱର୍ଗପୁର ।
ପାର୍ବତୀ ଘେନିଣ ଈଶ୍ୱର ଚଳିଗଲେ
କପିଳାସ କନ୍ଦରେ ଯାଇଣ ମିଳିଲେ ।
ପରମହଂସ ଚଢ଼ିଣ ବେଦବର ଗଲେ
ଗାୟତ୍ରୀ ସାବିତ୍ରୀ ଦେଖି ବନ୍ଦାପନା କଲେ ।
ବସନ୍ତ ରାଜା ଦୁଃଖ ପାଇଣ ଅଛି ଏହା
ଦେବତାଙ୍କୁ ଜିଣିଲା ମାନଧାତା ସେ ନରନାହା ।
ଦୈତ୍ୟବଳ ଯେ ପରାସ୍ତ ନରନାହା
ତୋହର ଉପର ବଂଶେ ଏମନ୍ତ ବୀର ବାହା ।
ଶୁଣିଣ ଶ୍ରୀରାମ ଯେ କହନ୍ତି ବଚନ
ମୋତେ ବଡ଼ ଦୁଃଖ ଦଇବ କଷଣ ।
ତୁମ୍ଭଠାରୁ ଶୁଣିଣ ଏକଥା ମନ ତୋଷ
ଯୁଗରଷି ଜାଣିଥିବେ ଦୁଃଖର ବିଶେଷ ।
ଶୁଣିଣ ମାର୍କଣ୍ଡ ପରମ ତୋଷ ହେଲେ
ତୋଠାରୁ ବଡ଼ ଦୁଃଖୀ ଅଛଇ ସେ ବୋଇଲେ ।
ସତ୍ୟଯୁଗେ ପୁଣି ବୈଧୃତୀ ଯୋଗରେ
ସେ ପୁର ନରରାଜା ଅଟଇ ବିଦିତରେ ।
ଅଯୋଧା ରାଜାର ଅଟଇ ସହୋଦର
ଦିଗଶଲ୍ୟ ରାଜା ଯେ ଅଟଇ ସାରଧାର ।
କଳି ଦ୍ୱାପର ଯେ ଦୁଇ ଯୁଗ ତାକୁ ପୁଣ
ଆଗହୁଁ ଦୁଇଜଣଙ୍କୁ ନମାନେ ରାଜା ପୁଣ ।
କ୍ଷତ୍ରୀବୀର ରାୟ ଯେ ଅଟଇ ନଳ ରାୟେ
ସତ୍ୟରେ ସତ୍ୟ ରାଶି ମାୟା ନାହିଁ କାୟେ ।
ତେଣୁ ସେ ଦେବତା ନରବାନର ତୋଷି
ସମସ୍ତଙ୍କ ସଙ୍ଗରେ ସେ ରାଜାର ପ୍ରଶଂସି ।
ଯେତେବେଳେ ନଳରାଜା ଜନ୍ମ ସେ ହୋଇଲା
ତାହାର କର୍ମରେ ବିଧାତା ଦେଖିଦେଲା ।
ତାର ନାମ ଧରିଲେ ନର ଯେ ଦେବତା
ଚିନ୍ତାତେଜ୍ୟା ହେବ ଯେ ଦେଖିଲେ ବିଧାତା ।
ତେଣୁ ସେ ନଳ ନାମ ସଂସାରେ ହେଲା ସାର
ତିନିନଳ ରାଜା ଯେ ଏକଇ ପ୍ରକାର ।
ଦେବ ନଳ ଦେବଙ୍କ ଧନ ସାଇତିଲା
ବାନର ନଳ ଛୁଇଁଲେ ପଥର ନ ବୁଡିଲା ।
ମାନବ ନଳ ରାଜା କଥା ଯେ ଶୁଣ ରାମ
ତାର ନାମ ସୁମରିଲେ ଚିନ୍ତା ହେ ଅନୁପମ ।
ତେଣୁ ଦୁଇଜଣ ସଙ୍ଗେ ହେଲେ ହଂସୀ
ସେ କଥା ନଳରାଜା ଜାଣେଚି ବିଶେଷି ।

ଏଥୁ ଅନନ୍ତରେ ଶୁଣହେ ରାମରାଣ
ନଳକୁ ରାଜାକରି ପିତା ଗଲେକ ଅରଣ୍ୟ ।
ଅରଣ୍ୟରେ ପିତା ତାର ତପସ୍ୟା ଯାଇ କଲା
ଫଳମୂଳ ଭୁଞ୍ଜିଣ ସେଠାରେ ଦିନ ନେଲା ।
ପିତା ସଙ୍ଗରେ ମାତା ଗଲା ଯେ ତାହାର
ନଳରାଜା ରହିଲା ଯେ ଆପଣା ରାଜ୍ୟର ।
ନଳକୁ ବାରବର୍ଷ ସମ୍ପୂର୍ଣ୍ଣ ଯେ ହେଲା
ତେଣୁ ନଳରାଜା କାମିନୀ ସୁମରିଲା ।
କାଞ୍ଚି କର୍ଣ୍ଣାଟ ଦେଶର ଭୀମ ରାଜାର ଘର
ଦୁହିତା ଗୋଟିଏ ଯେ ଜନ୍ମ କୋଳ ତାର ।
ରୂପରେ କମଳା ଯେ ପାର୍ବତୀ ନୋହେ ସରି
ଶ୍ୱେତପଦ୍ମ ପ୍ରାୟେ ମୁଖ ତା ବିସ୍ତାରି ।
ଶରୀର ଚମ୍ପାପୁଷ୍ପ ଜିଣିଣ ଦିଶୁଅଛି
ବେନି ଚରଣରେ ଅଳତା ପଟି ଅଛି ।
ନଖପନ୍ତିମାନ ତାର ଦିଶଇ ସୁନ୍ଦର
ନୟନ କଜ୍ଜ୍ୱଳ ପ୍ରାୟ କେଶ ତା ଶ୍ୟାମଳ ।
ଦନ୍ତପନ୍ତି ତାର ଡାଳିମ୍ବ ମଞ୍ଜି ଜାଣି
ଉଲଟ କଦଳୀ ଯେ ଜାନୁ ଜଙ୍ଘ ପୁଣି ।
ପାଦଧାଡ଼ି ପର୍ଯ୍ୟନ୍ତ କପାଳ ଲେଖାପନ୍ତି
ସେ କନ୍ୟାର ନାମ ଗୋଟି ଦେଲାକ ଦମୟନ୍ତୀ ।
ସତୀ ସାଧବୀ ଅଂଶରେ ବିଧାତା ଜାତ କଲା
ଆଗହୁଁ ସାଧବୀରେ ଗୁଣ ଯେ ପ୍ରକାଶିଲା ।
ସ୍ୱର୍ଗର ଅପସରିକୁ ଜିଣିଲେ ସେ ତୋରା
ସାଧବୀ ଲକ୍ଷଣ ତାହାଠାରେ ପରା ।
ସୁନ୍ଦରୀ ସୁକୁମାରୀ ତିନିପୁରକୁ ସାର
ଉପମା ଦେବାକୁ ଯେ ନାହିଁ ତିନପୁର ।
ନବ ବରଷ ପଣନ୍ତେ ହୋଇଲା ନବଯୁବା
ମୁନିମାନେ ଟଳିବେ ଦେଖିଲେ ତାର ପ୍ରଭା ।
ଦେଖିଣ ଭୀମରରାଜା ଶତେକ ଦାସୀ ଆଣି
ଦୁହିତାର ସେବାକୁ ରଖିଲା ଆଣି ପୁଣି ।
ସ୍ୱୟମ୍ବର କରିବାକୁ ରାଜା ଯେ ମନ କଲା
ଜମ୍ବୁଦ୍ୱୀପୁ ଲକ୍ଷେ ରାଜା ବରିଣ ସେ ଆଣିଲା ।
ବରଣ କରିଣ ରାଜା ହୋଇଲା ସୁପ୍ରୀତ
ରତ୍ନବେଦୀ ତିଆରିଲା ତାହାର ନବରେତ ।
ସକଳ ସମାଦି ରାଜା ହୋଇଲା ମନେ ତୋଷ
ନବରେ ଉସବ କଲାକ ବିଶେଷ ।
ଏଥୁ ଅନନ୍ତରେ ଶୁଣ ହେ ରାମରାଣ
ସ୍ୱର୍ଗର ଦେବତାଏ ବିଚାର କଲେ ପୁଣ ।
ବୋଇଲେ ଭୀମରାଜା ଦୁହିତା ସୁନ୍ଦରୀ
ମାୟାରେ ବିଭା ହୋଇ ଆଣିବା ସ୍ୱର୍ଗପୁରୀ ।
ଦେବଙ୍କର ବିଚାର ଜାଣିଣ ବେଦବ୍ରହ୍ମା
ମୋହର ଲିଖିତ କଥା ନୁହେ ତ ଆନ ଭିନ୍ନା ।

ଏମନ୍ତ ବିଚାରି ହଂସକୁ ଡାକି କହି
ବୈଧୃତି ପୁର ଚଳ ତୁ ବେଗ ହୋଇ ।
ନଳରାଜାକୁ କହିବ କର୍ଣ୍ଣାଟପୁର ଯିବ
ଭୀମରାଜା ସ୍ୱୟମ୍ବରରେ ବିଜୟ ସେ କରିବ ।
ନର ଦେବତା କନ୍ୟାରେ ଅଟନ୍ତି ଲୋଭୀ ପୁଣ
ସେ କନ୍ୟା ଅଟଇ ଯେ ସୁନ୍ଦରୀ ସୁଲକ୍ଷଣ ।
ସଭାରେ ବସିଥିଲେ ସେ କନ୍ୟା ତୋତେ ବରି
ଏତେ କହି ସେଠାରୁ ଆସିବୁ ହେତୁ କରି ।
କାଞ୍ଚି କର୍ଣ୍ଣାଟରେ ମିଳିବୁ ବହନ
ବେଣ୍ଟ ପୋଖରୀରେ କରିବୁ ଭ୍ରମଣ ।
ଯେତେବେଳେ ଦମୟନ୍ତୀ ସ୍ନାହାନ କରି ଆସି
ଦେଖିଣ ବିନୀତେ ଯେ ବଚନ ପ୍ରକାଶି ।
ବୋଲିବୁ ସ୍ୱୟମ୍ବରେ ନଳ ରାଜା ବର
ଜନ୍ମେ ଜନ୍ମେ ସ୍ୱାମୀ ଯେ ହୋଇବେ ତୋହର ।
ତୋହର କର୍ମରେ ଲେଖିଛି ବିଧାତା
ନାରୀ ନ ନିନ୍ଦା କରିବୁ ଧନ୍ୟ ମଦନ ତା ।
ତୋହର ରୂପ ଦେଖି ଦେବତାମାନେ ଘାରି
ମାୟାରେ ନଳ ରୂପ ଧରିବେ ବିଚାରି ।
ଏମନ୍ତ ବୋଲି ହଂସ କହ ତାକୁ ଯାଇ
ବିଚାରିଣ କରିବୁ ମନରେ ତୋଷ ହୋଇ ।
ବ୍ରହ୍ମାର ବଚନରେ ହଂସ ଯେ ଚଳିଗଲା
ବୈଧୃତିପୁରେ ହଂସ ଯେ ମଳିଲା ।
ବେଦବର କହିବାର କହିଲା ବୁଝାଇ
କର୍ଣ୍ଣାଟ ଦେଶ ଚଳ ସ୍ୱୟମ୍ବର ହୋଇ ।
ସେଠାରୁ ପରମହଂସ ବେଗେ ଚଳିଗଲା
କାଞ୍ଚି କର୍ଣ୍ଣାଟ ଦେଶରେ ଯାଇ ପହୁଞ୍ଚିଲା ।
ବେଣ୍ଟ ପୋଖରୀରେ ହଂସ ଭ୍ରମଣ ହରଷ
ପ୍ରଭାତ ସମୟରେ ଦମୟନ୍ତୀ ଯେ ପ୍ରବେଶ ।
ସ୍ନାହାନ ନିମନ୍ତେ ନାରୀ ପୋଖରୀରେ ମିଳି
ଚାରିଆଡ଼କୁ ଦୁହିତା ଦୃଷ୍ଟି ଦେଲା ଚାଳି ।
ଏମନ୍ତ ସମୟେ ହଂସ ଚିହ୍ନିଣ କହିଲା
ନଳ ରାଜା ବର ବୋଲି ବଚନ ସେ କହିଲା ।
ସକଳ ବୃତ୍ତାନ୍ତ ଯେ କହିଲା ସେ ବୁଝାଇ
ଯଶୋବନ୍ତୀ ପୁରକୁ ହଂସ ଚଳି ଯାଇ ।
ଶୁଣିଣ ଦମୟନ୍ତୀ ମନରେ ଚିନ୍ତା କଲା
ନାରାୟଣ ରଖ ବୋଲି ମନରେ ସୁମରିଲା ।
ସ୍ନାହାନ ସାରିଣ ତା ନବରେ ପ୍ରବେଶ
ଏଥୁ ଅନନ୍ତରେ ଶୁଣ ହେ ରାମା ରସ ।
ରାଜାମାନେ ଆସିଣ ପ୍ରବେଶ କର୍ଣ୍ଣାଟରେ
ନଳରାଜା ଗଲା ଯେ ସ୍ୱୟମ୍ବର ବରଣରେ ।
ଲକ୍ଷେ ରାଜା କର୍ଣ୍ଣାଟ ଦେଶରେ ଠୁଳ ହେଲେ
ହସ୍ତୀ ଅଶ୍ୱ ପଦାତିକ ଯାନକାରୀ ତୁଲେ ।
ହସ୍ତୀ ଅଶ୍ୱ ପଦାତିକ ଯେ ହୋଇଲେ ଗହଳ
ସ୍ୱର୍ଗକୁ ବୋଲିଣ ଶୁଭିଲା ଚହଳ ।
ଶୂନ୍ୟରେ ଦେବେ ଥାଇ ଦେଖିଲେ ସମସ୍ତ
ଦମୟନ୍ତୀ ସତୀ ବିଭା ହେବ ସୁନିଶ୍ଚିତ ।
ସତୀ ବ୍ରତ ଏହାର ଭାଙ୍ଗିବା ଆମ୍ଭେ ଯାଇ
କେତେବଡ଼ ବିଶ୍ୱାସ କରିଣ ଅଛଇ ।
ଏମନ୍ତ ବିଚାରି ଯେ ଚାରି ଦେବତା ଅଇଲେ
ଅଗ୍ନି ଇନ୍ଦ୍ର ବରୁଣ କୁବେର ଅଇଲେ ।
ନଳରାଜା ରୂପ ଧରି ସ୍ୱୟମ୍ବରେ ମିଳି
ଦମୟନ୍ତୀ ମନ ମଧ୍ୟେ ଅନ୍ତଃପୁରେ ଭାଳି ।
ଅନୁଛାୟା ଦାସୀକୁ ଡାକିଣ ଦମୟନ୍ତୀ
ସ୍ୱୟମ୍ବରେ ଯିବେ ବେଶ କର ଗୋ ଝଟତି ।
ଶୁଣିଣ ଅନୁଛାୟା ଅଳଙ୍କାର ଆଣି
ଝୁଣ୍ଟିଆ ନୂପୁର ପାହୁଡ଼ ଖଞ୍ଜେ ଆଣି ।
ଚୂଡ଼ି ବିଦ ବାହୁଟି ତାଡ଼ ଯା ତାର ମେଳେ
ପଦକ ଚନ୍ଦ୍ରହାର ଚାପସରୀ ଗଳେ ।
ରତ୍ନ କାଞ୍ଚୁଲା ଯେ ହୃଦରେ ଲମ୍ବାଇଲା
ଗୁଣର ସିନ୍ଧୁଫାଳ ନାସାରେ ନେଇ ଦେଲା ।
କର୍ଣ୍ଣରେ କର୍ଣ୍ଣ ଫୁଲ ମଲକଢ଼ି ଖଞ୍ଜି
ଚନ୍ଦ୍ରମଣି ଫାସିଆ କର୍ଣ୍ଣରେ ବିରାଜି ।
କେଶ ସାମଗ୍ରୀ ବାନ୍ଧିଣ ଯୋଡ଼ା ବେଣୀ
ଝରଝୁମା ଯେ ଜୁଡ଼ା ପରେ ପୁଣି ।
ମସ୍ତକରେ ଅଳତା ଯେ ମଥାମଣି ମାଳା
ମଧ୍ୟରେ ସିନ୍ଦୁର ବିନ୍ଦୁ ଦିଶଇ ବଡ଼ ତୋରା ।
ଅମଳିଣ ଶାଢ଼ୀ ଯେ ବାଛିକରି
ଦର୍ପଣ ଧରି ମୁଖ ନିରଖେ ବିଦ୍ୟାଧରୀ ।
ବେଶ ସାରି ଅନୁଛାୟା ଆଗରେ ଉଭା ହେଲା
ଖଟପରେ ଦମୟନ୍ତୀ ଦର୍ପଣ ଦେଖିଲା ।
ଦମୟନ୍ତୀ ପଚାରନ୍ତି ଅନୁଛାୟାକୁ ପୁଣ
ମାୟାରେ ସ୍ୱୟମ୍ବର ହେବ ଯେ ଆଜି ପୁଣ ।
ନଳ ରାଜାପରି ପାଞ୍ଚଜଣ ଦେଖା ହେବ
ଆଗରୁ ଦଇବ ଯେ କହିଛି ଏହି ଭାବ ।
ନଳ ରାଜା ବରିବାକୁ କର ତୁ ବିଚାର
ଅନୁଛାୟା ବୋଇଲା ନାରାୟଣଙ୍କୁ ସୁମର ।
ଚାରିଦିଗେ ଚାରି ମଧ ମଝିରେ ନଳ ବସି
ଚନ୍ଦନ ଶୁଖିଣ ଥିବ କରିବୁ ସୁକେଶୀ ।
ଅନୁଛାୟା କହିବାରୁ ଦମୟନ୍ତୀ ଚଳିଗଲା
ସଭାର ମଧରେ ଯାଇ ପ୍ରବେଶ ହୋଇଲା ।
ଦାସୀଗଣ ସଙ୍ଗତରେ ଅନୁଛାୟା ଗଲେ
ଏମନ୍ତ ବେଶ ହୋଇ ଦମୟନ୍ତୀ ଠିଆ ହେଲେ
ଅନୁଛାୟା ଦେଖାଇଣ ଦେଲାକ ହସ୍ତରେ
ଦମୟନ୍ତୀ ବରିଲା ନଳ ରାଜାଙ୍କୁ ସତ୍ୱରେ ।

ଦେଖିଣ ରାଜାମାନେ ସଭାରୁ ଉଠି ଗଲେ
ସେଠାରୁ ଚାରିଦେବ ସ୍ୱର୍ଗକୁ ଚଳିଲେ ।
ଭୀମରାଜା ମେଲାଣି କଲେକ ସର୍ବ ରାଜା
ଧନରତ୍ନ ଦେଇଣ କଲାକ ପାଦପୂଜା ।
ହରଷରେ ରାଜାମାନେ ଯେଝା ପୁରେ ଗଲେ
ଚହଳ ପଡ଼ିଲା ଯେ କର୍ଣ୍ଣାଟ ଦେଶ ଭଲେ ।
ଏଥୁ ଅନନ୍ତରେ ଶୁଣ ହେ ରାମ ରାଣ
ଶୂନ୍ୟରେ ଚାରି ଦେବ କଲେକ ଗମନ ।
ବାଟରେ କଳିଯୁଗ ଦ୍ୱାପରରେ ଭେଟ ହେଲେ
ସକଳ କଥା ସେ ଦୁହିଙ୍କୁ ପଚାରିଲେ ।
କେଣେ ଯାଥିଲ ପଚାରେ ଦେବଶୁଣ
ବୋଇଲେ ଯାଇଥିଲୁ ମର୍ତ୍ତ୍ୟପୁରେ ଜାଣ ।
ଯୁଗମାନେ ବୋଇଲେ କି କାର୍ଯ୍ୟେଥିଲ ଯାଇ
ବୋଇଲେ ଦେବତା ଦମୟନ୍ତୀ ସ୍ୱୟମ୍ବର ହୋଇ ।
ବେନିଯୁଗ ବୋଇଲେ କାହାକୁ ସେ ବରିଲେ
ନଳକୁ ସେ ବରିଲା ଦେବତାଏ ବୋଇଲେ ।
ବେନିଯୁଗ ବୋଇଲେ ଅନ୍ୟାୟ ସେହୁ କଲା
ଦେବତାଙ୍କୁ ଛାଡ଼ି ନଳରାଜାଙ୍କୁ ବରିଲା ।
ଦେବତାଏ ବୋଇଲେ ଆଚାରେ ସେ ଭଗବତୀ
ଆଗେ ଆମ୍ଭଙ୍କୁ ସତୀରେ ମନରେ କଲା ସ୍ତୁତି ।
ଭକତି ଦେଖାଇବାରୁ ତା ଠାରେ ଦୟା କଲୁ
ନଳକୁ ବରିବାରୁ ଫେରିଣ ଅଇଲୁ ।
ବେନିଯୁଗ ବୋଇଲେ ନଳକୁ ଦେବୁ କଷ୍ଟ
ଉପର ବଂଶେ ତାର ଆମ୍ଭଙ୍କୁ ଉତପାତ ।
ଚାରିଦେବ ବୋଇଲେ ଉତପାତ କିସ କଲା
ବେନିଯୁଗ ବୋଇଲେ ଦିଲ୍ଲୀହା ରାଜା ଥିଲା ।
କାହାର ବଂଶରେ ରାଜା ନ ମାନିଲା
ଆମ୍ଭ ବେନିଯୁଗଙ୍କୁ ବାନ୍ଧିଣ ଘେନିଗଲା ।
ଲକ୍ଷେ ବରଷଯାଏ ସେ ବାନ୍ଧିଲା
ବେଦବର କହିବାରୁ ଆମ୍ଭଙ୍କୁ ଛାଡ଼ି ଦେଲା ।
ସେହିଦିନୁ ଅଇଛ ଆମର ଯେ କ୍ରୋଧ
ଶୁଣିଣ ଦେବତାଏ କଲେ ଯେ ନିରୁଦ୍ଧ ।
ଶୁଣିଣ ଚାରିଦେବ ଯୁଗକୁ କହନ୍ତି ପୁଣି
ନଳରାଜାଙ୍କୁ କଷ୍ଟ ନ ଦିଅ ଏବେ ଜାଣି ।
ଧର୍ମବନ୍ତ ଦୟାଶୀଳ ଅଟଇ ନଳରାଜା
କଷ୍ଟ ଦେଲେ ତୁମ୍ଭେ ଶାସ୍ତି ହେବ ପୂଜା ।
ଯେତିକି ଦିନ ତାକୁ କଷ୍ଟରେ ବିହିବ
ତେତେକାଳ ପର୍ଯ୍ୟନ୍ତେ ବନ୍ଧନେ ପଡ଼ିବ ।
ବେନିଯୁଗ ବୋଇଲେ ଚଉଦମାସ ଧରୀ
ନିଶ୍ଚୟ ନଳରାଜା କଷ୍ଟରେ ଯିବ ପଡ଼ି ।
ଦେବତା କହିଣ ସ୍ୱର୍ଗପୁର ଗଲେ
କଳି ଦ୍ୱାପର ଦୁହେଁ ମିଳିଲେ ନଳ ତୁଲେ ।

ଏଥୁ ଅନନ୍ତରେ ବାଣୀ ଦାଶରଥି ଶୁଣ
ଦମୟନ୍ତୀକି ବିଭା ନଳରାଜା ପୁଣ ।
ପାଞ୍ଚ ସପ୍ତ ମଙ୍ଗଳା ପୁଣି ସାରି
ସନ୍ଧ୍ୟା ହୋମ ସାରିଣ ଦମୟନ୍ତୀ ସଙ୍ଗେ ମିଳି ।
ଏକାଦଶ ଦିନରେ ନଳରାଜା ଗଲେ
ବୈଧୃତି ପୁରେ ନିଜ ରାଜ୍ୟରେ ମିଳିଲେ ।
ସପତ ବରଷ ଯେ ଏଥିରେ ବହିଗଲା
ବେନିଗୋଟି କୁମର ଦୁହିତା ଜାତ ହେଲା ।
ବେନିଯୁଗ ଜାଣିଣ ଅଜ୍ଞାନ ତାକୁ କଲେ
ପଶାଖେଳ ଖେଳି ରାଜ୍ୟହିଁ ହରାଇଲେ ।
ଦାସୀପୁତ୍ର ପୁଷ୍କର ରାଜ୍ୟରେ ରାଜା ହେଲା
ଦେଖିଣ ଦମୟନ୍ତୀ ବିଚାର ସେଠି କଲା ।
ବେନିପୁତ୍ର ଦୁହିତାଙ୍କୁ ପିତା ପୁରେ ଚାଳି
ଧନଭଣ୍ଡାର ନିବିଡ଼ କଲାକ ସେ ବିଚାରି ।
ପୁଷ୍କର ଆଜ୍ଞା ଦେଲା ନ ପଶ ନଗର
ଯେବେ ତୁ କିଛିଦିନ ଧର୍ମରେ ହେବୁ ପାର ।
ରାଜା ସିନା ତୋତେ ଅଳପେ ହାରିଲା
ରାଜ୍ୟ ଛାଡ଼ି ଯିବ ସେ ମନରେ ପ୍ରତେ କଲା ।
ଚଉଦମାସ ପର୍ଯ୍ୟନ୍ତ ଦୁଃଖିତ ହେବ ପୁଣ
ତେବେ ସେ ନଳରାଜାର ତୁଟିବ ଅଜ୍ଞାନ ।
ଶୁଣିଣ ପୁଷ୍କର ସେ କଥା ମାନି ରହି
ଦମୟନ୍ତୀ ସଙ୍ଗେ ଘେନି ଅରଣ୍ୟ ବୁଲାଇ ।
ନଳରାଜା ସଙ୍ଗତରେ ବୁଲେ ଜାଣ ସତୀ
ଦଶମାସ ପରିଯନ୍ତେ ଏହାସଙ୍ଗେ ବୁହନ୍ତି ।
ସେଠାରୁ ଅନ୍ତର ନଳ ଯେ ଦମୟନ୍ତୀ
କେ କାହାର ସଙ୍ଗେ ନୋହି ଅରଣ୍ୟ ବୁଲନ୍ତି ।
ଦମୟନ୍ତୀକୁ ଛାଡ଼ି ଅଜ୍ଞାନେ ବୁଲନ୍ତି
ନଳକୁ ନ ଦେଖି ଦମୟନ୍ତୀ ମନେ ଭ୍ରାନ୍ତି ।
ସେଠାରୁ ଦମୟନ୍ତୀ ଯେ ବାତୁଳିତ ମନ
ସତର ଦିନେ ଦେଶେ ପାଇଲାକ ଜାଣ ।
ଶ୍ରୀରାମ ପଚାରିଲେ ଶୁଣ ହେ କଣ୍ଠ ଋଷି
ଦମୟନ୍ତୀ ନଳ କିମ୍ପା ହୋଇଲେ ଅନ୍ତରଚି ।
ବେନି ଯୁଗ ହେବାରୁ ନଳ ଯେ ଅଜ୍ଞାନ
ଦମୟନ୍ତୀ ତା ସଙ୍ଗେ ଚେତାରେ ଥିଲା ପୁଣ ।
ସେ କିମ୍ପା ବିଚାର ନ କଲା ମହାସତୀ
ତାହାକୁ ଅଜ୍ଞାନ ବୁଦ୍ଧି ଯୁଗହିଁ ଅରାତି ।
ମାର୍କଣ୍ଡ ବୋଲନ୍ତି ଶୁଣ ହେ ଚାପଧାରୀ
ନଳରାଜା ଯିବାରୁ ଦମୟନ୍ତୀ ବିଚାରୀ ।
ଅନୁଛାୟା ସାଙ୍ଗରେ ଅନେକ ଦାସୀ ଥିଲେ
ତାହାକୁ ଦମୟନ୍ତୀ ନଵରେ ଜଣାଇଲେ ।
ଧନ ରତ୍ନ ଭଣ୍ଡାର ସମର୍ପି ଦେବି ପୁଣ
ନଳରାଜା ପଛରେ କଲେକ ଗମନ ।

ଦଶମାସେ ବନରେ ଚାରି ଦିଗ ବୁଲି ଆସି
ସିଂହହିଁ ଶାର୍ଦ୍ଦୁଳ ଗଣ୍ଡା ତାହାଙ୍କୁ ନିର୍ଦ୍ଧଂସି ।
ଫଳମୂଳ ପତ୍ର କରନ୍ତି ସେ ଆହାର
ଏମନ୍ତ ଦଶମାସ ଗଲା ଯେ ତାଙ୍କର ।
ସେ ବନେ ପଦ୍ମ ପୁଷ୍କରିଣୀଗୋଟିଏ ଦେଖିଲେ
ସେଠାରେ ଦୁଇଜଣ ସ୍ନାନ ପାଣି କଲେ ।
ସଦାବର୍ତ୍ତୀ ମଣ୍ଡପ ସେଠାରେ ଦାଣ୍ଡ ବାଟ
ଗହଳରେ ଜନ ପୁଣି ହୁଅନ୍ତି ଆତଯାତ ।
ସେ ମଣ୍ଡପ ଉପରେ ବସିଲେ ବେନି ଜନ
ସେଠା ବେନି ଜନ ଅନ୍ନ ଯେ ଭୋଜନ ।
ସଦାବର୍ତ୍ତ ଲୋକେ ଦେଲେ ସଞ୍ଚା ଆଣି
ସେଠାରେ ଦମୟନ୍ତୀ କଲେକ ରନ୍ଧା ପୁଣି ।
ରଜନୀରେ ମଣ୍ଡପରେ କଲେକ ଶୟନ
ଅର୍ଦ୍ଧ ନିଶିଠାରେ ନଳ ହୋଇଲେ ଅନ୍ତର୍ଦ୍ଧାନ ।
ଦମୟନ୍ତୀର ଶାଢ଼ୀରୁ ପଣନ୍ତ ନଳ କାଟି
ପଶିଲେ ଘୋର ବନ ଦମୟନ୍ତୀଙ୍କୁ ଛାଡ଼ିଟି ।
କେତେବେଳେ ଉତ୍ତାରୁ ଦମୟନ୍ତୀ ନିଦ୍ରା ଭାଙ୍ଗି
ନଳ ରାଜାଙ୍କୁ ନ ଦେଖି ମନରେ ହେଲା ରାଗୀ ।
ବସିଣ ରୋଦନ ଯେ କରଇ ମହାସତୀ
ବେନି ଯୁଗ ହେତୁରୁ ଅଜ୍ଞାନ ତାଙ୍କୁ ଘୋଟି ।
ଦମୟନ୍ତୀ ବିଚାରୀ ହୋଇଲା କମ୍ପମାନ
ଶୋଭା ଦେଖି ମୋର କରିବେ ଲୋକ ଆନ ।
ନଳଙ୍କୁ ନ ପାଇଲେ ନିଶ୍ଚୟ ହେଲା ଅନ୍ଧ
ଏମନ୍ତ ବିଚାର କଲାକ ନାରୀ ହୃଦ ।
ବିଧାତା ପୁରୁଷଙ୍କୁ ମନରେ ବିଚାରିଲା
ମୋହର ଦୋଷ ନାହିଁ ବୋଲିଣ ବୋଇଲା ।
ଦେବି ତୋତେ ଶାପ୍ୟ ଦେବୀ ମରୁ ତୋର
ଏମନ୍ତ ବିଚାରନ୍ତେ ମିଳିଲା କିରାତ ପାଶର ।
ବୋଇଲା ସୁନ୍ଦରୀ ଗୋ ମୋହର ସଙ୍ଗେ ଚଳ
ତୋତେ ମୁଁ ଘରଣୀ କରିବି ଏହା ମୂଳ ।
ଶୁଣିଣ ଦମୟନ୍ତି କ୍ରୋଧରେ ଶାପ୍ୟ ଦେଲା
ବିଡ଼ମ୍ବନ କିମ୍ପା କରିଲୁ ବୋଇଲା ।
ହୁଅରେ ଭସ୍ମରାଶି ନୋହୁ ତୁମୋତେଯୋଗ୍ୟ
କିରାତ ଧ୍ୱଂସ ଗଲା ଦମୟନ୍ତୀ ଦେଲା ଶାପ୍ୟ ।
ସେ ଦମୟନ୍ତୀ ଦେଖିଣ ଛାୟାବର
ମାୟା ରୂପଧରି ଆଗରେ ବିଜେ ତାର ।
ବୋଇଲେ ସୁନ୍ଦରୀ ଗୋ କିମ୍ପାଇ ଆରତ
ଚାରିମାସ ଗଲେ ନଳ ତୋତେ ହେବ ପ୍ରାପ୍ତ ।
ନିବିଡ଼ ଘୋର ବନେ ପଶିଲା ନଳ ଏବେ
ଦଇବ ଘଟଣା କଥାକୁ ଧ୍ୟାନ କର ଏବେ ।
ବିଧାତାକୁ ଦଣ୍ଡିବାକୁ ନୁହଇ ତୋ ବେଭାର
କର୍ମଦୋଷ ତୋର ଘୋଟିଅଛି କାଳ ।

ସତର ଦିନ ଗଲେ ଯେଣେ ନଳ ଯିବ
ରାଜା ନବରରେ ନିଶ୍ଚିନ୍ତ ଠାବ ହେବ ।
ମାସେ ତେରଦିନ ସେଠାରେ ଚାରି ଦିନ
ପିତା ଘରେ ମିଳିବୁ କହିଲି ତୋତେ ପୁଣ ।
ଶୁଣିଣ ଦମୟନ୍ତୀ ତାହାଙ୍କୁ ପଚାରି
କିଏ ତୁମ୍ଭେ ମୋତେ କହହେ ବିଚାରି ।
ଶୁଣିଣ କଶ୍ୟପ ନନ୍ଦନ କହେ ପୁଣ
ମୁହିଁ ଧର୍ମ ନନ୍ଦନ ମିଳିଲି ତୋର ଆଗେ ପୁଣ ।
ଦମୟନ୍ତୀ ବୋଇଲେ ଯେବେ ତୁ ଶାନ୍ତଶୀଳ
କଥାଏ କହିବି ଘେନ ବିନତି ମୋହର ।
ଏ ରୂପ ଗୋଟି ମୋର ବିରୂପ ଯେବେ ହେବ
ସ୍ୱାମୀଙ୍କୁ ଦେଖିଲେ ନିଜ ରୂପ ହେବ ।
ତେବେ ମୁଁ ଜାଣିବି ଋଷି ଦେବତା ତୁମ୍ଭେଅଟ
ନୋହିଲେ ଶାପ୍ୟ ଦେବି ହୋଇବ ଭସ୍ମୀଭୂତ ।
ଶୁଣିଣ ଛାୟାପତି ହରଷ ମନ ହେଲେ
ହୁଅ ତୁ ବିରୂପ ଗୋ ବୋଲିଣ ବୋଇଲେ ।
ପିତା ଘରେ ପ୍ରବେଶି ନିଜ ରୂପ ହୁଅ
ଏତେ ବୋଲି ଅନ୍ତର୍ଦ୍ଧାନ କଶ୍ୟପର ପୁଅ ।
ସେଠାରୁ ବିରୂପ ଯେ ଦମୟନ୍ତୀ ଶରୀର
ଦେଖିଣ ଦମୟନ୍ତୀ ବିଚାରେ ମନର ।
ଦେବତା ବୋଲି ବିଚାରି ଦାଣ୍ଡେ ଚଳିଗଲା
ସତର ଦିନେ ମଉଳା ନବରେ ମିଳିଲା ।
ସେ ଦାଣ୍ଡେ ଜନ ପ୍ରଜା ଦେଖିଣ ବିଚାରନ୍ତି
ଅଜ୍ଞାନ ବାଳକ ଧୂଳି ଯେ ଫିଙ୍ଗନ୍ତି ।
ସ୍ତ୍ରୀ ବାଳ ବିଶେଷ ଯେ ଚାଲଇ ଦାଣ୍ଡେ ଦାଣ୍ଡେ
ବାତୁଳର ପ୍ରାଏ କହଇ ଖଣ୍ଡେ ଖଣ୍ଡେ ।
ରାଜାର ସିଂହଦ୍ୱାରରେ ମିଳିଲା ସତୀ ଯାଇ
ଉପରେ ରାଜମାତା ତାହାଙ୍କୁ ଅନାଇ ।
ନିରେଖ ଜନ ବୋଲି ଦାସୀଙ୍କୁ ପେଶିଦେଲା
ଦମୟନ୍ତୀକୁ ଆସି ଦାସୀ ଘେନିଗଲା ।
ରାଜାମାତା ବୋଇଲେ ଶୁଣ ଗୋ ଦମୟନ୍ତୀ
କେଉଁ ଦେଶୁ ଅଇଲ ବାତୁଳ ବୁଦ୍ଧ କରିମତି ।
ଦମୟନ୍ତୀ ବୋଇଲା ମୋ ସ୍ୱାମୀ ସଙ୍ଗେ ଥିଲା
ଦଇବ ଦୁର୍ଯୋଗରେ ସେ ଅରଣ୍ୟେ ପଶିଲା ।
ତେଣୁ ମୁଁ ନ ଦେଖିଣ ବୁଲଇ ଏଣେ ତେଣେ
ଦଇବ ଯୋଗେ ଭେଟ ପାଇଲି ଆସି ଏଣେ ।
ରାଜମାତା ବୋଇଲେ ନବରେ ମୋର ରହ
କିଛି ଦିନ ରହିଣ ଏଠାରେ ସୁଖ ପାଅ ।
ଦମୟନ୍ତୀ ବୋଇଲା ରହିବି ଯେବେ ମୁହିଁ
ପାଲଟା ଉଚ୍ଛିଷ୍ଟ ନ ଛୁଇଁବି ମୁହିଁ ।
ରାଜମାତା ବୋଲନ୍ତେ ଏ କଥାଟି ମୂଳ
ଦୁହିତା ତାର ସଙ୍ଗରେ ଯାଇଣ କର ଖେଳ ।

ଜମ୍ବୁବତୀ ଦୁହିତାକୁ ଡାକିଣ ରାଜମାତା
ବୋଇଲା ତୋର ସଙ୍ଗେ ରହୁ ଏ ବନିତା ।
ତୁ କାର ଭାଷା ଏହାକୁ ନ ବୋଲିବୁ ଜମା
ବଡ଼ଲୋକର ଘରଣୀ କହିଲା ଗାରିମା ।
ଶୁଣିଣ ଜେମାଦେଈ ନବରେ ଘେନିଗଲା
ଅଗୁରୁ କସ୍ତୁରୀ ଚନ୍ଦନ ତା ଅଙ୍ଗରେ ବୋଳିଲା
ପନୀର ଜଳରେ କରାଇ ସ୍ନାହାନ
ପିନ୍ଧିବାକୁ ଅମଳିଣ ଶାଢ଼ୀ ଯେ ଦେଲା ପୁଣ ।
ଷଡ଼ରସ ବ୍ୟଞ୍ଜନ ଦେଲାକ ଶାଳି ଅନ୍ନ
ଭୁଞ୍ଜିଣ ଦମୟନ୍ତୀ ହୋଇଲା ତୋଷମନ ।
ବୋଇଲା ପ୍ରାଣନାଥ ମଣ୍ଡପ ଯାଏ ଥିଲେ
ମୋତେ ଛାଡ଼ି କେଣେ ଯେ ଅନ୍ତର ହୋଇଲେ ।
ଏଥୁଅନନ୍ତରେ ତୁମ୍ଭେ ଶୁଣ ହେ ରାମରାଣ
ମଉଳା ଘରେ ଦମୟନ୍ତୀ ନିଷ୍ଟଳେ ରହେ ପୁଣ ।
ନଳ ଦମୟନ୍ତୀ ରାଜ୍ୟତେଜି ବନକୁ ଯହୁଁଗଲେ
ଭୀମରାଜା ଆଗେ ଦୂତ ଯାଇଣ କହିଲେ ।
ତୁମ୍ଭର ଝିଅ ଜ୍ୱାଇଁ ଅରଣ୍ୟେ ଗଲେ ପୁଣ
ଖେଳରେ ହାରିଲେ ନଳ ରାଜାଏ ପୁଣ ।
ଶୁଣିଣ ଭୀମରାଜା ଦୂତ ଯେ ବରଗିଲା
ଲକ୍ଷେରାଜା ପୁରକୁ ଲକ୍ଷେ ଦୂତ ଦେଲା ।
ଯାନବାହନ ଚଢ଼ିଣ ଦୂତମାନେ ଗଲେ
ବନ କନ୍ଦର ଦେଶ ବୁଲିଣ ଦେଖିଲେ ।
ରାଜ୍ୟରେ ପଶିଣ ସେ ଖୋଜିଲେ ଘରେ ଘରେ
ପାତ୍ରଙ୍କ ଉଆସ ଯେ ରାଜାଙ୍କ ନବରେ ।
କଉଳା ଘରେ ଦମୟନ୍ତୀ ରହିଅଛି ଜାଣ
ଏଥୁ ଅନନ୍ତରେ ପୁଣ ହେ ରାମରାଣ ।
ମାସେ ତେରଦିନ ସମ୍ପୂର୍ଣ୍ଣ ତାର ହେଲା
ଏମନ୍ତ ସମୟେ ଦୂତ ସେ ରାଜ୍ୟେ ମିଳିଲା ।
ଦେଶ ଘୋଷ ଖୋଜିଣ ଖୋଜି ପରଜା ଘର
ରାଜାର ନବରେ ଦୂତ ବୁଲେ ନିରନ୍ତର ।
ଦେଖିଲା ଜେମାଦେଈ ପୁରରେ ଦମୟନ୍ତୀ
ବିଚାରିଲା ବିରୂପ ହୋଇଛି ଯେ ସତୀ ।
ସାତରେଖା ଲେଖାଦେଖି ବେଗସେ ଲେଉଟିଲା
ନୀଳେନ୍ଦ୍ରି ନଳ ଛାମୁରେ ଜଣାଇଲା ।
ବୋଇଲା ତୁମ୍ଭର ପିଉସା ଭୀମ ରାଏ
ଦଇବ ବିଧାତା ଯେ ଦୁର୍ବଳ ତାକୁ ହୁଏ ।
ନଳ ରାଜା ଜ୍ୱାଇଁ ତାର ଦମୟନ୍ତୀ ଝିଅ
ଖେଳରେ ରାଜ୍ୟ ହାରି ବନରେ ଆଶ୍ରୟ ।
ଦଶମାସ ପରିଯନ୍ତେ ଏକମେଳ ଥିଲେ
ସେଠାରୁ ଅନ୍ୟ ଅନ୍ୟ ହୋଇଣ କେଣେ ଗଲେ ।
ଶୁଣିଣ ଭୀମରାଜା ହୋଇଲେ ଆଗତ
ଲକ୍ଷେ ରାଜ୍ୟକୁ ଦୂତ ଯେ ପେଷିଲା ନରନାଥ ।

ତୋର ପୁରେ ମୁହିଁ ଯେ ଆସି ଉପଗତ
ଦେଶ ଘୋଷ ଖୋଜିଣ ଯେ ହୋଇଲୁ ନିସତ ।
ତେଣୁ ଯେ ତୋହର ନବରେ ପଶିଣ ଖୋଜିଲୁ
ତୋହର ଜେମାପୁରେ ଦମୟନ୍ତୀ ଦେଖିଲୁ ।
ଏବେ ତୁ ଯାନ ସଜକର ବେଗେ ରାୟେ
ଯିବ ଏ ଦମୟନ୍ତୀ ପିତା ଘରଯାଏ ।
ଶୁଣିଣ ନୀଳାଦ୍ରୀ ରାଜନ ବେଗେ ଉଠି
ଜନନୀ ଆଗରେ ସକଳ କହିଲାଟି ।
ଶୁଣିଣ ଜନନୀ ପୁତ୍ରକୁ ଘେନି ଚଳି
ଜେମାଦେଈ ପୁରରେ ତୁରିତେ ଯାଇ ମିଳି ।
ରାଜମାତା ବୋଇଲା ଏ ଦମୟନ୍ତୀ ଅଟେ ଯେବେ
ସାତରେଖା ଦେଖିଲେ ପ୍ରତେ ଯିବି ତେବେ ।
ଯାଇଣ ରାଜାମାତା ଦମୟନ୍ତୀ କପାଳେ
ନିରେଖି ସାତ ରେଖା ଦେଖିଲା ତାହାରେ ।
ତେଣୁ ସେ ରାଜ ମାତା ମନରେ ପ୍ରତେ ଗଲା
ଦମୟନ୍ତୀକି ଚିହ୍ନି ସେ ରୋଦନ ଘୋର କଲା ।
ବୋଇଲା ସରି ଯାହାକୁ ନୁହନ୍ତି ଅପସରୀ
ସେ ରୂପ ଗୋଟି ପୁଣ ଅସାର ପ୍ରାଏ ଝଳି ।
ଶୁଣିଣ ନିଳେନ୍ଦ୍ରୀ ରାଜନ ବୋଧ କଲା
ଦଶ ବେଳେ ଏ କଥା ଘଟାଇଲା ବୋଇଲା ।
ଭଣ୍ଡାର ଫେଡିଣ ସେ ଅନେକ ଅଳଙ୍କାର
ଦମୟନ୍ତୀ ହୃଦେ ନେଇ ଖଞ୍ଜିଲା ଅପାର ।
ତେଣୁ ସେ ଦମୟନ୍ତୀ ରୂପ ବଦଳିଲା
ଶତୁ ଶତେଗୁଣ ଉଜ୍ଜ୍ୱଳ ଦିଶିଲା ।
ଯାନ ପରେ ବସିଣ ପିତାଘର ଗଲା
ବାରମାସ କଷ୍ଟ ତାର ସମ୍ପୂର୍ଣ୍ଣ ହୋଇଲା ।
ପିତାପୁରେ ଦମୟନ୍ତୀ ହୋଇଲା ପ୍ରବେଶ
ମାତାକୁ ଧରିଣ ଯେ ରୋଦନ ବିଶେଷ ।
ନଳରାଜା ଚରିତ ଭୀମରାଜା ଆଗେ କହି
ଦି ମାସ ହେଲା ଅନ୍ତର ଦମୟନ୍ତୀ କହି ।
ଏଥୁ ଅନନ୍ତରେ ଶୁଣ ହେ ଚାପଧାରୀ
ଦମୟନ୍ତୀ ଛାଡ଼ି ନଳ ବନରେ ବିହରି ।
ଅନୁକ୍ଷଣ ତୁଣ୍ଡରେ ନଳରାଜା କହି
ମଣ୍ଡପୁଁ ଛାଡ଼ି ଏଣେ ଅଇଲି ମୁଁ ଧାଇଁ ।
ସେ ସ୍ତିରୀ କେଣେ କି କରିଲା ପୁଣି
ଏମନ୍ତ ବନେ ନଳ କରଇ ଭାଳେଣି ।
ଅଜ୍ଞାନ ଘୋଟିବାକୁ ଆୟତ୍ତ ତାର ନାହିଁ
ବେନିଯୁଗ ତାହାକୁ ଘୋଟିଣ କଷ୍ଟ ଦେଇ ।
ଶୁଣିଣ ଶ୍ରୀରାମ ଯେ ମାର୍କଣ୍ଡେ ପଚାରନ୍ତି
ପିତାଘରେ ପ୍ରବେଶ ହୋଇଲା ଦମୟନ୍ତୀ ।
ପିତା ଘରେ ମିଳିବାରୁ କଷ୍ଟ ତାର ଗଲା
ନଳରାଜା ନଗରେ ଯାଇଣ କିସ କଲା ।

ମାର୍କଣ୍ଡ ବୋଇଲେ ଶୁଣହେ ରାମରାଣ
ନଳକଥା ଶୁଣିଲେ ଛାଡିବ ହେ ଅଜ୍ଞାନ ।
ସେଠାରୁ ନଳରାଜା ଯେଉଁ ରୀତି କଲେ
ଦମୟନ୍ତୀକୁ ଛାଡ଼ିଣ ବନରେ ପଶିଲେ ।
ବେନିମାସ ପର୍ଯ୍ୟନ୍ତ ବୁଲିଲା ଅରଣ୍ୟ
ଏକଦିନେ ବନପୋଡ଼ି ହେଲା ସେ ବନେ ଜାଣ ।
ଘୋଟିଲା ଅନଳ ଲାଗିଲା ତରୁ ଲତା
ଗ୍ରୀଷମ କାଳ ହେତୁ ପବନ ଯେ ଅହନ୍ତା ।
ଘୋଟିଲା ଅନଳ ଯେ ମଧ୍ୟରେ ନଳ ପୁଣ
ବିଚାରିଲା ନଳରାଜା ହୋଇଲା ମରଣ ।
ଏମନ୍ତ ସମୟରେ କର୍କଟ ଡାକ ଦେଲା
ନଳରାଜା ମୋତେ ତୁମ୍ଭେ ରଖ ହେ ବୋଇଲା ।
ମର୍କଟର ଡାକ ଶୁଣି ନଳରାଜା ଗଲେ
ମହାସର୍ପ ପାଶେ ଯାଇ ପ୍ରବେଶ ହୋଇଲେ ।
ଦେଖିଲା ଯେ ସର୍ପଗୋଟି ପର୍ବତ ସମାନ
ଡାକିଲା ରାଜା ରଖ ହେ ମୋତେ ପୁଣ ।
ନଳରାଜା ବୋଇଲେ ଅଟେହେ ମେରୁଗିରି
ମୋହର ବଳରେ ତୋଳି ନ ପାରି ।
ମର୍କଟ ବୋଇଲା ବେନିକର ତୁ ପ୍ରସାର
ତେବେ ମୁଁ କ୍ଷୁଦ୍ରରୂପେ ପଶିବି ତୋର କର ।
ଶୁଣିଣ ନଳରାଜା କର ପ୍ରସାରିଲା
କ୍ଷୁଦ୍ରରୂପ ଧରି ସର୍ପ କରରେ ପଶିଲା ।
ସର୍ପହସ୍ତେ ବସନ୍ତେଣ ନଳ ଯେ ବିରୂପ
ଯେସନେ ବିଦିତ ଚଣ୍ଡାଳ ଗୋଟିରୂପ ।
ବିରୂପ ଦେଖିଣ ନଳ ସର୍ପକୁ ପଚାରି
ତୋତେ ଛୁଇଁବାରୁ ମୋ ରୂପ ଯେ ବଦଳି ।
କର୍କଟ ବୋଇଲା ଶୁଣ ମୋ ବଚନ
ଊନମାସ ଅଜ୍ଞାନ ଘୋଟିଲା ତୋତେ ପୁଣ ।
କଳି ଦ୍ୱାପର ଦୁଇଯୁଗ ତୋତେ କଷ୍ଟ ଦେଲେ
ଦୋଷୀନୋହୁ ତୁ ଯେ ଅଦୋଷେ କଷ୍ଟ ଦେଲେ ।
ତୋହର ଆୟତରେ ପଡ଼ିଲେ ସେହୁ ପୁଣ
ତୋତେ ଯେତେ କଷ୍ଟ ଦେଇଣ ଛନ୍ତି ଜାଣ ।
ସେ କଷ୍ଟ ଭୋଗ କରିବେ ବେନିଯୁଗ
ଅନ୍ୟଥା ନୋହିବ କଦା ବୁଝ ମହାଭାଗ ।
ବରଷେ ଆଜଠାରୁ ତୋର ଯେ ଭୋଗହେଲା
ବେନିମାସ କଷ୍ଟ ତୋହର ରହିଲା ।
ବିରୂପ ହୋଇଲେ ତୋତେ ନ ଚିହ୍ନିବେ କେହି
କର୍ମଦୋଷେ ଦାସପଣେ ରହିବୁ ତୁ ଯାଇ ।
ଯେତେବେଳେ ବେନିଯୁଗ ଦେଖିବୁ ପ୍ରତ୍ୟକ୍ଷେ
ତାଙ୍କଠାରେ ମୋର ବିଷ ଘାରିବ ପ୍ରତ୍ୟକ୍ଷେ ।
ଏତେ ବୋଲି କର୍କଟ ଯେ ନିଜରୂପ ହେଲା
ନଳରାଜା ଛୁଅନ୍ତେ ସେ ପାପରୁ ନିସ୍ତରିଲା ।

ଶୂନ୍ୟରୁ ବିମାନ ଯେ ଆସିଲା ତାର ପାଶ
ଦେଖିଣ କର୍କଟ ଯେ ମନରେ ହରଷ ।
ନଳକୁ ବେନି ବସ୍ତ୍ର କାଢ଼ିଣ ସେ କର୍କଟ
ବୋଇଲା ଏ ବେନି ବସ୍ତ୍ର ସମ୍ଭାଳି ରଖ ଝଟ ।
ଯେତେବେଳେ ତୋର ରୂପକୁ ଇଚ୍ଛା ହେମ
ସେତେବେଳେ ନଳରାଜା ଏ ବସ୍ତ୍ର ପିନ୍ଧିବ ।
କର୍କଟ ବୋଇଲା ତୁ ଯେ ନଖରେ ଘାଇତ
ଶୁଣିଣ ନଳରାଜା ଆଣିଲା ତୁରିତ ।
ଡାହାଣ କର ଅଙ୍ଗୁଷ୍ଠି ନଖରେ ନେଇ ଭରି
ଲୁଚିଲା ବେନି ବସ୍ତ୍ର ନଖରେ ରହେ ଜଡ଼ି ।
ଦେଖିଣ ନଳରାଜା କର୍କଟେ ପଚାରିଲା
କେଉଁ ଦୋଷରୁ ତୋର ସର୍ପରୂପ ହେଲା ।
କର୍କଟ ବୋଇଲା ତୁମ୍ଭେ ଶୁଣ ହେ ନୃପବର
ସ୍ୱର୍ଗର ଗନ୍ଧର୍ବ ମୁଁ ଯେ ଇନ୍ଦ୍ରର କୁମର ।
ଏକ ଦିନେ ମର୍ତ୍ତ୍ୟକୁ ସେ କରନ୍ତେ ଗମନ
ବଦନ୍ତୀ ଋଷିଙ୍କୁ ମୁଁ ଦେଖିଲି ସେ ବନ ।
ବାରବନ୍ନ ଋଷି ଯେ ଭିନ୍ନଭିନ୍ନ
ସେ ଋଷି ଦେଖିଣ ହାସ୍ୟ କଲି ମୁଁ ସେ ସ୍ଥାନ ।
କ୍ରୋଧରେ ଋଷିମୋତେ ଚାହିଁଣ ଶାପ୍ୟ ଦେଲେ
ମର୍ତ୍ତ୍ୟପୁରେ ସର୍ପ ହୋଇ ରହ ସେ ବୋଇଲେ ।
ତାଙ୍କଠାରୁ ଶୁଣିଣ ହୋଇଲି ହତଜ୍ଞାନ
ବୋଇଲି ଋଷି ମୋତେ କହ ହେ ପରିତ୍ରାଣ ।
ନିଉନ ହେବାକୁ ସେ ଋଷି ଆଜ୍ଞା ଦେଲେ
ନଳରାଜା ଛୁଇଁଲେ ମୁକତ ହେବୁ ଭଲେ ।
ତିନିଯୁଗ ଗଲେ ଯେ ନଳ ହେବେ ଜାତ
ବନକୁ ଆସିବେ ସେ ଅଜ୍ଞାନ ଆଚ୍ଛାଦିତ ।
ସେତେକାଳ ପର୍ଯ୍ୟନ୍ତ ଏ ବନରେ ଥିବୁ
ଯେତେବେଳେ ଏ ବନରେ ଅଗ୍ନି ଲାଗେ ବାବୁ ।
ସେତେବେଳେ ନଳକୁ ତୁ ସୁମରିବୁ ଜାଣ
ତୋର ଆଗେ ଆସିଣ ମିଳିବେ ରାଜନ ।
ନଳରାଜା ପଚାରିଲେ ବୁଝାଇ ତୁ କହିବୁ
ନୀଳବସ୍ତ୍ର ଦୁଇ ଦେଇ ସ୍ୱର୍ଗକୁ ଚାଲିଯିବୁ ।
ଶୁଣିଣ ନଳରାଜା ହରଷ ମନ ହେଲେ
ଗନ୍ଧର୍ବ ସୁଚିତ୍ତରେ ସ୍ୱର୍ଗପୁର ଗଲେ ।
ସେଠାରୁ ଦାବାନଳ ଲିଭିଲା ସେ ବନ
ସେ ବନ ତେଜି ନଳ କଲେକ ଗମନ ।
ଅଯୋଧ୍ୟା ନବରେ ନଳ ହୋଇଲେ ପରବେଶ
ନର ନାରୀ ଦେଖିଣ କରନ୍ତି ତାଙ୍କୁ ହାସ୍ୟ ।
ସେ କାଳେ ଅଯୋଧ୍ୟା ରାଜା ଋତୁପନ୍ନ
ସିଂହଦ୍ୱାରେ ବିଜୟ ହୋଇଲେକ ପୁଣ ।
ଋତୁପନ୍ନ ରାଜା ଆଗେ ଖୁଣ୍ଟିଆ ବେଗେକହି
ଏକି ନର ତୋର ସିଂହଦ୍ୱାରେ ରହି ।

ପଚାରିଲେ କିଛିହିଁ ନ କହେ ନରସାଇଁ
ବୋଲଇ ରାଜାଙ୍କୁ ମୁଁ ଦେଖିବି ଯାଇ ।
ଶୁଣିଣ ଋତୁପନ୍ନ ଦୂତରେ କହେ ବାଣୀ
ଘେନି ଆସ ତାକୁରେ ଡାକିରେ ଏଇକ୍ଷଣି ।
ନୃପତିର ଆଜ୍ଞା ଶୁଣି ବେଗେ ଆସି ଦୂତ
ନଳକୁ ଘେନିଗଲା ରାଜା ନିକଟସ୍ଥ ।
ଦେଖିଣ ଋତୁପନ୍ନ ନଳ ପଚାରି
କେଉଁ ଦେଶେ ଘର ଯେ ଅଟଇ ତୁମ୍ଭରି ।
ନଳରାଜା ବୋଇଲେ ଘର ବଇଧୃତି ପୁରେ
ନଳରାଜା ବାଜିପାଳ ଅଟଇ ମୁଁ ଭଲେ ।
ରାଜାର ପାଟ ଘୋଡ଼ା ସାଇତି ମୁଁ ଯେ ରଖି
ତେଣୁ ସେ ନଳରାଜା ମୋଠାରେ ହୋନ୍ତି ସୁଖୀ ।
ଦଇବ ଅବଳେ ରାଜା ରାଜ୍ୟ ଯେ ହରାଇଲେ
ଜୁଆଖେଳେ ପୁଷ୍କର ରାଜା ଯେ ଜିଣିଲେ ।
ତେଣୁ ସେ ନଳରାଜା ଦମୟନ୍ତୀଙ୍କୁ ଘେନି
ବନରେ ବନବାସୀ ହୋଇଲେ ଯାଇ ପୁଣି ।
ରାଜା ଯିବାରୁ ଆମ୍ଭେ ଯେତେ ବାଜିପାଳ
ସେ ଦେଶ ଛାଡ଼ି ଆମ୍ଭେ ଅଇଲୁ ସକଳ ।
ଅନ୍ୟ ଅନ୍ୟ ଦେଶକୁ ସମସ୍ତେ ଚଳିଗଲେ
ତେଣୁ ଏ ଦେଶେ ଆସି ପ୍ରବେଶ ହେଲୁ ଭଲେ
ଶୁଣିଣ ଋତୁପନ୍ନ ବୋଇଲେ ବଚନ
ନଳ କିମ୍ବା ପୁଷ୍କରକୁ କଲେ ଭିନ୍ନ ଭିନ୍ନ ।
ରାଜାର ନାମ ଗୋଟି ଜଗତେ ପ୍ରକାଶ
ସେ ନଳରାଜା କିମ୍ପା ହୋଇଲେ ଅଦୃଶ୍ୟ ।
ନଳରାଜା ବୋଇଲେ ସେ ଧର୍ମରେ ଆତଜାତ
ଧର୍ମହେବ ବୋଲି ତେଜିଲେ ରାଜତ୍ୱ ।
ଋତୁପନ୍ନ ବୋଇଲେ କେତେ ତୋ ବରତନ
ପେଟ ପୋଷିବି ମୁଁ ଯେ ବୋଲେ ନଳରାଜନ ।
କାହାରି ସଙ୍ଗ ନୋହି ଆପଣଙ୍କ ସଙ୍ଗେ ରହି
ଛଅଗୋଟି ବାଜି ମୋତେ ଦେବ ନୃପସାଇଁ ।
ଋତୁପନ୍ନ ବୋଇଲେ ଏ କଥା ମୋର ମୂଳ
ଅଶ୍ୱକୁ ପାଳିଣ ତୋର ପେଟ ପାଳ ।
ଦୁର୍ବଳ ଅଶ୍ୱଶାଳେ ନେଇଣ ସେ ରଖିଲେ
ଉତ୍ତମ କରି ତାକୁ ପଢ଼ି ଯେ ଖଞ୍ଜିଲେ ।
ଏଥୁ ଅନନ୍ତରେ ଶୁଣ ହେ ରାମରାଣ
କର୍ମଦୋଷେ ନଳରାଜା କାଟେ ଘାସ ପୁଣ ।
କର୍ମଦୋଷେ ବନବାସୀ ହୋଇଣ ଯେ ତୁମ୍ଭେ
ଦମୟନ୍ତୀ ଭଳି ସୀତା ହୋଇଲା ଯେ ଏବେ ।
ଶ୍ରୀରାମ ବୋଇଲେ ନଳ ସେଠାରୁ କିସ କଲା
ମାର୍କଣ୍ଡ ବୋଇଲେ ଶୁଣ ଦଶରଥ ବଳା ।
ଏମନ୍ତ ଯେ ଛଅଦିନ ସେଠି ବହିଗଲା
ଋତୁପନ୍ନ ନାରୀକୁ ଯେ ସର୍ପ ହିଁ ଦଂଶିଲା ।
କଙ୍କଲତା ରାଣୀ ଜୀବନ ତେଶେ ଗଲା
ତେଣୁ ଋତୁପନ୍ନ ରାଜା ମନରେ ଦୁଃଖ ହେଲା ।
ସେ ରାଣୀ ତାହାର ଅଟଇ ଧର୍ମଶୀଳ
ଏହାକୁ ଶମଶାନେ ଘେନିଣ ବେଗେ ଚଳ ।
ଦହନ କରିବେ ବୋଲି ସେ ସ୍ଥାନକୁ ଗଲେ
ସେତେବେଳେ ନଳ ଯେ ଅଶ୍ୱକୁ ଘେନି ମିଳେ
ଅଶ୍ୱକୁ ପାଣି ଦେଇ ସେଠାରେ ପଚାରି
କିମ୍ପାଇଁ ଏଠାରେ ଗହଳ ତୁମ୍ଭେ କରି ।
ଧ୍ୱଂସ କଲାସର୍ପ ଯେ କହିଲେ ବଚନ
ସର୍ପ ଧ୍ୱଂସିବାରୁ ପାଟରାଣୀ ଯେ ଅଜ୍ଞାନ ।
ନଳରାଜା ବୋଇଲେ ସେ ନାହାନ୍ତି ଯନ୍ତ୍ରକାରୀ
ଗାରେଡ଼ି ପଢ଼ିଣ ନ ଦେଲେ ବିଷଝାଡ଼ି ।
ଧ୍ୱଂସଲୋକ ବୋଇଲା କେ ରାଜାର ଘରେ ପୁଣ
କାହୁଁ ପଶିବାକୁ ଯେ ଅଟଇ ଭାଜନ ।
ନଳରାଜା ବୋଇଲେ କି ନଥିଲେ ଦେନଲାଗି
ଧ୍ୱଂସଲୋକ ବୋଲେ ସେଠି ନାହାନ୍ତି ଅନୁଭବୀ ।
ନଳରାଜା ବୋଲେ ତୁମ୍ଭେ ହୁଅ ଯେ ଅନ୍ତର
ରାଜାର ପାଟରାଣୀ ସେ ଜୀଇବେ ଏଥର ।
ଶୁଣିଣ ଧ୍ୱଂସଲୋକ ଅନ୍ତର ହୋଇଗଲେ
ନଳରାଜା ନିବିଡ଼ ଯାନ ଯେ ମିଟାଇଲେ ।
ଗାରେଡ଼ି ମନ୍ତ୍ର ପଢ଼ି ବିଷକୁ ଝାଡ଼ି ଦେଲେ
ନିଦ୍ରା ଭାଙ୍ଗିଲା ପ୍ରାୟ ରାଣୀ ଯେ ଉଠିଲେ ।
ଶତବଳ ଘେନିଣ ଉଠିଲେ ପାଟରାଣୀ
ସ୍ୱପନ ପ୍ରାୟେ ସେହୁ ମୃତ୍ୟୁକୁ ଜାଣି ।
ଯାନର ବାହନକୁ ସେ ନଳରାଜା କହି
ପାଟରାଣୀକୁ ଘେନି ନବରେ ଚଳ ତୁହି ।
ଶୁଣିଣ ଯାନ ଘେନି ବାହନମାନେ ଗଲେ
ନବରେ ଶବ୍ଦ ହେଲା ରାଣୀ ଯେ ଜୀଇଲେ ।
କେ ବୋଲେ ବାଜିପାଳ ଜୀଆଇ ଦେଲା ପୁଣି
କେ ବୋଲଇ ନଳରାଜା ରଖିଥିଲା ଜାଣି ।
କେ ବୋଲଇ ଭଲଯୋଗେ ହୋଇଲା ପ୍ରବେଶ
କେ ବୋଲଇ ରାଜନ ଯେ ହୋଇବ ହରଷ ।
ଏମନ୍ତ ଯେ କୁହାକୁହି ନରନାରୀ ହୋନ୍ତି
ନବର ଭିତରେ ରାଣୀ ଯାଇଣ ମିଳନ୍ତି ।
ଶୁଣିଣ ଋତୁପନ୍ନ ରାଜା ବେଗେ ଗଲେ
ପାଟରାଣୀକି ଦେଖି ହରଷ ମନ ହେଲେ ।
ସକଳ ବୃତ୍ତାନ୍ତ ନାରୀ କହିଲେ ବୁଝାଇ
ଶୁଣିଣ ଋତୁପନ୍ନ ଅଇଲେ ପିଠି ଦେଇ ।
ନଳକୁ ଡାକି ରାଜା ପ୍ରଶଂସା ବହୁ କଲେ
ମୋହର କୁଳଧର୍ମ ରଖିଲୁ ବୋଇଲେ ।
ଘୃତଅନ୍ନ ଦେଇଣ କଲେକ ମାଜଣା
ସେଦିନୁ ନଳରାଜା ନୋହିଲେ ଗଞ୍ଜଣା ।

ବାରଗୋଟି ଅଶ୍ୱଶାଳ ଉପରେ ସରଦାର
ହୋଇଣ ନଳରାଜା ରହିଲେ ସେଠାର ।
ଏଥିଅନନ୍ତରେ ଶୁଣ ହେ ରଘୁନାଥ
ଅଯୋଧ୍ୟାରେ ପ୍ରବେଶ ଭୀମରାଜା ଦୂତ ।
ଦେଶ ଘୋଷେ ପଶିଣ ନଗରେ ପଶିଲା
ନଗରେ ଖୋଜିଣ ଅଶ୍ୱଶାଳରେ ପଶିଲା ।
ଯେଉଁଠାରେ ନଳରାଜା କରୁଛି ବିଶ୍ରାମ
ସେଠାରେ ଭୀମରାଜା ଦୂତ ଉପସ୍ଥାନ ।
ରାତ୍ରରେ ନଳରାଜ ଓଙ୍କାର ଶବଦ
କେଣେ ଗଲା ନାରୀ ଯେ ହୋଇଲା ଅଭେଦ ।
ମଣ୍ଡପଠାରୁ ନାରୀ କେଣିକି ପୁଣ ଗଲା
ରଜନୀ ଅର୍ଦ୍ଧଠାରେ ଅନ୍ତର ସେ ହେଲା ।
ଦଇବ ବଳରେ ଯେବେ ପାଞ୍ଚଣ ଥିବ ସେହି
ଦେଖିଲେ ଲକ୍ଷେ ଚମ୍ପା ଶିବଙ୍କୁ ଦେବି ମୁହିଁ ।
ଶୁଣିଣ ଭୀମରାଜା ଦୂତ ମନେ ଭାଳି
ଏ ପୁରୁଷ ବଚନ କହଇ ଭିନ୍ନ କରି ।
ଭୀମରାଜା ଦୂତ ଯେ ମନେ ବିଚାର
ରାତ୍ରରେ ନିଦ୍ରା ନାହିଁ ଓଙ୍କାର ଶବ୍ଦ ତାର ।
ନିରେଖି ଭୀମରାଜା ଦୂତ ତାକୁ ଚାହିଁ
ସଙ୍ଗ ଲୋକଙ୍କୁ ପଚାରେ ପୁଣ ତହିଁ ।
ଏ ବାଜୀପାଳ କିମ୍ପା ଏମନ୍ତ ପୁଣ ହୋଇ
ସଙ୍ଗଲୋକ ବୋଇଲେ ସ୍ୱଭାବ ତାର ଏହି ।
ଭୀମରାଜା ଦୂତ କହେ ସଦା ଏ ପ୍ରକାର
ସଙ୍ଗଲୋକ ବୋଇଲେ ନୁହଇ ଏ ପୁରର ।
ବଇଧିତି ପୁରରେ ନଳରାଜା ଥିଲେ
ସେ ବନ ଯିବାରୁ ଏ ସ୍ଥାନକୁ ଅଇଲେ ।
ସେ ନଳ ରାଜା ଅଟଇ ଅଶ୍ୱପାଳ
ତେଣୁ ଏ ରାଜା ରଖେ ହୋଇଣ ତୋଷଭର ।
ଖୋଜିଯିବା ସେ ଦୂତକୁ କହି
କେତେଦିନ ହେଲା ଏ ପୁରରେ ଛନ୍ତି ରହି ।
ସେ ବୋଇଲେ ଅଳପ ଦିନ ହେବ ଦୁଇମାସ
ଶୁଣିଣ ଦୂତମାନେ ମନରେ ହେଲେ ହର୍ଷ ।
ଅଯୋଧ୍ୟା ତେଜିଣ ଦୂତ ବେଗେ ଚଳିଗଲା
କର୍ଣ୍ଣାଟ ଦେଶରେ ଯାଇ ପ୍ରବେଶ ହୋଇଲା ।
ଚାରିଦିଗ ଦୂତ ଯେ ଅଇଲେ ଫେରିକରି
ନ ଦେଖିଲେ ନଳରାଜା ପରସ୍ପରେ ପଚାରି ।
ଅଯୋଧ୍ୟା ଯିବା ଦୂତ ରାଜା ଆଗେ କହି
ନଳରାଜା ନ ପାଇଲି ଅଯୋଧ୍ୟା ଖୋଜିମୁହିଁ ।
ଋତୁପର୍ଣ୍ଣ ରାଜାର ଅନେକ ବାଜିପାଳ
ଅଶ୍ୱଶାଳେ ରହିଣ ବୁଝିଲି ସକଳ ।
ଏକ ବାଜିପାଳ ରାତ୍ରରେ ହୁଏ କଥା
ମଣ୍ଡପଠାରୁ ସ୍ତିରୀ କେଣିକି ଗଲା ଏକା ।

ରଜନୀ ଅର୍ଦ୍ଧଠାରୁ ଅନ୍ତର ଯେ ହେଲା
ସେହୁ ନାରୀ କିସ କଲା କେଣିକି ଗଲା ।
କେବଳ ଏହିକଥା ଶୁଣିଲି ସେଠାରେ
ପଚାରିଲି ସଙ୍ଗଲୋକେ କି କହୁ ଏହାରେ ।
ସେ କହିଲେ ସ୍ୱଭାବ ଅଟଇ ଏହାର
ଅଇଲା ଦିନୁ ରାତ୍ରରେ ଭାଷଇ ଓଙ୍କାର ।
ତାଙ୍କଠାରୁ ମୁଁ ଯେ ତାହାଙ୍କୁ ନିରେଖିଲି
ନଳରାଜା ରୂପହିଁ କେବେ ନ ଦେଖିଲି ।
ଶୁଣିଣ ଭୀମରାଣୀ ବୋଇଲେ ବେଗେ ଯାଅ
କେମାଦେଈ ଦମୟନ୍ତୀ ଡାକିଣ ଏହା କହ ।
ଶୁଣିଣ ଦୂତବର କେମାପୁର ଗଲା
ଦମୟନ୍ତୀ ଆଗରେ ବୃତ୍ତାନ୍ତ କହିଲା ।
ଶୁଣିଣ ଦମୟନ୍ତୀ ଯେ ମନରେ ବିଚାରିଲେ
ନିଶ୍ଚୟ ନଳରାଜା ବିରୂପ ସେ ହେଲେ ।
ଉପାୟ କରିଣ ବୁଝିବା ସଂପ୍ରତେ
ବିଚାରି ଦମୟନ୍ତୀ ଯେ ଦୂତକୁ ନିଶ୍ଚିତେ ।
ଧନରତ୍ନ ଆଣିଣ ପୁଣି ଦେଲେ
ଅଯୋଧ୍ୟା ନଗରକୁ ଯାଅ ତୁ ବୋଇଲେ ।
ଯେଉଁଦିନ ପ୍ରବେଶ ହୋଇବୁ ଅଯୋଧ୍ୟା
ଋତୁପର୍ଣ୍ଣ ରାଜାଙ୍କୁ ବାରତା କହ ସିଧା ।
ବୋଲିବୁ ନଳରାଜା ଘରଣୀ ବଡ଼ ତୋର
ନଳରାଜା ନ ଦେଖି କଲା ସେ ସ୍ୱୟମ୍ବର ।
ତୁମ୍ଭେଗଲେ କଥା ହେବ ଦ୍ୱିତୀୟ ସ୍ୱୟମ୍ବର
ସକଳ ରାଜା ଆସି ମିଳିଲେ ସେହି ପୁର ।
ବୋଇଲେ ଦିନ ଯେ ଘୋଟି ମୁଣ୍ଡ ପୁଣ
ଏକା ଦିନକରେ କେହ୍ନେ କରିବି ଗମନ ।
ତୁମ୍ଭେ ତାଙ୍କୁ ବୋଲିଣ ଯେ ବେଗହୋଇ ଆସ
କୁଳଧର୍ମ ରଖିବାକୁ ଯେବେ ଅଛି ଆଶ ।
ଶୁଣିଣ ଦୂତବର ଯେ ବେଗେ ଚଳିଗଲା
ବେନିମାସେ ଅଯୋଧ୍ୟାରେ ପ୍ରବେଶ ହୋଇଲା ।
ଋତୁପର୍ଣ୍ଣ ରାଜାଙ୍କୁ କହିଲା ଯାଇ ପୁଣ
ଦମୟନ୍ତୀ ଦ୍ୱିତୀୟ ସ୍ୱୟମ୍ବର କାଳ ଜାଣ ।
ତୁମ୍ଭେ ଗଲେ ଅନ୍ୟକେହି ନପାରେ ଯେ ନେଇ
ତୁମ୍ଭର ସମାନେ ସଂସାରେ କେହି ନାହିଁ ।
ଶୁଣିଣ ଋତୁପର୍ଣ୍ଣ ହୋଇଲା ବିକଳ
ବୋଇଲେ ଏତେ ବିଳମ୍ବ କିମ୍ପା ତୋର ।
ଦୂତ ବୋଇଲା ବାଟେ ମୁଁ ହୋଇଲି ଦୁଃଖିତ
ତିନିମାସ ହେଲା ଅଇଲି ମୁଁ ଜାଣତ ।
ଋତୁପର୍ଣ୍ଣ ରାଜା ବାଜୀପାଳଙ୍କୁ ଡାକି
ଏକଦିନେ ଶତେଯୋଜନ ପଥେକ ଯିବକି ।
ବାଜୀପାଳ ବୋଇଲେ ନୁହଇ କଳିତ
ଯାନ ଘେନି ଶତେ ଯୋଜନ ଲଙ୍ଘିବ କିଏ ପଥ ।

ଶୁଣିଣ ଋତୁପର୍ଣ୍ଣ ମଉନ ହୋଇଲା
ନଳରାଜା ଋତୁପର୍ଣ୍ଣ ରାଜାକୁ କହିଲା ।
ବୋଇଲା ଓଳିକରେ ଯାନ ମୁଁ ବାହିନେବି
ରଥ୍ ସାରଥ୍ ଆନନ୍ଦେ ବୋହିବି ।
ଶୁଣିଣ ଋତୁପର୍ଣ୍ଣ ଭିତର ପୁର ଗଲା
କଙ୍କଲତା ରାଣୀକୁ ସମସ୍ତ ସମ୍ଭାଦିଲା ।
ବୋଇଲା ଦମୟନ୍ତୀ ଯେ ନଳର ଘରଣୀ
ନଳକୁ ନ ଦେଖି ବିହ୍ୱଳ ମତି ପୁଣି ।
ଦ୍ୱିତୀୟ ସ୍ୱୟମ୍ବର ସେ ସତୀ ମନେକଲା
ତେଣୁସେ ମୋ ପୁରକୁ ଦୂତ ବରଗିଲା ।
ଏ ରଜନୀ ପାହିଲେ ଦ୍ୱିତୀୟ ସ୍ୱୟମ୍ବର
ଏଥକୁ ଉପାୟ ଯେ ନୋହିଲା ମୋହର ।
ବାଜୀପାଳମାନଙ୍କୁ ଡାକି ପଚାରିଲି
କାହାର ଯିବାର ଯେ ଆୟତ ନ ପାଇଲି ।
ସମସ୍ତେ ବୋଇଲେ ଅଟଇ ଦେଶ ଦୂର
ଶତେଯୂଣ ବାଟ ଯେ ଅଗମ୍ୟ ବନ ଘୋର ।
ଏକ ଦିନେ ଯେଉଁ ଅଶ୍ୱ ଗମନ କରିବ
ଦେବତା ହେଲେ ମଧ ଏହା ଅସମ୍ଭବ ।
ଶୁଣିଣ ମୋର ମନ ବିଚଳିତ ହେଲା
ଆପଣା ଦୁଃଖମୋର ପର ନେବ ଭଲା ।
ତ୍ରିପୁରେ ଦମୟନ୍ତୀକି ସୁନ୍ଦରେ କେହି ନାହିଁ
ଜଗତମୋହିନୀ ଯେ ସୁଲକ୍ଷଣୀ ସେହି ।
ରାଜାଠାରୁ ଶୁଣି ରାଣୀ କହନ୍ତି ବଚନ
ଚତୁରୀ ନାରୀ ସେ ପୁଣହେ ରାଜନ ।
ସ୍ୱୟମ୍ବର ନୁହେଁ ଉପାୟ ଏଥେ ଅଛି
ତୁମ୍ଭେ ଗଲେ ଉପାୟ କରିବ ସେ କିଛି ।
କୁମ୍ଭ ଘେନିଣ ପୁଷ୍କର ଯଶ କରି
ପୁତ୍ରକୁ ରାଜା କରି ରହିବ ସେ ସୁନ୍ଦରୀ ।
ମନରେ ବିଚାରିଲା ଅଯୋଧ୍ୟା ନରନାଥ
ମୋହର ଦିଅର ନୁହନ୍ତି ଅନ୍ୟଗୋତ୍ର ।
ଏମନ୍ତ ବିଚାରି ଦୂତକୁ ଅଛି ପେଶି
ତୁମ୍ଭର ବଳ ବପୁ ଜାଣିଲା ସ୍ଥିର କିଛି ।
ଯେବେ ତୁମ୍ଭେ ଦିନକେ ସେ ପୁର ଯାଇକରି
ତେବେ ସେ ପରିଡା ତୁମ୍ଭଙ୍କୁ କରି ନାରୀ ।
ଯାଅ ତୁମ୍ଭେ ବେଗ ଯେ ବିଳମ୍ବ ନ କରି
କାଲି ନ ଗଲେ ତୁମ୍ଭଙ୍କୁ ମଣିବ ହତଶିରୀ ।
ଶୁଣିଣ ଋତୁପର୍ଣ୍ଣ ରାଣୀର ଆଗେ କହି
ଯେଉଁ ବାଜୀପାଳ ତୁମ୍ଭଙ୍କୁ ଜୀବ ଦେଇ ।
ସେହି ବାଜୀପାଳ କହିଲା ପୁଣ ମୋତେ
ଏକା ଓଳିକରେ ରଥ ନେବି ମୁଁ ତୁରିତେ ।
ଶୁଣିଣ ପାଟରାଣୀ ହରଷ ହୋଇଲା
ବେଗେ ଯାଅବୋଲି ତାଙ୍କୁ ମେଲାଣି ସେ ଦେଲା ।

ଶୁଣିଣ ଋତୁପର୍ଣ୍ଣ ଅଇଲା ଖରକରି
ପାତ୍ରମନ୍ତ୍ରୀ ଡକାଇ କହିଲା ବୋଧ କରି ।
ବୋଇଲା ରାଜ୍ୟଘୋଷ ସମ୍ଭାଳ ହେ ତୁମ୍ଭେ
ମୁହିଁ ଯାଉଅଛି କର୍ଣ୍ଣାଟ ଦେଶ ଏବେ ।
ଏମନ୍ତ କହିଣ ସେ ନଳକୁ ଡାକିଲେ
ରଥ ସଜ କର ବୋଲି ଆଜ୍ଞା ଦେଲେ ।
ଶୁଣିଣ ବାଜୀପାଳ ରଥ ସଜ କଲା
ରଥପରେ ଯାଇଣ ନୃପତି ବସିଲା ।
ନେଇଣ ଛଅଗୋଟି ଅଶ୍ୱ ଯୋଚି
ସାରଥ୍ ହୋଇଣ ନଳ ବସିଲାଟି ।
ଅଶ୍ୱମନ୍ତ୍ର ଅଶ୍ୱକର୍ଣ୍ଣରେ ଶୁଣା ଇଲା
ଯାଆବୋଲି ଅଶ୍ୱକୁ ନଳ ଆଜ୍ଞା ଦେଲା ।
ଶତେ ଯୂଣ ପଥ ଯେ କର୍ଣ୍ଣାଟ ନଗ୍ର ପୁଣ
ସପ୍ତଘଡ଼ି ବେଳରେ ପ୍ରବେଶର ଜାଣ ।
ଶୁଣିଣ ଅଶ୍ୱମାନେ ଯେ ଉଗ୍ରମୂର୍ତ୍ତି ହେଲେ
ଯାନ ଘେନି ଶୂନ୍ୟେ ଶୂନ୍ୟେ ଗମନ କରିଲେ ।
ବେନିଶତ ଯୋଜନ ଗଲେକ ପାରହୋଇ
ଋତୁପର୍ଣ୍ଣ କନ୍ଧରୁ ବସନ ଖସଇ ।
ଦେଖିଣ ରାଜନ ଯେ ନଳକୁ କହେ ବାଣୀ
ବସନ ଖସିଲା ମୋର ରଖ ହେ ରଥପୁଣି ।
ଶୁଣିଣ ନଳ କହେ ଶୁଣହେ ରାଜନ
ଶତ କୋଷ ଛାଡ଼ି ଅଇଲୁ ବସନ ।
ଏତେ କହିଣ ଯାନ ଲେଉଟା ସେ କଲା
ଶତକୋଶ ଅନ୍ତରେ ସେ ବସନ ଦେଖିଲା ।
ତକ୍ଷଣେ ବସନ ଭୂମିରୁ ତୋଳି ଆଣି
ନଳକୁ ଚାହିଁଣ କହେ ରାଜାପୁଣି ।
କି ହୋ ମହାତ୍ମା ଜାଣକି ଅଶ୍ୱ ମନ୍ତ୍ର
ନୋହିଲେ ଅଶ୍ୱ କିମ୍ପା ହୋଇଲେ ବେଗବନ୍ତ ।
ନଳ ରାଜା ବୋଇଲେ ଜାଣଇ ମୁହିଁ ପୁଣ
ଋତୁପର୍ଣ୍ଣ କହିଲେ ପାଲଟ କରି ଜାଣ ।
ନଳ ରାଜା କହିଲେ କିସ ଯେ ଜାଣ ଏବେ
ଋତୁପର୍ଣ୍ଣ ବୋଇଲେ ଶୁଣ ତୁ ସଦଭାବେ ।
ଖେଳର ସଞ୍ଚାତ ଯେ ପାଶକୋଠି ଜାଣ
ସେମାନଙ୍କଠାରେ ମୋର ଅଛଇ ମନ୍ତ୍ରେଣ ।
ସେ ମନ୍ତ୍ର ଜାଣିଣ ଯେ ଖେଳରେ ହୁଏ ଜିଣା
ରାଜ୍ୟ ଘୋଷ ଜିଣନ୍ତା ସେ ମନ୍ତ୍ର କରୁଣା ।
ଏଥୁ ଅନନ୍ତରେ ଶୁଣ ହେ ତେବେ
ଚାରିଯୁଗ ଜିଣିବାକୁ ମନ୍ତ୍ରହିଁ ଅଛି ହୃଦେ ।
ନଳ ରାଜା ବୋଇଲେ ଶୁଣ ହେ ରାଜନ
ମୋର ଅଶ୍ୱମନ୍ତ୍ର ଯେ ପରୀକ୍ଷା ଅଛି ପୁଣ ।
ବେନି ଶତକୋଶ ତ ବେନି ଘଡ଼ିକରେ ଆସି
ଶତେକକୋଶେ ତୋହର ବସନ ଖସିଲାଟି ।

ଲେଉଟରେ ତିନିକୋଶ ହେଲା ସରି
ତିନିଘଡ଼ି ବେଳ ଯେ ଦେଖ ହେ କୃପଧାରୀ ।
ତୋର ମନ୍ତ୍ର ପରୀକ୍ଷା କଲେ ପ୍ରତେ ଯିବ
ଋତୁପନ୍ନ ବୋଇଲା ଓହ୍ଲାଅ ତୁ ଢବ ।
ଏ ସ୍ଥାନେ ହରିଡ଼ା ବାହାଡ଼ା ବୃକ୍ଷ ପୁଣ
ସେ ବୃକ୍ଷ ମୂଳେ ମନ୍ତ୍ର କର ତୁ ଅଧ୍ୟୟନ ।
ତେବେ ତରିବୁ ଯୁଗ ପାଇବୁ ଭେଟ
ଶୁଣିଣ ନଳ ରାଜା ମନରେ କଲା ଆଣ୍ଟ ।
ରଥ ଉପରୁ ଉତୁରି ବେଗେ ଗଲା
ହରିଡା ଗଛ ମୂଳେ ମନ୍ତ୍ର ସୁମରିଲା ।
ତତ୍‌କ୍ଷଣେ ହୃଦରୁ କଳି ଯେ ଦ୍ୱାପର
ବାହାର ହୋଇଣ ପ୍ରବେଶ ଆଗର ।
ଦେଖିଣ ନଳରାଜା ମନ୍ତ୍ର ପୁଣି ଜପି
ସତ୍ୟ ତ୍ରେତୟା ପୁଣ ପ୍ରବେଶ ହୁଅନ୍ତି ।
ଚାରିଯୁଗ ଦେଖିଣ ନଳ ଯେ ହେଲା ତୋଷ
ସତ୍ୟଯୁଗକୁ ପଚାରେ ନଳ ନରେଶ ।
ତୁମ୍ଭ କିମ୍ବା ମୋର ପୁରେ କଲ ଚକରାଳ
କେଉଁ ଦୋଷ ମୋର କହ ମୋ ଆଗର ।
ସତ୍ୟଯୁଗ ବୋଇଲେ ଶୁଣ ହେ ନଳରାଜା
କଳି ଦ୍ୱାପର ଦୁହେଁ ଭଗାରି ତୋର ଯା ।
ଶୁଣିଣ ନଳରାଜା ଆଣିଲା କଳି ବେତ
ବୋଇଲା ଏବେ କାଳ ଯେ ପ୍ରତ୍ୟକ୍ଷ ତ ।
ଏତେ ବୋଲି ନଳରାଜା ଆଗେ କଳିକୁ ବାନ୍ଧି
ବାହାଡ଼ା ବୃକ୍ଷରେ ନେଇଣ ବାନ୍ଧେ ରୁନ୍ଧି ।
ହରିଡ଼ା ବୃକ୍ଷରେ ଦ୍ୱାପର ନେଇ ବାନ୍ଧେ
ବେନିଯୁଗ ବେନି ବୃକ୍ଷେ ହେଲେ ଛନ୍ଦେ ।
ସେଠାରୁ ନଳରାଜା କର୍ଣ୍ଣାଟ ସୁମରିଲା
ଦାବାନଳ ଗରଳ ଦେହରୁ ବାହାରିଲା ।
ଦେଖିଣ ନଳରାଜା ତାହାଙ୍କୁ ଆଜ୍ଞାଦେଲା
ଏ ଦୁଇ ଯୁଗ ଅଙ୍ଗ ପୀଡ଼ୁ ତୁ ବୋଇଲା ।
ଶୁଣିଣ ଗରଳ ବିଷ ବେଗେ ଚଳିଗଲେ
କଳି ଦ୍ୱାପର ଦୁହିଙ୍କ ଅଙ୍ଗେ ବିଜେକଲେ ।
ପୀଡ଼ିଲା ବିଷ ଜ୍ୱାଳା ହୋଇଲେ ବିକଳ
ନଳରାଜା ହୃଦରେ ଅଜ୍ଞାନ ହେଲା ଦୂର ।
ସେଠାରୁ ନଳ ରାଜାର ସୁବୁଦ୍ଧି ପ୍ରକାଶ
ସତ୍ୟ ତ୍ରେତୟା ଯୁଗକୁ ନମିଲା ସେ ନରେଶ ।
ସନମାନ ପାଇଣ ବେନି ଯେ ଯୁଗ ଗଲେ
କଳି ଦ୍ୱାପର ଦୁହେଁ ବନ୍ଧନେ ସେ ରହିଲେ ।
ନଳ ରାଜା ବୋଇଲା ତୁମ୍ଭେ ଯେ ବେନିଯୁଗ
ଚଉଦମାସ ପର୍ଯ୍ୟନ୍ତ ଏ ସ୍ଥାନ କର ଭୋଗ ।
ମୋତେ ଯେ କଷ୍ଟଦେଲେ ହୁଅ ତୁମ୍ଭେ ଭିନ୍ନ
ସେଥିକି କଷ୍ଟ ଶତ ଦିନରେ ନିଅ ଦିନ ।
ଆଗେ ଦେବତା କଥା ନ ମାନିଲ
ମତ ଗର୍ବ ହୋଇଣ ଅଦୋଷେ କଷ୍ଟ ଦେଲ ।
ତେଣୁ ଦେବତାଏ ନ ଆସନ୍ତି ତୁମ୍ଭ ପାଶ
ଯେଉଁ ଦେବତା ଆସିବ ଲାଗିବ ତାକୁ ଦୋଷ ।
ଏତେ କହି ନଳ ଯେ ସେଠାରୁ ଚଳିଗଲେ
ଋତୁପନ୍ନ ରଥରେ ପ୍ରବେଶ ଯାଇ ହେଲେ ।
ପଚାରରେ ଋତୁପନ୍ନ ଘଟିଲା କି କଥା
ନଳରାଜା ବୋଇଲେ ତୁ ସେଥିରେ ସାମରଥା ।
ଋତୁପନ୍ନ ବୋଇଲେ କହେ ତୁ ମନ୍ତ୍ରସାର
ନଳରାଜା ବୋଇଲେ ପ୍ରମାଣ ତୁ ଏବେ କର
ସୋଦର ବିନୁ ମନ୍ତ୍ର ଅନ୍ୟରେ ନ ଦେବ
ଦେଲେ ତୋହଠାରୁ ହରଣ ହୋଇବ ।
ଶୁଣିଣ ଋତୁପନ୍ନ ପ୍ରମାଣ ତହୁଁ କଲା
ସୋଦର ବିନା ଅନ୍ୟ ନଦେବ ବୋଇଲା ।
ତେଣୁ ନଳରାଜା ଅଶ୍ୱମନ୍ତ୍ର ଯେ କହି
ତୁଣ୍ଡରେ ଅଭ୍ୟାସ ଋତୁପନ୍ନର ହୋଇ ।
ଋତୁପନ୍ନ ବୋଇଲେ ଶୁଣହେ ସାମରଥ
ମୋତେ ମନାକଲୁ ଅନ୍ୟେ ନ କର ପ୍ରାପ୍ତ ।
ତୁମ୍ଭେ ଅଟ ଅନ୍ୟ ମୁହିଁ ଯେ ଅଟେ ଭିନ୍ନ
ତୁମ୍ଭଠାରୁ ଅନ୍ତର ହୋଇବଟି ଜାଣ ।
ନଳରାଜା ବୋଇଲେ ପଛନ୍ତେ ଜଣାଯିବ
ନୋହିଲେ ମୋରଠାରେ ବିଦ୍ୟା ଯେ ନରହିବ ।
ଶୁଣିଣ ଋତୁପନ୍ନ କହଇ ବଚନ
ତୁମ୍ଭେ ହୁଏ ରଥୀ ମୁଁ ସାରଥି ହେବି ପୁଣ ।
ଶୁଣିଣ ନଳରାଜା ରଥପରେ ବସି
ଋତୁପନ୍ନ ରାଜା ଯେ ସେ ସାରଥି ବିଶେଷି ।
ଛଅ ଅଶ୍ୱ କର୍ଣ୍ଣରେ ସେ ମନ୍ତ୍ର କହିଲେ
ପକ୍ଷୀପ୍ରାୟେ ଅଶ୍ୱମାନେ ତ୍ୱରା ଉଡ଼ିଗଲେ ।
ପଞ୍ଚଘଡ଼ି ସମୟରେ କର୍ଣ୍ଣାଟ ଦେଶେ ମିଳି
ଦେଶର ସୀମାରେ ରଥକୁ ସ୍ଥିର କରି ।
ସେଠାରେ ଋତୁପନ୍ନ ରଥପରେ ବସି
ସେଠାରୁ ନଳରାଜା ସାରଥି ହୋଇ ଖୁସି ।
ଥିର ଥିର କରି ରଥ ବାହିଲେ ନଳରାଯେ
କର୍ଣ୍ଣାଟର ବଡ଼ଦାଣ୍ଡେ କଲେକ ବିଜୟେ ।
ଦେଖିଲେ ଋତୁପନ୍ନ ଶବଳ କିଛି ନାହିଁ
ଆବର ସ୍ୱୟମ୍ବର ଆରମ୍ଭ ହୋଇ ନାହିଁ ।
ବିଚାରେ ଋତୁପନ୍ନ ମୋ ନାରୀ କଥା ସତ
ଭୀମରାଜା ଦୁଲାଳୀ ମୋତେ ଗୁଣ୍ଡିବ ନିଯତ ।
ଦାଣ୍ଡରେ ରଥଯାନ୍ତେ ବିଚାରେ ନରନାରୀ
କେଉଁ ଦେଶ ରାଜା ଏ ପୁରେ ବିଜେ କରି ।
ସୈନ୍ୟବଳ ନାହିଁ ଆସଇ ଏକା ହୋଇ
ଏମନ୍ତ ବିଚାରନ୍ତି ନର ନାରୀ ଚାହିଁ ।

ଭୀମରାଜ ଆଗରେ ଦୂତ ଯେ ଯାଇ କହି
ଅଯୋଧ୍ୟା ଠାକୁର ଆସନ୍ତି ଏକା ହୋଇ ।
ସୈନ୍ୟବଳ ନାହିଁ ସାରଥି ଅଛି ଏକା
ଶୁଣିଣ ଭୀମରାଜା ମନରେ କଲା ଧୋକା ।
ପାତ୍ରମନ୍ତ୍ରୀ ସଜାଇଣ ବେଗେ ସଜ ହେଲା
ଅର୍ଘ୍ୟଧରି ରାଜା ପାଛୋଟି ତାଙ୍କୁ ଗଲା ।
ହସ୍ତୀର ଉପରେ ବିଜୟେ ଭୀମରାଜା
ଦେଖିଣ ଋତୁପର୍ଣ୍ଣ ରଥ ଯେ କଲା ତେଜ୍ୟା ।
ଭୀମରାଜା ଚରଣରେ କଲା ନମସ୍କାର
ବୋଇଲା ବହୁ ଭାଗ୍ୟ ହୋଇଲା ମୋହର ।
ଅନେକ କାଳରେ ପିତାଙ୍କୁ ଦର୍ଶନ
ଏମନ୍ତ ବଚନ ଯେ କହଇ ଋତୁପର୍ଣ୍ଣ ।
ଦ୍ୱିତୀୟ ସ୍ୱୟମ୍ବର ସମ୍ଭବ ନ ଦେଖି
ଯେ କଥା ରଜାଙ୍କୁ କହିଲା ଟିକିନିଖି ।
ଭୀମରାଜା ବୋଇଲେ ଅନେକ କାର୍ଯ୍ୟହେଲା
ନଳରାଜା ସୋଦର ମୋର ରାଜ୍ୟେ ବିଜେ କଲା ।
ନଳରାଜା କେଣେ ଗଲେ ନ ପାଇ ସନ୍ଦେଶ
କର୍ମ ବାମରୁ ପଶିଲେ ବନସ୍ତ ଦେଶ ।
ଏମନ୍ତ କୁହାକୁହି ଭେଟ ସେଠାରେ ହେଲେ
ସେଠାରୁ ବେନିରାଜା ନବରେ ଯାଇ ମିଳିଲେ ।
ଋତୁପର୍ଣ୍ଣଙ୍କୁ ଘେନି ଭୀମ ଯେ ନୃପତି
ଜଗତୀ ଉପରେ ବିଜେ କଲେକ ଝଟତି ।
ଋତୁପର୍ଣ୍ଣ ବୋଇଲେ ଶୁଣିବା ଦେବ ହେଉ
ସାରଥି କାହା ହାତେ ନ ଭୁଞ୍ଜେ ସେ ଆଉ ।
ତାହାଙ୍କ ଚରଚା ଦେବ ବୁଝ ହେ ତତ୍‌କାଳ
ମୋଠାରୁ ନ୍ୟୁନ ବୋଲି ତାହାଙ୍କୁ ନ ଭାଳ ।
ପ୍ରଭାତ ସମୟରେ ଅଯୋଧ୍ୟା ରଥେ ବସି
ପାଞ୍ଚଘଡ଼ିଠାରେ ତୁମ୍ଭ ପୁରେ ମିଳେ ଆସି ।
ଶୁଣିଣ ଭୀମରାଜା କହଇ ବଚନ
ନଳର ପ୍ରାୟେ କଥା ଶୁଣି ଆଜି ପୁଣ ।
ଯେଉଁ ନଳ ପୃଥିବୀ ପ୍ରଦକ୍ଷିଣ କଲା
ତିନିମାସ ପନ୍ଦର ଦିନେ ଲେଉଟି ରାଜ୍ୟେଗଲା ।
ପାତ୍ରମନ୍ତ୍ରୀ ଡାକିଣ କହିଲେ ଭୀମରାଜନ
ସାରଥିକି ଚରଚା କରହେ ବହନ ।
ଶୁଣି ମନ୍ତ୍ରୀବର ବେଗେ ଚଳିଗଲା
ବାଜିପାଳ ଛଅଜଣ ବେଗେ ଯେ ଅଣାଇଲା ।
ଛଅ ଅଶ୍ୱ ନେଇଣ ଦାନା ଯେ ପାଣିଦେଲେ
ଜଣେକ ଦ୍ୱିଜବର ମନ୍ତ୍ରୀ ଡକାଇଲେ ।
ନବର ଭିତରେ ଏକଇ ଘର ଶୂନ୍ୟ
ସେଠାରେ ସାରଥିକି ରଖାଇଲେ ପୁଣ ।
ନାମ ହାଡ଼ି ଡକାଇ ମାଜଣା ତାକୁ କଲେ
ଦେଖିଣ ନଳରାଜା ହରଷ ହେଲେ ଭଲେ ।

ଏଥୁ ଅନନ୍ତରେ ଯେ ଶୁଣହେ ଚାପଧାରୀ
ଅନ୍ତଃପୁରେ ଖବର ମିଳିଲା ଯାଇକରି ।
ଶୁଣି ସେ ଦମୟନ୍ତୀ ବିଚାରେ ମନରେ
ନଳରାଜା ଅଇଲେ ନିଶ୍ଚୟ ଏହି ପୁରେ ।
ଶତେଯୋଜନ ପଥ ସେହୁ ଏକାଦିନେ ଆସି
ଲେଖିବାର ଦ୍ୱିଜକଥା ଏବେ ଘଟେ ଆସି ।
ଦ୍ୱିଜବର ଡକାଇ ଦମୟନ୍ତୀ କହେ ପୁଣ
ଉତ୍ତମ ପ୍ରକାରେ ସଞ୍ଜା ନେବୁ ହୋ ବ୍ରାହ୍ମଣ ।
ଚାଳିଦେବୁ କଞ୍ଚା କିଆକାଠ ଆଣିଦେବୁ
ବେନିଗୋଟି ବର୍ତ୍ତନ ତାହାଙ୍କୁ ବରଣିବୁ ।
ତୁଚ୍ଛା ଗରା ଦେବୁ ନ ଦେବୁ ଯେ ଜଳ
ଶୁଣି ଦ୍ୱିଜବର ଅଇଲାକ ସତ୍ୱର ।
ଷଡ଼୍‌ରସ ପ୍ରକାରେ ବ୍ୟଞ୍ଜନ ଆଣିଦେଲା ।
ଦୁଧ ଘୃତ ଲବଣ ଆଣି ସଂଯୋଗିଲା ।
ଉତ୍ତମ ତଣ୍ଡୁଳ ଯେ ଲବଣ କଲା ରସ
ନାନା ବର୍ଣ୍ଣେ ସଞ୍ଜା ଆଣି ଦେଲା ବିଶେଷ ।
ବେନି ଗରା ତୁଚ୍ଛା ଛାମୁରେ ନେଇଦେଲା
ସ୍ନାହାନ କରି ବୋଲି ବିପ୍ର ବୋଇଲା ।
ଶୁଣିଣ ନଳ ରାଜା ଉଠିଲେ ବହନ
ତୁଚ୍ଛାରେ ଗରାରେ ହସ୍ତ ଦେଲେକ ବହନ ।
ବେନି ଗରା ଜଳ ପୂରିଣ ଉଚ୍ଛୁଳିଲା
ତେଣୁ ସେ ନଳ ରାଜା ସ୍ନାହାନ ଯାଇ କଲା ।
ସ୍ନାହାନ ସାରିଣ ଯେ ନିତ୍ୟ କର୍ମ କରି
ଚୁଲ୍ଲୀର ଉପରେ ଭାଣ୍ଡ ନେଇ ଥୋଇକରି ।
ଶତେକ ବର୍ଣ୍ଣ ପରିବା ଏକଠାବ କଲେ
କଞ୍ଚା କିଆକାଠ ଚୁଲ୍ଲୀରେ ସେ ଭରିଲେ ।
ଉତ୍ତମ ପ୍ରକାରେ ଜଳିଲା ସେହୁ ଜାଳ
ତିଅଣ ହୁଅନ୍ତେ ନଳ ମିଳିଲେ ନିକଟର ।
ଦେଖିଣ ଦ୍ୱିଜବର ଦମୟନ୍ତୀ ଆଗେ କହି
ଶୁଣିଣ ଦମୟନ୍ତୀ ଦାସୀକି ପଠାଇ ।
ବେନି ବାଳକ ଦାସୀ ଘେନିଣ ଚଳିଗଲା
ନଳରାଜା ରାନ୍ଧଣା ଶାଳରେ ମିଳିଲା ।
ଦେଖିଣ ନଳରାଜା ଦାସୀକି ପଚାରି
ଏ ବେନି ବାଳକ ଯେ ଅଟନ୍ତି କାହାରି ।
ଦାସୀ ବୋଇଲେ ନଳରାଜା କୁମର ଏ ଦୁଇ
ଏହାଙ୍କୁ ଛାଡ଼ି ପିତା ଅରଣ୍ୟ ଯେ ବୁଲଇ ।
ନଳରାଜା ବୋଇଲେ ମାତାକି ନାହିଁ ତାର
ଦାସୀମାନେ ବୋଇଲେ ନଳଙ୍କ ସଙ୍ଗତର ।
ସେ ରାଜା ସଙ୍ଗତରେ ତାକୁ ଘେନିଗଲେ
ଦଶମାସ ଉତାରୁ ଅନ୍ତର ପୁଣି କଲେ ।
ବନସ୍ତେ ବୁଲି ବୁଲି ଅଇଲେ ଯାଙ୍କ ମାତା
ବେନି ମାସେ ହେଲା ମନରେ ନଳ ଚିନ୍ତା ।

ପ୍ରତିଦିନ ଶିବଲିଙ୍ଗ ସେ ପୂଜା କରନ୍ତି
ନଳରାଜା ଦେଖାଅ ବୋଲିଣ ସେ ବୋଲନ୍ତି ।
ଶୁଣିଣ ନଳରାଜା ମନରେ ହରଷ
ବିଚାରିଲେ ଦୟାକଲେ ପାର୍ବତୀ ବିଳାସ ।
ଏମନ୍ତ ସମୟେ ଦାସୀ ପିଲାଙ୍କୁ କନ୍ଦାଇ
ନଳରାଜା ବୋଇଲେ କାନ୍ଦନ୍ତି କାହିଁପାଇଁ ।
ଦାସୀ ବୋଇଲା ଏ ତିଅଣ ଦେଖିଣ
କାନ୍ଦନ୍ତି ବେନିପୁତ୍ର ହେ ବାଜିପାଳ ଜାଣ ।
ନଳରାଜା ବୋଇଲେ ଅଣାଅ ତୁମ୍ଭେ ସ୍ଥାନ
ଶୁଣିଣ ରତ୍ନ ଗିନା ଅଣାଏ ଦାସୀ ପୁଣ ।
ନଳରାଜାରେ ଦେବାରୁ ବିପ୍ର ହସ୍ତେ ଦେଲେ
ଦେଖିଣ ଦମୟନ୍ତୀ ଆଗ୍ରହ ତାକୁ କଲେ ।
ଜାଣିଲେ ନଳରାଜା ଅଟଇ ଏ ନିୟତ
କର୍ଣ୍ଣାଟ ବାଟ କଲେ ଦମୟନ୍ତୀ ତୁରିତ ।
ନଳରାଜା ପାଶରେ ସେ ହୋଇଲେ ପ୍ରବେଶ
ବିରୂପ ଦେଖି ଦମୟନ୍ତୀ ମନରେ ବିରଷ ।
ବିଚାରିଲେ ଏ ରୂପ ନୁହଇ ନଳଙ୍କର
ରୂପ କି ବଦଳ ଯେ କଲେକ ନୃପବର ।
ଏମନ୍ତ ବିଚାରିଣ ସେ ବଚନ ପ୍ରକାଶି
ରୂପେ ନନ୍ଦନକୁ ନିନ୍ଦାବାଣୀ ଭାଷି ।
ସେ ରୂପ କିମ୍ପାଇଁ ବିରୂପ ହୋଇଲା
ଏ କଥାମାନ ଦେଖିଲେ ଅସମ୍ଭବ ହେଲା ।
ନଳରାଜା ବୋଇଲେ ବିରୂପରେ କିସ
ଅସମ୍ଭବ ବେଳ ଛାଡ଼ିଲା ରାଜହଂସ ।
ପିତା ଘରେ ଆସିଣ ପ୍ରବେଶ ଯେବେ ହେଲା
ତାହାର ବିପତ୍ତି ଯେ ସେହିଁ କାଳୁ ଗଲା ।
ଏବେ ଦ୍ୱିତୀୟ ସ୍ୱୟମ୍ବର ମନ ଇଚ୍ଛା
ଶୁଣି ଦମୟନ୍ତୀର ପୂରିଲା ମନବାଞ୍ଛା ।
ନଳରାଜା ବୋଇଲେ ଅସମ୍ଭବ କାଳ
ଦଇବ ଦୁର୍ବଳରେ ଅଜ୍ଞାନ କଲା ଭୋଳ ।
ଦମୟନ୍ତୀ ବୋଇଲେ କିଏ ସେ ତେଜ୍ୟାକଲା
ସେହିକଥା ବିଚାର ମନରେ ତୁମ୍ଭେଭଲା ।
ନଳରାଜା ବୋଇଲେ ଅସମ୍ଭବ କାଳ ହେଲା
ସମ୍ଭାଳି ନ ପାରି ଅସମ୍ଭାଳ କିମ୍ପା ହେଲା ।
ଦମୟନ୍ତୀ ବୋଇଲେ ସେଥିରେ ସମାଚାର
ଦେଖିଲ କି ବିଜୟେ କେଉଁ ନୃପବର ।
ନଳରାଜା ବୋଇଲେ ସେ କଥା ଯେବେ ମିଛ
ଦ୍ୱିଜବର ବୋଇଲା ଅଯୋଧ୍ୟାର ନରନାଥ ।
ତେଣୁ କରି ଅଯୋଧ୍ୟା ନୃପତି ଯେ ଆସି
ମୋତେ ସଙ୍ଗେ ଘେନିଣ ଅଇଲେ ହୋଇ ଖୁସି
ଦମୟନ୍ତୀ କହିଲେ ଦୂତ କହିବା କଥା ସତ
ଆଗେ ପିତା ଦୂତ ପେଷିଲେ ବହୁତ ।
ଲକ୍ଷେ ନୃପତି ପୁର ଖୋଜିଣ ଆସି ସେହି
ନ ପାଇଲେ ଭେଟ ପିତା ଆଗେ କହି ।
ପୁଣି ଆସି କହିଲା ଅଯୋଧ୍ୟାର ଦୂତ
ବିରୂପ ନଳରାଜା ଅଛନ୍ତି ସେ ସ୍ଥାନେ ତ ।
ବାଟକୁ ଲକ୍ଷ୍ୟ କରି ଦୂତକୁ ପେଷିଦେଲି
ଦ୍ୱିତୀୟ ସ୍ୱୟମ୍ବର କଥା ଯେ କହିଲି ।
ବିଚାରିଲେ ଏକଦିନେ ଆସିବେ ସେ ପୁଣ
ନିଶ୍ଚୟ ନଳରାଜା ସେ ସ୍ଥାନେ ଥିଲେ ଜାଣ ।
ସେ କଥା ସତ ମୋତେ ହୋଇଲାକ ପୁଣ
ଏଡ଼େପଥ କେହୁ ଆସନ୍ତା ଏକଦିନ ।
ସକଳ କଥା ସମ୍ପ୍ରତେ ମିଳିଲା ଆସି ମୋତେ
ନିଜରୂପ ଦେଖି ପରେ ଯିବଇଁ ତୁରିତେ ।
ଏତେ ବୋଲି ଦମୟନ୍ତୀ ରାନ୍ଧଣା ଶାଳେ ମିଳି
ନଳରାଜରେ ତା ଧରିଲେଟେ ବାଳି ।
ଦେଖିଣ ନଳରାଜା ନିବର୍ତ୍ତ ତାକୁ କଲେ
ବିକଳ ନୁହଁ ବୋଲି ବଚନ ପ୍ରକାଶିଲେ ।
ତୁ ନାରୀ ଆୟତରେ ରଖିଲୁ କୁଳଧର୍ମ
ମୋହର ନିମନ୍ତେ କଲୁ ତୁ ଏତେ ଶ୍ରମ ।
ନୋହିଲେ କିମ୍ପା ତୁରେ ସତୀରେ ଗଣା ହେଲୁ
ବିଧାତାର ବଚନେ ବିଧାନ ଗଢ଼ିଲୁ ।
ତୋହର ବୁଦ୍ଧି ମୋତେ ବଳିଲା ଶୋଭା ନାରୀ
ଏତେ ବୋଲି ନଳ କର୍କଟ ସୁମରି ।
ନଖରୁ ବେନି ବସ୍ତ୍ର ବାହାର ପୁଣି କରେ
ଏକ ବସ୍ତ୍ର ପିନ୍ଧିଣ ଏକ ବସ୍ତ୍ର ଉପରେ ।
ନଳ ବସ୍ତ୍ର ପିନ୍ଧନ୍ତେ ମଦନ ରୂପ ହେଲା
ବିରୂପ ରୂପ ଗୋଟି ତକ୍ଷଣେ କେଣେ ଗଲା ।
ନିଜ ରୂପ ପ୍ରକାଶନ୍ତେ ଦମୟନ୍ତୀ ହେଲା ତୋଷ
ନଳରାଜା ବୋଇଲେ ହୁଅ ନିଜ ବେଶ ।
ଅଯୋଧ୍ୟାର ରାଜନ ଯେ ଅଟଇ ସାନଭାଇ
ଜଣାଗଲା ଉତ୍ତାରୁ ଯେ ଭିନ୍ନ ଭିନ୍ନ ହୋଇ ।
ଏକସ୍ଥାନେ ଭୋଜନ କରିବାର ମୂଳ
ଶୁଣିଣ ଦମୟନ୍ତୀ ଚଳିଲା ସତ୍ୱର ।
ମାଜଣା ବିଧି ସାରି ସୁବଶେ ହେଲା
ଯେହ୍ନେ ପାର୍ବତୀ ଶିବଙ୍କୁ ଦିଶେ ତୋରା ।
ବେନି ପୁତ୍ର ଦୁହିତା କରିଣ ବେଶ ପୁଣ
ମାତାର ଛାମୁରେ ଦର୍ଶନ କଲେ ଜାଣ ।
ଜନନୀ ବୋଇଲ ଆଜି ତ ବଡ଼ ତୋରା
ଦମୟନ୍ତୀ କହେ ତୋର ହ୍ୱାଇଁ ଭେଟ ପରା ।
ଶୁଣିଣ ଭୀମରାଜା ରାଣୀ ତୋଷ ହେଲା
ଏତେକାଳେ ମୋହର ଦଶା ପାଲଟିଲା ।
ଏଥୁ ଅନନ୍ତରେ ଶୁଣହେ ରାମ ରାଣ
ଭୀମରାଜା ଆଗେ କହିଲା ଦୂତ ଜାଣ ।

ଅଯୋଧ୍ୟା ରାଜା ସଙ୍ଗେ ସାରଥି ଯେଉଁ ଜନ
ନିଶ୍ଚେ ନଳ ରାଜା ଅଟନ୍ତି ସେହିପୁଣ ।
ଏମନ୍ତ ସମୟରେ ନଳ ଯେ ପ୍ରବେଶ
ଦେଖିଣ ଭୀମରାଜା ହେଲେ ଅତି ହର୍ଷ ।
ଋତୁପର୍ଣ୍ଣ ଉଠିଣ ନମସ୍କାର କଲା
ସୋଦର କିମ୍ବା ମାୟା କଲୁ ଯେ ବୋଇଲା ।
ନଳ ବୋଇଲେ ମୋତେ ମର୍କଟ ଶାପ ଦେଲା
ଦମୟନ୍ତୀ ଦେଖିଲେ ସ୍ୱରୂପ ହୁଅ ଭଲା ।
ତେଣୁ କରି ବିରୂପରେ ଦିନ ଗଲା ମୋର
ଋଣ ଶୁଝି ନ ପାରିବି କଦାପି ତୋହର ।
ଭୀମରାଜା ଚରଣେ ଲୋଟିଲେ ନଳରାଏ
ଉଠିଣ ଭୀମରାଜା କୋଳରେ ବସାଏ ।
ଏଥୁ ଅନନ୍ତରେ ଶୁଣ ହେ ଦାଶରଥି
ଋତୁପର୍ଣ୍ଣ ଘେନି ନଳ ଅନ୍ତଃପୁରେ ଯାନ୍ତି ।
ଯୋଗାଣ ଠାଏ ହେଲା ବସିଲା ବେନିଜନ
ନଳପାକ ଆଣିଣ ଦମୟନ୍ତୀ ଦେଲେ ଜାଣ ।
ଭୁଞ୍ଜିଣ ବେନିଭାଇ ହରଷ ହୋଇଲେ
ମେଲାଣି ମାଗି ଋତୁପର୍ଣ୍ଣ ନିଜ ରାଜ୍ୟେ ଗଲେ ।
ବେନି ଘଡ଼ି ବେଳ ଅଛି ଅଯୋଧ୍ୟା ପ୍ରବେଶ
ଏକାକୀ ରଥ ବାହେ ଅଯୋଧ୍ୟା ନରେଶ ।
ନଗ୍ର ଲୋକେ ଦେଖିଣ ଆଚମ୍ଭିତ ହେଲେ
ସାରଥି କେଣେ ଗଲା ବୋଲି ସେ ବୋଇଲେ
ଋତୁପର୍ଣ୍ଣ ବୋଇଲା ସେ ଅଟଇ ବିପରୀତ
ପ୍ରହରକେ ରଥ ଗଲା କର୍ଣ୍ଣାଟ ନିଶ୍ଚିତ ।
ଭୀମ ରାଜା ଦୁହିତା ଦମୟନ୍ତୀ ତାକୁ ଚିହ୍ନି
ଗୁପତେ ନଳରାଜା ଥିଲେ ପୁଣି ।
ସେ କଥା ଜାଣି ମୁଁ ଯେ ମେଲାଣି ହୋଇଲି
ପ୍ରହରେକ ସମୟେ ଶତେଯୋଜନ ଅଇଲି ।
ଏତେ କହି ଭିତରେ ପ୍ରବେଶ ଋତୁପର୍ଣ୍ଣ
ହଂସପୁରୁଁ ରାଣୀ ଆସି କଲେକ ଦର୍ଶନ ।
ରାଣୀହଂସ ଜାଣିବା କୁଶଳ କଥା କହି
ଗୁପ୍ତରେ ନଳରାଜା ଏଠାରେ ଥିଲେ ରହି ।
ଏଥୁ ଅନନ୍ତରେ ଶୁଣହେ ରାମରାଣ
ନଳରାଜା ରହିଲେ କର୍ଣ୍ଣାଟ ଦେଶ ପୁଣ ।
ପାଞ୍ଚ ସାତ ଦିନ ରହି ରାଜ୍ୟ ଗଲେ ପୁଣ
ପତ୍ନୀ ପୁତ୍ର ଦୁହିତା ସଙ୍ଗରେ ଘେନିଣ ।
ରାଜାକୁ ମେଲାଣି ମାଗି ରାଜ୍ୟରେ ପ୍ରବେଶ
ଦେଖିଣ ପୁଷ୍କର ଆସିଣ ନଳ ପାଶ ।
ଚରଣେ ଶରଣ ପଶି ରାଜ୍ୟରେ ପ୍ରବେଶ
ଦେଖିଣ ପୁଷ୍କର ଆସିଣ ନଳ ପାଶ ।
ଚରଣେ ଶରଣ ପଶି ରାଜ୍ୟ ତେଜି
ନଳରାଜା ବୋଇଲେ ଧର୍ମରେ ତ ବାଜି ।

ପଶା ଗଡ଼ାଇଣ ତା ସଙ୍ଗେ ଖେଳ କଲେ
ଋତୁପର୍ଣ୍ଣ ମନ୍ତ୍ର ଯେ ମନରେ ସୁମରିଲେ ।
ତେଣୁ ସେ ପୁଷ୍କରକୁ ଜିଣିଲେ ମହାରାଜା
ଏକ ଗ୍ରାମ ଦେଲେ ଧର୍ମ ନକରି ତେଜ୍ୟା ।
ସେଠାରୁ ନଳରାଜା ନବରେ ବିଜେ କରି
ଜନ ପ୍ରଜା ହରଷେ ଉତ୍ସବ କୃତ୍ୟ କରି ।
ପାତ୍ରମନ୍ତ୍ରୀ ଅମାନତ୍ୟ ଆସିଣଭେଟ ହେଲେ
ସମସ୍ତଙ୍କୁ ନଳରାଜା ଶାଢ଼ୀ ସୁନା ଦେଲେ ।
ଦାସୀଗଣ ଆସି ଦମୟନ୍ତୀ ପାଶେ ମିଳି
ଦର୍ଶନ ପ୍ରସଙ୍ଗରେ ଯେ ଯାହା ସେବା କରି ।
ଏମନ୍ତେ ନଳରାଜା ଦଶାରୁ ପାର ହେଲେ
ଅଭିଷେକ ହୋଇ ରାଜ୍ୟ ଭୋଗ କଲେ ।
ତେତେ ବଡ଼ ଦୁଃଖ ଯେ ଅଟଇ ତା କଷ୍ଟ
ତୋତେ ଦେବତା ସେପରି ହେଲେ ଅନିଷ୍ଟ ।
ଆଯେ ଅସୁର ମାରି କର ସୁବୁଦ୍ଧି ତ
ପଛେ ଦେବତାଙ୍କୁ ସାଧିବ ଶତ ଶତ ।
ତେବେ ପୃଥିବୀର ଉତ୍ପାତ ଭାଜିବ
ତେବେ ସିନା ତୋହର କୀରତି ରହିବ ।
ଶ୍ରୀରାମ ବୋଇଲେ ମୁନି ଏ କଥା ଶୁଣାଇଲ
ବେନି ଯୁଗ କରିବେ ତାହା ନ କହିଲ ।
ମାର୍କଣ୍ଡ ବୋଇଲେ ଶୁଣହେ ଦାଶରଥି
ବେନିଯୁଗ ରୋଦନ ସେ ସ୍ଥାନେ କରନ୍ତି ।
ଦେବତାଏ ଜୀଆଇଲେ ଜୀବଜନ୍ତୁ
ନଳରାଜାଙ୍କୁ ଡରି ସମସ୍ତଙ୍କର ହେତୁ ।
ଏରୂପେ ଚଉଦମାସ ଯେ ବହିଗଲା
ନଳରାଜାଙ୍କୁ ଯାଗଣ ବୁଝାଇ କହିଲା ।
ତେବେ ସେ ନଳରାଜା ଯାନ ଚଢ଼ିଗଲେ
ଦୁଇଯୁଗ ବନ୍ଧନ ଯାଇ ସେ ଫେଡ଼ି ଦେଲେ ।
ତେବେ ସେ ବେନି ଯୁଗ ଗଲେ ବେନି ପୁର
ଶୁଣିଣ ଶ୍ରୀରାମ ଯେ ଛାଡ଼ିଲେ ଚିନ୍ତା ଭାର ।
ଶ୍ରୀରାମ ତୁଙ୍ଗରୁ ଅଜ୍ଞାନ ଚଳିଗଲେ
ଯେଣୁ ନଳ ଚରିତ୍ର ଶ୍ରୀରାମ ଶୁଣିଲେ ।
ଏଥୁ ଅନନ୍ତରେ ପାର୍ବତୀ ଦେବୀ କହି
ମାର୍କଣ୍ଡ କହିବାକୁ ଶ୍ରୀରାମ ତୋଷ ହୋଇ ।
ସେଠାରୁ କିସ କଲେ କହ ମୋ ଆଗର
ଲକ୍ଷ୍ମଣ ଗଲାଯେ କିଷ୍କିନ୍ଧ୍ୟା ନଗର ।
ଶଙ୍କର ବୋଇଲେ ଶୁଣଗୋ ଭଗବତୀ
ମନ୍ତ୍ରବଳେ ବାନ୍ଧିଲା କଳିକି ନଳ ନୃପତି ।
ରଘୁନାଥ ଆଗେ ଏହା ମାର୍କଣ୍ଡ ଯେ କହି
ଶୁଣିଲଟି କି ନଳ ଚରିତ୍ର ପ୍ରାଣସହୀ ।
ଏ କଥା କହି ଋଷି ରାମକୁ ବୁଝାଇଲେ
ଚିନ୍ତା ନ କର ମନେ ବୋଲି ସେ ବୋଇଲେ ।

ତୁମ୍ଭେ ଯେ ନିଶ୍ଚିନ୍ତରେ ବନସ୍ତରେ ଥିଲ
ଦେବକାର୍ଯ୍ୟ ନିମନ୍ତେ ଦୁଃଖ ଯେ ପାଇଲ ।
ଏବେ ବେନି ମାସ କଷ୍ଟ ଅଛି ତୋତେ
ଦଶମାସ ସମ୍ପୂର୍ଣ୍ଣ ଯେ ଜ୍ଞାନ ହେବ ଚିତ୍ତେ ।
ତେଣୁଟି ତୋର ଦେହୁ ଅଜ୍ଞାନ ହଟିଯିବ
ନାରଦ ପର୍ବତା ଋଷି ଅଙ୍ଗରେ ରହିବ ।
ଚାରିମାସ ପର୍ଯ୍ୟନ୍ତ ଋଷି ଭୋଗକରି
ଋଷିଠାରୁ ଶୁଣିଣ ଏମନ୍ତ ରାମ ଭାଳି ।
ମାର୍କଣ୍ଡ ବୋଇଲେ ଶୁଣହେ ରାମ ରାଣ
ଦେବତା ଖଟିବେ ତୁମ୍ଭର ଚରଣ ।
ଚାରି ରାବଣ ମାରି ପୃଥ୍ୱୀକି କର ସ୍ଥିର
ତେବେ ଦେବତାଏ ରହିବେ ସ୍ୱର୍ଗପୁର ।
ଏତେ ବୋଲି ବେନି ଋଷି କରି ପ୍ରବୋଧନ
ରହିଲେ ତାଙ୍କ ପାଶେ ଦୁଇ ରାତି ଦୁଇ ଦିନ ।
ଶ୍ରୀରାମ କହିଲେ ବୋଧିଲ ତପୋବନ୍ତ
ଶ୍ରୀରାମଙ୍କ ପାଶୁମୁନି ହୋଇଲେକ ଅନ୍ତ ।
ସେ ନଳ ଚରିତ୍ର ବଳରାମ ଦାସ ପୁଣି
ଶ୍ରୀରାମ ଚରଣେ ଶରଣ ପଶି ପୁଣି ।
ଏଥୁ ଅନନ୍ତରେ ପାର୍ବତୀ କହି
ସେଠାରୁ ଶ୍ରୀରାମ କିସ କଲେ ତହିଁ ।
ବେନି ଋଷି ପାଶରୁ ଚଳିଗଲେ
ବାଟେ ମାର୍କଣ୍ଡ ଅଗସ୍ତିଙ୍କି କହିଲେ ।
ବୋଇଲେ ତୁମ୍ଭେ ଶୁଣ କୁମ୍ଭଋଷି ସୁତ
ଚେତା ବିଷ୍ଣୁ ନୁହନ୍ତି ସାକ୍ଷାତେ ରଘୁନାଥ ।
ପ୍ରମାଦ କଥାରେ ଦୁଃଖ କହିଲେ ନ ସରି
ବିଶ୍ୱାମିତ୍ର କହିଲେ ରାମ ଶୟନ ନରହରି ।
ଏବେ ତ ଦେଖିଲି ମୁ ଯେ ଏକ ଋଷି
ଧନୁଶର ବହି ଯେ ପିଙ୍ଗଳବର୍ଣ୍ଣ ଜଟ ।
ବିଷ୍ଣୁଙ୍କର ଚେଷ୍ଟା ଏହାଙ୍କର ଅଙ୍ଗେ ନାହିଁ
କେହ୍ନେ ଅଟନ୍ତି ରାମ କମଳାଦେବୀ ସାଇଁ ।
ମାର୍କଣ୍ଡ ବଚନେ ଯେ ବୋଲନ୍ତି ଅଗସ୍ତି
ଦେଖିଲେ ହୃଦୟ ଯାର ସପ୍ତ ବ୍ରହ୍ମାଣ୍ଡଟି ।
ସେ କଥା ପାଶୋରିଣ ଅଜ୍ଞାନ ବାଣୀ କହୁ
ଏହି ଶ୍ରୀରାମ ଅଟନ୍ତି ପ୍ରଭୁ ମହାବାହୁ ।
ତହୁଁ ସେ ଦେବତାଙ୍କୁ ରାବଣ କଷ୍ଟ ଦେଲା
ତେଣୁ ସେ ବାସୁଦେବ ପ୍ରତିଜ୍ଞା ଯେ କଲା ।
ବୋଇଲେ ମୁଁ ତୁମ୍ଭର ଫେଡ଼ିବି ଏବେ କଷ୍ଟ
ନାରାଚେ ଛେଦିବି ଯେ ଅସୁର ପାପିଷ୍ଠ ।
ଶଙ୍ଖ ଚକ୍ର ଗଦା ଯେ ନ ଧରିବି କର
ବାହନ ନ ଚଢ଼ିବି ବିନତାକୁମର ।
ନୋହିବି ଦେବତା ମୁଁ ଯେ ନୋହିବି ଭଗବାନ
ମାନବ ଶରୀର ହୋଇ ମାରିବି ଦୈତ୍ୟ ପୁଣ ।
ମୋ ସଙ୍ଗେ ହସ୍ତୀ ଅଶ୍ୱ ପଦାତି ନଥିବ
ଋକ୍ଷ ଭାଲୁ ସଙ୍ଗେ ଘେନି ମାରିବି ଦାନବ ।
ଏତେ ବୋଲି ମୃତ୍ୟୁପୁରେ ଆସିଣ ଅବତାରି
ଦଶରଥ ସୁତ ହେଲେ ମାନବ ରୂପ ଧରି ।
ଅସୁର ମାରିବା ନିମନ୍ତେ ବନେ ଆସେ
ତୁମ୍ଭେ ମୁନି ମଣହେ ଅନ୍ୟ ପ୍ରାୟ ଅଂଶେ ।
ଏ ରାମ ପରଂବ୍ରହ୍ମ ଭକତ ବତ୍ସଳ
କୌସ୍ତୁଭ ମଣି ଯେ ଝୁଲଇ ବକ୍ଷସ୍ଥଳ ।
ଅଜଠାରୁ ଦୁଇଶ ଅଶି ଦିନରେ
ଶ୍ରୀରାମଙ୍କୁ ଦେଖିବୁ ଅଭିଷେକ ବେଳରେ ।
ଚାରି ରାବଣ ମାରି ଆଣିବେ ଯେ ସୀତା
ଅଯୋଧାରେ ପ୍ରବେଶ ହୋଇବ ଜଗନ୍ନିତା ।
ସ୍ୱର୍ଗର ଦେବତା ଯେ ଶୁଚିବନ୍ତ ହୋଇ
ଖଟିବେ ଶଙ୍କର ସହ ବେଦବର ସାଇଁ ।
ସେବେଳେ ଦେଖିଲେ ତୁଟିବ ତୁମ୍ଭ ଭ୍ରାନ୍ତି
ଏମନ୍ତ ମାର୍କଣ୍ଡ ଯେ ବୁଝାଇ ଅଗସ୍ତି ।
ଈଶ୍ୱର କହିବାରୁ ପାର୍ବତୀ ଦେବୀ ଶୁଣି
କିଷ୍କିନ୍ଧ୍ୟା କାଣ୍ଡ ଏ ଯେ ଅମୃତମୟ ବାଣୀ ।
ସାମ ବେଦରୁ ଜାତ ହୋଇଲା ଏ ପୁଣ
ବେଦବର ପ୍ରମାଦେ ବିଖ୍ୟାତ ରାମ ନାମ ।
ତେଣୁ ମଞ୍ଚ ଯେବେ ହୋଇବେ ମୁକତି
ଯହାର ପାଟରାଣୀ କମଳା ସରସ୍ୱତୀ ।
ତେଣୁ ସେ ଶ୍ରୀରାମର ଚରିତ୍ର ଗ୍ରନ୍ଥ ହେଲା
ଏଣେ ସେ ମହାପାପ ପଡିଲେ କ୍ଷୟ ଗଲା ।
ଆମ୍ଭେ ତୁମ୍ଭେ ଆଗରେ କହିଲୁ ଶାକମ୍ଭରୀ
ଶ୍ରୀରାମଙ୍କୁ ଦୁଃଖ ଯେ ମିଳଇ ଏହିପରି ।
ଶ୍ରୀରାମ ଦୁଃଖ କାଳରେ ଯେତେ କଥା
ଶୁଣିବା ଲୋକର ଫିଟିବ ମନ ବ୍ୟଥା ।
ଏବେ ଏକମନେ ଶୁଣ ଗୋ ସଙ୍ଖାଡୁଣୀ
କିଷ୍କିନ୍ଧ୍ୟାକୁ ଗଲା ଲକ୍ଷ୍ମଣ ବୀରମଣି ।
ସୂର୍ଯ୍ୟାସ୍ତ ସମୟରେ ହୋଇଲା ପ୍ରବେଶ
କ୍ରୋଧରେ ନୟନ ସେ ରକ୍ତିମା ସଦୃଶ ।
ନଗ୍ରର ନରନାରୀ କରନ୍ତି ବିଚାର
ଦିତୀ ଆଦିତ୍ୟ କି ମର୍ତ୍ତ୍ୟରେ ଅବତାର ।
କି ଅବା କାମଦେବ ଏ ପୁରେ ବିଜେ କଲା
କି ଅବା ସଦାଶିବ ଏ ପୁରେ ଆସିଲା ।
କି ଅବା ଭୃଗୁପତି ମାୟାବି ରୂପ ହୋଇ
କିଷ୍କିନ୍ଧ୍ୟା କଟକକୁ ଯିବ ଆଜ ଦହି ।
କେ ବୋଲେ ଇନ୍ଦ୍ର ଯେ ଆସିଲା ସ୍ୱର୍ଗପୁର
କେ ବୋଲେ ଶ୍ରୀରାମ ଅଇଲା ହନ୍ତକାର ।
ବାଳୀ ମରିବାର ବାରତା ସେ ପାଇଲା
ସୁଗ୍ରୀବକୁ କୋପ କରି ଏଠାକୁ ଅଇଲା ।

କେବେ ବୋଲେ ତୁମ୍ଭେମାନେ ନ ଚିହ୍ନିଲେ କେହି
ଶ୍ରୀରାମ ଅନୁଜ ଅଟଇ ଜାନଇ ।
ଯେଉଁ ବାଣ କାଣ୍ଡରେ ବାଳୀ ଯେ ବୀର ମଲା
ସୁଗ୍ରୀବକୁ ସମ୍ପଦ ଦେଇ ଅତି ସ୍ନେହ କଲା ।
ସେ ରାମର ଭାଇ ଯେ ଅଟଇ ଲକ୍ଷ୍ମଣ
ନୋହିଲେ ଆସନ୍ତାକି ହୋଇ ନିର୍ଭୟେ ।
ନ ଚିହ୍ନି ଆମ୍ଭେମାନେ [illegible]
ନ ଜାଣିବା ଲୋକ ଯେ ହନୁ [illegible] ।
ମାଲ୍ୟବନ୍ତ ପର୍ବତେ ଅଛନ୍ତି ରାମ [illegible]
ଲକ୍ଷ୍ମଣ ଆସିଛନ୍ତି ସୈନ୍ୟକୁ ନେବାପାଇଁ ।
ବିଳମ୍ବ ଦେଖିଣ ଯେ ପେଷିଲେ [illegible]
ବାଳୀକି ମାରିବା କାଣ୍ଡ ଧନୁ [illegible] ।
ସୁଗ୍ରୀବ ରାଜାଠାରେ ନ [illegible]
ଏତେ ବୋଲି ନଗରବାସୀ [illegible] ।
[illegible] ଦେଖିଣ ଯେମନ୍ତେ [illegible]
ସେହେନେ ଦିଶନ୍ତି ଯେ ବୃହତ୍ [illegible] ।
[illegible] ସିଂହଦ୍ୱାରେ ମିଳିଲା ବୀର ଯାଇ
[illegible] ଚାହିଁଣ କହେ [illegible] ପାଇଁ ।
ବୋଇଲେ ଦ୍ୱାରପାଳ [illegible] ଯାଇ
ଲକ୍ଷ୍ମଣ ସିଂହଦ୍ୱାରେ ଆସିଣ ଛନ୍ତି ରହି ।
ଶୁଣିଣ ଦ୍ୱାରପାଳବେଗେ ଚଳିଗଲା
କରଯୋଡ଼ି ସୁଗ୍ରୀବ ଆଗେ ଠିଆ ହେଲା ।
ନୃପତି ବୋଇଲେ କିସ ଯେ ଅଟେ କଥା
କିମ୍ପାଇଁ ମହାତ୍ମା ପାଉଣ ଏଡ଼େ ବ୍ୟଥା ।
କରଯୋଡ଼ି ଦ୍ୱାରପାଳ କହେ ସୁଗ୍ରୀ ଆଗେ
ଶୁଣହେ କିଷ୍କିନ୍ଧ୍ୟା ଠାକୁର [illegible] ।
ଦ୍ୱାରରେ ପୁରୁଷେକ ଆସିଣ ମିଳିଅଛି
ସେ ମୋତେ କୋପକରି ବୋଇଲାକ ତ୍ରାସି ।
ବୋଇଲା ରାଜାଙ୍କୁ ଜଣାଅ ତୋର ଯାଇ
ଲକ୍ଷ୍ମଣ ଆସିଣ ତୋର ଦ୍ୱାରେ ଠିଆ ହୋଇ
ତାହାକୁ ଦେଖିଣ ଭୟେ ଯେ ବୋଇର
କେବଣ ମହାତ୍ମା ସେ ଯେ ବିଚାର ମନର ।
ଶୁଣିଣ ସୁଗ୍ରୀବର ଯେ ଉଠିଲା ଉଦ୍‌ବେଗ
ସନ୍ଧ୍ୟା ସୁମରିଣ ବସିଲା ନୃପତି ।
ଚତୁଷ୍ପାଟ ବୋଲିବେ ଯାଇଣ ବିବେ କଲା
ଦ୍ୱାରପାଳକୁ ସେ ଚାହିଁଣ ବୋଇଲା ।
କେବଣ ଲକ୍ଷ୍ମଣ ସେ ବୁଝିଣ ଆସ ଯାଇ
ଘର ଦ୍ୱାର ଅଟଇ ତାର କାହିଁ ।
ରାଜାର ଆଜ୍ଞାରେ ଚଳିଲା ଦ୍ୱାରପାଳ
ସିଂହଦ୍ୱାରେ ଯାଇଣ ମିଳିଲା ସତ୍ୱର ।
ପଚାରିଲା କେଉଁଠାରୁ ଅଇଲୁ ମହାବୀର
କଷାକଉପୁନି ଯେ ଶିରରେ ଜଟାଭାର ।

ଭୋ ମହାତ୍ମା କେବଣ ଦେଶରୁ ବିଜୟେ
କେ ତୁମ୍ଭ ଭାଇ ବନ୍ଧୁ କେ ତୁମ୍ଭ ବାପମାଏ ।
କେବଣ କାର୍ଯ୍ୟେ ତୁମ୍ଭେ ଅଇଲ କିସ ପାଇଁ
ରାଜାର ଆଜ୍ଞାରେ ମୁଁ ତୁମ୍ଭଙ୍କୁ ପଚାରଇ ।
ଶୁଣିଣ ଲକ୍ଷ୍ମଣ ଯେ ବୋଲନ୍ତି ଆଗେ ତାର
ଅଯୋଧ୍ୟା ନାମେ ରାଜ୍ୟ ଅଟେ ଆମ୍ଭର ଘର ।
ମାତା ନାମ ମୋର ଯେ ସୁମିତ୍ରା ଅଟଇ
ପିତା ନାମ ଦଶରଥ ଶୁଣ ସ୍ଥିର ହୋଇ ।
ଭାଇ ମୋର ଶ୍ରୀରାମ ଭରତ ଶତଘନ
ବନ୍ଧୁ ଆମର ଅଟେ ଜନକରଷି ପୁଣ ।
ସଙ୍ଗେ ସହୋଦର ଯେ ଅଟନ୍ତି ଋଷିଗଣ
ଆୟୁଧ ଆମ୍ଭର ଅଟେ ଧନୁର୍ବାଣ ।
ଯାହାରେ ଦେଖି ବେଶଧାରି ବନସ୍ତରେ ବୁଲୁ
ଦୁଷ୍ଟଜନ ଦେଖିଲେ ତା ଜୀବନକୁ ନେଲୁ ।
ଦେବତା ବ୍ରାହ୍ମଣ ଯେ ବିପ୍ର ଋଷିଗଣ
ଆମ୍ଭଙ୍କୁ ଦେଖି ପୂଜା କରନ୍ତି ଯେ ଜାଣ ।
ଅନେକ ଦୈତ୍ୟ ଯେ ଏ ବନେ ମାଇଲୁ
ଏ ରାଜ୍ୟେ ବାନରରାଜା ଆସିଣ ବଧ କଲୁ ।
ଧନ୍ଦଭୀ ଅସ୍ଥି ପିଙ୍ଗି ସପ୍ତଶାଳ ଛେଦି
ସୁଗ୍ରୀବକୁ ରାଜ୍ୟ ଦେଲେରାଜ୍ୟ ବିଧି ।
କେଉଁ ଲକ୍ଷ୍ମଣମାନଙ୍କୁ ଜାଣଇ କିରେ ରାଜା
କେତେ ଦିନ ଭିତରେ ନ ଚିହ୍ନେ ସୁଗ୍ରୀ ରାଜା ।
ଦ୍ୱାରପାଳ ବୋଇଲା ରାଜା ଯେ ପଚାରିଲା
ପୂର୍ବର କଥା ରାଜା ବିଚାର ନ କଲା ।
ଅଳ୍ପ ଲୋକରେ ଯେବେ ମିଳଇ ଅଧିକାରୀ
ସେ ଲୋକ ଦୁଷ୍ଟ ହୋନ୍ତି ଶୁଣ ତୁ ହେତୁକରି ।
ଶୁଣିଣ ଲକ୍ଷ୍ମଣ କମ୍ପଇ ହୋଇ ଖର
ସଙ୍କଟ ପଡ଼ିଲେ ଯେମନ୍ତେ ରହେ ଘୃତଚର ।
ଘନ ଘନ କରି ସେ ଛାଡ଼ନ୍ତ ନିଃଶ୍ୱାସ
ଅଳପ ହସିଣ ଯେ ଚାହିଁଇ ଦଶଦିଶ ।
ଦ୍ୱାରପାଳକୁ ବୋଇଲା ଏବେ ତୁରେ ଶୁଣ
ଶ୍ରୀରାମ କନିଷ୍ଠ ମୁଁ ଯେ ମୋ ନାମ ଲକ୍ଷ୍ମଣ ।
ଯାହାର ନାରାଚରେ ବାଳୀ ଗଲା ନାଶ
ଯାର ପାଦେ ସୁଗ୍ରୀବ ଶରଣ ବିଶେଷ ।
ଯାହାର ପ୍ରସାଦରେ ଭୁଞ୍ଜେ କିଷ୍କିନ୍ଧ୍ୟାପୁରୀ
ଯେଉଁ ରାମ ପ୍ରସାଦରେ ତାରାକୁ ଭୋଗକରି ।
ସେ ରାମର ଭାଇ ମୁଁ ଯେ ଲକ୍ଷ୍ମଣ କହ ଯାଇ
ଗର୍ବ କଲା ସୁଗ୍ରୀବର ସୁଖଭୋଗ ପାଇ ।
ଶୁଣିଣ ଦ୍ୱାରପାଳ ବେଗେ ଚଳିଗଲା
ସୁଗ୍ରୀବର ଛାମୁରେ ଯାଇଣ ମିଳିଲା ।
କରଯୋଡ଼ି ଜଣାଏ ଶୁଣହେ କପିରାଜ
ସେ ଯେ ଲକ୍ଷ୍ମଣ ଶ୍ରୀରାମ ସାନୁଜ ।

କିଅବା ନାରାଚେ ଯେହ୍ନୁ ବାଳୀ କଲା ବଧ
ତୁମ୍ଭ ପ୍ରତି ଯାହାଙ୍କର ଅସୀମ ପ୍ରସାଦ ।
ତାଙ୍କରି ଭାଇ ଯେ ଲକ୍ଷ୍ମଣ ବସିଅଛି
ତୋହର ଆଜ୍ଞା ତାକୁ ଅଇଲି ମୁଁ ପୁଚ୍ଛି
ସୁଗ୍ରୀ ବୋଇଲା ସେ ଯେବେ ଅଇଲାକ ପୁଣ
ଆଗକୁ ନ ଆସି ପ୍ରତିଜ୍ଞା କର ଟାଣ ।
ଯାଅ ଦ୍ୱାରପାଳ କହରେ ତାକୁ ଯାଇ
ବୋଲିବୁ ରାଜାକୁ ସମୟ ଯେ ନାହିଁ ।
ଶୁଣିଣ ଦ୍ୱାରପାଳ ବେଗେ ଲେଉଟିଲା
ଲକ୍ଷ୍ମଣ ଆଗେ ଯାଇ ସଙ୍କେତ କହିଲା ।
ବୋଇଲା ରାଜାକୁ ସମୟ ତେଣେ ନାହିଁ
ତୋହର କଥା ରାଜା ଗ୍ରହ୍ଣ ନ କରଇ ।
ଏ ବଚନ ଶୁଣି ଲକ୍ଷ୍ମଣ ଯେ ବୀର
ଧନୁରେ ଗୁଣ ଦେଇ ଯୋଚିଲା ବେଗେ ଶର ।
ନାରାଚକୁ ବୋଇଲେ ତୁରିତ ହୋଇ ଯିବୁ
କୌଣସି ଜନକୁ ଖରାପ ନ କରିବୁ ।
ସୁଗ୍ରୀବର ଥିବାର ଠାବରେ ମିଳିବୁ
ଗର୍ଜନ ନାଦ ପୁଣି କରିବୁ ।
ଯେଉଁଠାରେ ଆସନ ରାଜା କରିଥିବ
ଜମ୍ବେବ ହନୁମନ୍ତ ସୁଷେଣ ନଳ ଥିବ ।
ସେ ସ୍ଥାନରେ ମିଳି ସତ୍ୱରେ ଯିବୁ ଭେଦି
ସମସ୍ତଙ୍କୁ ମୋହ କର ହେଉ କାର୍ଯ୍ୟ ସିଦ୍ଧି ।
ତୋହର ଗର୍ଜ୍ଜନରେ ସମସ୍ତେ ଲୋଟିବେ
ଅଚେତ ହୋଇବେ ଚେତା ହରାଇବେ ।
ସମସ୍ତ ପାତ୍ରମନ୍ତ୍ରୀ ଘେନିଣ ସୂର୍ଯ୍ୟ ସୁତ
ସଲଙ୍କ ପରେ ବିଜେ ନଥିବ ଚିନ୍ତା ଅର୍ଥ ।
ଏମନ୍ତ ସମୟେ ଯାଇ ମିଳିବୁ ଶର
ଶୁଣିଣ କଙ୍କ ପକ୍ଷୀ ଚଳିଲା ସତ୍ୱର ।
ନବର ଭିତରେ ବାଣ ପଶିଲାକ ଯାଇ
ଦ୍ୱାରବାଟେ ଗଲା ସେ ଲକ୍ଷ୍ୟ କାର ନାହିଁ ।
ଯେଉଁଠାରେ ରାଜ୍ୟକରି ବସିଅଛି ରାଏ
ସେଠାରେ ଶର ଯାଇ ପ୍ରବେଶ ହୁଏ ।
ଏସନକ ସମୟରେ ନାରାଚ ଯାଇ ମିଳି
କି ଅବା ମେଘମାନେ ଘଡ଼ଘଡ଼ି ରଡ଼ି କରି ।
ବାଙ୍କିଆ କାଠ ତ୍ରୋଣେ ଯାଇ ଶର ଭେଦି
ସମସ୍ତେ ଶବଦରେ ପଡ଼ିଲେ ହତବୁଦ୍ଧି ।
ଖଟଦୋଳି ଉପରେ ସୁଗ୍ରୀବ ବସିଥିଲା
ମଲାପ୍ରାୟେ ହୋଇଣ ମୋହରେ ଶୋଇଲା ।
ଯେ କେ ପାତ୍ରମନ୍ତ୍ରୀ ସେ ସ୍ଥାନରେ ଥିଲେ
ସାମନ୍ତ ସେବାକାରୀ ସମସ୍ତେ ମୋହଗଲେ ।
ଦେଖିଣ ନୃତ୍ୟକାରୀ ଦାସୀଜନରେ କହି
ଦାସୀଏ ତାରା ଆଗେ ଜଣାଇଲେ ଯାଇ ।

ତୋର ସ୍ୱାମୀ ସଙ୍ଗ ଅମାନତ୍ୟମାନେ ମଲେ
ପାତ୍ରମନ୍ତ୍ରୀ ସାମନ୍ତ ସମସ୍ତେ ମୋହ ଗଲେ ।
ବଜ୍ରାଘାତ ପ୍ରାୟ ଶବଦ ଶୁଣିଲୁ
ସକଳ ଜନକୁ ଯେ ଅଚେତା ଦେଖିଲୁ ।
ଶୁଣିଣ ପାଟରାଣୀ ଅଇଲେ ତଡ଼ତଡ଼ି
ଦେଖିଲା ପଡ଼ିଅଛି କୋଳରେ ମାରୁତି ।
ଜମ୍ବେବ ନଳନୀଳ ତାରାକ୍ଷ ସୁଷେଣ
ଏମାନେ ମୂର୍ଚ୍ଛା ଯାଇ ଅଛନ୍ତି ସେହି ସ୍ଥାନ ।
ମଲା ପ୍ରାଣୀ ଯେସନେ ଲୋଚନେ ଦେଖାଯାଏ
ସମସ୍ତେ ହୋଇଛନ୍ତି ତେସନ ପରାଏ ।
ମୋହ ତେଜି ମୁହଁ ଚୁହାଁଚାହିଁ ହେଲେ ଜାଣ
ଚରଣ ଓଳଗି କରି ତାରା ପୁଚ୍ଛେ ଜାଣ ।
କିମ୍ପାଇଁ ଭୋନାଥ ତୁ ହୋଇଲୁ ଅଜ୍ଞାନ
କିମ୍ପାଇଁ ମୋହରେ ପଡ଼ିଲେ ମନ୍ତ୍ରୀ ଗଣ ।
ସୁଗ୍ରୀବର ବୋଇଲା ଏବେ ଶୁଣରେ ସଙ୍ଘାତ
ବାଳୀକି ମାରଲେ ଯେବଣ ରଘୁନାଥ ।
କିଷ୍କିନ୍ଧ୍ୟା ଭୋଗ ମତେ ଯେଉଁ ସ୍ୱାମୀ ଦେଲା
ସେ ରାମ ଚତୁର୍ମାସ୍ୟା ମାଲ୍ୟବନ୍ତେ ରହିଲା ।
ମୋତେ ବୋଇଲେ ତୁମ୍ଭେ ବରଷା ଆସପାରି
ଥାଟ ଘେନି ଯିବ ଯେ ମାଲ୍ୟବନ୍ତ ଗିରି ।
ତେବେ ସେ ଲଙ୍କା ଯିବା ଯେ ବହନ
ଜାନକୀ ଆଣି ଦେଲେ ରହିବ ମୋର ପ୍ରାଣ ।
ଏସନକ ବୋଲି କଣ୍ଟ ଦେଇଗଲେ
ଉଚ୍ଛୁର ଦେଖିଣ ଦେବ ଲକ୍ଷ୍ମଣ ପେଷି ଦେଲେ ।
ଶୁଣି ସଉମିତ୍ରୀ ଯେ ଅଇଲେ ପୁଣି ଖରେ
ଉଭା ହୋଇଛନ୍ତି ଯେ ନବର ସିଂହଦ୍ୱାରେ ।
ଦ୍ୱାରପାଳ ହାତରେ ବାର୍ତ୍ତା ମୋତେ ଦେଲେ
ଲକ୍ଷ୍ମଣ ଆସିଅଛି ବୋଲି ସେ କହିଲେ ।
ବାରତା ଶୁଣି ମୁଁ କଲି ତାଙ୍କୁ ହାସ୍ୟ
ବୋଇଲି କେବଣ ଲକ୍ଷ୍ମଣ ପଚାରି ଆସ ।
ଚିତ୍ତରୁ ପାପମନ କେବେହେଁ ନ ଗଲା
ଏସନ ବାର୍ତ୍ତା ଦ୍ୱାରପାଳ ଯେ କହିଲା ।
ସେ ଜାଣି ସ୍ୱାମୀ ମତେ କୋପ କଲା
ଦ୍ୱାରପାଳ ଆଗେ ରାମଭାଇ ମୁଁ ବୋଇଲା ।
ଏତେ କହି ନାରାଚ ବିନ୍ଧିଲା ରାଗେ
ଅଚେତ ହୋଇଲୁ ଯେ ଚେତା ହେଲା ଏବେ
ବଜ୍ର ସମ ପ୍ରମାଣ ପଡ଼ିଲା ଆସି ବାଣ
ଦୟାକରି ମୋର ନ ନେଲେ ପରାଣ ।
ବାଙ୍କିଆ ଫୁଟି ତ୍ରୋଣ ଫୁଟିଅଛି ଶର
ଏହି ଶରେ ପୁରି ମଲା ବାଳୀ ବୀର ।

ମୂର୍ଦ୍ଧନୀ ସନ୍ଧିରେ ବସିଲା ଆସି କାଣ୍ଡ
ଉଲଟି ଆସି ରହିଲା ନ ଛେଦେ ମୋର ମୁଣ୍ଡ ।
ଶ୍ରୀରାମ ଛାମୁକୁ ମୁଁ ଯିବଇଁ କେମନ୍ତ
ଆବର ଲକ୍ଷ୍ମଣ ଚାହିଁବି କେମନ୍ତ ।
କି ବୋଲି ବୋଲିବେ ମୋତେ ରଘୁକୁଳ ସାଇଁ
ଆବର କିସ ମୁଁ ଯେ କରିବି ଏ ଦେହୀ ।
ଚାରିମାସ ରହିଲି ପର୍ବତ ଉପର
ସଙ୍ଗୋଳିବାକୁ ସକ୍ଷ ନୋହିଲା ମୋହର ।
ସୁଖଭୋଗ ପାଇଣ ଭୋଳରେ ଦିନ ନେଲି
ବୈକୁଣ୍ଠ ସ୍ୱାମୀଠାରେ ସେବା ମୁଁ ନ କଲି ।
ପୁତ୍ର ତାର ଅଙ୍ଗଦ ସୈନ୍ୟ ପାଇଁ ଗଲା
ମୋହର କର୍ମକୁ ସେହି ନ ଆସିଲା ।
ମନ୍ତ୍ରୀ ଅମାନତ୍ୟ ସଙ୍ଗେ ଯେ ମୋର ଥିଲେ
ସେହି ମୋତେ ଗୋ ଚେତାଇ ନ ଦେଲେ ।
କିସ କରିବି ନ ଦିଶେ ମୋତେ ବୁଦ୍ଧି
ଏତେ ବୋଲି ସୁଗ୍ରୀବର ହରାଇଲା ନିଧି ।
ମୁଁ ଏବେ ରାଜ୍ୟ ଛାଡ଼ି ଯିବି ବନବାସ
ଏ ସୁଖ ସମ୍ପଦରେ ନାହିଁ ମୋର ଆଶ ।
ଯେବଣ ସ୍ୱାମୀ ମୋତେ ଏବେ ବଡ଼
ଶୃଗାଳକୁ ଆଣି ଯେ ଦେଲା ସିଂହପଣ ଦୃଢ଼ ।
ଏ ମୋର ଆତ୍ମା ଯେ ତାକୁ ନ ଚିହ୍ନିଲା
ବନଜୀବ ପ୍ରାୟେ ମୋ ଶରୀର ହୋଇଥିଲା ।
ଶ୍ରୀରାମ ପ୍ରସାଦରେ ବିଭୂତି ମୁଁ ଭୁଞ୍ଜଇ
ତାହାକୁ ସଙ୍ଗୋଳି ମୁଁ ନ ଆସିଲି ଯାଇ ।
ମୁହିଁ ଯେ ବୋଇଲି ତାକୁ କେବଣ ଲକ୍ଷ୍ମଣ
ମୁହିଁ ଛାର କପି ଯେ ମୂଢ଼ ଜାତି ଜାଣ ।
ମୋହର ଗର୍ବ ଦେଖି ଧନୁରେ ବାଣ ସନ୍ଧି
ବାଳୀକି ମାରିବାଶରେ କୋପରେ ଦେଲା ବିନ୍ଧି ।
ପ୍ରାଣ ନ ଘେନିଲା ଯେ ତାହାର ବଡ଼ପଣ
ଏ ବଚନ ଶୁଣି ହସିଲେ ତାରା ପୁଣ ।
ବୋଇଲା ଯେଉଁ ଲୋକ ବୃକ୍ଷକୁ ରୋପିଥାଇଁ
ସେ ବୃକ୍ଷ ପ୍ରବଳ ହେଲେ ତାହାକୁ ଛେଦଇ ।
ଭୋ ଦେବ ସେ କଥାକୁ ନ କର ତୁମ୍ଭେ ଭୀତି
ଘଡ଼ିଏ ହେଲା ଲକ୍ଷ୍ମଣ ଦ୍ୱାରେ ଉଭାହୋଇଛନ୍ତି
ସୁଗ୍ରୀବ ବୋଇଲେ ଶୁଣରେ ମନୋହାରୀ
କିଏ ଯାଇ ତାହାକୁ ପ୍ରବୋଧନା କରି ।
ନ ପୁଣ ମୋହର କରଇ କ୍ରୋଧମନ
ତାରାବତୀ ବୋଇଲେ ତୁମ୍ଭେ ଚଳହେ ବହନ ।
ସୁଗ୍ରୀବର ବୋଇଲା ମୁଁ ଯେ ନ ପାରି ଯାଇ
ଗଲେ ନିଶ୍ଚୟ ମୁଁ ପ୍ରାଣ ନ ପାଇ ।
ପାତ୍ରମନ୍ତ୍ରୀ ଯାଇଣ ସେ କରନ୍ତୁ ଦୟିନୀ
ପୁତ୍ର ମୋର ଅଙ୍ଗଦ ଯାଇଛି ଥାଟ ଆଣି ।
ନ କର କୋପ ତୁରେ ବୀରବର ଲକ୍ଷ୍ମଣ
ଏମନ୍ତ ବଚନ ଶୁଣି ବୋଲେ ମନ୍ତ୍ରୀଗଣ ।
ଆମ୍ଭେ ଲକ୍ଷ୍ମଣ ନିଶ୍ଚେ ହରାଇବୁ ପ୍ରାଣ
ଏତେ ବୋଲି ବିଚାର କରନ୍ତି ସର୍ବଜନ ।
ଚାହିଲା ମାତ୍ରକେ ସପ୍ତଶାଳା ସଳଖି ହୋଇଗଲା
ତାହାର ଆଗେ ଆମ୍ଭେ କି କହିବୁ ଭଲା ।
ଦେଖିଲେ ବୋଲିବେ ସେ କ୍ରୋଧଭର ହୋଇ
କେଣେ ଥିଲ ପାତ୍ର ମନ୍ତ୍ରୀ ଚେତା ଯେ ହରାଇ ।
ତୁମ୍ଭେମାନେ ଥିଲଟି ରାଜାର ସନ୍ନିଧାନ
ତୁମ୍ଭେ କିମ୍ପା ନ ଚେତାଅ ଅମାନତ୍ୟଗଣ ।
ଭୋଦେବ ସୁଗ୍ରୀବର ନ କର ତୁମ୍ଭେ ଭୀତି
ବେନିଘଡ଼ି ହେଲାଣି ଲକ୍ଷ୍ମଣ ଦ୍ୱାରେ ଛନ୍ତି ।
କେ ଯାଇଣ ତାକୁ ପୁଣ କରିବ ପ୍ରବୋଧ
ନ ପୁଣ ଲକ୍ଷ୍ମଣ ଯେ କରଇ ପ୍ରମାଦ ।
ସୁଗ୍ରୀବର ବୋଇଲେ ମୁଁ ଯାଇ ନ ପାରଇ
ସମର୍ଥପଣ ଗଲା କହିଲାବେଳୁ ମୁହିଁ ।
ମନ୍ତ୍ରୀଗଣ ବୋଇଲେ ଆମ୍ଭର ନାହିଁ ବାଟ
ଦେଖିଲେ ଲକ୍ଷ୍ମଣ ଯେ କରିବ କ୍ରୋଧ ଚିତ୍ତ ।
ବୋଲିବ ବୁଦ୍ଧି ତୁମେ ହରାଇଲ ପୁଣ
କେତେଦିନ ସୁଖରେ ଭୋଳ ମତି ଜାଣ ।
ସୁଗ୍ରୀବର ପାଶୋରିଲା ଅଇଶ୍ୱର୍ଯ୍ୟ ପାଇ
ତୁମ୍ଭେ ନ ଚିହ୍ନିଲେରେ କେବଣ ଭାବ ପାଇ ।
ଯେବେ ସେ ଏହା ବୋଲିବ କରିବୁ ଆମ୍ଭେ କିସ
ଭୋ କପିରାୟ ତୁମ୍ଭେ ଆନ ଜଣେ ପେଶ ।
ଏମନ୍ତ ବଚନ ଶୁଣି ତାରାବତୀ କହି
ଶୁଣି କପିବର ମଉଡ଼ମଣି ରହି ।
ଗରମ ଶୀତଳ ଯେ ନ ପାର କରି
କେମନ୍ତେ ରାମ ସଙ୍ଗେ ଯିବା ଲଙ୍କାପୁରୀ ।
ଅସୁର ପୁର ସେ ବଡ଼ ଦୁଷ୍ଟ ଦୁର୍ଜନ
ଅନେକ ଛନ୍ଦେ କରିବ ଦୈତ୍ୟ ସୈନ୍ୟ ।
ସୁଗ୍ରୀବ ବୋଇଲେ ଶୁଣରେ ପ୍ରିୟସହୀ
ସେ କଥାକୁ ଶୋଚନା ମୋର କିଛି ନାହିଁ ।
ବୈକୁଣ୍ଠନାଥ ସ୍ୱାମୀ ଯେ ଅଟେ ମୋର
ମଲେ ଜୀଆଇ ଆଣିବେ ଏ କଥା ନିଜର ।
ଏତେବେଳେ ତୁକାର ଭାଷା ଯେ ଅଛି କହି
ଯେଉଁ ସ୍ୱାମୀ ରଖିଲା ତାଠାରେ ରିପୁ ହୋଇ ।
ଶୁଣି କରଯୋଡ଼ି ତାରା ଜଣାଇଲା
ମୁଁ ଯାଉଛି ବୋଲି ବଚନ ସେ କଲା ।
ଶୁଣିଣ ସୁଗ୍ରୀବର ମଉନ ରହିଲା ।
ତାରାବତୀ ରାଣୀକି ସେ କିଛି ନ କହିଲା ।
ତାରାବତୀ ବୋଲେ ଦୁଃଖୀ ନୁହ ନରପତି
ମୁଁ ଯାଇ ସଉମିତ୍ରୀଙ୍କୁ କରିବି ଯେ ଶାନ୍ତି ।

ଭୟ ନ କର ତୁମ୍ଭେ ପାତ୍ର ମନ୍ତ୍ରୀଗଣ
ଏତେବୋଲି ତାରାବତୀ ଚଳଇ ତକ୍ଷଣ ।
ଅନ୍ତଃପୁରେ ଯାଇଣ ପ୍ରବେଶ ହେଲା ସତୀ
ବିବିଧ ବନ୍ଧରେ ବେଶ ହେଲା ସେ ଝଟତି ।
ଅମଳାଣ ଶାଢ଼ୀ ଯେ ପିନ୍ଧିଲା ବାଛିକରି
ଦାସ ପରିବାରୀକି ବେଗେଣ ସଜ କରି ।
ଦେବନାରୀ ପ୍ରାୟେ ଦିଶଇ ତାରା ରୂପ
ଚନ୍ଦନ ଗୁଆପାନ ଅଣାଇଲା ପୁଷ୍ପ ।
ସୁବର୍ଣ୍ଣ ଥାଳିରେ ନେଇଣ ଥୋଇଲା
ସ୍ୱର୍ଗର ଅପସରା ପ୍ରାୟେ ସେ ଦିଶିଲା ।
ଅନ୍ଧାରେ ଆଲୋକ ଯେ ହେଉଅଛି ତେଜ
ଉଦୟ ପରାୟେ ଯେହ୍ନେ ନଭେ ଦ୍ୱିଜରାଜ ।
ସତେକି ଆକାଶରୁ ଖସଇ ଶଶଧର
ତେସନ ଦିଶେ ଦୁଲାଳ ମୟ ବାନରର ।
ସଙ୍ଗରେ ପରିବାରୀ ଅନେକ ଅଛନ୍ତି
ଅର୍ଘ୍ୟଯୋଗାଡ଼ ଘେନିଣ ବାହାରେ ତାରାବତୀ
ସିଂହଦ୍ୱାରେ ଯାଇଣ ଦେଖିଲା ଲକ୍ଷ୍ମଣ
ଓଳଗ ମେଲାଇ ଅଙ୍ଗଦ ମାତା ପୁଣ ।
ଦାସୀକୁ ବୋଇଲା ଚରଣ ଧୋଇ ଦିଅ
ଶୁଣିଣ ଦାସୀମାନେ ହୋଇଲେ ବେଗପ୍ରିୟ ।
ସୁବର୍ଣ୍ଣ ଝରିରେ ଗଙ୍ଗାଜଳ ଯେ ଥିଲା
ଆଗହୁଁ ପାଟରାଣୀ ସଙ୍ଗରେ ଆଣିଥିଲା ।
ଦାସୀମାନେ ଲକ୍ଷ୍ମଣଙ୍କ ଚରଣ ବେଗେଧୋଇ
ଝୀନ ବସନରେ ପୋଛିଲେ ପାଦ ଦୁଇ ।
ତେଣୁ ସେ ତାରାବତୀ ଅର୍ଘଥାଳି ଘେନିଣ ।
ଲକ୍ଷ୍ମଣ ତାରାବତୀ ଯେ କରଇ ପୂଜନ
ନାତୁଣୀକି ଦେଖି ଯେହ୍ନେ ମତହସ୍ତ ତୋଷ
ଶ୍ରୀରାମର ଭାଇ ଦେଖି ଛାଡ଼ିଲା ମନୁ ତ୍ରାସ ।
ମନେ ମନେ ବିଚାର କରଇ ଲକ୍ଷ୍ମଣ
ଜାନକୀ ପଟାନ୍ତର ଅଟଇ ଏହୁ ପୁଣ ।
ଏମନ୍ତେ ବିଚାରନ୍ତେ ତାରା ଯେ ମନେ ଭାଳି
କରଯୋଡ଼ି ପ୍ରବୋଧନା କରେ ସେହୁ ନାରୀ ।
ଭୋଦେବ ସାନୁଜ ଦାସ ବସ୍ଥଳ ଅଟୁ ତୁହି
ଏଠାରେ ବିଜେ କିମ୍ପା କରିଣ ଅଛ ରହି ।
କିଷ୍କିନ୍ଧ୍ୟା କଟକ ତୁମ୍ଭର ଅଟେ ପରା
ନଗ୍ରରେ ପଶିବାକୁ ତୋତେ କେ ନିରୋଧିଲା ।
ତୁମ୍ଭେ ଅନନ୍ତ ବ୍ରହ୍ମାଣ୍ଡ ଅଧିପତି
ଆମ୍ଭେ ସିନା ବାନର ଅଟୁ ହୀନଜାତି ।
ସେ କଥା ନ ବିଚାରି ଉଶ୍ୱାସ କଲୁ ଯହୁଁ
ଆମ୍ଭର ସ୍ୱଭାବ ଏବେ ଛାଡ଼ିଯିବ କାହୁଁ ।
ତୁମେ ଯେବେ ପର ପରା ବିଚାର ସାନୁଜ
ପ୍ରାଣରେ ନ ମାରି କିମ୍ପା ହେଉ ଭୟ ଆଜ ।
ଧର୍ମରେ ଅଟଇ ଯେ ମୁଁ ତୋର ଭାଉଜ
ମୋଠାରେ କ୍ରୋଧ ନୁହରେ ସାନୁଜ ।
ତୁମ୍ଭେ ମହତ୍ୱ ଯେବେ ସହିବ ଆମ୍ଭ ଦୋଷ
ତୁମ୍ଭେ ରୋପିବାରୁ ଆମ୍ଭେ ଯେ ବିଶେଷ ।
ଲକ୍ଷ୍ମଣ ବୋଲେ ତୁମ୍ଭେ ଶୁଣଗୋ ଶ୍ରେଷ୍ଠନାରୀ
ଜାଣୁନା ଶ୍ରୀରାମ ଗଲେଟି ଯାହା କରି ।
ଏହୁ ଯେ ସୁଗ୍ରୀବର ବନରେ ଲୁଚିଥିଲା
ତାଙ୍କର ପ୍ରସାଦେ ଏ ସୁଖକୁ ଲଭିଲା ।
ଶ୍ରୀରାମ ମାଲ୍ୟବନ୍ତେ ଅଛନ୍ତି ରହି
ସୈନ୍ୟ ଘେନି ଯିବାକୁ ଅଛନ୍ତି ବାଟ ଚାହିଁ ।
ନ ଗଲ ବୋଲିଣ ଯେ ପେଶିଲେ ରାମମୋତେ
ସେ ପ୍ରଭୁ ଆଜ୍ଞାରେ ଅଇଲି ମୁଁ ତୁରିତେ ।
ଦ୍ୱାରପାଳ ଭେଟିଣ ବାରତା ମୁଁ ଦେଲି
ଲକ୍ଷ୍ମଣ ଆସିଛି ବୋଲିଣ ଜଣାଇଲି ।
ଶୁଣିଣ ଉପହାସ କଲେ କମାଣି
କେଉଁ ଲକ୍ଷ୍ମଣ ବୋଲି ବୋଇଲା ଦମ୍ଭେ ପୁଣି ।
ମନ୍ତ୍ରୀ ଅମାନତ୍ୟଙ୍କର ନାହିଁ ଯେ କିଛି ଜ୍ଞାନ
ଖଟିଣ ଅଛନ୍ତି ସେ ଯେ ରାଜା ସନ୍ନିଧାନ ।
ବାହୁଡ଼ି ଦ୍ୱାରପାଳ କହିଲା ଆସି ମୋତେ
ବୋଇଲା ରାଜା ଆମ୍ଭର ନ ଜାଣନ୍ତି ତୋତେ ।
କେବଣ ଲକ୍ଷ୍ମଣ କାହିଁରେ ତୋର ଘର
ତାହା ଶୁଣି କୋପ ଯେ ହୋଇଲା ମୋହର ।
ବୋଇଲି କହ ଯାଇ ଶ୍ରୀରାମର ଭାଇ
ଯାହାର ନାରାଚେ ବାଳୀ ଯମପୁରେ ଯାଇ ।
ଯାହାଠାରେ ସୁଗ୍ରୀବର ପଶିଲା ଶରଣ
ମୁହିଁ ତାଙ୍କର ଅନୁଜ ସେହି ଯେ ଲକ୍ଷ୍ମଣ ।
ଏମନ୍ତ କହନ୍ତେ ଦ୍ୱାରପାଳ ଗଲା
ସୁଗ୍ରୀବର ଆଗରେ ଯାଇଣ ଜଣାଇଲା ।
ତେବେ କପିରାଜ ନୋହିଲା ତତପର
ବୋଇଲା ସମୟ ମୋତେ ନାହିଁ ଏତେ ବେଳ ।
ଦ୍ୱାରପାଳ କହନ୍ତେ କ୍ରୋଧ ଜାତ ହେଲା
ବିଚାରି ଅନାଦର ମୋତେ ସେ କଲା ।
ଏତେ ବିଚାରି ଧନୁରେ ଗୁଣ ଦେଲି
ସୁଗ୍ରୀବରକୁ ଅଜ୍ଞାନ କର ବୋଲି ।
ଆସିବାର ବେଳେ ଶ୍ରୀରାମ କହିଛନ୍ତି
ବଡ଼ ଦୁଃଖୀ ହୋଇଣ ଥିଲା ସେ କପିପତି ।
ଅଙ୍ଗଦ ମାତା ଯେ ଅଟେ ସତୀ ପୁଣ
ଏମାନଙ୍କୁ ଉଚ୍ଛନ୍ନ କରିବି ଜାଣ ।
ତାଙ୍କର ଆଶ୍ୱାସନେ ପେଶିଲି ମୁଁ ବାଣ
ନୋହିଲେ ସରିଥାନ୍ତା ଆଜ ରାଜପଣ ।
ଶୁଣିଣ ସୁନ୍ଦରୀ ଯେ ବୋଲଇ ବଚନ
ଶ୍ରୀରାମ କହିବା ବେଳାଭ ତୋତେ ଶୁଣ ।

ପର ପ୍ରାୟେ ହୋଇ ତୁରେ ସିଂହଦ୍ୱାରେ ରହୁ
ରୁଷିଲା ପରାୟ ଘରକୁ ତୁ ନ ଯାଉ ।
ତୋତେ ମୋର ପୁର ଯେ ନୁହଇ ଅଗୋଚର
ଅନ୍ତଃପୁର ମୋର ଅଟେ ଭାଉଜ ଯେ ତୋର ।
ପାତ୍ର ମନ୍ତ୍ରୀ ଅମାନତ୍ୟ ଅଟନ୍ତି ତୋର ଲୋକ
ଅଙ୍ଗଦ ଅଟଇ ଯେ ତୋ ପୁତ୍ର ବାଳକ ।
କପିରାଜ ଅଟନ୍ତି ଜ୍ୟେଷ୍ଠ ଭାଇ ଜାଣ
କାହାକୁ ମାନ ତୁ ଯେ କରୁରେ ଲକ୍ଷ୍ମଣ ।
ଜଣାଗଲା ଏବେ ତୋହର ବଡ଼ପଣ
ଏହିକିରେ ପଏ। ତୋର ସାନୁଜ ଲକ୍ଷ୍ମଣ ।
ଏତେ ବୋଲି ସୁନ୍ଦରୀ ଶିରରେ ଦେଲା କର
ଭୋ ଦେବ ବାରେ ମୋର ଦୋଷ କ୍ଷମାକର ।
ଥାଟ ଆଣିବାକୁ ମୋର ପୁତ୍ର ଯାଇଅଛି
ପଚାଶ ଯୂଥପତି ସଙ୍ଗରେ ନେଇଛି ।
ତିନି ପକ୍ଷକୁ କଷ୍ଟ ଯେ ଦେଇଛି ନରପତି
ରାଜ୍ୟରୁ ସୈନ୍ୟବଳ ଆଣିବାକୁ ସେତି ।
ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ଦିନ ଗଲା
ଆଜକୁ ଦୁଇପକ୍ଷ ତେରଦିନ ହେଲା ।
କାଲି ବାରତା ମିଳିଲା ଅଛନ୍ତି ଚିତ୍ରକୂଟ
ପାଞ୍ଚ ସାତଦିନେ ମିଳିବ ଆସି ଥାଟ ।
ଏବେ ତୁମ୍ଭେ କୋପ ନ କରହେ ସାନୁଜ
ସୁଗ୍ରୀବର କିସ ଦୋଷ ମନରେ ଏବେ ହେଜ ।
ଆପେ ଯେ ଶ୍ୱାସକୁ ଦେଲେ ଶାନି ଅନ୍ନ
ତୁମ୍ଭର ବଳରେ ରକ୍ଷା ହୋଇଛି ଏମାନ ।
ମୁର୍ଖଲୋକମାନଙ୍କୁ ଯେ ବୁଝାଇ ଶାହାସ୍ତ୍ର
ଚଣ୍ଡାଳ ଜନ କଲହେ ପବିତ୍ର ।
କରୁଣାସାଗର ହୋଇ ଏହା ତୁମ୍ଭେ ଦୟାକଲ
ଆପ୍ତ ପ୍ରକୃତି ତେଜି ନୋହେ ମନେ ବିଚାରିଲ ।
କୋପକଲେ ତୁମ୍ଭେ ହୋଇବ ଅକାରଣ
ତୁମ୍ଭ ପାଦେ ସୁଗ୍ରୀବର ପଶିଛି ଶରଣ ।
ସେ କଥା ନିଷ୍ଫଳ ହେବ ଭୃତ୍ୟକୁ ବଧ କଲେ
ଶୁଣିଣ ସଉମିତ୍ରୀ ତୋଷ ମନ ହେଲେ ।
ତାରାକୁ କହିଲା ଯେ ମଧୁର ବଚନ
ଧନ୍ୟ ଧନ୍ୟ ସୁନ୍ଦରୀ ଗୋ ପିତା ତୋର ଧନ୍ୟ ।
ଧନ୍ୟରେ ପୁତ୍ରବତୀ ଧନ୍ୟ ତୋ ଜନନୀ
ଧନ୍ୟ ତୋ ଯଉବନରେ ହଂସଗମନୀ ।
ମୃଦୁ ମୃଦୁ ବଚନ ହାସ୍ୟ ଯେ ସ୍ୱାଦ ପୁଣି
ଧନ୍ୟ ଆଜ ଦିନଗୋ ଦର୍ଶନ ନାରୀମଣି ।
ବାଘକୁ ବାଘୁଣୀ ମୋହିଲା ମୋତେ ।
ତାରାବତୀ କହିଲେ କହିଲ ମିଛ ମୋତେ ।
ତୁମ୍ଭଙ୍କୁ ଯେ ବଳେ ନାହିଁ ପୁରୁଷାର୍ଥ
କାମଦେବ ଯେବେ ତୁମ୍ଭହୃଦେ ଥାନ୍ତା ଶକ୍ତ ।
ଜାନକୀ ସଙ୍ଗରେ ଯଦି ତୋରଚିତ୍ତ ସ୍ଥିରଥାନ୍ତା
କହିଲୁ ଭାବି ଏପରି କାହିଁ ହୋଇଥାନ୍ତା ।
ସହଜେ କମଳା ତ ତ୍ରିପୁର ସୁନ୍ଦରୀ
ତାକୁ ତୁ ଅବୋଧ କଲୁ ଜାନକୀ ପ୍ରାୟେକରି ।
ଜଣାଗଲା ତୋର ଅଙ୍ଗେ ନାହିଁ କାମଦେବ
ନୋହିଲେ ମୋର ପୁରେ ତୋତେ କି ଅଭାବ ।
ଶୁଣିଣ ଲକ୍ଷ୍ମଣ ଯେ ଅଳପ ହୋଇ ହସି
ସେ କଥା ମୋରଠାରୁ ଶୁଣରେ ସୁବାସୀ ।
ମୋହର ଘରଣୀ ଯେ ଅଟଇ ନୋମା ନାରୀ
ଜାନକୀର ଭଗ୍ନି ଯେ ଯେ ପାର୍ବତୀ ଅଙ୍ଗେ ସରି ।
ତାର ସଙ୍ଗେ ମୋର ଯେ ଅଜସ୍ର ପୀରତି
ଆଗତ ନିଗତ ଜାଣଇ ସେହୁ ସତୀ ।
ବିଭାର କାଳେ ଯେ ସତ୍ୟ କରାଇଲା
ମୋର ବିନୁ ଅନ୍ୟ ନାରୀ ନ ଛୁଅଁ ବୋଇଲା ।
ମୋର ଅନ୍ୟ ପୁରୁଷରେ ନ ବଳିବ ଚିତ୍ତ
ଏକବ୍ରତୀ ହେଲେ ସୁଖି ହୋଇବ ବହୁତ ।
ଜାଳନ୍ଧରକୁ ତୁମ୍ଭେ ମୋହର କଥାଥିବ
ପାର୍ବତୀ ସଙ୍ଗରେ ଯେହ୍ନେ ସର୍ବଦା ସଦାଶିବ ।
ଏମନ୍ତ ବଚନ କହିଲା ସେହୁ ନାରୀ
କୁଳଦୀପ ପାଶରେ ନିୟମ ମୋହରି ।
ସେଦିନୁ ଅନ୍ୟ ସ୍ତିରୀ ଦେଖିଲେ ମଣଇ
ଜନନୀ ପ୍ରାୟେ ତାକୁ ଧର୍ମରେ ଗଣଇ ।
ତାରାବତୀ ବୋଲେ ଭାଉଜ ସଙ୍ଗେ ଥିଲେ
ହାସ୍ୟରସ ପରିହାସ ନୁହଇ କି ଭଲେ ।
ଲକ୍ଷ୍ମଣ ବୋଇଲେ ତୁରେ ଶୁଣ ଶ୍ରେଷ୍ଠ ନାରୀ
ତୁ ଯେବେ ପଚାରିଲୁ କହିବି ଫେଡ଼ିକରି ।
ଯେଉଁ ଦିନ ରାମ ସୀତା ବନକୁ ବାହାର
ଜନନୀ ବୋଇଲା ମୋର ଯାଆ ତୁ ସଙ୍ଗର ।
ଜନନୀ ଆଜ୍ଞାରେ ମୁଁ ଯେ ହରଷ ହୋଇଲି
ମୋହର ଅନ୍ତଃପୁରକୁ ବେଗେ ଚଳିଗଲି ।
ମୋହର ନାରୀକି ଯେ କହିଲି ସକଳ
ଜନକ ନନ୍ଦିନୀ ଶୁଣି ହୋଇଲା ତୋଷଭର ।
ବୋଇଲା ଜାନକୀ ଯେ ଅଟନ୍ତି କମଳା
ନାରାୟଣ ଅଟନ୍ତି ବଡ଼ଭାଇ ପରା ।
ଦେବକାର୍ଯ୍ୟ ନିମନ୍ତେ ଶୟନ ତେଜ୍ୟାକଲେ
ମାନବ ଦେହ ଧରି ଜନମ ଏଠି ହେଲେ ।
ମାରିବେ ଅସୁର ଯେ ବିଜୟ ଏବେ ବନ
ତୁମ୍ଭେ ସଙ୍ଗେ ଯିବାର ଅଟଇ ପ୍ରମାଣ ।
ଲଙ୍କାଗଡ଼ ଅସୁର ଅଟଇ ଦଶଶିର
ଦେବତାଙ୍କୁ ଅସୁର ଦେଲାକ ଦୁଃଖଭାର ।
ସେ ରାବଣ ମରିବ ତୁମ୍ଭ ଭାଉଜର ଛଳେ
ଏ କଥା ହେତୁକରି ଥିବସି ମନରେ ।
ନ ଛୁଇଁ ଲଙ୍କଗଡ଼କୁ ଜାନକୀ ଘେନିଯିବ
ନବରେ ନ ନେବ ବନ ଭିତରେ ରଖିବ ।

ତେବେ ଛଳ କରିବେ ଜ୍ୟେଷ୍ଠଭାଇ ପୁଣ
ବାନର ଭାଲୁ ଘେନି ମାରିବେ ଦୈତ୍ୟ ଜାଣ ।
ସେ ରାବଣ ନନ୍ଦନ ଅଟଇ ବଡ଼ ଗାଢ଼
ତାହାର ହସ୍ତରେ ନମରେ ସେହୁ ମୂଢ଼ ।
ଜନମରେ ବିଧାତା ଲେଖିଅଛି ତାର
କାଳେ ସେହୁ ମରିବ ହସ୍ତରେ ତୁମ୍ଭର ।
ଚଉଦ ବରଷ ତୁମ୍ଭେ ନପୁଂସ ହେବ
ଚଉଦ ବର୍ଷଯାଏ ଅନ୍ନ ନ ଭୁଞ୍ଜିବ ।
ଚଉଦ ବର୍ଷ ପୁଣି ଅନିଦ୍ରା ରହିବ
ତେବେ ଯେ ତୁମର ହସ୍ତେ ମରଣ ତାରନେବ ।
ଏ କଥା ନ ପାଳିଲେ ମାରିବ ସେ ଯେ ତେବେ
ଏ ତିନିକଥା ନିୟତ କର ମୋ ଆଗରେ ।
ଶୁଣିଣ ତାଙ୍କଠାରୁ ନିୟତ ମୁଁ ଯେ ଗଲି
ନିଦ୍ରା ଅନ୍ନ ମଇଥୁନ ସେଠାରୁ ବରଜିଲି ।
ତେବେ ପ୍ରତେ ଗଲା ମୋହର ଅର୍ଦ୍ଧଅଙ୍ଗ
ବିଚାରିଲା କାହା ସଙ୍ଗେ ନ ପୁଣ ଅଙ୍ଗସଙ୍ଗ ।
ବିଚାରି କାମଦେବଙ୍କୁ ଅନେକ ସ୍ତୁତିକଲା
ମୋହର ଅଙ୍ଗୁ ଅନଙ୍ଗ ହରଣ କରି ନେଲା ।
ବୋଇଲା ଚଉଦ ବରଷ ପରିଯନ୍ତେ
ନପୁଂସକ ହୋଇଣ ଥାଅ ଯେ ନିଶ୍ଚିନ୍ତେ ।
ସେହିଦିନୁ ମୁଁ ଯେ ନପୁଂସକ ହେଲି ଜାଣ
ପୁଣି ମୋତେ ବୋଇଲା ସେ ନାରୀ ରତନ ।
ବୋଇଲା ତୁମ୍ଭଙ୍କୁ ଦେଖିଲା ଯାଏ ମୁହିଁ
ପୁଷ୍ପବତୀ ନୋହିବି ମନ ମୋ ନ ଟଳଇ ।
ତୁମ୍ଭଙ୍କୁ ଦେଖିଲେ ହୋଇବ ଋତୁ ମୋର
ତୁମ୍ଭେ ମୋତେ ଦେଖିଲେ କରିବ କାମଜ୍ୱର ।
ତେଣୁ ମୁଁ ନପୁଂସକ ହୋଇଲି ଜାଣ
ଶ୍ରୀରାମ ଜାନକୀ ସଙ୍ଗେ ରହିଲି ନିଶ୍ଚିନ୍ତେଣ ।
ନିଦ୍ରା ତେଜ୍ୟା କଲି ଅନ୍ନ ନ ଖାଇଲି
ଏ କଥା ଗୁପତ କରି ମନରେ ରଖିଲି ।
ତୁମ୍ଭ ଆଗେ କହିଲି ଯେ ନ କର ପ୍ରକାଶ
ଯେଣୁ ତୁ ଗୋ ମୋର ଜ୍ୟେଷ୍ଠବଂଶ ।
ଆହୁରି କଥାଏ ସେ ନାରୀ ମୋତେ କହି
ବେନି କଥା ସତ ଯେ ପାଇଲି ମୁହିଁ ।
ସେ ନାରୀ କହେ ବଡ ଭାଇ ପୁଣ
ତିନି ନାରୀ ସତୀ କରିବ ତୁମ୍ଭେ ଜାଣ ।
ପ୍ରଥମେ ଅହଲ୍ୟା ଯେ ଦ୍ୱିତୀୟେ ତାରା ନାରୀ
ତୃତୀୟେ ମନ୍ଦୋଦରୀ ସୃଷ୍ଟିରେ ପଣିକରି ।
ଏବେ ତ ପ୍ରତ୍ୟକ୍ଷରେ ସେ କଥା ଜଣାଗଲା
ସେ ନାରୀ କଥା ଅନ୍ୟଥା ନୋହିଲା ।
ଶୁଣିଣ ତାରାବତୀ ମନରେ ହରଷ
ଲକ୍ଷ୍ମଣ ଚରଣେ ନମିଲା ବିଶେଷ ।

ଏଥୁ ଅନନ୍ତରେ ତାରାଙ୍କୁ ଲକ୍ଷ୍ମଣ କହି
ତୋହର ବଚନରେ ସନ୍ତୋଷ ହେଲି ମୁହିଁ ।
ଉପେକ୍ଷା କଲି ମୁଁ ଯେ ସୁଗ୍ରୀବର ଦୋଷ
ଯାଅରେ ସୁନ୍ଦରୀ ତୋର ପତିକି ଘେନିଆସ ।
ଶୁଣିଣ ତାରାବତୀ ଲକ୍ଷ୍ମଣରେ କହି
ଆସନ୍ତେ ସାବୃତ୍ତ ମୋହର ନଗ୍ରେ ତୁହି ।
ଲକ୍ଷ୍ମଣ ବୋଇଲେ ତୋତେ ଜଣାକି ନାହିଁ ପୁଣି
ପିତା ସତ୍ୟ [illegible] ପ୍ରଭୁ ନାହିଁ ପୁଣି ।
ଚଉଦ ବରଷ ବନରେ [illegible] ଥିବ
ଦେଖ ତୋ [illegible] ଭୁଲିଲେ ସତ୍ୟକୁ କାହିଁ ।
ସେ ସତ୍ୟରେ ତୋର ନିୟମ [illegible]
ଦାଣ୍ଡଦ୍ୱାରେ ରହିଅଛି [illegible] ତୋ ସ୍ୱାମୀକୁ
ତେରବର୍ଷ ସପ୍ତମାସ ସମ୍ପୂର୍ଣ୍ଣ ଆସିହେଲା
ପିତା ସତ୍ୟ ଚାରିମାସ ପକ୍ଷେ ଯେ ରହିଲା ।
ଶୁଣିଣ ପାଟରାଣୀ ଭିତର ପୁର ଗଲେ
ସୁଗ୍ରୀବର ଆଗରେ ବୁଝାଇ କହିଲେ ।
ବୋଇଲେ ଲକ୍ଷ୍ମଣଙ୍କୁ ବୋଧି କଲି ମୁହିଁ
ଆଜ୍ଞାଦେଲେ ତୁମ୍ଭଙ୍କୁ ଘେନିଯିବା ପାଇଁ ।
ଦୋଷକଲେ କ୍ଷମା ମୋହର ସେବା ଦେଖି
ଆନନ୍ଦରେ ଆଜ୍ଞାଦେଲେ କ୍ରୋଧକୁ ଉପେକ୍ଷି ।
ଉଠ ଉଠ ବେଗେ ଦର୍ଶନ ଯାଇ କର
ଶୁଣି ସଜ ହୋଇଲା ସେ କପିକୁଳ ବୀର ।
ହନୁମନ୍ତ ଜମ୍ବେବ ସୁଷେଣ ନଳ ନୀଳ
ଅଷ୍ଟ ସେନାପତି ଯେ ଆଗରେ ହେଲେ ଠୁଳ ।
ମନରେ ଭୟଚିନ୍ତା ସମସ୍ତେ ବିଚାରନ୍ତି
ସିଂହଦ୍ୱାର ବାଟରେ ସେ ବାହାର ହୁଅନ୍ତି ।
ବିକ୍ରମ ସିଂହ ରୂପ ଦେଖିଲେ ଲକ୍ଷ୍ମଣର
ନିଉଛାଳି ପଡ଼ିଲେ ଲକ୍ଷ୍ମଣ ପାଦର ।
ନିକଟରେ ସୁଗ୍ରୀବର ପଞ୍ଚରତ୍ନ ଥୋଇ
ବୋଇଲେ ପ୍ରଭୁ ତୁମେ ବୈକୁଣ୍ଠ ଗୋସାଇଁ ।
ମୁହିଁ ଯେ ତୋହର ଭୃତ୍ୟ ପରିବାର
ଅକିଞ୍ଚନ ଜନର ଦୋଷ କ୍ଷମାକର ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ଶୁଣ କପିରାଣ
ଶ୍ରୀରାମଙ୍କଠାରେ ତୋର ନାହିଁ ଭଲପଣ ।
ଶ୍ରୀରାମ ତୋର ସଙ୍ଗେ ମଇତ୍ର ପୁଣ ହେଲେ
ସେ ତାହାର ସ୍ନେହ ଯେ କରିଲା ତୁମ୍ଭ ତୁଲେ ।
ସୁଗ୍ରୀବର ବୋଲେ ଯେ ଶୁଣ ହେ ସାନୁଜ
ମୁଁ ଛାର ହୀନଜାତି କରିବି ରାମକାର୍ଯ୍ୟ ।
ବାନର ଜାତି ମୁଁ ଯେ ବନସ୍ତରେ ଥାଇ
ପଶୁଜନ୍ତୁ ସ୍ୱଭାବ ଯେ କନ୍ଦମୂଳ ଖାଇ ।
ମୁହିଁ ଛାର ଶ୍ରୀରାମର ହୋଇବି କାହିଁ ହିତ
ସେ ଦେବ ବ୍ରହ୍ମାଣ୍ଡଠାକୁର ସର୍ବହିତ ।

ଏତେବୋଲି ସୁଗ୍ରୀବର ପାଦ ତଳେ ପଡ଼ି
ଉଠ ଉଠ ବୋଲିଣ ଲକ୍ଷ୍ମଣ ବେଗେ ତୋଳି ।
ଅଷ୍ଟସେନାପତି ଯେ ହୋଇଲେ ଏକମେଳି
ଲକ୍ଷ୍ମଣ ଚରଣ ତଳେ ଯାଇ ଭାଳି ।
ଶିରେ କର ଦେଇଣ ଅଛନ୍ତି ଉଭା ହୋଇ
ନଗର ନରନାରୀ ଦେଖୁଛନ୍ତି ରହି ।
ଲକ୍ଷ୍ମଣ ବୋଇଲେ ତୁମ୍ଭେ ଶୁଣ ସୁଗ୍ରୀବର
ଏ କଥାମାନ ତୋର ନୁହଁଇ ଯେ ବେଭାର ।
ଶ୍ରୀରାମଙ୍କ ଚରିତ୍ର ତୋତେ କହିଗଲେ
ଏ ପୁରେ ଲୋକେ ତୋର ଅବସ୍ଥା ଦେଖିଥିଲେ ।
ତୁମ୍ଭେ ତ ଯାହା କଲ ଦେଖିଲ ଏବେ ତାହା
ଏହିରୂପେ ରାମକୁ ହୋଇବ ପରା ସାହା ।
ସୀତା ଆଣି ଦେବାକୁ ରାମକୁ ତୁ କହିଲୁ
ସୁସ୍ଥ ହୋଇ ରହିବାରୁ ବିଚାର ତୁ ନ କଲୁ ।
ପାତ୍ର ମନ୍ତ୍ରୀମାନ ଯେ ଅଛନ୍ତି ତୋର କତି
ଏମାନେ ଜଣାଗଲେ କିଛି ନ ଜାଣନ୍ତି ।
ବରଷା ସରିଲା ଯେ ଶରତ ଆସି ହେଲା
କେଉଁକାଳକୁ କିସ କରିବୁ କହ ଭଲା ।
ଶ୍ରୀରାମର କଥାକି ତୋତେ ନୋହେ ବ୍ୟଥା
ଏକଥା ବିଚାର କର ସାମରଥା ।
ନିଶ୍ଚିନ୍ତ ହୋଇ ପୁଣ ରହିଲୁ ଆସି କାହିଁ
ତୋତେ ଆଶା କରିଣ ଅଛନ୍ତି ରଘୁସାଇଁ ।
କି ଅବା ରାବଣ ଯେ ତୋଠାକୁ ଆସି ପୁଣି
ତୋତେ ମନା କଲାକି ପ୍ରୀତିପଣେ ବାଣୀ ।
ଭାଇର ମଇତ୍ର ସେ ଅଟଇ ତୋହର
ସେ କଥା ମୋର ମନେ ହେଉଛି ପ୍ରତିକାର ।
ସୁଗ୍ରୀବ ବୋଇଲା ଦେବ ଦୁଇପକ୍ଷ ତେରଦିନ
ଅଙ୍ଗଦ ଯାଇଛି ଆଣିବାକୁ ସୈନ୍ୟ ।
ବାରତା ପାଇଲୁ ଯେ ହେମବନ୍ତରେ ଥିଲା
ଋକ୍ଷ କପି ରାଜାଙ୍କୁ ସେ ବରଣ ସାରିଲା ।
ଅନେକ ବାନର ଭାଲୁ ଘେନିଣ ସଙ୍ଗରେ
ଅକଳିତ ବଳ ତାର ଅଛନ୍ତି ସଙ୍ଗତରେ ।
ଚିତ୍ରକୂଟ ପର୍ବତରେ ଅଛନ୍ତ ଆସି ରହି
ଦୂତର ହାତେ ମୋତେ ଖବର ଛନ୍ତି ଦେଇ ।
କାଲି ପରା ଦିନରେ ଆସିବେ ଘେନି ଥାଟ
ମୋତେ କୋପ ନ କର ଶ୍ରୀରାମ କନିଷ୍ଠ ।
ଜମ୍ବେବ ହନୁମନ୍ତ ଏ କଥା କହନ୍ତି
ଶୁଣିଣ ସୌମିତ୍ରୀ ପରମ ତୋଷ ହୋନ୍ତି ।
ସୁଗ୍ରୀବର ବୋଇଲେ ଭିତରକୁ ଯିବା ଆସ
ଏ ରାଜ୍ୟ ତୁମ୍ଭର ନୁହଇ କି ଗୃହବାସ ।
ଲକ୍ଷ୍ମଣବୋଇଲେ ମୋତେ ଘର ନ ଯୋଗାଇ
ଚଉଦ ବରଷ ଆମ୍ଭେ ବଞ୍ଚିବୁ ବୃକ୍ଷ ଛାଇ ।
ଦଶରଥ ରାଜାଙ୍କର ଆଜ୍ଞା ଏସନକୁ
ଧର୍ମକୁ ମାନି ରାମ ନ ଗଲେ କେଉଁ ଦେଶକୁ
ଚଉଦ ବର୍ଷପୂରିଲେ ବନୁ ଯିବୁ
ନାନା ସୁଖଭୋଗ ବିଳାସିବୁ ।
ପ୍ରମାଣ ନ ସରିଲେ ନବରେ ନ ପଶୁ
ଶ୍ରୀରାମଙ୍କ ସଙ୍ଗରେ ଆମ୍ଭେ ଅରଣ୍ୟେ ପଶୁ ।
ଏସନକ ବୋଲିଣ ନିମ୍ବ ଗଛର ମୂଳେ
ଯାଇଣ ରହିଲେ ଦଶରଥର ବାଳେ ।
ସୁଗ୍ରୀବର ଆସିଣ କନ୍ଦମୂଳ ଦେଲା
ସଉମିତ୍ରୀ ସେ ଫଳ ଯେ ଭୋଜନ ନ କଲା ।
ବୋଇଲା ଶ୍ରୀରାମଙ୍କୁ ଭେଟିବି ଯେତେବେଳେ
ସ୍ନାହାନ ଭୋଜନ ମୋର ହୋଇବ ସେବେଳେ
ଆସିବାର ବେଳେ ଯେ ଶ୍ରୀରାମ ଛନ୍ତି କହି
ଯେତେବେଳେ ଲକ୍ଷ୍ମଣରେ ତୋତେ ନଦେଖଇ
ତେବେ ସେ ଫଳ ମୁଖେ ନ କରିବି ଗ୍ରାସ
ବେଗେ ଯାଇ ବାବୁରେ ସୁଗ୍ରୀବକୁ ଘେନି ଆସ ।
ଏସନକ କହି ମୋତେ ପେଷିଲେ ଦାଶରଥି
ମୁହିଁକେମନ୍ତ ଭୋଜନ କରିବଇଁ ଏଥି ।
ମୋର ପିଣ୍ଡ କିମ୍ପା ସୁଖି ଭୋଗରେ କରିବ
ସ୍ୱାମୀ ମୋର ଶ୍ରୀରାମ ଉପବାସ ଥିବ ।
ନୁହଇ ସୁଲଭ ସୁଗ୍ରୀବର ତୁ ବିଚାର
ଶୁଣିଣ କପିରାଜ ମନରେ ବ୍ୟଥା ତାର ।
ହନୁମନ୍ତ ସୁଷେଣ ଜମ୍ବେବ ସହିତ
ଆବର ଯେତେକ ମନ୍ତ୍ରୀ ଅମାନତ୍ୟ ଭୃତ୍ୟ ।
ଲକ୍ଷ୍ମଣକୁ ଜଗି ଯେ ରହିଲେ ବୃକ୍ଷମୂଳ
ରଜନୀ ବଞ୍ଚିଲେ ଯେ କଥାର କୁତୁହଳ ।
ସୌମିତ୍ରୀ କହିଲେ ବନେ ବୁଲିବା ବ୍ୟଥାମାନ
ଶୁଣିଣ ଶଙ୍କା ପାଇଲେ ସୁଗ୍ରୀବର ରାଜନ ।
ବୈକୁଣ୍ଠନାଥ ରାମ ଏଡ଼େ କଷ୍ଟ ପୁଣ
ମୋରଠାରେ କ୍ରୋଧ ନୋହି ସଦା ଶାନ୍ତ ମନ ।
ଚାଣ୍ଡାଳ ରାବଣ ଯେ ଅବଶ୍ୟ ମରିବ
ଆମ୍ଭେ ଦୁଃଖ ପାଇଲେ ମିଳିବ ସୁଲଭ ।
ଏଥୁଅନନ୍ତରେ ପାହିଲା ରଜନୀ
ଆଦିତ୍ୟ ଉଦୟ ହେଲେକ ମେଦିନୀ ।
ଯେ ଯାହାର ନିତ୍ୟକର୍ମ ସାରିଲେ ବହନ
ହନୁମନ୍ତକୁ ଚାହିଁଣ ବୋଲନ୍ତି ଲକ୍ଷ୍ମଣ ।
ତୁ ଏବେ ମାରୁତିରେ ମୋର ବୋଲ କର
ସୁଗ୍ରୀବକୁ ବିନ୍ଧିଲଇଁଯେବେଣ ଶର ।
ସେ କାଣ୍ଡ ଗୋଟିଏକ ଘେନିଆସ ଯାଇ
ଶୁଣିଣ କପିବୀର ମନରେତୋଷ ହୋଇ ।
ରାଜାର ନବର ଭିତର ପୁରକୁ ସେ ଗଲା
ସୂର୍ଯ୍ୟର କିରଣ ଜିଣିନାରାଚ ଦେଖିଲା ।

ଆସ୍ଥାନ ମଣ୍ଡପ ଯେ ବଳରେ ରଙ୍ଗଖମ୍ଭେ
ବସିଅଛି ନାରାଚ ଅତିହିଁ ଗାଢ଼ଭାବେ ।
ଉଦୟ ଗିରି ଉପରେ ଉଦେ ରବି ଯେହ୍ନେ
ସେ କାଣ୍ଡ ଦେଖି ନିର୍ବେଦ ହେଲା ମନେ ।
ଦଣ୍ଡେ ନମସ୍କାର ହନୁ କରଇ ବିଚାର
ଅସ୍ତ୍ରକୁ ସ୍ତୁତି ସେ କଲାକ ଅପାର ।
ଧନ୍ୟ ଧନ୍ୟ ବାଣ ଶ୍ରୀରାମ କନ୍ଧେ ଥାଉ
ତୁ ପୁଣି ଦୁଷ୍ଟଜନଙ୍କ ଦେହୁ ମାଂସ ଖାଉ ।
ତୁହି ଯେ ମେଦିନୀକୁ କରୁ ଖଣ୍ଡ ଖଣ୍ଡ
ତୋହର ତେଜ ଦିଶେ ଯେହ୍ନେ ମାରକଣ୍ଡ ।
ଯାହାର ପ୍ରାଣ ତୁ ହରିବ ଦେବ ଶର
ସେ ଜନ ବସିବ ନିଶ୍ଚେ ବୈକୁଣ୍ଠ ପୁର ।
ତୁ ମୋର ଅଟୁ ଯେ ସର୍ବଦା ଗୋସାଇଁ
ଲକ୍ଷ୍ମଣ ପେଶିଦେଲେ ତୋତେ ନେବାପାଇଁ ।
ଶୁଣିଣ ନାରାଚ ମନରେ ତୋଷ ହେଲା
ହନୁମନ୍ତ ସ୍ତୁତି ଶୁଣି ମନକୁ ବାହାରିଲା ।
ତକ୍ଷଣେ ପ୍ରବେଶ ଯେ ହନୁମନ୍ତ କରେ
ଯେସନେ ଫଳଗଭା ଉଶ୍ବାସ ହାତରେ ।
ନାରାଚ ଘେନି ହନୁ ବେଗେ ଚଳିଗଲା
ଲକ୍ଷ୍ମଣ ଛାମୁରେ ସେ ପ୍ରବେଶ ହୋଇଲା ।
ସୌମିତ୍ରୀ କରେ ନାରାଚ ଗୋଟି ଦେଲା
ଦେଖିଣ ହନୁମନ୍ତ ହରଷ ହୋଇଲା ।
ଅସ୍ତ୍ରକୁ ସଉମିତ୍ରୀ ଥୋଇଲେକ ତ୍ରୋଣ
ଏସନ ସମୟେ ଦୂତ ମିଳିଲେ ଚାରିଜଣ ।
ସୁଗ୍ରୀବରକୁ ଦେଖି କଲେ ନମସ୍କାର
କରଯୋଡ଼ି ଜଣାନ୍ତି ରାଜାର ଛାମୁର ।
ଶୁଣ ଦେବ କିଷ୍କିନ୍ଧ୍ୟା ନଗର ଅଧିପତି
ଯେବଣ କାରାଣେ ଅଇଲୁ ଆମ୍ଭେ ଏଥି ।
ଅଙ୍ଗଦ କୁମର ଯେ ଗଲାକ ଥାଟ ଆଣି
ଦୂତମାନ ବରଗିଲେ ସର୍ବରାଜ୍ୟ ପୁଣି ।
ଆପଣ ଯାଇ ହସ୍ତିନା ଦେଶରେ ରହିଲେ
ମଧ୍ୟସ୍ଥଳୀ ବୋଲିଣ ସେଠାରେ ବସା କଲେ ।
ସେହିଠାରୁ ଚାରି ଦିଗକୁ ଦୂତ ପେଶି
ଦୁଇ ପକ୍ଷ ଭିତରେ ସମସ୍ତେ ମିଳି ଆସି ।
ଲକ୍ଷେ କପିରାଜା ଯେ ଅନେକ ସର୍ଦ୍ଦାର
ଗୋଟିଏ ଗୋଟିଏ ରାଜ୍ୟ ତାହାଙ୍କର ।
ରାଜା ସରଦାର ସଙ୍ଗତେ ବେନିବଳ
ପ୍ରବେଶ ହେଲେ ସର୍ବେ ହସ୍ତିନା ନବର ।
ଯୁବରାଜ ଅଙ୍ଗଦକୁ ନମସ୍କାର କଲା
ଆମ୍ଭେ ଯାଉଅଛୁ ତୁମ୍ଭେ ଯାଅ ହେ ବୋଇଲା ।
ବେଢ଼ିଣ ସହସ୍ର ରାଜା ସଙ୍ଗେ ଘେନି ପୁଣ
ଚାରିଦିନେ ପ୍ରବେଶ ବଳ ଯେ ଅରଣ୍ୟ ।

କାଲି ଦୁଇପକ୍ଷ ତେରଦିନ ଗଲା
ରାତ୍ରରେ ଅଙ୍ଗଦ ଯେ ଆମ୍ଭଙ୍କୁ କହିଲା ।
ବୋଇଲା ରାଜାଙ୍କୁ ତୁମ୍ଭେକହରେ ବେଗଯାଇ
ବୋଲିବ ଅଇଲେ ସୈନ୍ୟ ବଳ ଯେ ଘେନାଇ ।
କୃଷ୍ଣାବେଣୀ କୂଳରେ ଅଛନ୍ତ ଥାଟ ରହି
ହେମଗିରି ପର୍ଯ୍ୟନ୍ତ ଅଛନ୍ତି ଲଗା ଦେଇ ।
ଉଦେ ଗିରିଠାରୁ ଅସ୍ତଗିରି ଯାଏଁ
ଲଗାଦେଇ ଆସୁଛନ୍ତି ଥାଟ ଯେ ଅପ୍ରମେୟେ ।
ଚାରିବର୍ଣ୍ଣ କପି ଯେ ଚାରିବର୍ଣ୍ଣ ଭାଲୁ
ସମସ୍ତେ ସଜ ହୋଇ ଆସନ୍ତିସାଲୁ ସାଲୁ ।
ଅଙ୍ଗଦ ପଚାରିଲେ ସକଳ ରାଜାଙ୍କୁ
କେତେ ସୈନ୍ୟବଳ ଯେ ସୁମାରି କର ଯାଙ୍କୁ ।
ଲେଖାରେ ନଉସାଗର ବଳ ସେ ସର୍ବକରି
ଦେଶ ବନ ପୂରିଣ ଆସନ୍ତି ମୋଦ ଭରି ।
ଆସିବାର ବାଟରେ ଲାଗିଛି ହୁରିଢ଼ୁରି
ବନ ପର୍ବତ ଯେ ହେଉଣ ଅଛି ଦଳି ।
ଦେବଗିରି ସର୍ବଗିରି ଅଷ୍ଟଗିରି ଧରି
ଧବଳ ଗିରି ରୂପା ଗିରି ସୁବର୍ଣ୍ଣ ଗିରି ଘେରି ।
ଲକ୍ଷ୍ୟଯୁଣ ଜମ୍ବୁଦ୍ୱୀପ ସକଳଠାରେ ଛାଇ
ଆସୁଛନ୍ତି କପି ଭାଲୁ ଧାରା ପ୍ରାୟ ହୋଇ ।
ଯେବେ ଆସେ ତେଣେ ପଡୁଅଛି ହୁରିଯୂରି
ପାଦଭରେ କମ୍ପୁଅଛି ଗିରି ବସୁନ୍ଧରୀ ।
ଆଜ ଆମ୍ଭେ ଅଇଲୁ ବାଇଶି ଯୁଣ ବାଟ
କାଲି ଆସି ପ୍ରବେଶ ହେବେ ଥାଟ ।
ଆଗକରି ଆମ୍ଭଙ୍କୁ ପେଶିଲେ ଯୁବରାଜ
ବୋଇଲେ ବେଗେ ଯାଇ ନୃପତିଙ୍କୁ ପୂଜ ।
ଦେଖା ଦେଇ ନୃପତିଙ୍କ ଛାମୁରେ କହିବ
ହାଟ ବାଟ ଦାଣ୍ଡ ଜାଗ୍ରତ କରାଇବ ।
ବାହାରେ ନ ରହିବେ କହିବ ଏସନ
ପଥଶ୍ରାନ୍ତ ଲୋକଙ୍କୁ କରିବେ ଶାନ୍ତ ଜାଣ ।
ଅକଳିତ ଲୋକ ଯେ ପଡ଼ିବେ ମରି
ଗହଳରେ ଲୋକ ଗଡ଼କୁ ଥିବେ ଘେରି ।
ଫୁଲ ଫଳବନ ମଧୁବନ ପୁଣି
ଏ ବନମାନ ଜଗିଥିବେ ଜାଣି ।
ଏସନକ ବୋଲି ଅଙ୍ଗଦ ଦେଲେ ପେଶି
ଶୁଣିଣ ଲକ୍ଷ୍ମଣ ଯେ ଅଳପ ହୋଇ ହସି ।
ସୁଗ୍ରୀବର ଆନନ୍ଦ କହିଲେ ନ ସରଇ
ଚାରି ଦୂତଙ୍କୁ ରାଜା ବଧାଇ ଶାଢ଼ୀ ଦେଇ ।
ଧନ ବସନ ବହୁତ ବଧାଇ ତାକୁ ଦେଲା
ଏସନକ ସମୟେ ଚମକ ଶୁଭିଲା ।
ସୁଗ୍ରୀବର ବୋଇଲେ ଅଇଲେ ଅଙ୍ଗଦ
ନିକଟରେ ଶୁଭିଲା ଚମକର ନାଦ ।

ନଳ ନୀଳ ତାରାକ୍ଷ ସୁଷେଣ ସେ ହକାରି
ହନୁମନ୍ତ ଚାହିଁଣ କହଇ ଦଣ୍ଡଧାରୀ ।
ତୁମ୍ଭେମାନେ ଯାଇଣ ପାଞ୍ଚୋଟି ଘେନି ଆସ
ଶୁଣିଣ ଅଷ୍ଟସେନା ହୋଇଲେ ହରଷ ।
କିଏ ହସ୍ତୀ କିଏ ଅଶ୍ୱ କିଏ ରଥ ଚଢ଼ିଗଲେ
ସାରେଣୀ ଗଣ୍ଡା ଗୟଳ କେ ପୁଣ ଚଢ଼ିଲେ
ଭେରଣ ମାଳ ଦୀର ବାଜା ଟମକ ନିଶାଣ
ଉଦ୍ଦଣ୍ଡ ପାଟଛତ୍ର ଉଡ଼ାଇ ବିଚକ୍ଷଣ ।
କିଷ୍କିନ୍ଧ୍ୟା ଜଟକେ ଯେତେକ ଯଇନି
ସମସ୍ତେ ଚଳିଲେ ଯେ ରାଜା ଆଜ୍ଞା ଘେନି ।
ଦେଖିଲେ ଅଙ୍ଗଦ ହସ୍ତେ ଦିବ୍ୟଯନ୍ତ୍ର ଶୋଭା
ସ୍ୱବର୍ଣ୍ଣ ଧ୍ୱଜା ଆରୋହୀ ଦିଶେ ମନଲୋଭା ।
କେତର ଚିରାଳ ଯେ ଉଡ଼ଇ ଫରଫର
...ରେ ଚାମର ଯେ ପଡ଼ଇ ନିରନ୍ତର ।
...ଆଭରଣ ଗନ୍ଧଚନ୍ଦନ ଶୋଭା
...ହସ୍ତେ ଧରି ବାଳୀସୁତ ଯେ ଉଭା ।
ସେନାପତି ଯେ ସୈନ୍ୟ କିଷ୍କିନ୍ଧ୍ୟାକୁ ଗଲେ
...ଅଙ୍ଗଦ ଯେ ଗଉରବ କଲେ ।
...ଆସିବାର ଜାଣିଲେ ହନୁମନ୍ତ
...ସନ୍ତୋଷ ଯେ ହୋଇଲା ତାରାସୁତ
ସୈନ୍ୟ ଗହଳ ଯେ ଆସନ୍ତି ରଥ ବାହା
ଘୋ ଘୋ ଶବଦରେ ଆକାଶ ପୂରଇ ।
ଅଙ୍ଗଦକୁ ବେଢ଼ି ଯେ ଅଛନ୍ତି ସେନାପତି
ବାଳୀର ତନୟ ଯେ ଦିଶଇ ତେଜମତି ।
ନବରତ୍ନ କୁଣ୍ଡଳ ମୁକୁଟ ମଣିହାର ।
ଝୀନବସନ ପିନ୍ଧିଅଛି ବାଳୀର କୁମର ।
ଚନ୍ଦନ ବିଲେପନ କୋଦଣ୍ଡ ଧନୁ କରେ
ରତି ଦେବୀକି ଜିଣି ପାରଇ ସଂଗ୍ରାମରେ ।
ଶିରରେ ଧବଳ ଛତି ଟେକାଇ ଅଛି ବୀର
ଯୁବରାଜ ପଣେ କିଷ୍କିନ୍ଧ୍ୟାକୁ ସାର ।
ଏଥୁ ଅନନ୍ତରେ ଯେ ସୁଗ୍ରୀବର ରାଏ
ନବର ଭିତରକୁ ଚଳିଣ ବେଗେ ଯାଏ ।
ତାରାକୁ ବୋଇଲା ଗୋ ଅଇଲା ପୁତ୍ରମଣି
ମଙ୍ଗଳ ଆରତି ଗୋ ତିଆର କରି ପୁଣି ।
ଷଡ଼ରସେ ପାକ ଭୋଜି ତିଆର କର
କୁଳର ନନ୍ଦନ ମୋ ସନ୍ତୋଷ ଯେ ପ୍ରକାର ।
ଏତେ କହି ସୁଗ୍ରୀବର ବେଗେ ହୋଇ ଗଲା
ଲକ୍ଷ୍ମଣ ପାଶରେ ଯାଇ ପ୍ରବେଶ ହୋଇଲା ।
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ତୁରିତ ଏ ସ୍ଥାନରୁ ଚଳିଲା ଲୀଳାବତୀ ।
ଦାସୀଗଣ ଘେନିଣ ସଙ୍ଗତେ ବିଜେକଲା
ବଧୂର ପାଶେ ଯାଇ ପ୍ରବେଶ ହୋଇଲା ।

ବୋଇଲା ପୁତ୍ର ମୋର ଅଇଲା ରାଜ୍ୟ ଫେରି
ଏବେ ତୁ ପାକ କର ଯାଇଣ ବେଗେକରି ।
ଶୁଣିଣ ଅଙ୍ଗଦ ଘରଣୀ ବେଗେ ଗଲା
ଷଡ଼ରସ ପ୍ରକାରେ ପାକ ଯେ ସମ୍ପାଦିଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ବନ୍ଦାପନା ବିଧି ଯେ ତାରା ସଜକରି ।
ତାରାବତୀ ପାଟରାଣୀ ଡାକିଲା ଦାସୀଗଣ
ହଳଦୀ ତଣ୍ଡୁଳ କଳାକ ସମ୍ପାଦନ ।
ଦାସୀକି ବୋଇଲା ଶୁଣ ମୋ ବଚନ
ସ୍ୱବର୍ଣ୍ଣ ଥାଳିରେ ରଖ କରିଣ ଯତନ ।
ଧୂପ ଦୀପ ଗୋ ସେଥିରେ ରଖ ପୁଣ
ଦାସୀମାନେ ଶୁଣିଣ ହେଲେ ମୋଦମନ ।
ସକଳ ବିଧି ସଜ କରିଣ ସେ ଆଣିଲେ
ସ୍ୱବର୍ଣ୍ଣ ଥାଳିରେ ନେଇଣ ଠୁଳ କଲେ ।
ଏଥୁ ଅନନ୍ତରେ ଶୁଣ ଗୋ ଗଉରୀ
ଶୁଣିଣ ଆନନ୍ଦ ନଗ୍ରରେ ସବୁରି ।
ଶୂନ୍ୟରେ ଗହଳ ଉଡ଼ଇ ତେଣେ ଧୂଳି
ତେଣୁକରି ଗଗନେ ଅଦୃଶ୍ୟ ଅଂଶୁମାଳି ।
ଆଗରେ ଶଙ୍ଖ ମହୁରୀ ମର୍ଦ୍ଦଳ ବାଜେ ତୂରି
ଘଣ୍ଟ ଘାଗୁଡ଼ି ଯେ ଶବଦ ପୁଣି କରି ।
ହରିବୋଲ ରାମ ଡାକି କରନ୍ତି କୀର୍ତ୍ତନ
ପଟା ପଟା ହୋଇଣ ଆସନ୍ତି ସୈନ୍ୟଗଣ ।
ଫୁଲମାଳମାନ ଯେ ଧରିଣ ଛନ୍ତି କରେ
ରାମ ନାମ ସ୍ମରଣା କରନ୍ତି ଉଚ୍ଚସ୍ୱରେ ।
ବୋଲନ୍ତି ଶ୍ରୀରାମ ଅଛନ୍ତି କେଉଁଠାରେ
କେ ବୋଲଇ ସୁଗ୍ରୀବର ନାହିଁକି ନଗରେ ।
କେ ବୋଲଇ ରାମ ଲକ୍ଷ୍ମଣ କଥା ପୂର୍ବେ ଶୁଣି
କେ ବୋଲେ ଦଶରଥ ନନ୍ଦନ କାହିଁ ପୁଣି ।
କେ ବୋଲେ ବାଳୀରାଜା ମରିବାଦିନୁ ଜାଣି
ଶ୍ରୀରାମ ନାରାୟଣ ମୋହିଲେ ସର୍ବମନ ।
ଏମନ୍ତ କୁହାକୁହି କପିରାଜା ହୋନ୍ତି
ଶୁଣିଣ ଭଗବତୀ ଈଶ୍ୱରେ ପଚାରନ୍ତି ।
ଅଙ୍ଗଦ ଯେ ସମ୍ଭ୍ରମେ ଅଇଲା ନିଜ ରାଜ୍ୟ
ସୈନ୍ୟ ଘେନି ଆସିବାରେ ଦିଶଇ ବଡ଼ ...
ଈଶ୍ୱର ବୋଇଲେ ରାମକାର୍ଯ୍ୟର ନିମନ୍ତେ
ତେଣୁ ସେ ଦେବ ଅଂଶେ ଜନ୍ମ ତେଜବନ୍ତେ ।
କିଷ୍କିନ୍ଧ୍ୟା କଟକରେ ପ୍ରବେଶ ଯାଇ ହୋନ୍ତି
ନଗ୍ର ନର ନାରୀ ଯେ ଦେଖିଣ ଆସନ୍ତି ।
ଆଳମ୍ବ ଉଳମ୍ବ ଯେ ଉଡ଼ନ୍ତି ପନ୍ତି ପନ୍ତି
କିଷ୍କିନ୍ଧ୍ୟା କଟକକୁ ବାଟ ନ ପାବନ୍ତି ।
ଦ୍ୱାରେ ଦ୍ୱାରେ ଦେଖନ୍ତି ଲୋକେ ଉଭା ହୋଇ
ସିଂହଦ୍ୱାରେ ସୁଗ୍ରୀବ ଲକ୍ଷ୍ମଣ ଦେଖି ରହି ।

ଦୂରରୁ ଅଙ୍ଗଦ ରଥ ଉପରୁ ଉପେକ୍ଷି
ପାଦଗାମୀ ହୋଇ ଗଲେ ଲକ୍ଷ୍ମଣେ ଦୃଷ୍ଟି ରଖି ।
ଲକ୍ଷ୍ମଣ ପାଦେ ଯାଇ ଓଳଗି ଶୋଇଲା
ଉଠି ସୁଗ୍ରୀବ ଚରଣେ ନମସ୍କାର କଲା ।
ଶିରେ କର ଦେଇଣ ଉଭା ହେଲା ବୀର
ଦେଖିଣ ସଉମିତ୍ରୀ ପ୍ରଶଂସେ ଅପାର ।
ଧନ୍ୟ ଧନ୍ୟ କୁମରରେ ବାଳୀରାଜ ସୁତ
ଶୁଣ ଗୋ ଭଗବତୀ ଏମନ୍ତ ଉଦନ୍ତ ।
ଏମନ୍ତ ପ୍ରଶଂସା କରେ ଶ୍ରୀରାମ କନିଷ୍ଠ
ସୁଗ୍ରୀବ ପୂର୍ବେ ତୋର ବହୁତ ଯଶ ଶ୍ରେଷ୍ଠ ।
ଶ୍ରୀରାମଙ୍କ କାର୍ଯ୍ୟ କଲରେ ଏବେ ବାବୁ
ମାଲ୍ୟବନ୍ତେ ବିକଳ ଯେ ଶ୍ରୀରାମ ମହାପ୍ରଭୁ ।
ମୁହିଁ ଦିନିଦିନ ଯେ ଅଇଲି ପିଠି ଦେଇ
ଚିନ୍ତୁଥିବେ ତେଣେ ରଘୁକୁଳ ସାଇଁ ।
ରହିଛ ଆସ ବାବୁରେ ମୁଁ ଯାଉଛି ସତ୍ୱର
ଏତେ ଜନ ବୋଇଲା ଶୁଣିଣ ସୁଗ୍ରୀବର ।
ଆଗପୁରେ କହି ମୁଁ ଯେ ସ୍ନେହକରି ଆସେ
ଏତେ କହି ସୁଗ୍ରୀବର ଭିତର ପୁର ପଶେ ।
ତାରାକୁ ପ୍ରବୋଧ ଯାଇଣ ରାଜା କଲା
ପାଟରାଣୀ ଏ ରାଜ୍ୟ ସମ୍ଭାଳ ବୋଇଲା ।
ରାମନାମ ଏ ଯେ ନିତ୍ୟ ସ୍ମରୁ ଥିବୁ
ନିରନ୍ତର ନରନାରୀ ପରଜା ପାଳିବୁ ।
ଶ୍ରୀରାମ ପ୍ରଶଂସା ତୋତେ ଭଲ ଲାଗିବ
ସୈନ୍ୟବଳ ଥିଇଲେ ଲଙ୍କାକୁ ବରଗିବ ।
ପଲଥାଟ ଖବର ଯେ ନିତ୍ୟ ନେଉଥିବୁ
ଲାଗିଲା କିଷ୍କିନ୍ଧ୍ୟା ରାଜ୍ୟ ସଦା ଦେଖୁଥିବୁ ।
ଏତେ କହି କପିରାଜା ବେଗେ ଚଳିଗଲା ।
ବେଗେ ଯାଇ ଲକ୍ଷ୍ମଣର ଆଗରେ ମିଳିଲା ।
ଦେଖିଣ ଲକ୍ଷ୍ମଣ ପଥ ଯେ ବହିଯାଇ
ଗହନ ବିପିନ ବାଟ ଯାନ୍ତି ଅତିବାହି ।
ସେଦିନୁ ଋଷ୍ୟମୂକ ପର୍ବତେ ରହନ୍ତି
ନାନା କଥା କହିଣ ରଜନୀ ପୁହାନ୍ତି ।
ଶୁଣନ୍ତି ଭଗବତୀ କହନ୍ତି ଶୂଳଧାରୀ
ସଉମିତ୍ରୀ ସୁଗ୍ରୀବକୁ ଆଣିଲେ ସଙ୍ଗେ ଧରି ।
ସେଠାରୁ ଅଙ୍ଗଦ ଯେ ନବର ଭିତରକୁ ଗଲା
ଦେଖିଣ ଜନନୀ ଆସି ବନ୍ଦାପନା କଲା ।
ଗଲା ବେଗେ ଲେଉଟି ମଙ୍ଗଳ ଆରତି କରି
ଅଙ୍ଗଦ ମାଜଣା ମଣୋହି ବେଗେ ସାରି ।
ଆଚମନ ସାରିଣ ମାତାର ପାଶେ ମିଳି
ମାତାର ଚରଣେ ଓଳଗେ ଯାଇକରି ।
କରଯୋଡ଼ି ବୋଲଇ ଶୁଣଗୋ ଗର୍ଭଧାରୀ
ଏବେ ମୁଁ ଯାଉଛି ରାମପାଶେ ସେବାକରି ।
ଯେତେ ଦିନରେ ରାମ ଆସିବେ ଲେଉଟି
ମୁଁ ନିଶ୍ଚେ ତାଙ୍କ ସଙ୍ଗେ ଆସିବି ଲେଉଟି ।
ତେବେ ସେ ତୋର ପାଦେ କରିବି ଦର୍ଶନ
ରାଜ୍ୟ ଭଲ ମନ୍ଦ ତୋତେ ଲାଗିଲା ଏବେ ଜାଣ ।
ରାଜ୍ୟ ରକ୍ଷା କରିବୁ ତୁ ପରଜାଙ୍କ ହିତେ
ଶୁଣିଣ ତାରାବତୀ କହଇ ଧୀର ଚିତେ ।
ଶୁଣରେ ପୁତ୍ର ତୁହି ମୋହର ବଚନ
ଅସୁର ବଳ ଜିଣି କରିବୁ ଯୁଦ୍ଧ ପୁଣ ।
ରଘୁନାଥ କହିବା କଥା ନ ମେଣ୍ଟିବୁ ପୁଣ
ଦେଉଥିବୁ ମୋ ପାଖକୁ ଖବର ପ୍ରତିଦିନ ।
ଏ କଥାରେ ହେଳା ତୁ ନ କରିବୁ କୁମର
ତ୍ରିଜୀବୀ ହୋଇଥାଅ ଯାଅ ତୁ ସତ୍ୱର ॥
ଶ୍ରୀରାମ ମନ ତୋଷ କରିଣ ଯଶ ପାଅ
ମାତାଠାରୁ ଶୁଣି ପୁତ୍ର ହୋଇଲା ଉଥାନ ।
ଋଷ୍ୟମୂକ ପର୍ବତରେ ମିଳିଲା ଯାଇଣ
ଶୁଣନ୍ତି ଗଉରୀ କହନ୍ତି ତ୍ରିଲୋଚନ ।
ସେଠାରୁ କଥା ଯାହା ହୋଇଲା ନିକର
ଏଥୁ ଅନନ୍ତରେ କଥା ଶୁଣ ଶ୍ରୀରାମର
ଲକ୍ଷ୍ମଣ ନ ଆସିବାରୁ କୋପେ ରାମରାଣ
ମାଲ୍ୟବନ୍ତ ପର୍ବତରେ ମନ ଛନ୍ନ ଛନ ।
ମନପ୍ରାଣ ତାଙ୍କର ସୀତାଙ୍କ ଠାରେ ଯାଇ
ଲକ୍ଷ୍ମଣ ନ ଯିବାରୁ ଭାଳନ୍ତି ଦୁଃଖୀ ହୋଇ ।
ଗୁଣ ସୁମରି କାନ୍ଦନ୍ତି ପୁଣ ପୁଣ
ଆହାର ବିହୁନେ ନ ମାଡ଼େ ନିଦ ପୁଣ ।
ସୀତୟା ଲକ୍ଷ୍ମଣ ଯେ ମୋହର ସମ୍ପତ୍ତି
ଏମନ୍ତ ବିଚାର ରାମ କାରୁଣ୍ୟ କରନ୍ତି ।
ପର୍ଣ୍ଣକୁଟୀ ଭିତରେ ନ ରହେ ରାମ ମତି
ବୈରାଗ୍ୟ ପାଇଣ ଏଣେ ତେଣେ ସେ ବୁଲନ୍ତି ।
ଚାରିଦିଗକୁ ଚାହିଁଣ ବିଚାର କରେ ମନ
ପକ୍ଷୀକି ପୁଚ୍ଛୁଥାନ୍ତି ବାତୁଳ ପ୍ରାୟେ ଜାଣ ।
ତୁମ୍ଭେମାନେ ଜାଣିଛକି ସୀତୟା କେଣେ ଅଛି
ଅତ୍ୟନ୍ତ ସୁନ୍ଦରୀ ସେ ନବୀନା ବୟସୀ ।
ଶରୀର ଦିଶଇ ଯେ କନକ ଚମ୍ପାଫୁଲ
କୁରଙ୍ଗନୟନୀ ସେ ଓଷ୍ଠ ବିମ୍ବଫଳ ତୁଲ୍ୟ ।
କହନ୍ତେ ଅମୃତ ବଚନ ସୁଧା ସୃଷ୍ଟି
ସଖୀ ସହୋଦର ତାହାର ନାହିଁ କେହିଟି ।
ବାତୁଳ ଭାବ ଯେ ଅଟଇ ତାର ଦେହୀ
ଶ୍ରୀରାମ ବୋଇଲେ ଶୁଣ ଖଗବର ତୁହି ।
ଜାଣିଲି ତୁମ୍ଭେମାନେ ଧର୍ମର ପରିଚାର
ଏ ବନେ ବୁଲେ ମୁଁ ଯେ ସହି ଦୁଃଖ ଘୋର
ଆନ କେହି ମୋତେ ପଚାରନ୍ତି ନାହିଁ
ନିରୀମାଖି ଅଟଇ ହାଦେ ଶୂନ୍ୟ ମୁହିଁ ।

ପୂର୍ବଜନ୍ମରେ ପୁଣ୍ୟ ଧର୍ମ କରିନାହିଁ
ତେଣୁ ରାଜ୍ୟ ଛାଡ଼ି ଅରଣ୍ୟେ ବୁଲଇ ।
ଅଯୋଧ୍ୟା ନଗ୍ରରେ ଅଟଇ ମୋର ଘର
ପୁଅ ଯେ ଅଟଇ ମୁଁ ଦଶରଥ ରାଜାର ।
ସାବତ ଜନନୀ ମୋର ବନକୁ ପଠିଆଇ
ଭାଇ ଭାରିଯା ଘେନି ସଙ୍ଗତରେ ଥାଇ ।
ପଞ୍ଚବଟୀ ବନରେ ଘରଣୀ ହରାଇଲି
ତେଣୁ ହେ ପକ୍ଷୀବର ବନେ ବନେ ବୁଲିଲି ।
ପକ୍ଷୀବର ବୋଲଇ ମୁଁ ନ ଜାଣଇ ସନ୍ଦେଶ
ସୀତାଙ୍କୁ ରାବଣ ନେଲାକ ଲଙ୍କାଦେଶ ।
ଆକାଶ ମାର୍ଗରେ ରଥ ସେ ବାହିନେଲା
ମଧ୍ୟାହ୍ନ ବେଳେ ଦକ୍ଷିଣ ଦିଗକୁ ଚଳିଗଲା ।
ସୁନ୍ଦରୀ ରୋଦନ ଯେ କରଇ ଉଚ୍ଚସ୍ୱରେ
ବୋଇଲା ଘର ମୋର ଅଯୋଧ୍ୟା ନଗ୍ରରେ ।
ସୂର୍ଯ୍ୟବଂଶ ଦଶରଥଙ୍କ ମୁଁ ଯେ ବୋହୂ
ଶ୍ରୀରାମଚନ୍ଦ୍ର ପୁଣ ଅଟନ୍ତି ମୋର ପ୍ରଭୁ ।
ସ୍ୱାମୀ ଦିଅର ମୋର ଗଲେ ମୃଗ ମାରି
କପଟେ ରାବଣ ମୋତେ ନେଉଅଛି ଧରି ।
ଦେଖିଲେ କହିବଟି ପକ୍ଷୀଜନ୍ତୁମାନେ
ଲଙ୍କାଗଡ଼କୁ ମୋତେ ନେଉଛି ଦଶାନନେ ।
ଏ କଥା ତଥ୍ୟକରି ଜାଣଇ ଦେବ ମୁହିଁ
ଏବେ ତୁମ୍ଭେ ନ ଭାଳ ରଘୁସାଇଁ ।
ରାବଣ ମାରିବା ପାଇଁ ଉପାୟ ଏବେ କର
ଆବର କିମ୍ପା ତୁମ୍ଭେ କାହାକୁ ପଚାର ।
ଶୁଣିଣ ଶ୍ରୀରାମଚନ୍ଦ୍ର ହରଷ ମନ ହେଲେ
ସାଧୁ ସାଧୁ ପକ୍ଷୀ ବୋଲି ତାହାକୁ ବୋଇଲେ ।
ତୁ ପକ୍ଷୀବର ଅଟୁ ଯେ ହିତକାରୀ
ସଖିର ବାରର୍ତା ମୋର ଅଛୁ ଯେ ମନେ ଧରି
ଘେନ ବର ପକ୍ଷୀ ଦେଉଅଛି ତୋତେ
ଚାରିଯୁଗେ ପକ୍ଷୀବର ରହ ତୁ ସଚେତେ ।
ଶିରରେ ମୁକୁଟ ଥିବ ସପ୍ତ ଶାଖା
ଜିଣିଣ ପଟ୍ଟାନ୍ତର ଯେ ଅରୁଣର ରେଖା ।
ଯେହୁ ତୋତେ ପ୍ରାଣରେ ମାରିବ ପକ୍ଷୀବର
ସେ ନିଶ୍ଚେ ବଇରୀ ଯେ ହୋଇବ ମୋହର ।
ଏ ରବି ତଳରେ ଯେ ଆନ ପକ୍ଷୀ
ମୁକୁଟ ବନ୍ଧା ହୋଇ ନ ଥିବେଗୋଟି ।
ଧାର୍ମିକ ପକ୍ଷୀବର ମୋର ତୁ ହିତ କଲୁ
ସତୀର ସନ୍ଦେଶ ମୋତେ ଚେତାଇଣ ଦେଲୁ ।
ତେଣୁକରି ତୋତେ ଦେଲି ଏହି ବର
ଯାଅ ତୁ କୁକୁଟରେ ବସାରେ ରହି ତୋର ।
ଲତା ଖୁଞ୍ଚ କଣ୍ଟା ଯେ ବନସ୍ତେ ନ ରହିଲେ
ଏଥୁ ଅନନ୍ତର କଥା ଶୁଣ ଦେବୀ ଭଲେ ।

ପାର୍ବତୀ ବୋଇଲେ ଦେବ ଶୁଣ ମୋ ଈଶ୍ୱର
ଅଗସ୍ତି ମାର୍କଣ୍ଡଙ୍କ କିସ ସମାଚାର ।
ରାମପାଶେ ଏକରାତି ଦି ଦିନ ରହିଲେ
ସେଠାରୁ ବେନିମୁନି ହରଷେ ଚଳିଗଲେ ।
ସନ୍ଧ୍ୟାବେଳେ ରାମର ସଙ୍ଗେ କେହି ନାହିଁ
ଅଜ୍ଞାନମତି ହୋଇ ବନେ ବୁଲିଲେ ଯାଇଁ ।
ପକ୍ଷୀଙ୍କୁ ପଚାରି ତେଣୁ ସେ ବର ଦେଲେ
ତେଣୁ ଆସି ପୂର୍ଣ୍ଣକୁଟୀରରେ ବସିଲେ ।
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ
ଏକା ରାମଚନ୍ଦ୍ର ମାଲ୍ୟବନ୍ତରେ ଅଛନ୍ତି ।
ଏମନ୍ତ ସମୟେ ଅସ୍ତଗିରିର ଉପରେ
କଳିଙ୍ଗ ଋଷି ଯେ ସେଠାରେ ତପ କରୁଥିଲେ
ଜାଣିଲେ ଯୋଗବଳେ ରାମ ଏକା ଅଛି ।
ମନ ପବନ ଯାନରେ ଅଇଲେ ଦେବଋଷି ।
ଶ୍ରୀରାମର ପାଶରେ ହୋଇଲେ ପ୍ରବେଶ
ଦେଖିଣ ଶ୍ରୀରାମ ମନରେ ହେଲେ ତୋଷ ।
ନମସ୍କାର କରିଣ ବୋଇଲେ ଦାଶରଥି
ମୋର ଦୁଃଖ ଦେଖି ଅଇଲ ତପୀ ଏଥି ।
ଋଷି ବୋଇଲେ ଆମ୍ଭେ ଗିରିରେ ଥିଲୁ
ତୁମ୍ଭଙ୍କୁ ଦେଖିବାକୁ ଏଠାକୁ ଅଇଲୁ ।
ତୁମ୍ଭେ ଏକା ଅଛ ସଙ୍ଗରେ କେହି ନାହିଁ
ଭାଇ ତୋର ଲକ୍ଷ୍ମଣ ଗଲା ଏବେ କାହିଁ ।
ଶ୍ରୀରାମ ବୋଇଲେ କିଷ୍କିନ୍ଧ୍ୟାକୁ ଗଲା
ତିନିଦିନ ହେଲା ଯେ କିମ୍ପାଇ ନ ଆଇଲା ।
ରାବଣ ଘେନିଗଲା ଯେ ଏଣେ ମୋର ସତୀ
ତାହାକୁ ମାରିବାରେ ବିଚାର ମୋର ମତି ।
ସୁଗ୍ରୀବର ରାଜା ମୋତେ ଭରସା ଦେଇଥିଲା
ଚତୁର୍ମାସ୍ୟା ସରିଲେ ମୁଁ ଯେ ଆସିବେ ବୋଇଲା
ଚତୁର୍ମାସ୍ୟା ଗଲା ଯେ ନ ଆସେ କପିବର
ତେଣୁ ଯେ ଲକ୍ଷ୍ମଣକୁ ପେଶିଲି ତା ପୁର ।
ରଜନୀ ପାହିଲେ ଆସିବ ଲକ୍ଷ୍ମଣ
ଭାରିଯା ଭାଇ ମୋର ଗଲାରୁ ଚିନ୍ତା ପୁଣ ।
ଏମନ୍ତ ସମୟରେ ଭୈରବ ଋଷି ମିଳି
ଛଅଗୋଟି ଚରଣ ଯେ ଅଟଇ ତାଙ୍କରି ।
ଦ୍ୱାଦଶ ମୁଣ୍ଡରେ ଚବିଶ ଯେ ହସ୍ତ
ଛଅଗୋଟି ବୀଣା ଯେ ଧରି କରଗତ ।
ଶବଦ କରନ୍ତି ଯେ କମ୍ପଇ ଘୋରବନ
ବନଜୀବମାନେ ଚକିତେ ରହି ପୁଣ ।
ବୀଣାର ଶବଦ ଯେ କୁମୁଦ ସ୍ୱର ଜିଣି
ମାଲ୍ୟବନ୍ତ ପର୍ବତ ଶୀତଳ ଲାଗେ ପୁଣି ।
ଶ୍ରୀରାମ ଆଗେ ଋଷି ହୋଇଲେ ପ୍ରବେଶ
ଦ୍ୱାଦଶ ଅବତାର ମୁଣ୍ଡରେ ଅଭ୍ୟାସ ।
ଦେଖିଣ ଶ୍ରୀରାମ ଯେ ନମସ୍କାର କଲେ
ବୃକ୍ଷରୁ ପତ୍ରତୋଳି ଆସନ ତାଙ୍କୁ ଦେଲେ ।

ବେନି ଋଷି ଏକ ଆସନେ ବସି ପୁଣ
ବୋଲନ୍ତି ଏକା ରାମ ଅଛନ୍ତି ଏ ବନ ।
ଭାଇ ଗଲା କିଷ୍କିନ୍ଧ୍ୟାକୁ ଘରଣୀ ନେଲା ଦୈତ୍ୟ
ଏବେତ ସୈନ୍ୟବଳ ଆସିଲେ ବହୁତ ।
ଅଙ୍ଗଦ ଯାଇଥିଲା ବାନର ଭାଲୁ ଆଣି
ଆଜ ଦୁଇ ଦିବସରେ ପ୍ରବେଶ ହେବେ ପୁଣି
କପି ଲକ୍ଷେ ନୃପତି ମଲ୍ଲହିଁ ମହାମଲ୍ଲ
ସେନାପତି ସର୍ଦ୍ଦାର ଅଛନ୍ତି ପଲପଲ ।
ପଞ୍ଚଚାଳିଶ ଦିନରେ ସର୍ବଙ୍କୁ ସାଧ କଲା
ନଉସାଗର ବାନର ସେ ଘେନିଣ ଅଇଲା ।
ଦକ୍ଷିଣ ମହୋଦଧି କୂଳ ସେ ଉତ୍ତର
ହେମଗିରି ପର୍ଯ୍ୟନ୍ତ ଲାଗିଛନ୍ତି ବୀର ।
ଉଦେଗିରିଠାରୁ ଯେ ଅସ୍ତଗିରି ଯାଏ
ଅକଳିତ ବୀର ଯେ କଳନା ନ ଯାଏ ।
ଆଜର ରଜନୀରେ ଲକ୍ଷ୍ମଣ ସୁଗ୍ରୀବର
ଅଷ୍ଟସେନା ଋଷିଘେନି ଋଷ୍ୟମୂକେ ରହିବାର ।
ରଜନୀ ପାଇଲେ ଭେଟିବେ ଆସି ତୋତେ
କାତର କିମ୍ପା ହେଉ ମରିବ ଦୈତ୍ୟ ଗୋତ୍ରେ ।
ଚାରିରାବଣ ମାରିଣ ଦୈତ୍ୟଙ୍କୁ ଦଳିବୁ
ବେତ୍ୟାରି ବାନା ଯେ ଜନ୍ମେ ବୋଲାଇବୁ ।
ପୂର୍ବରେ ଦେବତାଏ କହିଣ ଅଛୁ ପୁଣ
ମାରିବି ଅସୁର କଷ୍ଟ କରିବି ନିବାରଣ ।
ଏବେ ସେକଥା କି ତୋର ଚେତା ନାହିଁ ମନେ
ଅଜ୍ଞାନ ଘୋଟିଅଛି ପୂର୍ବର ବିଧାନେ ।
ଚଉଦ ମାସ ଧାରାକୁ ଅଷ୍ଟମାସ ଗଲା
ପୁଣି ସେ ଛଅମାସ ଅଜ୍ଞାନ ଅଛି ଭଲା ।
ଆଜଠାରୁ ଅଜ୍ଞାନ ତୋହର ଦେହୁ ଯିବ
ତେବେ ସେ ସୈନ୍ୟବଳ ସମ୍ଭାଳିବୁ ଦେବ ।
ଶ୍ରୀରାମ ବୋଇଲେ ପାପ ମୋର ଅଙ୍ଗେ ଥାଉ
ତାହାର ଦିନକାଳ ଭୋଗକରି ଯାଉ ।
ଭୈରବୀ ବୋଇଲେ ଶୁଣହେ ରାମରାଣ
ଆଜଠାରୁ ଅଜ୍ଞାନ ତୁମ୍ଭଠାରୁ ନେଲୁ ପୁଣ ।
ଶ୍ରୀରାମ ବୋଲନ୍ତି ନୁହଇ ଏ ଉଚିତ
ଶାପ୍ୟ ଦେବି ନିଶ୍ଚେ ହୋଇବ ଅତି ଗୁରୁତ୍ୱ ।
ଏମନ୍ତ ସମୟରେ ନାରଦ ପର୍ବତା
ଶ୍ରୀରାମର ଆଗରେ ମିଳିଲେ ତପୋବନ୍ତା ।
ଦେଖିଣ ଶ୍ରୀରାମ ଯେ ନମସ୍କାର କଲେ
କୋମଳ ପତ୍ର ଆଣି ବସିବାକୁ ଦେଲେ ।
ପର୍ବତା ବୋଇଲେ ଶୁଣ ହେ ଚାପଧାରୀ
ଏବେ ଦଇତ ସଙ୍ଗେ ହେବୁ ତୁ ଭଗାରି ।
ଅଜ୍ଞାନ ପଙ୍କୁ ଚେତାକୁ ଏବେ ହୁଅ
ଜୟବଳ ସଙ୍ଗରେ ଆଜହୁଁ ହିଂସା ବହ ।
ଦଶମାସ ଅଜ୍ଞାନ ଆଠମାସ ଗଲା
ବେନିମାସ ଅଜ୍ଞାନ ତ ଭୈରବ ନେଲା ।
ଆଉ ଚାରିମାସ ଯେ ଲାଗଇ ନାହିଁ ତୋତେ
ଅଜ୍ଞାନ କହିଅଛି ପୂର୍ବର ବିଧିମତେ ।
ପର୍ବତା ନାରଦ ଆମ୍ଭ ଦୁଇ ଋଷି ଜାଣ
ଚାରିମାସ ଅଜ୍ଞାନକୁ କରିବୁ ଭୋଗ ଜାଣ ।
ଭୈରବ ହସ୍ତେ ଜଳ ଦିଅ ହେ ରାମ ବେଗ
ନୋହିବ ଭୈରବ ବହିବ ସାତଯୋଗ ।
ଶୁଣିଣ ଶ୍ରୀରାମ ଯେ କମଣ୍ଡଳୁ ନୀର
ଭୈରବ ହସ୍ତରେ ଦେଲେକ ତତପର ।
ବୋଇଲେ ବେନିମାସ ରୋଗ ଭୋଗକର
ଅସ୍ତଗିରି ମାସରେ ଏ ବେନି ମାସ ସାର ।
ବେନିମାସ ଉତ୍ତାରୁ ନାରଦ ପାଶେ ଯିବୁ
ନାରଦ ଅଙ୍ଗରେ ବେନି ମାସ ରହିବୁ ।
ସେଠାରୁ ପର୍ବତା ଋଷିରେ ତୋ ବିଶ୍ରାମ
ଏମନ୍ତେ ଷଡମାସ ଭୋଗ ଯେ କର ପୁଣ ।
ଶୁଣିଣ ଅଜ୍ଞାନ ଶ୍ରୀରାମ ଅଙ୍ଗୁଗଲା
ଭୈରବ ଋଷି ଅଙ୍ଗେ ପ୍ରବେଶ ଯାଇ ହେଲା ।
ଅଜ୍ଞାନ ମିଳନ୍ତେ ଯେ ଭୈରବି ଭିନ୍ନ
ବେନି ଚରଣ ଏକମୁଖ ହୋଇଲା ତାର ପୁଣ ।
ବେନି ହସ୍ତ ହୁଅନ୍ତେ ସୁନ୍ଦର ରୂପ ହେଲା
ଦେବ ଋଷି ସଙ୍ଗରେ ବିଧାତା ଗଣିଲା ।
ରଜନୀ ପାହିଲା ଚାରି ଋଷି ଗଲେ
ଯେ ଯାହା ନିଜ ସ୍ଥାନେ ପ୍ରବେଶ ଯାଇ ହେଲେ
ଶ୍ରୀରାମ ଅଙ୍ଗୁ ଅଜ୍ଞାନ ଗଲେ ଦୂର ହୋଇ
ତେଜବନ୍ତ ହେଲେ ଯେ ରଘୁକୁଳ ସାଇଁ ।
ନିଜ ତେଜ ଆସିଣ ପ୍ରବେଶ ଅଙ୍ଗେ ହେଲା
ବିହ୍ୱଳିତ କଥାମାନ ମନୁ ଦୂର ଦେଲା ।
ବିଚାରିଲେ ଶ୍ରୀରାମ ମୁଁ ଅଟେ ନାରାୟଣ
ମୋହର ରଚିବାରେ ସପ୍ତପୁର ଜାଣ ।
ନର ବାନର ଦେବତା ନାଗବଳ ପୁଣି
ଛପନକୋଟି ଜୀବ ଯେତେ ଅଛନ୍ତି ମେଦିନୀ ।
ଦୁଷ୍ଟ ଶାନ୍ତି ଦୟାବଳ ମୁହିଁ ସିନା କହି
ଦୁଷ୍ଟଜନ ମାରିବାକୁ ନରରେ ଜନ୍ମ ହୋଇ ।
ଏମନ୍ତ ବିଚାର ଯେ ମନରେ ରାମ କରି
ବୋଇଲେ ସୈନ୍ୟବଳ ଅଇଲେ ମୋହରି ।
ଆହାର ନ ପାଇ ନିର୍ବଳ ହେଲେ ପୁଣ
ଏଥିକି ଉପାୟ ଯେ କରିବି ଆଗେ ଜାଣ ।
ଏତେ ବୋଲି ଧନୁ ଧରିଣ ରୋଷେଣ
ବୋଇଲେ ସୁରରାଜା ଆସ ତତକ୍ଷଣ ।
ଏତେବୋଲି ରଘୁବୀର ଧନୁରେ ଗୁଣଦେଲେ
ନୀଳୋତ୍ପଳ ନାରାଚକୁ ସେଥିରେ ଖଞ୍ଜିଲେ ।
ଜାଣିଣ ନାରଦ ସୁରରାଜା ପାଶେ ଗଲେ
ଅନେକ ପ୍ରକାରେ ତାଙ୍କୁ ବଚନ କହିଲେ ।
ବୋଇଲେ ସମ୍ପଦରେ ସରିବ ତୋହରି
ଶ୍ରୀରାମ କୋପରେ ନାଶ ହୋଇବ ସ୍ୱର୍ଗପୁରୀ ।

ଶୁଣି ଇନ୍ଦ୍ର ଦେବତା ଐରାବତ ଚଢ଼ି
ମାଲ୍ୟବନ୍ତ ପର୍ବତେ ଆସିଲେ ଧଡ଼ପଡ଼ି ।
ବୋଇଲେ ଶ୍ରୀରାମ ମୋଠାରେ କିମ୍ପା କୋପ
ଅସୁର ନ ମାରିଣ ଦେବତାରେ ଧାପ ।
ଶ୍ରୀରାମ ବୋଇଲେ ଅଇଲେ ସୈନ୍ୟବଳ
ଘର ଦ୍ୱାର ନାହିଁ ମୋର ଦେବି କି ଆହାର
ସୁରରାଜା ବୋଇଲେ ମୁଁ ଅମୃତ ବରଷିବି
ଫଳମୂଳ ପତ୍ର ଲତା ସୁଧା ସେ କରାଇବି ।
ଆହାର ବେଭାରକୁ ନ କରି ଶୋଚନା
ଅମୃତ ପ୍ରସାଦେ ସୈନ୍ୟବଳ ଯେ ତେଜସିନା ।
ଦେବତା ଅସୁର ଯେ ଜାହାକୁ ନ ମାନିବେ ।
ଯାହାକୁ କହିବି ଦେବ ତାହାକୁ ମାରିବେ ।
ଜଳ ସ୍ଥଳ ବନ ଲତା କାହିଁରେ ଭୟ ନାହିଁ
ମାର ଦୈତ୍ୟବଳ କଷ୍ଟ ଯେ ସବୁ ମହୀ ।
ଏତେବୋଲି ସୁରରାଜା ଶୂନ୍ୟେ ଚଳିଗଲା
ଚାରିମେଘ ଛାଇଣ ଅମୃତ ଆଣିଦେଲା ।
ବୋଇଲା ଅମୃତ ଯେ ସକଳଠାରେ ବୁଣ
ମିଠା କଷା ଫଳ ମୂଳ ମଧୁର କର ପୁଣ ।
ବାନର ଭାଲୁ ଅଙ୍ଗେ ସିଞ୍ଚିବ ନେଇ ପୁଣ
ବଳବନ୍ତ ହୋଇବେ ନୋହିବେ ନିଉନ ।
ଶୁଣିଣ ମେଘମାନେ ଚଳିଲେ ବହନ
ବନ ଗିରି ଲତା ପରେ କଲେ ବରଷଣ ।
ମର୍କଟ ଭାଲୁ ପରେ ଜଳ ବରଷଇ
ବଢ଼େ ଶତେଗୁଣରେ ଫଳ ଯେ ଗରୁହୋଇ ।
ଅମୃତ ମହିମାରୁ ସୁଖୀ ଯେ ସମସ୍ତେ
ମର୍କଟ ଭାଲୁ କୁଳ ବିଶେଷ ତୋଷ ଚିତ୍ତେ ।
ପତ୍ର ଲତା ଭୁଞ୍ଜନ୍ତେ ସ୍ୱାଦ ସେ ମଣିଲେ
ଏଥୁ ଅନ୍ତେ ସ୍ୱର୍ଗରୁ ବିଶ୍ୱକର୍ମା ଆସିଲେ ।
ରତ୍ନପୁର ଗୋଟିଏ କଲାକ ତହିଁ ପୁଣ
ଘର ଭିତରେ ରଖିଲା ରତ୍ନ ସିଂହାସନ ।
ଶ୍ରୀରାମକୁ ବୋଇଲେ ଶୁଣ ଦଶରଥ ଶିଷ୍ୟ
ପ୍ରଭୁପଣ ଦେଖାଇ ସିଂହାସନେ ବସ ।
ସୈନ୍ୟବଳ ଅଇଲେ ତୋର ମାୟା ଯେ ପ୍ରକଟ
ଏତେ କହି ବିଶ୍ୱକର୍ମା ସ୍ୱର୍ଗକୁ ଗଲା ଝଟ ।
ସେ ଘର ଭିତରେ ପତର ଛାଏଣି
ଭିତରେ ସୁବର୍ଣ୍ଣମୟ ଦିଶଇ ପୁଣି ।
ଦେଖିଣ ଶ୍ରୀରାମ ଯେ ହରଷ ହୋଇଲେ
ସିଂହାସନ ଉପରେ ଯାଇଣ ବିଜେକଲେ ।
ପାର୍ବତୀ ବୋଇଲେ ଶୁଣହେ ବିଶ୍ୱନାଥ
ସୁଗ୍ରୀ ଲକ୍ଷ୍ମଣ ରହିଲେ ଋଷ୍ୟମୂକ ପର୍ବତ ।
ସେଠାରୁ କିସ କଲେ କହ ହେ ତ୍ରିଲୋଚନ
କହିଣ ସନ୍ତୋଷ ହୋଇବ ମୋର ମନ ।

ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଲକ୍ଷ୍ମଣ ସୁଗ୍ରୀବର ଋଷ୍ୟମୂକେ ଛନ୍ତି ।
ଅଷ୍ଟ ସେନାପତି ସଙ୍ଗେ ଅଇଲା ଅଙ୍ଗଦ
ପଞ୍ଚାଶ ଯୁଥପତି କପିରାଜା ବନ୍ଦ ।
ଋଷ୍ୟମୂକ ପର୍ବତରେ ହୋଇଲେ ଠୁଳ ପୁଣ
ବାଦ୍ୟ ନିଶାଣରେ କମ୍ପଇ ଗିରି ଜାଣ ।
ସେଦିନ ସେଠାରେ ରହିଲେ ସମସ୍ତେ
ରଜନୀ ଶେଷ କଲେ କୋଳାହଳ ଚିତ୍ତେ ।
ପାର୍ବତୀ ବୋଇଲେ ଦେବ ଶୁଣ ହେ ଈଶ୍ୱର
ଶ୍ରୀରାମ ଯେ କୁକୁଟକୁ ଦେଲେ ବର ।
ମୁକୁଟ ତାର ଶିରେ ହେଲା କି ନ ହେଲା
ସେ କଥା କର୍ଣ୍ଣରେ ନ ଶୁଣିଲି ଭଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଦୁଇଘଡ଼ି ଥାଲାବୁ ମୁକୁଟ ଦିଶାଉଛି ।
ଦେଖିଣ ଆଶ୍ଚର୍ଯ୍ୟ ହୋଇଲା କୁକୁଟ
ମଥା ଆଉଁସନ୍ତେ ଦେଖସିଲା ଶିରେ ଜଟ
ମନେ ବିଚାରିଲା ଏ କେବଣ ଦେବତା
ପ୍ରଭୁ ଯେ କହିବାର ଘଟିଲା ଏକଥା ।
ମୁହିଁ କିମ୍ପା ଚଣ୍ଡାଳ ମନରେ ଭ୍ରାନ୍ତି କଲି
କେଡ଼େ ବଡ଼ ସ୍ୱାମୀକି କିଛି ନ ମାଗିଲି ।
ଏତେ ବୋଲି ପକ୍ଷୀବର କରଇ ଗମନ
ଅମର ହେବି ବୋଲି ଚଳଇ ବେଗ ପୁଣ ।
ଲୋଭ ମନ କରିଣ ସେ ଆସଇ ଗୋଡ଼ାଇ
ଦେଖିଣ ଶ୍ରୀରାମଙ୍କ ଦୂରନ୍ତୁ ଡାକଇ ।
ଶ୍ରୀରାମ ନ ଶୁଣି ଗଲେକ ଚଳି
ଯୁଗେ ଯୁଗେ କଥା ଯେ ରହିଲା ମହୀଆଳି ।
ପତ୍ର କୁଟୀର ଭିତରେ ପଶିଲେ ରାମ ଯାଇ
ପୁଣ ଉଠି ଉଭା ହୋଇ ଗିରିମୁଖେ ଯାଇ
ସେଠାରେ କୁକୁଟ ଯେ ପ୍ରବେଶ ଯାଇ ହେଲା
ଅମର ହେବି ବୋଲି ରାମଙ୍କୁ କହିଲା ।
ଶ୍ରୀରାମ ବୋଇଲେ ତୋର ମନ୍ଦବୁଦ୍ଧି ପୁଣ
ସେଥିଯୋଗେ ଛାଗଳ ସଙ୍ଗେ ସରି ଜାଣ ।
ଶୁଣିଣ କୁକୁଟ ଯେ ସେ ଭୟରେ ପଳାଇଲା
ଛାଗଳ ସଙ୍ଗେ ସରି ହୋଇଣ ରହିଲା ।
ଏଥୁଅନନ୍ତରେ ଶୁଣଗୋ ଶାକମ୍ଭରୀ
ଶ୍ରୀରାମ ଋଷ୍ୟମୂକେ ବିଜୟ ହୋଇକରି ।
ଉତ୍ତରେ ଉଭା ହୋଇ ଦକ୍ଷିଣକୁ ଚାହିଁ
ବିଚାରନ୍ତି ଏ ଦିଗରେ ରାବଣ ଘର ହୋଇ ।
ଦକ୍ଷିଣ ଦିଗରେ ଦିଶଇ ଘୋର ବନ
ଶ୍ରୀରାମ ବିଚାର ଯେ କରନ୍ତି ମନେ ମନ ।
ଏ ଦିଗରେ ସୀତୟା ଅଛନ୍ତି ମୋହର
କେତେ ଦିନ ବିଧାତା ନ କରିବୁ ଅନ୍ତର ।

କେତେଦିନେ ମୁଁ ଯେ ପାଇବି ବୈଦେହୀ
ଅସମୟେ ମୋର ସଖା କେହି ନାହିଁ ।
କୃତ୍ତିକା ନକ୍ଷତ୍ର ଯେ ଅଟଇ ସେ ଦିନର
ବୁଧର ବେଳେ ଯାଇ ଦର୍ଶନ ତାର ।
ଏସନକ ବିଚାର କରନ୍ତି ହୋଇ ମେଳ
ଲେଉଟି ଶ୍ରୀରାମ ଯେ ପୂର୍ଣ୍ଣକୁଟୀ ଦ୍ୱାର ।
ପୂର୍ଣ୍ଣକୁଟୀ ଭିତରେ ପଶିଲେ ଶ୍ରୀରାମ
ରତ୍ନ ସିଂହାସନ ଉପରେ ବିଜେ ପୁଣ ।
ତେଜର ପ୍ରକାଶ ଯେସନ ଦାବାନଳ
ରୂପଗୋଟି ଶ୍ୟାମଳ ଦିଶଇ ନିରୀମଳ ।
କୋଦଣ୍ଡ ଗୋଟି ପାଶେ ରଖି ରାମ ରାଣ
ଚାହିଁବାରେ ତୈଲୋକ୍ୟ ଦିଶଇ ଭିନ୍ନ ଭିନ୍ନ ।
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ
ଋଷ୍ୟମୂକ ପର୍ବତେ ଲକ୍ଷ୍ମଣ ଥିଲେ ନିକି ।
ଜନନୀ ପାନିବାକୁ ଅଇଲେ ଖର କରି
ଚଳିଲେ ସେନାପତି ସୁଗ୍ରୀବର ତଳି ।
ସୁଗ୍ରୀବର ଲକ୍ଷ୍ମଣ ଜମ୍ବେଜ ନଳ ନୀଳ
ପାଦଗାମୀ ହୋଇ ଯେ ହୁଅନ୍ତି ସକଳ ।
ମାଲ୍ୟବନ୍ତ ଗିରିରେ ଉଠିଲେ ବେଗ ଯାଇ
ଦେଖିଲେ ସିଂହାସନେ ବସିଛନ୍ତି ରଘୁସାଇଁ ।
କରେ କାଣ୍ଡ କୋଦଣ୍ଡ ଯେ ବୀର ସୁର ମୂର୍ତ୍ତି
ପର୍ବରୁ ଶତେଗୁଣ ତେଜ ବିରାଜନ୍ତି ।
ଏସନ ସମୟେ ଦର୍ଶନ କଲେ ଯାଇ
ପାଶକୁ ନ ଯାଇ ଦୂରରେ ଉଭା ହୋଇ ।
ଲକ୍ଷ୍ମଣ ସୁଗ୍ରୀବର ନଳ ନୀଳ ସହିତ
ପାଦେ ପଡ଼ି ଶୋଇଲେ ଯେ ଉଠିଲେ ତୁରିତ
ତେଜବନ୍ତ ଦେଖିଣ ସମସ୍ତେ ତୋଷ ହେଲେ
ଦରିଦ୍ରନିଧି ପ୍ରାୟେକ ସେମାନେ ମଣିଲେ ।
ଅପୁତ୍ରିକ ପୁତ୍ର ପାଏ ଅନ୍ଧ ପାଏ ଆଖି
ବନ୍ଧୁ ସୋଦର କି ହୁଅଇ ଦେଖାଦେଖି ।
ନିସ୍ୱାର୍ଥ ଲୋକଙ୍କୁ ଧର୍ମହିଁ କରେ ସାହା
ଏସନକ ପଟାନ୍ତର ଯେସନ ରଘୁନାହା ।
ସିଂହାସନେ ବସି ଦେବ ସନ୍ତୋଷ ହୁଅନ୍ତି
ଆକାଶ ଜଳରେ ଯେହ୍ନେ ଚାତକ ତୋଷମତି
ଆଶ୍ୱିନ ମାସରେ ପିତୃ ପାଇଲେ ଯେହ୍ନେପିଣ୍ଡ
ଚନ୍ଦ୍ର ଫୁଟିଲେ ଯେହ୍ନେ ଦେଖିଲେ ମାର୍କଣ୍ଡ ।
ନିକଟରେ ଯାଇଣ ଯେ ମିଳିଲା ସୁଗ୍ରୀବର
ବାମ ପାଦ ଧରି ଯେ କରଇ ନମସ୍କାର ।
ଲକ୍ଷ୍ମଣ ଜମ୍ବେବ ଯେ କରଇ ନମସ୍କାର
ଲକ୍ଷ୍ମଣ ଜମ୍ବେବ ଯେ ସୁଷେଣ ନଳ ନୀଳ ।
ହନୁକୁ ଘେନିଣ ସେ ଲୋଟିଲେ ପାଦତଳ
ଶ୍ରୀରାମ ସୁଗ୍ରୀକୁ ଯେ ତୋଳନ୍ତି ବାମ କର ।
ଦକ୍ଷିଣ ଭୁଜେ ଲକ୍ଷ୍ମଣ ମନ୍ତ୍ରୀବର
ଉଠ ଉଠ ବୋଲିଣ ବୋଲନ୍ତି ରଘୁବୀର ।

ଶ୍ରୀରାମ ଆଜ୍ଞାରେ ଯେ ଉଠିଲେ ସତମିତ୍ରୀ
ଜମ୍ବେବ ନଳ ନୀଳ ସୁଷେଣ ଯେ ତତ୍ପତି ।
ଉଭା ହୋଇଣ ସମସ୍ତେ ଶିରେ ଦେଲେ କର
ଶ୍ରୀରାମ ବୋଲନ୍ତେ ଉଠିଲେ ସୁଗ୍ରୀବର ।
ବୋଇଲା ସ୍ୱାମୀ ଦୋଷ କ୍ଷମା କର ମୋର
ଏତେ ଦିନ ଯାଏ ଯେ ନ ଅଇଲି ପାଶର ।
ସୁଖଭୋଗ କରିଣ ହୋଇଲି ହରଷ
କ୍ଷମାକର ଅପରାଧ ଜାନକୀ ବିଳାସ ।
ଚାଣ୍ଡାଳ ଆତ୍ମା ମୋର ନ ଚିହ୍ନିଲା ତୋତେ
ତୁ ସ୍ୱାମୀ ଐଶ୍ୱର୍ଯ୍ୟ ପାପ୍ତ କଲୁ ମୋତେ ।
ମୁହିଁ ପଶୁଜାତି ଅଟଇ ପାମର
ସେ ଦୋଷ ନ ଘେନି ଦୟା ମୋତେ କର ।
ଯେଉଁ କଥାରେ ସ୍ୱାମୀ ଆଜ୍ଞା ଦେବୁ ମୋତେ
ଏ ମୋହର ସତ୍ୟ ଯେ ଆଣିଦେବି ତୋତେ
ତୋହର ଆଜ୍ଞାରେ ପ୍ରଶ୍ନ ହେବ ଯାହା
ଭୋ ରଘୁନନ୍ଦନ ଯେ ଆଣିଦେବି ତାହା ।
ତୁମ୍ଭେ ମୋର ଠାକୁର ଯେ ମୁଁ ତୁମ୍ଭର ଦାସ
ମୋର ଅପରାଧ କ୍ଷମାକର ପୀତବାସ ।
ସୁଗ୍ରୀବର ବଚନେ ଶ୍ରୀରାମ ତୋଷ ହେଲେ
ଦୁଇଭୁଜେ ସୁଗ୍ରୀବକୁ ଆଲିଙ୍ଗନ କଲେ ।
ସିଂହାସନ ତଳେ ସୁଗ୍ରୀବରକୁ ବସାଇଲେ
କୁଶଳ ବାରତାମାନ ତାହାକୁ ପଚାରିଲେ ।
ଶୁଭରେ ଅଛନ୍ତି କି ତୁମ୍ଭ ବାନ୍ଧବ ସକଳ
ଦେଶ ଘୋଷ ଅଶ୍ୱରଥ ପଦାତି ସକଳ ।
ନଗ୍ରେ ନରନାରୀ କି ନିଶ୍ଚିନ୍ତେ ଅଛନ୍ତି
ରଥୀ ମାହୁନ୍ତ କି ଶୁଭରେ ଖଟନ୍ତି ।
ତାରା ପାଟରାଣୀର କି ଅବା ବିଶ୍ୱାସ
ରୋମ ରାଣୀ ତୁମ୍ଭର ଖଟଇ କି ପାଶ ।
ଅଙ୍ଗଦକୁ ଗୌରବ କି ରଖିଣ ଅଛ କରି
ହନୁମନ୍ତ ନ ଅଇଲା ମନେ କିସ ଧରି ।
ସୁଗ୍ରୀବ ବୋଇଲେ ଅଙ୍ଗଦ ହନୁମନ୍ତ
ଥାଟ ଆଣିବା ସକାଶେ ସେହିତ ।
ସେ ବେନି ଭାଇ ପୁଣି ଆସିବେ ଏଇକ୍ଷଣି
ଏମନ୍ତ ସମୟରେ ଲଇକ୍ଷଣ ଭଣି ।
କହିଲେ ସୁଗ୍ରୀବର ଯେ ଅଟଇ ଧାର୍ମିକ
ନୋହିଲେକ କିଷ୍କିନ୍ଧ୍ୟାରେ ହୋଇଲା ନାୟକ ।
ଅଙ୍ଗଦକୁ ପେଷିଣ ଅଣାଇଲେ ଥାଟ
ବନ ଗିରି ପୁର ଆସନ୍ତି ନ ମିଳଇ ବାଟ ।
ଅକଳିତ ବାନର କଳିତ ନୁହଇ
ଶୁଣିଣ ରଘୁନାଥ ଜମ୍ବେବକୁ ଚାହିଁ ।
ଧୂଳି ଉଡୁଅଛି ବନେ ଦିଗ ନ ଦିଶଇ
ଶୁଣିଣ ଜମ୍ବେବ ଯେ ଶିରରେ କର ଦେଇ ।
ବୋଲନ୍ତି ଜମ୍ବେବ ସୁଦୟା ତୋର ହୋଇ
ଜୟ ଜୟ ରଘୁନାଥ ସୀତା ପ୍ରାଣସାଇଁ ।

ଲକ୍ଷ୍ମଣ ବୋଇଲେ ସୈନ୍ୟ ଅଇଲେଟି ଦେବ
ଋଷ୍ୟମୁକେ ବସିଥିଲେ ସୀତୟାଙ୍କ ଧବ ।
ଏସନକ ସମୟେ ଉଡ଼ିଲାକ ଧୂଳି
କିଳିକିଳା ଶବଦରେ ପୃଥିବୀ ଉଚ୍ଛୁଳି ।
ଶ୍ରୀରାମ ପଚାରନ୍ତି ସୁଗ୍ରୀବକୁ ଚାହିଁ
କିସ କିସ ଶବଦ ଯେ ଶୁଭୁଣ ଅଛି ଏହି ।
ଧୂଳି ଉଡ଼େ ଏଡ଼େ କେବଣ କାରଣ
ତାରାକ୍ଷ ବୋଇଲେ ଦେବ ଶୁଣ ହେ ରଘୁରାଣ
ଅଙ୍ଗଦ ହନୁମନ୍ତ ସଙ୍ଗରେ ଘେନି ଥାଟ
ଆସିବାରୁ ଧୂଳି ଉଡ଼େ ନ ଦିଶଇ ବାଟ ।
ଏମନ୍ତ ସମୟରେ ବାଜିଲା ନିଶାଣ
ଚିରାଳ ମାଳ ମାଳ ଉଡ଼ଇ ବିଚକ୍ଷଣ ।
ହୁଳହୁଳି ରାମତାଳି ବାଜଇ ନିରନ୍ତର
ପଂଝା ପଂଝା ନୃତ୍ୟକାରୀ ଆସନ୍ତି କପିବୀର ।
କଥା ହୁଅନ୍ତେ ଯେ ଦିଶିଲେ ସଇନୀ
ଅଙ୍ଗଦ ହନୁମାନ ବିଚାରନ୍ତି ବେନି ।
ଥାଟ ଯେ ରଖିଣ ଆମ୍ଭେ ଆଗ ହୋଇ ଯିବା
ସୈନ୍ୟବଳ ଅଇଲେ ଛାମୁରେ ଜଣାଇବା ।
ଆଜ୍ଞା ଦେଲେ ପୁଣି ଆସିଣ ନେବା ବଳ
ଏତେ ହସ୍ତ ଦେଲେ ସୁରଙ୍ଗର ଫଳ ।
ଧର୍ମକୁ ସୁମରି ପର୍ବତେ ଉଠିଲେ
ଶ୍ରୀରାମ ଛାମୁରେ ଦର୍ଶନ ଯାଇ କଲେ ।
ସୁସ୍ୱାଦୁ ଫଳ ନେଇ ଲକ୍ଷ୍ମଣ ହସ୍ତେ ଦେଲେ
ଶ୍ରୀରାମର ପାଦେ ଓଳଗି ଶୋଇଲେ ।
ଉଠି ଉଭା ହୋଇଣ ଶିରେ କର ଦ୍ୟନ୍ତି
ହସିଣ ରାଘବ ଯେ ବାରତା ପଚାରନ୍ତି ।
ଅଇଲେ ଥାଟ ଯେ ରହିଲେ ଶୁଣ କାହିଁ
ଅଙ୍ଗଦ ବୋଇଲା ଶୁଣହେ ରଘୁସାଇଁ ।
ପର୍ବତ ତଳରେ ଦେବ ଥାଟ ରୁହାଇଲି
ତୁମ୍ଭର ଛାମୁକୁ କହିତ ମୁଁ ଅଇଲି ।
ଯେତେବେଳେ ଆଜ୍ଞା ଦେବ ଆସିବେ ପୁଣି
ଶୁଣିଣ ପରମ ତୋଷ ହେଲେ ରଘୁମଣି ।
ସୁଗ୍ରୀବର ବୋଇଲେ ଆଗରେ ଯାଇ ବଳ
ଶ୍ରୀରାମ ବୋଇଲେ ଆମ୍ଭେ ଶୌଚ ହେଉଖର
ତିନିଦିନ ହେଲା ଯେ ସ୍ନାହାନ ପାଳିନାହିଁ
ସ୍ନାହାନ ସାରିଣ ଫଳ ଭୁଞ୍ଜିବି ଯେ ମୁହିଁ ।
କପିରାଜା ବୋଲେ ଦେବ ଏ ତୋହର ଭାଇ
ତୋତେ ଛାଡ଼ି ଗଲାଦିନୁ ସ୍ନାନ ପାଣି ନାହିଁ ।
ଅନେକ କାର୍ପଣ୍ୟ ଯେ ହୋଇଣ ରହିଲେ
ବିବିଧ ପଦାର୍ଥ ଆଣିଣ ତାଙ୍କୁ ଦେଲେ ।
ବୋଇଲେ ଶ୍ରୀରାମକୁ ନ ଦେଖିଲେ ମୁହିଁ
କେବେହେଁ ଆହାର ଏ ସ୍ଥାନେ ନ କରଇ ।
ଏତେ ବୋଲି ଲକ୍ଷ୍ମଣ ଅଛି ଉପବାସେ
ସ୍ନାହାନ ନ କଲେ ଏ ତିନିଦିବସେ ।

ତୁମ୍ଭେତ ଉପବାସେ ସେ ଦିନୁ ଅଛ ପୁଣ
ସାଧୁ ମହିମା ଯେ ତୁମ୍ଭର ରାମରାଣ ।
ମୋହର ବାଳୀ ଯେ ଜ୍ୟେଷ୍ଠଭାଇ
ପ୍ରାଣ ନେବ ବୋଲି ମୋର ଥିଲା ବାଟ ଚାହିଁ
ହୀରା ଖଣିରୁ ଯେ ହୀରା ହୁଏ ଜାତ
କାଚ କି ତାର ସଙ୍ଗେ ସମାନ ରଘୁନାଥ ।
ତୁମ୍ଭେତ ଉତ୍ତମ ମୁହିଁ ହୀନଜାତି
କେବଳ ତୋର ମର୍ମ ମିଳିଲାକ ଏଥି ।
ଏତେ ବୋଲି ସୁଗ୍ରୀ ଯେ ନମଇଁ ପାଦେପୁଣ
ହସିଣ ତାହାକୁ ଯେ ବୋଲନ୍ତି ରଘୁରାଣ ।
ଯେ ଯାର ସୋଦର ସେ ତାକୁ ବ୍ୟଥା
ତୁମ୍ଭେ କପିରାଣହେ କହିଲ ଦଶକଥା ।
ତୁମ୍ଭେ ଦୁଇଭାଇ ପିତା ଯେ ଭିନ୍ନ ଭିନ୍ନ
କିମ୍ପା ମଇତ୍ରେ ଏ କଥା ନ ବିଚାର ମନ ।
ଏମନ୍ତ ବଚନ କହେ ଦଶରଥ ନନ୍ଦନ
ଏତେ ବୋଲି ଶ୍ରୀରାମ ହେଲେକ ବହନ ।
ସୁଗ୍ରୀ ଲକ୍ଷ୍ମଣ ଯେ ଅଷ୍ଟସେନା ମିଳି
ସମସ୍ତଙ୍କୁ ଘେନି ସଙ୍ଗତରେ ରାମ ପୁଣି ।
ଗୁପ୍ତଗଙ୍ଗାଠାରେ ପ୍ରବେଶି ହେଲେ ଜାଣ
ପାତାଳ ଗଙ୍ଗାଜଳେ ଶ୍ରୀରାମ କଲେ ସ୍ନାନ ।
ସୁଗ୍ରୀବ ଲକ୍ଷ୍ମଣ ସେନାପତି ଗଲେ
ସ୍ନାନ ତର୍ପଣ ବିଧାନ ସେଠାରେ ସାରିଲେ ।
ଆସିଣ ମିଳିଲେ ଯେ ମଢ଼ିଆ ଦ୍ୱାରେ ପୁଣ
ପଶିଲେ ପତ୍ର କୁଟୀରେ ଲଇକ୍ଷଣ ।
ଅମୂଲ୍ୟ ରତ୍ନପୁର ଦେଖିଲେ ସେଥିରେ
ଅଷ୍ଟରତ୍ନେ ନିର୍ମିତ ହୋଇଛି ଭିତରେ ।
ବାହାରକୁ ଦିଶଇ ପତ୍ରକୁଟୀ ଘର
ଭିତରେ ଅସମ୍ଭବ ବାହାରେ ଅସୁନ୍ଦର ।
ବିଚାରିଲେ ଲକ୍ଷ୍ମଣ ରାଜାଙ୍କୁ ଠାବ ଜାଣ
ଦେଖିଣ ଲକ୍ଷ୍ମଣ ଯେ ହରଷ ହେଲା ମନ ।
କରଯୋଡ଼ି ଜଣାଇଲା ଶ୍ରୀରାମ ସନ୍ନିଧାନ ।
ବୋଇଲା ସମସ୍ତଙ୍କୁ କୁଟୀରେ ନାହିଁ ସ୍ଥାନ ।
ଶ୍ରୀରାମ ବୋଇଲେ ସର୍ବ ଅଟନ୍ତି ମୋ ପ୍ରାଣ
ସମସ୍ତଙ୍କୁ ଠାବକର ଶୁଣିଣ ଲକ୍ଷ୍ମଣ ।
ଶ୍ରୀରାମ ବସିବା ସ୍ଥାନେ ମୃଗଛାଲ ପାରିଲେ
ଶାଳପତ୍ରମାନ ଯେ ଶତେକ ସେ ବିଞ୍ଚିଲେ ।
ଶତେ ଠାରେ ଛତ୍ର ଯେ ଫଳମୂଳ ଦେଲେ
କରଯୋଡ଼ି ଲକ୍ଷ୍ମଣ ରମାଙ୍କୁ ବୋଇଲେ ।
ଆସନ୍ତୁ ବେଗି ବେଗି ସଭିଙ୍କି କଲି ସ୍ଥାନ
ଭୁଞ୍ଜିବା ଠାବେ ବସିଲେ ହସି ରାମ ଜାଣ ।
ସମସ୍ତେ ଶ୍ରୀରାମ ସଙ୍ଗରେ ଯେ ବସିଲେ
ବିଷ୍ଣୁ ବୋଲିଣ ତହିଁ ପାଣି ଯେ ସିଞ୍ଚିଲେ ।

ଲକ୍ଷ୍ମଣ କନ୍ଦମୂଳ ପରଶିଲେ ଆଣି
ମଣୋହୀ ସାରି ଯେ ହର୍ଷ ହେଲେ ରଘୁମଣି ।
ସମସ୍ତେ ମନରେ ତୋଷ ହେଲେ ଜାଣ
ପ୍ରଭୁ ଦେବରାଜ ଆଚମନ ସାରିଣ ।
ସିଂହାସନ ଉପରେ ବିଜୟ କଲେ ସରାଗେ
ସୌମିତ୍ରୀ ଭୋଜନ ଯେ କଲାକ ବେଗେ ।
ଆଚମନ ସାରିଣ ଉଠିଲେ ଲକ୍ଷ୍ମଣ
ଶ୍ରୀରାମଙ୍କର ପାଶକୁ ଗଲା ଯେ ବହନ ।
ଛାମୁରେ ଉଭା ହେଲା ଯୋଡ଼ି ବେନିକର
ସୁଗ୍ରୀବ ହନୁମନ୍ତ ଅଙ୍ଗଦ ନଳ ନୀଳ ।
ସୁଷେଣ ଗନ୍ଧମାର୍ଦ୍ଦନ ତାରାର ପିଅର
ଏ ସର୍ବେ ଆଗରେ ଉଭା ଯୋଡ଼ି ବେନିକର ।
ଦେଖିଣ ଶ୍ରୀରାମ ପରମ ତୋଷ ହେଲେ
ଆନନ୍ଦ ସାଗରେ ସେ ମଜ୍ଜି ଯାଇଥିଲେ ।
[illegible] ଦୁଇ ଯୋଡ଼ିଣ କହଇ କପିରାଜ
ଶୁଣ ହେ ରଘୁନାଥ ଲକ୍ଷ୍ମଣ ଯେ ଅନୁଜ ।
ବାନର ନୃପତି ଯେ ଲକ୍ଷେ ସଙ୍ଗେ ପୁଣି
ବୋଇଲେ ଶ୍ରୀରାମଙ୍କୁ ଦେଖିବୁ ଆମ୍ଭେ ଜାଣି ।
ବହୁତ ଶ୍ରଦ୍ଧାରେ ଯେ ସମସ୍ତେ ବୋଲନ୍ତି
ଦିଅନ୍ତୁ ଆଜ୍ଞା ଦେବ ଆସିବେ ଶୀଘ୍ର ଗତି ।
ଶୁଣିଣ ଶ୍ରୀରାମ ଯେ ସନ୍ତୋଷ ମତି ହେଲେ
ଆସନ୍ତୁ ସୈନ୍ୟ ବୋଲି ରାଜା ଆଜ୍ଞା ଦେଲେ ।
ସିଂହାସନ ଉପରେ ଉଠିଲେ ରଘୁବୀର
ବିଜୟ କଲେ ଜାଣ ପର୍ବତ ଶିଖର ।
ଦେଖିଣ ହନୁମନ୍ତ ପତ୍ରକୁଟୀରେ ପଶି
ରତ୍ନସିଂହାସନ ଘେନିଣ ବେଗେ ଆସି ।
ଗିରିର ଶିଖରେ ନେଇଣ ବେଗେ ଥୋଇ
ଦେଖିଣ ଶ୍ରୀରାମ ଯେ ହରଷ ମନହୋଇ ।
ସିଂହାସନ ଉପରେ ଶ୍ରୀରାମ ବିଜେକଲେ
ଧବଳ ଛତ୍ର ଟେକି ସୁଗ୍ରୀବ ଧରିଲେ ।
ପ୍ରଥମେ ଶ୍ରୀରାମ ଯେ ଜମ୍ବେବକୁ ଚାହିଁ
ବୋଇଲେ ମୋର ପାଶେ ରହିଥାଅ ତୁହି ।
ନୂତନ ପାଞ୍ଜି ତୁ ଯେ କରେ ଧରିଥାଅ
କେ କେଉଁ ଅଂଶେ ବାନର ଜାତ ଯେ କହ ।
ଶୁଣିଣ ଜମ୍ବେବ ଯେ ନୂତନ ପାଞ୍ଜି ଧରି ।
ସୁଷେଣ ଘେନିଣ ଛାମୁରେ ବିଜେକରି ।
ଏଥୁ ଅନନ୍ତରେ ଶୁଣ ରେ ଭଗବତୀ
ଅଙ୍ଗଦ ହନୁକୁ ଚାହିଁ ଶ୍ରୀରାମ ବୋଲନ୍ତି ।
ଥାଟ ଯେ ଘେନିଆସ ବୋଲି ଆଜ୍ଞାଦେଲେ
ତୁମ୍ଭର ସଙ୍ଗେ ଥାଟ ଆସନ୍ତୁ ବୋଇଲେ ।
ଶୁଣିଣ ଅଙ୍ଗଦ ଯେ କହଇ କରଯୋଡ଼ି
ତୁମ୍ଭେ ମୋର ପିତା ବାଳୀ ସଙ୍ଗେ ସରି ।
ଯହିଁ ଆଜ୍ଞା ଦେବ ତହିଁକି ମୁଁ ଯିବି
ଏ ତୋହର କାର୍ଯ୍ୟରେ ହେଳା ନ କରିବି ।
ତୁମ୍ଭେ କିଛି ମନରେ ନ କର ଦେବ ଚିନ୍ତା
ରାବଣ ମାରି ନିଶ୍ଚେ ଆଣିଦେବି ସୀତା ।
ନେବେ ସେ କୀର୍ତ୍ତିଯେ ଯୁଗେ ଯୁଗେ ଥିବ
ତ୍ରେତୟା ଯୁଗେ ରାମର ବାନର ସୁଲଭ ।
ଶୁଣିଣ ଶ୍ରୀରାମ ଯେ ମନରେ ତୋଷ ହେଲେ
ଆଗତ କଥା ପୁତ୍ର ଜାଣିଲ ବୋଇଲେ ।
ଅଙ୍ଗଦ ବୋଇଲେ ତୁମ୍ଭେ ଶୁଣ ଧର୍ମସୁତ
ଅଇଲାବେଳେ ଜନନୀ କହିଲା ମୋତେତ ।
ମୋହର କଥା ଦାଶରଥିଙ୍କି ତୁ କହିବୁ
ଏ ବାଟରେ ଆସିଲେ ଦର୍ଶନ ମୋର ବାବୁ ।
ଜନକ ଦୁହିତା ଯେ ଅଟଇ ଠାକୁରାଣୀ
ନେତ୍ରରେ ଦେଖିବି ମୁଁ ଅଇଲେ ସେହି ପୁଣି ।
ଦେଖା ନ ଦେଇ ଯେ ଏବାଟେ ନ ଯିବେ
ପ୍ରାଣ ତେଜ୍ୟା କରିବି ମୁଁ ତାଙ୍କରି ଅଭାବେ ।
ଶୁଣିଣ ଦାଶରଥି ସନ୍ତୋଷ ମନ ହେଲେ
ନିଶ୍ଚୟ ଆସିବି ଏ କଥା ଜାଣ ଭଲେ ।
ଏଥୁ ଅନନ୍ତରେ ଯେ ଭଗବତୀ ଜାଣ
ସୁଗ୍ରୀବରକୁ ଶ୍ରୀରାମ ଆଜ୍ଞାଦେଲେ ପୁଣ ।
ଛତ୍ରମୋର ଏବେ ଧରୁ ଯେ ଲକ୍ଷ୍ମଣ
ତୁମ୍ଭେ ଆସନରେ ବସ ହେ କପିରାଣ ।
ବାନର ଭାଲୁ ନୃପତି ଲକ୍ଷ୍ୟ ପରା ତୁମ୍ଭେ
ପ୍ରଭୁପଣ ବୋଲି ଜଣାଗଲା ଏବେ ।
ରାଜନୀତି ବେଭାରେ ମଇତ୍ର ହେ ବସ
ଶୁଣିଣ ସୁଗ୍ରୀବର ହୋଇଲା ସନ୍ତୋଷ ।
ମୋହର ଛାମୁରେ ରହିବେ ନଳ ନୀଳ
ଆଜ୍ଞା ପାଇଲେ ଛାଡ଼ି ଦେଇଥିବେ ବଳ ।
ଜମ୍ବେବ ସାଙ୍ଗରେ ସୁଷେଣ ଯାଇ ରହୁ
କେ କେଉଁ ଅଂଶେ ଜାତପ୍ରତେ ମୋତେ ହେଉ ।
ଗନ୍ଧମାର୍ଦ୍ଦନ ତାରାକ୍ଷ ମନ୍ତ୍ରୀ ପୁଣ
ପ୍ରଥମେ ଦ୍ୱାର ଜଗନ୍ତୁ ଏତେକ ପ୍ରମାଣ ।
ଅଙ୍ଗଦ ହନୁମନ୍ତ ଥାଟ ଯେ ଆଣିବେ
ଧରା ପ୍ରମାଣ କରି ଆଗେ ଭେଟାଇବେ ।
ଶୁଣିଣ ତିନିଦ୍ୱାରେ ରହିଲେ ସେନାପତି
ଜମ୍ବେବ ସୁଷେଣ ସେ ସଙ୍ଗରେ ଅଛନ୍ତି ।
ଛତ୍ରୀ ଧରେ ରାମ ପାଶେ ପୁଣି ଲକ୍ଷ୍ମଣ
ସୁଗ୍ରୀବର ବେଶ ହୋଇ ବସିଲା ଆପଣ ।
ଏତେ ବୋଲି ସୁଗ୍ରୀବର ଧରିଣ ରାଜନୀତି
ଗନ୍ଧମାର୍ଦ୍ଦନେ ଚାହିଁଣ ବୋଇଲେ ତାରାପତି ।
ତୁମ୍ଭେଯାଇ ସୈନ୍ୟକୁ ବେଗେ ଆଣ ହକାରି
ଗୋଳମାଳ ନ କରିବେ ନିଅ ଜଗିକରି ।

ମାନି ନ ପଶିବେ ଯେବେ ଧାଇଁ
ନଳ ନୀଳ ଆଗରେ ଏ କଥା ଯାଅ କହି ।
ରାଜାର ଆଜ୍ଞା ପାଇ ଯେ ଗନ୍ଧମାର୍ଦ୍ଦନ
ଶ୍ରୀରାମର ଛାମୁକୁ ଗଲାକ ବହନ ।
ନଳ ନୀଳ ଯେଉଁଠାରେ ଅଛନ୍ତି ଯାଇ
ସେମାନଙ୍କୁ କହିଲେ ରାଜା ଆଜ୍ଞା ବୁଝାଇ ।
ସେଠାରୁ ଚଳିଯାଇ ଥାଟକୁ ଡାକଦେଲେ
ନୃପତିମାନେ ଯେ ଯାହା ସୈନ୍ୟକୁ କହିଲେ ।
ହୁରିଜୁରୀ ହୋଇ ମାଡ଼ି ନ ପଡ଼ିବ
ଜଣେ ଜଣେ ବଳ ଘେନି ଦର୍ଶନ କରିବ ।
ଯେ ଯାହାର ବଚନକୁ ଥିବ ଯେ ପଛକତି
ମୋହର ହକାରିଲେ ଦେବ ଆସିବେ କତି ।
ପୂର୍ବର କଥାମାନ ଛାଡ଼ହେ ଦୁଷ୍ଟପଣ
ପରମ ବ୍ରହ୍ମମୂର୍ତ୍ତି ଅଟନ୍ତି ନାରାୟଣ ।
ଯାହାର ବାଣେ ମଲା ବାଳୀ ରାଜା ବୀର
ଯାହାର ବାହୁବଳେ ସୁଗ୍ରୀବ ନୃପବର ।
ଶ୍ରୀରାମକୁ ଦେଖିବ ହୋଇବ ଆଜ ପୁଣ୍ୟ
ପ୍ରଶଂସା ପାଇବ ଆଉ ଜୀବନ ହେବ ଧନ୍ୟ ।
ଶଉରୀ ସେନାପତି ଗଲା ଯେ ଆଗସରି
ସୁପକ୍ୱ ପଣସ ଯେ ଅଛଇ କରେ ଧରି ।
ଗନ୍ଧମାର୍ଦ୍ଦନ ଯେ କଢ଼ାଇ ଘେନିଗଲେ
ନଳ ନୀଳ ଶୁଣି ଯେ ନେଇଣ ବେଗେ ଦେଲେ
ନଳନୀଳ ଯାଇ ଅଙ୍ଗଦ ହନୁକୁ କହି
ହନୁ ଅଙ୍ଗଦ ଯେ ଶ୍ରୀରାମ ଆଗେ କହି ।
ସଙ୍ଗରେ ପଦାତି ବଳ ଅଛନ୍ତି ବହୁତ
ଦେଖିଣ ଆନନ୍ଦ ଯେ ଅଙ୍ଗଦ ହନୁମନ୍ତ ।
ଶ୍ରୀରାମର ଛାମୁରେ କଲେକ ତାକୁ ନେଇ
ଶ୍ରୀରାମର ଚରଣେ ଶଉରୀ ଓଳଗଇ ।
ପାଚିଲା ପଣସ ଶ୍ରୀରାମ ଆଗେ ଦେଲେ
ଦେଖିଣ ଶ୍ରୀରାମ ଯେ ହରଷ ମନ ହେଲେ ।
ସୁଗ୍ରୀବର ଚିହ୍ନାଇ ଦେଲେ ରାମକୁ ପୁଣ
ସୁଷେଣ ବୈଦ୍ୟ ଯେ ବୋଇଲେ ଦେବ ଶୁଣ
ଯାସଙ୍ଗେ ସତଚାଳିଶ ନୃପବର
ଦଶସାଗର ସୈନ୍ୟରେ ଅଟଇ ସରଦାର ।
ମଉଡ଼ମଣି ଯେ ଶଉରୀ ମହାବୀର
ରାଜ୍ୟ ଚଉଦ ରୂପଣ ଜାଣ ଏ ବୀରର ।
ସାରଙ୍ଗବତୀ ପର୍ବତ ପରେ ଏହା ଘର
ଶ୍ରୀରାମ ବୋଇଲେ ଏ କେଉଁ ଅଂଶ ନୃପବର
ଦଶଦିଗପାଳ ଅଂଶ ଜମ୍ୱୋ ବୋଇଲେ
ଶୁଣିଣ ରାମଚନ୍ଦ୍ର ହରଷ ହୋଇଲେ ।
ବେଲା ବନେ ରହ ବୋଲି ତାକୁଆଜ୍ଞାଦେଲେ
ଶୁଣିଣ ଶଉରୀ ସେ ବଳ ଘେନିଗଲେ ।

ପଞ୍ଚବଟୀ ବନରେ ତୁରିତେ ଯାଇ ହେଲା
ଫଳ ମୂଳ ପତ୍ରତୋଳି ଆହାର କରିଲା ।
ଶତଫୁନା ଖାଆନ୍ତେ ପେଟ ଯେ ଶୀତଳ
ଅମୃତ ପ୍ରସାଦେ କ୍ଷୁଧା ତୃଷା ହେଲା ଦୂର ।
ଅମୃତ ଝରୁଅଛି ଯେଣୁ ସେ ବନରେ
ଶୁଣ ହେ ଶାକମ୍ବରୀ ଏଥୁ ଅନନ୍ତରେ ।
ଶ୍ରୀରାମ ଆଜ୍ଞା ଦେଲେ ସୈନ୍ୟ ବେଗେ ଆଣ
ଶୁଣି ବେଗେ ଚଳିଗଲା ସେ ଗନ୍ଧମାର୍ଦ୍ଦନ ।
ତାରାର ପିଅରକୁ ଯାଇଣ ଆଣିଲେ
ଶ୍ରୀରାମଙ୍କ ଆଗରେ ନେଇଣ ତାଙ୍କୁ ଦେଲେ ।
ଦେଖିଣ ତାରା ପିତା ନମିଲା ପାଦତଳେ
ତାରା ପିତା ସଙ୍ଗତେ ରୋମା ପିତା ଚଳେ ।
ପାଦତଳେ ପଡ଼ନ୍ତେ ବୋଲନ୍ତି ରାମରାଣ
କେବଣ ଦେଶରୁ ଏ ଆସନ୍ତି ବେନିଜନ ।
କରଯୋଡ଼ି ଜଣାନ୍ତି ଜମ୍ୱେବ ସୁଷେଣ
ମାଙ୍କ ଶ୍ୱଶୁର ଏ ଶ୍ରୀରାମ ଦେବ ଶୁଣ ।
ରୋମାର ପିତା ଅଟେ କାଶୀଦେଶେ ଘର
ରମଣ ନାମ ବୋଲି ଅଟଇ ଏହାର ।
ନବଗ୍ରହଙ୍କ ଅଂଶରେ ଏହୁ ଅବତାର
ଚମ୍ପାଫୁଲ ପ୍ରାୟେ କାନ୍ତି ଦିଶଇ ଶରୀର ।
ବାଣରାଶୀ ବଳ ଯେ ଯାଙ୍କର ଅଛନ୍ତି
ଏ ରମଣ ବଳ ଶତସିଂହ ତୁଲ୍ୟ ଶକ୍ତି ।
ଏହାକୁ ଗୌରବ କରିଲେ ଶ୍ରୀରାମ
ତାରାକ୍ଷ ଫଳ ଦେଇ କରିଣ ପ୍ରଣାମ ।
ଶ୍ରୀରାମ ବୋଇଲେ ଏ ଯେ ନବଗ୍ରହ ଅଂଶ
ଏହା ସଙ୍ଗେ କେଉଁ ବଳ କହ ହେ ସାରାଂଶ ।
ଜମ୍ୱେବ ବୋଇଲେ ଯାର ନଉସାଗର ବଳ
ରାଜା ସତଚାଳିଶ ଅଛନ୍ତି ଯାଙ୍କ ସଙ୍ଗର ।
ଶୁଣିଣ ଶ୍ରୀରାମ ଯେ ପରମ ତୋଷ ହେଲେ
ଭଲରେ ବେଲବନେ ରହ ଯା ବୋଇଲେ ।
ଏଥୁ ଅନନ୍ତରେ ଶୁଣଗୋ ଗଉରୀ
ଦଶଦିଗପାଳ ନବଗ୍ରହ ଅଂଶ ଚଳି ।
ଲେଖାରେ ଚୌରାଶୀ ସାଗର ବଳଗଲେ
ଦୁଇଶତ ଅଶୀରାଜା ତା ତୁଲେ ଚଳିଲେ ।
ପାର୍ବତୀ ବୋଇଲେ ସେଠାରୁ କିସ ହେଲା
ପଚାଶ ସେନାପତିକୁ ତିନି ଯେ ଏବେ ଗଲା ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଏଥୁ ଅନନ୍ତରେ ହେଲା ଯେବଣକ ରୀତି ।
ଶ୍ରୀରାମ ସିଂହାସନ ଉପରେ ବସିଛନ୍ତି
ଛତି ଧରି ଉଭା ଯେ ହୋଇଲେ ସଉମିତ୍ରୀ ।
ସୁଗ୍ରୀବ ଶ୍ରୀରାମ ପାଶେ ବସିଛନ୍ତି ପୁଣ
ଜମ୍ୱେବ ସୁଷେଣ ରାମର ଅଗ୍ରେ ଜାଣ ।

ଦ୍ୱାରୀ ହୋଇଛନ୍ତି ହନୁ ଯେ ଅଙ୍ଗଦ
ବାଟ ଦ୍ୱାରୀ ଯେ ନଳ ନୀଳ ସଙ୍ଗତ
ତାରାର ପିଅରକୁ ଯାଇଣ ଜଣାଇଲେ
ଦେଖା ଦରଶନୀ ଯେ ଆଗରେ ନେଇ ଦେଲେ
ଶ୍ରୀରାମ ପଚାରିବାରୁ ଜମ୍ବେବ କହଇ
ଅଙ୍ଗଦର ଅଜା ଯେ ତାରାର ପିତା ଏହି ।
ଚିତ୍ରକୂଟ ପର୍ବତରେ ସର୍ବଦା ଏ ଥାଇ
ଐରାବତ ସମାନେ ଏହାର ବଳ ଯେ ଅଟଇ ।
ସୁବର୍ଣ୍ଣ ପ୍ରାୟେକ ଦିଶେ ଏହାଙ୍କ ଶରୀର
କୋଟି କେଶରୀ ବଳ ଯେ ବହଇ କପିବୀର ।
ଶ୍ରୀରାମ ବୋଇଲେ ଏ କେବଣ ଅଂଶେ ଜାତ
ଜମ୍ବେବ ବୋଇଲେ ଅଷ୍ଟବସୁଠୁଁ ସମ୍ଭୁତ ।
ବାନର ବଳ ଏହାର ଆଠ ଯେ ସଙ୍ଗତେ
ଶତଚାଳିଶ ରାଜା ବଶ୍ୟତା ନିରତେ ।
ଆଜ୍ଞା ଦିଅନ୍ତୁ ଦେବ ବସା କରିଣ ରହୁ
ଯାଅ ବୋଲି ରାମ ଯେ ଆଜ୍ଞା ଦେଲେ ତହୁଁ ।
କୃଷ୍ଣବେଣୀ ନଦୀକୂଳରେ ଯାଇଣ ରହ
ସେ ବେଳାବନ ତୁମ୍ଭର ଯେ ପ୍ରିୟ ।
ଏଥୁ ଅନନ୍ତରେ ଶୁଣ ହୈମବନ୍ତୀ
ମୟ ବାନର ଚଳିଲା କରି ଶୀଘ୍ର ଗତି ।
କୃଷ୍ଣବେଣୀ କୂଳରେ ବସା କଲା ଯାଇ
ଅନେଶ୍ୱତ ସିଂହର ପ୍ରାକର୍ମ ବହିଥାଇ ।
ଏଥୁ ଅନନ୍ତରେ ଅଇଲା କେଶରୀ
ପାଚଲା ଟଭାଫଳ ହସ୍ତରେ ଅଛି ଧରି ।
ଶ୍ରୀରାମ ଚରଣେ କଲାକ ନମସ୍କାର
ଜମ୍ବେବ କହିଲା ଯୋଡ଼ି ବେନିକର ।
ଭୋଦେବ ସୁଗ୍ରୀବ ରାଜାର ଭିଣୋଇ
ହନୁର ପିଅର ଏ ଯେ କୋଣାର୍କରେ ଥାଇ ।
ତିନି ସାଗର କପି ଘେନିଣ ଏଥକୁ ଅଇଲା
ସତୁରୀ ରାଜା ଏହା ସଙ୍ଗରେ ସଙ୍ଗ ପରା ।
ମରୁତ ଅଂଶରେ ଏ ଉତ୍ପତ୍ତି ହେଲା ତେଣୁ ।
କେଶରୀ କପିରାଜା ବୋଲାଇଲା ଏଣୁ ।
ଏ ରାଜାର ବଳ ଯେ ଅଟଇ ଅକଳିତ
ବେନିଶତ ସିଂହର ପରାକ୍ରମ ମତ ।
ଶୁଣିଣ ଶ୍ରୀରାମ ଯେ ପାଶକୁ ଅଣାଇ
ହରଷ ହୋଇ ଯେ ଶ୍ରୀରାମ ଆଜ୍ଞା ଦେଇ ।
ଆସହେ କେଶରୀ ହନୁମନ୍ତର ପିଅର
ରାବଣ ଚୋରାଇ ନେଲା ଘରଣୀ ମୋହର ।
ଲଙ୍କା ଯିବାକୁ ଆରମ୍ଭ କରେ ମୁହିଁ
ତୁ ମୋତେ ପୀରତି କରହେ ସୀତା ସାଇ ।
ଶ୍ରୀକରେ କର ଦେଇଣ କେଶରୀ ବୋଇଲା
ବାରାନିଧି କୂଳକୁ ଠାକୁର ଆଶ୍ରା କଲା ।
ଶ୍ରୀରାମ ବୋଇଲା ପାଇଲି ଏଥର
ତୋର ଯୋଗୁଁ ଜୀବନ ରହିବ ମୋହର ।

ଯାଅ ବେଲାବନରେ ନିଶ୍ଚିନ୍ତରେ ରୁହ ବୀର
ପ୍ରିୟ ଗୋଦାବରୀ ସମୁଦ୍ର କୂଳର ।
ଶୁଣିଣ କେଶରୀ ବେଗେ ଚଳିଗଲା ।
ଗୋଦାବରୀ କୂଳରେ ଯାଇଣ ବସା କଲା ।
ଏଥୁ ଅନନ୍ତରେ ଗଉରୀ ଶୁଣ ତୁହି
ଶଉରୀ ଯିବାରୁ ଅଙ୍ଗଦ ହନୁ ଦୁଇ ।
ସେନାପତି ଯିବାରୁ ମନରେ ବିଚାରିଲେ
ଦୃବିନ୍ଦ ବୀରକୁ ଘେନିଣ ଆସିଲେ ।
ସଙ୍ଗରେ ରଜାବଳ ଆସଇ ସେ ଘେନି
ଯାଚିଲା ସପୁରୀ ଯେ ହସ୍ତରେ ଅଛି ବେନି ।
ରଖିଣ ଦର୍ଶନ କଲା ଶ୍ରୀରାମ ପୟରେ
ଦେଖିଣ ଶ୍ରୀରାମ ଯେ ଜମ୍ବେବକୁ ପଚାରେ ।
କେଉଁ ଅଂଶେ ଏ ଜାତ କହହେ ବିଚାରି
ଜମ୍ବେବ ବୋଲେ କେତୁ ଅଂଶେ ଅବତରି ।
ବେନିଶତ ସିଂହର ପରାକ୍ରମ ମତ
ଚାରି ସାଗର ବାନର ଖଟିଥାନ୍ତି ନିତ୍ୟ ।
ସତଚାଳିଶ ନୃପତି ଏହାର ପାଦେ ଖଟି
ଶୁଣିଣ ଶ୍ରୀରାମ ଆଜ୍ଞା ଦେଲେକ ପ୍ରକଟି ।
ବେଲାବନେ ରହ ତୁ ବୋଇଲେ ବଚନ
ରୁଷ୍ୟ ଶିଖର ନଦୀର କୂଳେ ଯେଉଁ ବନ ।
ସେଥିରେ ବସାକର ଦୃବିନ୍ଦ ଯାଇଣ
ଶୁଣିଣ ଦୃବିନ୍ଦ ବେଗେ କଲାକ ଗମନ ।
ଶିଖର ନଦୀକୂଳ ବନରେ ସେ ରହିଲା
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ ଭଲା ।
ଦୃବିନ୍ଦ ଯିବାରୁ ଅଙ୍ଗଦ ହନୁ ଯାନ୍ତି
ସୈନ୍ୟ ନିକଟରେ ଯାଇ ପ୍ରବେଶ ହୁଅନ୍ତି ।
ଦେଖିଲେ ଅଙ୍ଗଦ ହନୁ ମହେନ୍ଦ୍ରକ ମାର
ମହେନ୍ଦ୍ର ଆପିଣ ବେଗେ ସେ ଯେ ଅଇଲଇଁ ।
ଶ୍ରୀରାମ ଛାମୁରେ ଆସିଣ ଭେଟ ହେଲେ
ମହୀନ୍ଦ୍ର ବୀର ରାମ ଚରଣେ ଲୋଟିଲେ ।
ପାଚିଲା କମଳା ଫଳ ସେ ଘେନିଣ
ଶ୍ରୀରାମ ସୁମରିଣ ଓଳଗି ହେଲେ ପୁଣ ।
ଶ୍ରୀରାମ ପଚାରିଲେ ଜମ୍ବେବ ମୁଖ ଚାହିଁ
ମହେନ୍ଦ୍ର ସେନାପତି କାହାର ଅଂଶହୋଇ ।
ଜମ୍ବେବ ବୋଇଲେ ମଙ୍ଗଳ ଅଂଶେ ଜାତ
ମଙ୍ଗଳ ଗ୍ରହବଳ ଏ ବହଇ ସାକ୍ଷାତ ।
ତିନିଶତ ସିଂହର ପ୍ରାକର୍ମ ଏହାର ଅଙ୍ଗେ
ତିନି ସାଗର ଭାଲୁ ଘେନି ବିଜେ କଲା ସଙ୍ଗେ ।
ଶ୍ରୀରାମ ବୋଇଲେ ଏ ବେଲାବନରେ ରହୁ
ଅଗସ୍ତି ରହିବା ଆଶ୍ରମରେ ରହିଥାଉ ।
ଶୁଣିଣ ମହେନ୍ଦ୍ର ବେଗେ ଚଳିଗଲା
ଜମ୍ବେବ ମନ୍ତ୍ରୀ ତାହା ପାଞ୍ଜିରେ ଲେଖିଲା ।
ଶୁଣିଣ ମହୀନ୍ଦ୍ର ଓଳଗି ହୋଇଲା
ଗଗନା ସେନାପତିକି ଘେନିଣ ଅଇଲା ।

ଜାମ୍ବୁଫଳ ଘେନିଣ ଯେ ଦର୍ଶନ ସେହୁ କଲେ
ଦେଖିଣ ଶ୍ରୀରାମ ଜମ୍ୱେବକୁ ପଚାରିଲେ ।
କାହାର ଅଂଶେ ଜାତ ବୋଲି ସେ ବୋଇଲେ
ଶନିର ଅଂଶେ ଜାତ ଜମ୍ୱେବ କହିଲେ ।
ବେନିଶତ ସିଂହର ପ୍ରାକର୍ମ ତ ଅଟେ
ବେନି ସାଗର ବାନର ଏହାର ପାଶ ଖଟେ ।
ଶତଚାଳିଶ ରାଜାର ଅଟେ ମଉଡ଼ମଣି
ଗୋମତୀ ନଦୀ କୂଳେ ଏହାର ରହଣି ।
ଦଧିମୁଖ ସେନାପତି ଅଟଇ ସୋଦର
ଶ୍ରୀରାମ ବୋଇଲେ ବେଲାବନରେ ରହୁଥିର ।
ଏକାମ୍ରର ବନକୁ ବେଗେ ଯାଉ ଚଳି
ସେ ବନ ଅନନ୍ତ ବାସୁକୀଙ୍କର ସ୍ଥଳୀ ।
ଧବଳଲିଙ୍ଗ ଗୋଟି ଭୁବନେଶ୍ୱର ମୂର୍ତ୍ତି
ଶ୍ରୀକ୍ଷେତ୍ର ଶିବ ଯେ ତୀର୍ଥ ତୀର୍ଥରେ ପ୍ରଖ୍ୟାତି ।
ସେ ସ୍ଥାନକୁ ଚଳୁ ଏବେ ନ କରି ସମ୍ୱାଦ
ଗଗନା ସେନାପତି ପୁଣି ମନମୋଦ ।
ଏକାମ୍ରର ବନେ ସେ ରହିଲା ଯାଇ
ଏଥୁ ଅନନ୍ତରେ ଶୁଣ ଆଗୋ ପ୍ରିୟସହୀ ।
ହନୁ ଅଙ୍ଗଦ ଯେ ସେଠାରୁ ଗଲେ ଚଳି
ସୈନ୍ୟବଳ ନିକଟରେ ପ୍ରବେଶ ଯାଇ ମିଳି ।
ଜମ୍ୱେବର ଭାଇକୁ ସଙ୍ଗରେ ଘେନିକରି
ପାଚିଲା କମଳା ହସ୍ତରେ ଅଛି ଧରି ।
ଶ୍ରୀରାମକୁ ବହୁତ ନମସ୍କାର କଲା
କରଯୋଡ଼ି ଆଗରେ ଯାଇଣ ଛିଡ଼ାହେଲା ।
ଶ୍ରୀରାମ ବୋଇଲେ କାହାର ଅଂଶେ ଜାତ
ଜମ୍ୱେବ ବୋଇଲା ଏ କୁଶପକ୍ଷୀ ଗୋତ୍ର ।
ଷଡ଼ଶତ ସିଂହର ଏହାର ଦେହେ ବଳ
ଚାରିଶତ ଭାଲୁରେ ଅଟଇ ଅଧିକାର ।
ଶତଚାଳିଶ ରାଜା ଏହାକୁ ଖଟନ୍ତି
ମୋହର ଭାଇ ଯେ ଶୁଣ ହେ ରଘୁପତି ।
ଶ୍ରୀରାମ ବୋଇଲେ ଏ ବେଲାବନେ ଯାଉ
ଚନ୍ଦ୍ରଭାଗା ତୀର୍ଥ ବନରେ ଯାଇ ରହୁ ।
ଜମ୍ୱୁନଦୀ କୂଳରେ ଅଟଇ ସେନାପତି
ଶୁଣିଣ ଜାମ୍ୱବ ଭାଇ ଚଳିଲା ତଡ଼ତି ।
ଚନ୍ଦ୍ରଭାଗା ବନରେ ଯାଇ ସେ ରହିଲା
ଅର୍କବଟ ଦର୍ଶନ ଯାଇଣ ଭାଲୁ କଲା ।
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ
ସେ ଯିବାରୁ ହନୁମନ୍ତ ଅଙ୍ଗଦ ଯାଆନ୍ତି ।
ରମଣ ସେନାପତିକୁ ଆଗରେ ଆଣନ୍ତି
ଶ୍ରୀରାମ ଆଗରେ ସେ ଦର୍ଶନ କରନ୍ତି ।
ଓଳଗି ମେଲାଇଣ ଚରଣେ ନମିଲା
ଗଙ୍ଗା ଜଳନେଇଣ ଆଗରେ ଥୋଇଦେଲା ।
ଦେଖିଣ ଶ୍ରୀରାମ ଯେ ମନ୍ତ୍ରୀକୁ ପଚାରି
କାହାର ଅଂଶେ ଏ ଯେ ଅଛି ଅବତରି ।
ଜମ୍ୱେବ ବୋଇଲା ବରୁଣ ଅଂଶେ ଜାତ
ଶତ ଶତଚାଳିଶ ରାଜାରେ ଏ ଖ୍ୟାତ ।
ତିନିସାଗର କପି ଯେ ଏହାର ମୂଳେ ଠୁଳ
ବେନି ଶତ ସିଂହର ଏହାର ଅଟେ ବଳ ।
ଶୁଣିଣ ଶ୍ରୀରାମ ଯେ ତାହାକୁ ଆଜ୍ଞା ଦେଲେ
ବେଲାବନରେ ଚଳ ବୋଲିଣ ବୋଇଲେ ।
ଭାର୍ଗବୀ ନଦୀକୂଳରେ ବନରେ ଯାଇ ରହ
ନୀଳକଣ୍ଠ ଲିଙ୍ଗକୁ ଦର୍ଶନ ସେଠି ପାଅ ।
ସପତ ଗଙ୍ଗାରୁ ଆସିଣ ଅଛି ପୁଣ
ତେଣୁ ସେ ନଦୀକୂଳ ଦେଲୁ ହୋ ରମଣ ।
ଶୁଣିଣ ରମଣ ଯେ ବେଗେ ଚଳିଗଲା
ନୀଳକଣ୍ଠ ବେଲାବନେ ଯାଇଣ ରହିଲା ।
ଏଥୁ ଅନନ୍ତରେ ଅଙ୍ଗଦ ହନୁ ଗଲେ
ସୈନ୍ୟର ନିକଟେ ପ୍ରବେଶ ଯାଇ ହେଲେ ।
ଗନ୍ଧମାର୍ଦ୍ଦନର ଅଟଇ ସାନ ଭାଇ
ଘେନିଣ ତାହାକୁ ଅଇଲେ ବେଗେ ହୋଇ ।
ଶ୍ରୀରାମର ଆଗରେ କରାଇ ଦର୍ଶନ
ମାର୍ଦ୍ଦଳ ରାଇ ପୁଷ୍ପର ଦେଲାକ ନେଇଣ ।
ଗନ୍ଧମାର୍ଦ୍ଦନ ଯୋଡ଼ିଣ ବେନି କର
ଭୋଦେବ ଅଟଇ ଏ ମୋହର ସହୋଦର ।
ଦେବୀନଦୀ କୂଳରେ ଦେବ ଅଇଲା ଏହି
ଶୁଣିଣ ଶ୍ରୀରାମ ସନ୍ତୋଷ ହୋଇଲନ୍ତି ।
ଜମ୍ୱେବକୁ ଚାହିଁଣ ବୋଇଲେ ଦାଶରଥି
କାହାର ଅଂଶରେ ଏ ହୋଇଛି ଉତପତ୍ତି ।
ଜମ୍ୱେବ ବୋଇଲେ ଏକାଦଶ ରୁଦ୍ରଙ୍କର ଅଂଶ
ରୁଦ୍ରଙ୍କର ବଳ ଯେ ବହଇ ସୁଯଶ ।
ଏହାଙ୍କର ସହସ୍ରେକ ହସ୍ତୀ ପରାକ୍ରମ ।
ଶତଚାଳିଶ ରାଜା ଏହାଙ୍କ ଅନୁପମ ।
ଶ୍ରୀରାମ ବୋଇଲେ ଏଯେ ବେଲାବନେ ଯାଉ
ଶୋଣିତ ବେଲାବନେ ଯାଇଣ ଏହୁ ରହୁ ।
ଶୁଣି ଗନ୍ଧମାର୍ଦ୍ଦନ ଯେ ବେଗେ ଚଳିଗଲା
ଶୋଣିତ ବେଲାବନେ ଯାଇଣ ରହିଲା ।
ଏଥୁଅନନ୍ତରେ ଶୁଣଗୋ ଭଗବତୀ
ଅଙ୍ଗଦ ହନୁମନ୍ତ ସୈନ୍ୟକୁ ଘେନି ଯାନ୍ତି ।
ଧୂମାକ୍ଷକୁ ଘେନିଣ ଅଇଲେ ବେନିଜନ
ମୃଗଛାଲ ଦେଇଣ କରଇ ଦର୍ଶନ ।
ଦେଖିଣ ଶ୍ରୀରାମ ଜମ୍ୱେବକୁ ପଚାରିଲେ
କାହାର ଅଂଶେ ଜାତ ବୋଲିଣ ବୋଇଲେ ।
ଜମ୍ୱେବ ବୋଇଲେ ଏ ଗନ୍ଧର୍ବ ଅଂଶେ ଜାତ
ବହଇ ସିଂହର ବଳ ଜାଣ ତିନିଶତ ।
କଳାମୁଖା ବାନର ଏହାର ପାଞ୍ଚ ଯେ ସାଗର
ଶତାଳିଶ ରାଜା ଖଟନ୍ତି ଯା ପୟର ।
ଧୂମ୍ରାକ୍ଷକୁ ଚାହିଁଣ ଶ୍ରୀରାମ ଆଜ୍ଞା ଦେଲେ
ବେଲାବନେ ରହ ଯା ବୋଲିଣ ବୋଇଲେ ।

ଯେଉଁ ବେଲାବନରେ ବିଜୟ ଭଗବତୀ
ସେ ବନରେ ବସା କର ଯାଇ ସେନାପତି ।
ଶୁଣିଣ ଧୁମ୍ରାକ୍ଷ ଯେ ଓଳଗି ମେଲାଇଲା
ଭଗବତୀ ବନକୁ ଚଳିଗଲା ।
ସେ ବନରେ ରହିଲା ବସାକରି
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ ।
ଧୁମ୍ରାକ୍ଷ ଯିବାରୁ ଅଙ୍ଗଦ ହନୁମନ୍ତ
ସୈନ୍ୟର ଭିତରେ ମିଳିଲେ ତୁରିତ ।
ଶଉରୀ ସେନାପତି ସଙ୍ଗରେ ଅଛି ତାର
ତାହାର ସହୋଦର କନିଷ୍ଠ ଅଟେ ବୀର ।
ଶ୍ରୀରାମ ଚରଣେ ଓଳଗି ଯାଇ ହେଲା
ଦେଖିଣ ଶ୍ରୀରାମ ଜମ୍ବେବକୁ ପଚାରିଲା ।
କାହାର ଅଂଶେ ଜାତ ଏହୁ କପିବର
ଜମ୍ବେବ ବୋଇଲେ ଦେବ ଈଶ୍ୱର କୁମର ।
କାର୍ତ୍ତିକେଶ୍ୱର ଅଂଶରେ ଏହୁ ଅବତାର
ଗଣ୍ଡକୀ ବନରେ ଏହାର ଅଟେ ଘର ।
ଶାଳଗ୍ରାମ ଶିଳା ଘେନି ଦର୍ଶନ କଲା ବୀର
ସିନ୍ଦୂରମୁଖା କପି ତିନି ଯେ ସାଗର ।
ଶତଚାଳିଶ ରାଜା ଉପରେ ଅଧିକାର
ପ୍ରାକର୍ମ ବହେ ବେନି ଯେ ହସ୍ତୀର ।
ଶୁଣିଣ ଶ୍ରୀରାମ ଯେ ହରଷ ମୁଖ ହୋଇ
ଆଜ୍ଞା ଦେଲେ ବନେ ସ୍ଥାନ କର ଯାଇ ।
ବୋଇଲା କପି ବୀର ବେଲାବନେ ଯାଅ
ଚିତ୍ରଉତ୍ପଳା ନଦୀ କୂଳରେ ସୁଖେ ରହ ।
ଏଥୁ ଅନନ୍ତରେ ଶୁଣ ଗୋ ପାର୍ବତୀ
ଅଙ୍ଗଦ ହନୁମନ୍ତ ସେଠାରୁ ଚଳିଯାନ୍ତି ।
ସୈନ୍ୟର ମେଳରେ ସେ ହୋଇଲା ପ୍ରବେଶ
ନାଗ ସେନାପତିକୁ ବୋଇଲେ ବେଗେ ଆସ
ନବ ସାଗର କପି ଅଟଇ ଏହାଙ୍କର
ସମସ୍ତ ନୀଳ ବର୍ଣ୍ଣ ଅଟେ ହେ ରଘୁବୀର ।
ପଞ୍ଚଚାଳିଶ ରାଜାର ଅଟଇ ସର୍ଦ୍ଦାର
ଏ ସେନାପତିର ବେନି ସହସ୍ର ସିଂହ ବଳ ।
ଶୁଣିଣ ଶ୍ରୀରାମ ଯେ ହରଷ ହୋଇଲେ
ଯମୁନାକୂଳ ବେଲାବନେ ରହ ତୁ ବୋଇଲେ ।
ଏଥୁ ଅନନ୍ତରେ ଶୁଣଗୋ ମହାମାୟୀ
ଅଙ୍ଗଦ ହନୁକୁ ଚାହିଁ ଶ୍ରୀରାମ ଆଜ୍ଞା ଦେଇ ।
ତୁମ୍ଭେ ବେନି ଭାଇ ପ୍ରଥମ ଦୁଆରେ ଜଗ ପୁଣି
ଆଣନ୍ତୁ ବେଗେ ସୈନ୍ୟ ନଳ ନୀଳ ବେନି ।
ଶୁଣିଣ ହନୁମନ୍ତ ଅଙ୍ଗଦ ଦୁହେଁ ଗଲେ
ସୈନ୍ୟର ଆଗୁଆ ଦ୍ୱାରେ ଯାଇ ଦ୍ୱାରୀ ହେଲେ ।
ନଳ ନୀଳକୁ ବୋଇଲେ ନିଅରେ ସୈନ୍ୟବଳ
ଶ୍ରୀରାମ କହିଲେ ତୁମ୍ଭେ ଚଳ ହେ ଚଞ୍ଚଳ ।
ଶୁଣିଣ ନଳ ନୀଳ ବେଗେ ଚଳିଗଲେ
ସୈନ୍ୟର ମେଳରେ ଯାଇ ପ୍ରବେଶ ହୋଇଲେ ।

ଐରାବତ ସେନାପତିକୁ ଘେନିଣ ବେଗେଆସି
ଦେଖିଣ ଶ୍ରୀରାମ ମନରେ ହୋଇଲେ ଯେ ଖୁସି ।
ଶ୍ରୀଫଳ ଥୋଇ ଆଗେ ସେ ଦର୍ଶନ କଲେ
ଶ୍ରୀରାମଙ୍କ ଚରଣେ ଓଳଗି ହୋଇଲେ ।
ଉଠିଣ କର ଯୋଡ଼ି ଆଗରେ ଉଭା ହୋଇ
ତାହାକୁ ଦୃଶ୍ୟହେଲା ଶ୍ରୀରାମଙ୍କ ଦେହୀ ।
ଯେସନେ ସାରଙ୍ଗ ଧନୁ ଧରିଣ ନାରାୟଣ
ତେସନକ ପ୍ରାୟେ ତାକୁ ଦିଶେ ରାମ ରାଣ ।
ବିଚାରିଲା ନିଶ୍ଚୟ ଅଟନ୍ତି ନାରାୟଣ
ପୂର୍ବ ଜନ୍ମର ପାପ କ୍ଷୟ ହୋଇଲା ଜାଣ ।
ଏମନ୍ତ ବିଚାରନ୍ତେ ଜାଣିଲେ ଦାଶରଥି
ଜମ୍ବେବକୁ ବୋଇଲେଏ କାହାର ଅଂଶେ ସ୍ଥିତି
ଜମ୍ବେବ ବୋଇଲା ଦେବ ପାର୍ବତୀ ନନ୍ଦନ
ଗଣପତି ଅଟନ୍ତି ହସ୍ତୀଙ୍କ ରାଜନ ।
ତାହାର ଅଂଶରେ ଅଟଇ ଐରାବତ
ଐରାବତ ଗୋତ୍ରୁ ଏ ଅଟଇ ଧୂମ୍ରତ ।
ବେନି ଐରାବତ ର ବଳ ଏ ଧେନଇ
ଶତଚାଳିଶ କପି ରାଜା ପାଦରେ ଖଟଇ ।
ଏଥୁ ଅନନ୍ତରେ ତୁମ୍ଭେ ଶୁଣ ଗୋ ଗିରିଜା
ଐରାବତ ବୀର୍ଯ୍ୟର ବଳ ଘେନି ତେଜା ।
ଶ୍ରୀରାମଙ୍କ ଆଗରୁ ବେଗେ ଚଳିଗଲା
ହନୁମନ୍ତ ପାଶରେ ଯାଇଁଣ ମିଳିଲା ।
ବୋଇଲା ମାରୁତି ହୋ ବେଗ ହୋଇ ଆସ
ତୋ ସୈନ୍ୟଘେନି ରାମ ସନ୍ନିଧେ କର ଦୃଶ୍ୟ ।
ଶୁଣିଣ ହନୁମନ୍ତ ଯେ ବେଗେ ଚଳିଗଲା
ସୈନ୍ୟବଳ ଘେନିରାମ ଆଗରେ ମିଳିଲା ।
ଦେଖିଣ ଶ୍ରୀରାମ ଯେ ହରଷ ମନ ହେଲେ
ଜମ୍ବେବ ମନ୍ତ୍ରୀକୁ ସେଠାରୁ ପଚାରିଲେ ।
ବୋଇଲେ କାହାର ଅଂଶେ ମାରୁତି ଅବତାର
ଜମ୍ବେବ ବୋଇଲେ ଏ ଈଶ୍ୱର ଅଂଶେ ସାର
ବେନି କୋଟି ସିଂହର ବଳ ଏହାର ଦେହୀ
ଯେଣିକି ପେଷିବୁ ତେଣିକି ଏହୁ ଯାଇ ।
ସବୁ କପି ଭାଲୁଙ୍କର ଉପରେ ଯାର ବଳ
ରାମାୟଣ ଯୁଦ୍ଧକୁ କବାଟ ରୂପେ ସାର ।
ପଶ୍ଚାତେ ଜାଣିବ ଦେବ ମାରୁତିର କଥା
ଶତଚାଳିଶ ରାଜା ପାଇଣ ଛନ୍ତି ବ୍ୟଥା ।
ଶ୍ରୀରାମ ବୋଇଲେ ଏହା ବାପ ଯେ କେଶରୀ
ପିତାଠାରୁ କିମ୍ବା ଏ ବେଗ ସୈନ୍ୟଧରି ।
ଜମ୍ବେବ ବୋଇଲେ ଦେବ ବହୁତ କାଳରେ
ବଳର ପ୍ରତାପରେ ଜିଣିଲା ସକଳେ ।
ରଞ୍ଜୁଶ୍ରୀ ମଣ୍ଡରେ ପାଣ୍ଡୁର କପି ଥିଲା
ତାହାକୁ ଜିଣିଣ ସେ ରାଜ୍ୟ ଘେନିଗଲା ।
ତେଣୁ ସେ ରାଜ୍ୟରେ ଅଟଇ ସର୍ଦ୍ଦାର
ସେ ରାଜ୍ୟର ବନ ଯେ ଅଟଇ ଏହାର ।

ଶୁଣିଣ ଶ୍ରୀରାମ ଯେ ହରଷ ହୋଇଲେ
ବେଲାବନେ ସୈନ୍ୟରଖି ଆସହେ ବୋଇଲେ
ଶୁଣିଣ ହନୁମନ୍ତ ସୈନ୍ୟବଳ ନେଲା
ବଦରୀ ବେଲାବନେ ନେଇଣ ରଖିଲା।
ଲେଉଟି ଆସି ଶ୍ରୀରାମ ଛାମୁରେ ହେଲା
ଶୁଣିଣ ପାର୍ବତୀ ମନରେ ତୋଷ ହେଲା ।
ପାର୍ବତୀ ବୋଇଲେ ଦେବ ଶୁଣ ହେ ଈଶ୍ୱର
ସେଠାରୁ କିସ ହେଲା କହ ମୋର ଆଗର ।
ଈଶ୍ୱର ବୋଇଲେ ଶୁଣରେ ଭଗବତୀ
ହନୁମନ୍ତ ଆସିବାରୁ ନଳ ନୀଳ ଯାନ୍ତି ।
ସୈନ୍ୟର ମେଳରେ ସେ ହୋଇଲା ପ୍ରବେଶ
ଚନ୍ଦନକୁ ଘେନିଣ ଅଇଲେ ରାମ ପାଶ ।
ବାରମାସୀ ଆମ୍ବ ପୁଣି ଛାମୁରେ ଦେଲା ଜାଣ
ଦେଖି ପଚାରନ୍ତି ଏ କାହାର ନନ୍ଦନ ।
ନମସ୍କାର କରିଣ ଚରଣେ ଓଳଗିଲା
ଦେଖିଣ ଶ୍ରୀରାମ ଯେ ପରମ ତୋଷ ହେଲା ।
ଜାମ୍ବେବ ବୋଇଲା ଚନ୍ଦନ ସେନାପତି
ଚମ୍ପାବତୀ ବନରେ ଅଟଇ ତାର ସ୍ଥିତି ।
ଚାରିଶତ ହାତୀର ବଳ ଅଟଇ ଯାର
ଶତଚାଳିଶ ରାଜା ଖଟନ୍ତି ପାଦ ତଳ ।
ଶୁଣିଣ ଶ୍ରୀରାମ ଯେ ହରଷ ମନ ହେଲେ
ବେଲାବନେ ଯାଅ ବୋଲିଣ ଆଜ୍ଞାଦେଲେ ।
ନୀଳମାଧବ ବେଲାବନେ ଯାଇ ରହ
ଶ୍ରୀରାମ ଯେ ତାହାଠାରେ କଲେଅତି ସ୍ନେହ ।
ନୀଳମାଧବ ବେଲା ବନେ ଯାଇଣ ମିଳିଲା
ସୈନ୍ୟକୁ ବସା ଦେଇ ବେଗେ ଲେଉଟିଲା ।
ଶ୍ରୀରାମ ବୋଇଲା ଏ କାହାର ଅଂଶେ ଜାତ
ଜାମ୍ବେବ ବୋଇଲା ଦେବ ମଳୟ ଦେବଗୋତ୍ର ।
ଏମନ୍ତ ସମୟରେ ଚନ୍ଦନ ମିଳେ ଆସି
ଦେଖିଣ ଶ୍ରୀରାମଚନ୍ଦ୍ର ବହୁତ ହେଲେ ତୋଷି ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଚନ୍ଦନ ଆସିବାରୁ ନଳ ନୀଳ ଫେରି ।
ସୈନ୍ୟର ମେଳରେ ସେ ହୋଇଲେ ପ୍ରବେଶ
ଶତବାଳୀକି ଘେନି ମିଳେ ରାମ ପାଶ ।
ଶ୍ୱେତ ଚାମର ଘେନି ଦର୍ଶନ ଯେ କଲା
ଦେଖିଣ ଶ୍ରୀରାମ ଉସତ ମନ ହେଲା।
ଜାମ୍ବେବ ବୋଇଲେ ଏ ଧାର୍ମିକ ବୀରବର
ଶତସିଂହର ବନରେ ତାର ଘର ।
ଶ୍ରୀରାମ ବୋଇଲେ ଏ କାହାର ଅଂଶେ ଜାତ
ଜାମ୍ବେବ ବୋଇଲେ ଏ ବିମ୍ବରଷିଙ୍କ ଗୋତ୍ର ।
ଶ୍ରୀଫଳ ଗୁଆ ଘେନି ତୁମ୍ଭଙ୍କୁ ସେ ଭେଟିଲା
ଶୁଣିଣ ଶ୍ରୀରାମ ଯେ ହରଷ ମନ ହେଲା ।
ବୋଇଲେ ବେଲାବନେ ଚଳ ହୋ ବହନ
ବାଉ ବେଲାବନରେ କର ତୁ ବସାପୁଣ ।

ଶୁଣିଣ ଶତବାଳୀ ବେଗେ ଚଳିଗଲା
ବାଉ ବେଲାବନରେ ଯାଇଣ ବସା କଲା ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଶତବାଳୀ ଯିବାରୁ ନଳ ନୀଳ ଫେରି ।
ଶ୍ରୀରାମ ବୋଇଲେ ଏ ଥିଲା କେଉଁଠାରେ
ଜାମ୍ବେବ ବୋଇଲେ ଥିଲା ମଳୟ ବନରେ ।
କାଳିଞ୍ଜନ ବୀରକୁ ବୋଇଲେ ନଳ ନୀଳ
ଶ୍ରୀରାମ ଦର୍ଶନେ ବେଗେ ଏବେ ଚଳ ।
ଶୁଣିଣ କାଳିଞ୍ଜନ ବେଗ ହୋଇ ଆସି
ଶ୍ରୀରାମ ଛାମୁରେ ଓଳଗି ହେଲା ବସି ।
ଜାମ୍ବେବକୁ ଚାହିଁଣ ବୋଲନ୍ତି ଦାଶରଥି
କାହାର ଅଂଶେ ଏ ହୋଇଛି ଉତପତ୍ତି ।
ଜାମ୍ବେବ ବୋଇଲେ ଦେବ କାଉଁରୀ ଦେଶେଘର
କାମଚଣ୍ଡୀ ଅଂଶରେ ହୋଇଛି ଅବତାର ।
କାଉଁରୀ କାମଚଣ୍ଡୀ ଚରଣେ ଖଟଇ
କାମଚଣ୍ଡୀ ପ୍ରସାଦେ କାହାକୁ ନ ମାନଇ ।
ବାଳୀର ସଙ୍ଗତେ ଏ ବରଷେ ଯୁଦ୍ଧ କଲା
କୋଟିଏ ଗଜର ବଳ ବହିଛି ଚଣ୍ଡୀ ବଳା ।
ପଞ୍ଚସାଗର ଭାଲୁ ଅଟଇ ଏହାର ବଳ
ଶତଚାଳିଶ ଭାଲୁ ଖଟନ୍ତି ପାଦତଳ ।
ଶ୍ରୀରାମ ବୋଇଲେ ଏବେ ବେଲାବନରେ ରହ
ପାଟଣା ବେଲାବନ ସମୁଦ୍ରକୂଳେ ଯାଅ ।
ଶୁଣିଣ କାଳିଞ୍ଜନ ବେଗେ ଚଳିଗଲା
ସମୁଦ୍ର କୂଳେ ବେଲାବନେ ସେ ରହିଲା ।
କାଳିଞ୍ଜନ ଯିବାରୁ ଗଲେ ଯେ ନଳନୀଳ
ସୈନ୍ୟଥିବା ସ୍ଥାନରେ ଯାଇଣ ହେଲେ ମେଳ ।
ପନଶୀଳକୁ ବୋଇଲେ ଆସନ୍ତୁ ବହନ
ଶ୍ରୀରାମକୁ ଦର୍ଶନ କରରେ ଯାଇ ପୁଣ ।
ଶୁଣିଣ ପନଶୀଳ ଆନନ୍ଦ ହୋଇଲା
ସକଳ ଭାଲୁ ବଳ ସଙ୍ଗରେ ସେ ନେଲା ।
ଚାରି ସାଗର ଶ୍ୱେତଭାଲୁ ସଙ୍ଗତେ ଆସେ ତାର
ହୁଳହୁଳି ଶବଦ କରନ୍ତି ନିରନ୍ତର ।
ଖୁର ବୀଣାସୀତାର ବଜାଇ ସେ ଯେ ନାଚି
ଟମକ ନିଶାଣ ବଜାଇ ସେ ଆସନ୍ତି ।
ଶ୍ରୀରାମ ଛାମୁରେ ଯାଇଣ ମିଳିଲା
ବୋଇତି କଖାରୁ ନେଇଣ ସେ ଦେଲା ।
ଓଳଗି ମେଲାଇଣ ନମସ୍କାର କରି
ଦେଖିଣ ଶ୍ରୀରାମ ଜାମ୍ବେବକୁ ପଚାରି ।
କେଉଁ ଅଂଶରେ ଜାତ କହ ମୋ ଆଗର
ଜାମ୍ବେବ ବୋଇଲେ ଦେବ ଶୁଣିମା ଠାକୁର ।
ଜାମ୍ବେବ ବୋଇଲେ ଏ ମେରୁ ଅଂଶରେ ଜାତ
ପରାକ୍ରମ ଦଶ ସିଂହର ଅଟଇ ଅଦ୍ଭୁତ ।
ପଞ୍ଚସାଗର ଗୋଲାମୁଣ୍ଡା କପି ଏହାର ବଳ
ଶତଚାଳିଶ କପି ରାଜା ଖଟନ୍ତି ପାଦତଳ ।

ହିମାଳ ବନ ତଳରେ ଯା ଘର ଅଟଇ
ଶୁଣିଣ ଶ୍ରୀରାମ ଯେ ଜମ୍ୱେବକୁ ପଚାରଇ ।
କାହାର ଅଂଶରେ ଯେ ଅଟେ ଏହୁ ଜାତ
ଜମ୍ୱେବ ବୋଇଲେ ଧନପତିର ଅଂଶତ ।
ବେନି ଶତସିଂହର ଅଟେ ଯାର ବଳ
ଶତ ଚାଳିଶ ରାଜା ଖଟନ୍ତି ପୟର ।
ଶ୍ରୀରାମ ବୋଇଲେ ଏ ବେଳାବନେ ଯାଉ
ଗୋମତୀ କୂଳରେ ବେଳାବନେ ଥାଉ ।
ଶୁଣିଣ ପନଶୀଳ ବେଗେ ଚଳିଗଲା
ଗୋମତୀ ନଦୀକୂଳ ବନରେ ରହିଲା ।
ବଳରାମ ଦାସ ପୁଣି ମନେ ବିଚାରିଲା
ରାମ ଲକ୍ଷ୍ମଣ ସୀତା ଚରଣେ ପଶିଲା
ଏଥୁ ଅନନ୍ତରେ ଶୁଣ ଗୋ ଭଗବତୀ
ସିଂହାସନ ଉପରେ ବିଜୟ ଦାଶରଥି ।
ପାଶରେ ସୁଗ୍ରୀବ ଯେ ବସିଅଛି ପୁଣ
ଛତ୍ରୀ ଧରି ଉଭା ଯେ ସାନୁଜ ଲକ୍ଷ୍ମଣ ।
ତାରାକ୍ଷ ଆଲଟ ପକାଏ ଆଗରେ
ଗନ୍ଧମାର୍ଦ୍ଦନ ବିଞ୍ଚଇ ପରକାରେ ।
ସୁଷେଣ କେଶରୀ ଢ଼ାଳନ୍ତି ଚାମର
ତପୋବନ୍ତ ମୂର୍ତ୍ତି ଯେ ଦିଶନ୍ତି ରଘୁବୀର ।
ପାର୍ବତୀ ବୋଇଲେ ଦେବ ସୈନ୍ୟକି ସାରିଲେ
ଈଶ୍ୱର ବୋଇଲେ ଆଉ ଅଛନ୍ତି ଭଲେ ।
ପାର୍ବତୀ ବୋଇଲେ ଏବେ ସେ କଥା କହ
ଈଶ୍ୱର ବୋଇଲେ ଶୁଣ ଗୋ ମୋହର ପ୍ରିୟ
ମନଶୀଳ ଯିବାରୁ ନଳ ନୀଳ ଗଲେ
ସୈନ୍ୟବଳ ନିକଟେ ପ୍ରବେଶ ହୋଇଲେ
କୁମୁଦଶ୍ୱର କପିକୁ ଘେନିଣ ସେ ଅଇଲା
ଗୋଦରା କାକୁଡ଼ି ଛାମୁରେ ନେଇ ଦେଲା ।
ଓଳଗି ମେଲାଇ ଚରଣେ ନମିଲା
ଦେଖିଣ ଜମ୍ୱେବକୁ ଶ୍ରୀରାମ ପଚାରିଲା ।
କେଉଁ ଅଂଶରେ ଜାତ କହ ମୋ ଆଗରେ
ଜମ୍ୱେବ ବୋଇଲେ ଜାତ ଏ ମେରୁ ଅଂଶରେ
ଦଶ ସହସ୍ରସିଂହର ଅଟଇ ପରାକ୍ରମ
ପାଞ୍ଚ ସାଗର ଗୋଲାଙ୍ଗୁଡାର ସରଦାର ଜାଣ
ଶତଚାଳିଶ କପିରାଜା ଖଟନ୍ତି ପୟର
ହେମାଳୟ ବନରେ ଅଟଇ ଯାର ଘର ।
ଶୁଣିଣ ଶ୍ରୀରାମ ଯେ ହୋଇଲେ ପ୍ରସନ୍ନ
ବୋଇଲେକ ବେଗି ଯାଉ କଢ଼ାନଦୀ ବନ ।
ସୈନ୍ୟବଳ ରଖିଣ ଝଟତି ଆସୁ ଏଥି
ଶୁଣିଣ ଗମଇ କୁମୁଦ ସେନାପତି ।
କଢ଼ାନଦୀ ବେଳାବନେ ସଇନ ରଖିଲା
ଏଥୁ ଅନନ୍ତରେ **ଶୁଣ ଦେବୀ ଯାହା** ହେଲା ।

କଞ୍ଚଣ ସେନାପତି ଯିବାରୁ ନଳ ନୀଳ ଗଲେ
ସୈନ୍ୟର ନିକଟେ ଯାଇ ପ୍ରବେଶ ହୋଇଲେ ।
ତୁରଙ୍ଗ ସେନାପତିକୁ ବୋଇଲେ ବହନ ଆସ
ପାଞ୍ଚ ସାଗର ଭାଲୁ ଖଟନ୍ତି ଯାର ପାଶ ।
ଶତଚାଳିଶ ଭାଲୁରାଜା ଉପରେ ସର୍ଦ୍ଦାର
ବେନିଶତ ସିଂହର ଅଟଇ ଯାର ବଳ ।
ନେପାଳ ବନରେ ଅଟେ ଏହାର ଘର
ମୟେମତା ଭାଲୁ ଯାର ସମସ୍ତେ ପରିବାର ।
ଶୁଣିଣ ତୁରଙ୍ଗ ସେନାପତି ଗଲା
ଶ୍ରୀରାମର ଚରଣେ ଓଳଗି ଶୋଇଲା ।
ଦେଖିଣ ଶ୍ରୀରାମ ଯେ ପଚାରେ ଜମ୍ୱେବରେ
କାହା ଅଂଶେ ଏ ଜାତ କହ ମୋ ଆଗରେ ।
ଜମ୍ୱେବ ବୋଇଲେ ଅଶ୍ୱିନୀକୁମାର ଅଂଶେ ଜାତ
ବେନିଶତ ସିଂହର ଅଟେ ବଳବନ୍ତ ।
ତିନି ସାଗର ଭାଲୁ ଏହାର ପାଦେ ଖଟି
ଶତଚାଳିଶ ରଜାରେ ସରଦାର ଏଟି ।
ଶ୍ରୀରାମ ବୋଇଲେ ବେଳାବନେ ରହୁ
ସ୍ୱଗ ବେଳାବନରେ ଯାଇଣ ସ୍ଥାନପାଉ ।
ଶୁଣିଣ ମଙ୍ଗଳ ସେନାପତି ଗଲା
ସ୍ୱଗ ବେଳାବନରେ ଯାଇଣ ରିହଲା ।
ସେଠାରୁ ନଳ ନୀଳ ବେଗେ ଚଳିଗଲେ
ସୈନ୍ୟଙ୍କର ନିକଟେ ଯାଇଣ ମିଳିଲେ ।
ବୈଲୋଚନା ସେନାପତିକି ସଙ୍ଗେ ଘେନି
ଏଗାର ସାଗର ବଳ ଅଛନ୍ତି ପୁଣି ।
ସେ କପିମାନଙ୍କର ଦେହ ଯେ ପାଉଁସ ବନ
କିଳିକିଳା ରାବ ଦେଇ ଆସନ୍ତି ସେ ବୀର ପୁଣ
ମୁଖରାବ ଶବଦରେ କମ୍ପଇ ବ୍ରହ୍ମାଣ୍ଡ
ଦଲଦଲ ହୋଇଣ କମ୍ପଇ ମହୀଖଣ୍ଡ ।
ଧୂଳି ଧ୍ରୁବ୍ ମଣ୍ଡଳ ପରେ ଯାଏ ଉଡ଼ି
ଏକର ଉପରେ ଆରେକ ପଡ଼େ ମାଡ଼ି ।
ତରଭୁଜ ଫଳ ରାମରେ ଦେଖା ହେଲା
ଶ୍ରୀରାମଙ୍କ ପାଦେ ଯାଇ ଓଳଗି ହୋଇଲା
ଦେଖିଣ ଶ୍ରୀରାମ ଯେ ଜମ୍ୱେବ ମୁଖ ଚାହିଁ ।
କେଉଁ ଅଂଶେ ଜାତ ବୋଲି ପଚାରିଲେ ସେହି
ବୋଇଲେ ଜମ୍ୱେବ କେତୁ ଅଂଶରେ ଉପୂନ
ନବସାଗର ବଳରେ ଅଟେ କପିରାଜନ ।
ହେମଗିରି ପର୍ବତ ବନରେ ଏ ଯେ ଥାଇ
ତିନି ସହସ୍ର ବଳ ଯେ ଏହାର ଦେହୀ ।
ଶୁଣିଣ ଶ୍ରୀରାମ ଯେ ହରଷ ହୋଇଲେ
ବେଳାବନେ ରହ ବୋଲି ତାକୁ ଆଜ୍ଞାଦେଲେ
ବୈଲୋଚନ ସେନାପତି ଆଜ୍ଞାରେ ଚଳିଗଲା
**ପଞ୍ଚବଟୀ ବେଳାବନେ ଯା**ଇଣ ସେ ରହିଲା ।

ଜମ୍ବେବ ବୋଇଲେ ଦେବ ଶୁଣ ମୋ ବଚନ
ଲକ୍ଷେ ଭାଲୁ ମର୍କଟ ଯେ ଆସନ୍ତି ମାଡ଼ି ବନ ।
ଯେତେକ ସରଦାର ମଉଡ଼ମଣି ପୁଣ
ପଚିଶ ସେନାପତି ଏହାର ପରିମାଣ ।
ଏମାନେ ତୋତେ ଦର୍ଶନ ଆସି କଲେ
ଆଜ୍ଞାର ପ୍ରମାଣେ ସେ ବେଳାବନେ ଗଲେ ।
ରାଜାଗଣ ସରଦାର ସେନାପତି ଦେଖା
ମଲ୍ଲ ମହାମଲ୍ଲ ଯେ ଅଛନ୍ତି ନୋହେ ଲେଖା ।
ହେମଗିରିଠାରୁ ଦେବ ଏଠାବେ ପରିଯନ୍ତ
ଉଦେଗିରି ଠାରୁ ଅସ୍ତଗିରି ଲଗାଏତ ।
ଲାଗିଛନ୍ତି ସୈନ୍ୟଧାର ବନଗିରି ପୂରି
କେ ଯୁଦ୍ଧ କରିବେ କେ ବାସରୁ ଯିବ ଫେରି ।
କେ ବରଷକ ବାଟେ ବାଟୁ ଆସିବେ ଯେ ପୁଣ
କେହୁ ଛଅମାସେ ମିଳିବେ ଏ ଠାବେଣ ।
ବାନର ଷାଠିଏ ସହସ୍ର ନୃପତି ଅଇଲେ
ଭାଲୁ ନୃପତି ଚାଳିଶି ସହସ୍ର ଅଇଲେ ।
ପଞ୍ଚାବନ ସାଗର ବାନର ଭୂପ ପୁଣ
କୋଡ଼ିଏ ସାଗର ଅଇଲେ ତୁମ୍ଭେ ଜାଣ ।
ଆଉମାନେ ମଲ୍ଲ ଯେ ମହାମଲ୍ଲ ସଙ୍ଗେ
ଆସୁଛନ୍ତି ରାମ ଶୁଣ ସେହୁ ନାନାରଙ୍ଗେ
ଭାଲୁ ପଞ୍ଚତିରିଶ ସାଗରରୁ ପୁଣ
ବାର ସାଗର ଭାଲୁ ଅଇଲ ତୁମ୍ଭେ ଜାଣ ।
ତେଇଶି ସାଗର ଆସୁଛନ୍ତି ପ୍ରାନ୍ତେ
ଆଉ ଯେତେ ଆସବିେ ଯୁଦ୍ଧ ପରିଯନ୍ତେ ।
ଶୁଣିଣ ସନ୍ତୋଷ ହୋଇଲା ରାମ ମନ
ବୋଇଲେ ଭଲା ବାଳୀସୁତ ସାଧିଲୁ ଏତେ ସୈନ୍ୟ ।
ସୁଗ୍ରୀବର ବୋଇଲା ଶତ୍ରୁକୁ ଏବେ ଦେଖା
ଅସୁର ନାମ ଶୁଣି କିମ୍ପାଇ କର ଶଙ୍କା ।
ବାରାଣାଶି ପର୍ଯ୍ୟନ୍ତ ଥାଟ ଯେ ଅଛି ପୁରି
ପଶ୍ଚିମ ସମୁଦ୍ର ଉଦେଗିରି ଆଦିକରି ।
ହିମଗିରି ପର୍ଯ୍ୟନ୍ତ ଯେତେକ କପିଛନ୍ତି
ଯେ ଯାହାର ସଙ୍ଗରେ ସଙ୍ଗେ ଆସୁଛନ୍ତି ।
ନର୍ମଦା ପଶ୍ଚିମ ଭାଗେ ଅଛନ୍ତି କେତେ ବୀର
ଆସିବା ଗହଳରେ ହେଉଛି ଉଛୁର ।
ସୁଗ୍ରୀବର ବୋଇଲେ ଶୁଣ ଦେବ ଏବେ କଥା
ନଉସାଗର ସୈନ୍ୟ ହୋଇ ଅଛନ୍ତିକି ରଖା ।
ଅନେକ ସୈନ୍ୟ ଆସିବେ ଶୁଣ ହେ ଦାଶରଥି
କିଛି କଥାକୁ ବିଚାର ନ କର ତୁମ୍ଭେ ଭ୍ରାନ୍ତି ।
ଲକ୍ଷେ ରାଜା ଜମ୍ବୁଦ୍ୱୀପେ ଅଛନ୍ତି ନିକର
ନଉସାଗର ବଳ ଅଟଇ ତାଙ୍କର ।
କପି ଭାଲୁ ଲକ୍ଷେ ନୃପତି ବନଭାଗେ
ମଲ୍ଲ ମହାମଲ୍ଲ ଯେ ସରଦାର ସଙ୍ଗେ ।

ବାନରଙ୍କ ଉପରେ ବାନରେଶ୍ୱର ରାଜ
ଭାଲୁଙ୍କ ଉପରେ ଭାଲୁ ଈଶ୍ୱର ଯେ ରାଜ ।
ଏମାନଙ୍କର ବଳ ଯେତେବେଳେ ଠୁଳ
ମାସେ ପର୍ଯ୍ୟନ୍ତ ବାଟ ହୁଅଇ ଗହଳ ।
ବେଳ ଯେ ଅସ୍ତ ଦେବ ହୋଇଲାଣି ଆସି
ସନ୍ଧ୍ୟା ସୁମରଣା କର କଉଶଲ୍ୟା ବହି ।
ଶ୍ରୀରାମ ବୋଇଲେ ହନୁ ଅଙ୍ଗଦ ଏବେ ଯାନ୍ତୁ
ମଲ୍ଲ ମହାମଲ୍ଲଙ୍କୁ ଯାଇଣ କହନ୍ତୁ ।
ବୋଲିବେ ବେଳାବନେ ସମସ୍ତେ ଚଳିଯାଅ
ଏକାମ୍ରର ବନରୁ ଏ ଠାବଯାଏ ରହ ।
ଏକାମ୍ରର ଠାବଠାରୁ ଦକ୍ଷିଣମହୋଦଧି
ଏଥିରେ ବନ ଲତା ହୋଇଛି ଯେ ବୃଦ୍ଧି ।
ଫଳ ମୂଳ ସୁସ୍ୱାଦୁ ଅମୃତ ସଙ୍ଗେ ତୁଳ
ଯେ ଯାହା ଭୁଞ୍ଜିବେ ମନ ସନ୍ତୋଷ ଉତ୍‌ଫୁଲ୍ଲ ।
ଶୁଣିଣ ହନୁମନ୍ତ ଅଙ୍ଗଦ ଯେ ଗଲେ
ମଲ୍ଲ ମହାମଲ୍ଲ ସୈନ୍ୟଙ୍କୁ କହିଦେଲେ ।
ଶୁଣିଣ ସକଳ ସୈନ୍ୟ ଯେ ଚଳିଗଲେ
ମଲ୍ଲ ମହାମଲ୍ଲ ସରଦାରଙ୍କର ତୁଳେ ।
ଯେ ଯହିଁ ମେଳା ଦେଖି ସେ ତହିଁରେ ରହି
ନୃପତିମାନେ ସଙ୍ଗରେ ଅଛନ୍ତି ଲଗା ଦେଇ ।
ଏଥୁ ଅନନ୍ତରେ ଶାକମ୍ଭରୀ ଶୁଣ
ସୁଗ୍ରୀବଙ୍କୁ ପ୍ରଶଂସା କରନ୍ତି ରାମରାଣ ।
ତୁମ୍ଭର ମଇତ୍ର ଯୋଦ୍ଧା ଅଟେ ଭଲ
ଭଲ ସାଧିଥିଲ ଯେ ଏ ମହୀମଣ୍ଡଳ ।
ଅବୁଝା ରକ୍ଷ କପି ହୋଇଲେ ତୋତେ ବଶ
ଶୁଣିଣ ସୁଗ୍ରୀବର ବୋଇଲା ରଘୁଶିଷ୍ୟ ।
ତୋହର ନାମ ଶୁଣି ସମସ୍ତେ ଅଇଲେ
ତୋହର କରୁଣା ଅଟଇ ଦେବ ଭଲେ ।
ଏତେ ବୋଲିଣ ସୁଗ୍ରୀବର ବସିବାଠାରୁ ଉଠି
ଆସନ ତେଜି ପଛକୁ ଗଲା ରାମନାମ ରଟି ।
ପାଦେ ପଡ଼ି ଶୋଇଣ ଶିରରେ କର ଦେଲା
ମୋହର ପାରିବା ନୁହଇ ବୋଇଲା ।
ବାଳୀ ଯେ ପୂର୍ବରେ ଯାକୁ ସାଧ କଲା
ବାଳୀ ରହିବାରୁ ମୋତେ ସମସ୍ତ ଡର ହେଲା
ତୁ ତାହାକୁ ମାରିଣ ଘେନିଲୁ ତାର ଶିରୀ
ମୋତେ କିମ୍ପା ପ୍ରଶଂସା କରିଲୁ ଚାପଧାରୀ ।
ତାହାର କୁମର ଯେ ଅଙ୍ଗଦ ଯୁବରାଜ
ସେ ଯାଇ ଆଣିବାରୁ ହେବ ତୋର କାର୍ଯ୍ୟ ।
ଏସନକ ସମୟରେ ଦର୍ଶନ କଲା ନୀଳ
ଏଗାର ସହସ୍ର ତାହାର ଅଙ୍ଗ ବଳ ।
ମୟୂର ଝୁଲ ଆଲଟ ଶ୍ରୀରାମ ପାଶେ ଦେଲା
ବେଗଣ ଗଡ଼ଘାଳି ଯାଇଣ ଶୋଇଲା ।

ଜମ୍ବେବକୁ ଚାହିଁଲେ ଯେ ଦଶରଥ ସୁତ
ଜମ୍ବେବ ବୋଇଲା ଯାର ବଳ ଅପ୍ରମିତ ।
ଏଗାର ସହସ୍ର ସିଂହର ବଳ ଏ ବହଇ
ମଥୁରା ବନରେ ଏହୁ ରହିଥାଇ ।
ଶତଚାଳିଶ ରାଜ ପରେ ଅଟଇ ସରଦାର
ଶୁଣିଣ ଶ୍ରୀରାମ ଯେ ହରଷ ମନର ।
ଶ୍ରୀରାମ ବୋଇଲେ ଏ କେଉଁ ଅଂଶେ ଜାତ
ଜମ୍ବେବ ବୋଇଲେ ଧର୍ମ ଅଧର୍ମ ସମ୍ଭୂତ ।
ଶ୍ରୀରାମ ବୋଇଲେ ଏବେ ଏ ଯେ ବନେ ଯାଉ
ବିମ୍ବ ସରୋବର ବନସ୍ତରେ ରହୁ ।
ଶୁଣି ନୀଳ ସେନାପତି ବେଗେ ଚଳିଗଲା
ବିମ୍ବ ସରୋବରରେ ବନସ୍ତରେ ରହିଲା ।
ଶ୍ରୀରାମ ବୋଇଲେ ଏତିକି ଆଜ୍ଞା ହେଉ
ରହିବାର ସେନାପତି କାଲି ଦେଖା ଦେଉ ।
ଏମନ୍ତ ସମୟରେ ସୁଷେଣ ଆସି ମିଳି
ସଙ୍ଗରେ କପି ତାର ଚାରି ସାଗର ଧରି ।
ଶ୍ରୀରାମ ଠାକୁରଙ୍କୁ ଦର୍ଶନ ଯାଇ କଲା
ଓଳଗି ମେଲାଇ ଚରଣେ ଶୋଇଲା
ଶ୍ରୀରାମ ବୋଇଲେ ଏ କାହା ଅଂଶେ ଜାତ
ଜମ୍ବେବ ବୋଇଲା କପିଳ ଋଷିଠୁ ସମ୍ଭୂତ ।
ଶତଚାଳିଶ ରାଜ ଉପରେ ସର୍ଦ୍ଦାର
ଭରତପୁର ବନରେ କରିଥାଇ ଘର ।
କୋଡ଼ିଏ ସହସ୍ର ହସ୍ତୀର ବହଇ ପରାକ୍ରମ
ଶ୍ରୀରାମ ବୋଇଲେ ଏ ଯାଉ ବେଲାବନ ।
ଶୁଣିଣ ସୁଷେଣ ବେଗେ ଚଳିଗଲା
ପିଥନ ବେଲାବନେ ଯାଇଣ ରହିଲା ।
ଦେଖୁଣୀ ବେଳେ ଯେ ଚମ୍ପାପୁଷ୍ପ ଦେଲା
ଗୁଚ୍ଛାମାଳ ଦେଖି ଶ୍ରୀରାମ ତୋଷ ହେଲା ।
ଏଥୁ ଅନନ୍ତରେ ଶୁଣ ଭଗବତୀ
ସିଂହାସନ ଉପରୁ ଉଠିଲେ ଦାଶରଥି ।
ସନ୍ଧ୍ୟା ସୁମରିବାକୁ ଗଲେ ରଘୁନାଥ
ଦୀନମଣି ଯିବାରୁ ରଜନୀ ହେଲା ପୁଣ ।
ସନ୍ଧ୍ୟା ତର୍ପଣ ସାରିଣ ଶ୍ରୀରାମ ବିଜେକଲେ
ସୁବର୍ଣ୍ଣ ଝରି ଘେନି ଅଙ୍ଗଦ ଦେଲେ ।
ହନୁମନ୍ତ ସିଂହାସନ ସେଠାରୁ ଘେନିଗଲା
ପତ୍ରକୁଟୀର ଭିତରେ ନେଇଣ ରଖିଲା ।
ନଳନୀଳ କେଶରୀ ବସନ୍ତ ସେ ଚନ୍ଦନ
ଗବୟ ଗବାକ୍ଷ ଯେ ଶଉରୀ ସେନାଜନ ।
ଏମାନେ ଧନୁହୁଳେ ଧରିଣ ସେ ଆଲୋକ
ମାଲ୍ୟବନ୍ତ ଶିଖରେ ଦିଶିଲା ଜକଜକ ।
ରଜନୀ ହେବାରୁ ଆଲୋକ ସର୍ବସ୍ଥାନ
ଗିରିପରେ ଉଠିଣ ଚାହିଁଲେ ରାମରାଣ ।

ଉପରେ ତାରାଗଣ ତଳରେ ଅଗ୍ନି ଶୋଭନ୍ତି
ଗଗନ ମେଦିନୀ ଏକପ୍ରାୟେକ ଦିଶନ୍ତି ।
ଦେଖିଣ ଶ୍ରୀରାମ ଯେ ନିଶରେ ହସ୍ତ ଦେଲେ
ନିଶ୍ଚୟ ସୀତା ଚୋର ମାରିବୁ ବୋଇଲେ ।
ଏତେ କହି ଶ୍ରୀରାମ ଯେ ଗିରିପରୁ ଗଲେ
ପର୍ଣ୍ଣକୁଟୀ ଭିତରେ ଯାଇଣ ମିଳିଲେ ।
ସକଳ ସେନା ରଖିଣ ସେନାପତି ପୁଣ
ଶ୍ରୀରାମ ବସିବାରୁ ଲକ୍ଷ୍ମଣ ଗଲା ପୁଣ ।
ଫଳମୂଳ ଆଣି ଶ୍ରୀରାମ ଆଗେ ଦେଲେ
ଦେଖିଣ ଶ୍ରୀରାମ ଯେ ହରଷେ ଭୁଞ୍ଜିଲେ ।
ସୁଗ୍ରୀବର ସଙ୍ଗରେ ପଡ଼ିଣ ଯୂଥପତି
ସମସ୍ତଙ୍କୁ ଘେନିଣ ସୁଗ୍ରୀ ଭୁଞ୍ଜି ବସନ୍ତି ।
ଫଳମୂଳ ସମସ୍ତ କଲେକ ଭୋଜନ
ପଛେ ହନୁ ଅଙ୍ଗଦ ଲକ୍ଷ୍ମଣ ଭୁଞ୍ଜେ ପୁଣ ।
ରାମ ସୁଗ୍ରୀବର କଲେକ ଶୟନ
କୋଦଣ୍ଡ ଧରି ଜଗି ରହିଲେ ଲକ୍ଷ୍ମଣ ।
ଏମନ୍ତ ସମୟରେ ରଜନୀ ଶେଷ ହେଲା
କୁକୁଟ ପକ୍ଷୀ ଡାକେ ଉଠ ସର୍ବେ ଭଲା ।
ତାମ୍ରଚୂଡ଼ ରଡ଼ିଦେଲା ହୋଇଲା ଦିବସ
ସମସ୍ତେ ଶୁଣି ନିଦ୍ରା ତେଜିଲେ ଅଳସ ।
ଉଠିଣ ଶ୍ରୀରାମ ନିତ୍ୟ କର୍ମ ସାରିଲେ
ଫଳମୂଳ ଭୁଞ୍ଜିଣ ସମସ୍ତେ ତୋଷ ହେଲେ ।
ସୁଗ୍ରୀବର ସଙ୍ଗତେ ଭାଇ ଯେ ଲକ୍ଷ୍ମଣ
ପଞ୍ଚାଶ ଯୂଥପତି ଅଙ୍ଗଦ ହନୁ ଜାଣ ।
ନିତ୍ୟକର୍ମ ସାରିଣ ସମସ୍ତେ ଅଇଲେ
ଶ୍ରୀରାମ ଲକ୍ଷ୍ମଣ ସୁଗ୍ରୀବର ତୁଲେ ।
ହନୁମନ୍ତ ଉଠିଣ ସିଂହାସନ ନେଲା
ମାଲ୍ୟବନ୍ତ ଗିରି ଉପରେ ରଖିଲା ।
ଶ୍ରୀରାମ ଯିବାରୁ ଲକ୍ଷ୍ମଣ ଛତ୍ର ଧରି
ସିଂହାସନ ଉପରେ ବିଜୟ ଚାପଧାରୀ ।
ଆଶ୍ୱିନ ଶୁକ୍ଳ ସପ୍ତମୀ ସେହିଦିନ
ପ୍ରଥମେ ସୈନ୍ୟ ଯେ କଲେକ ଦର୍ଶନ ।
ଦ୍ୱିତୀୟ ଦିନ ଅଷ୍ଟମୀ ବିଜୟ ରଘୁନାଥ
ନବମଦିନ ଗଣା ସରିଲା ସମସ୍ତ ।
ଅକଳିତ ସୈନ୍ୟ ଯେ ଆସନ୍ତି ଧାରାଲାଗି
ଶ୍ରୀରାମ ଦର୍ଶନ ଆଜ୍ଞା ପାଇ ବେଗି ।
ଅକଳିତ ବଳ ଯେ ଆଣଇ କଢ଼ାଇ
ଧାରା ପ୍ରମାଣେ ଲାଗିଛନ୍ତି ତହିଁ ।
ଉତ୍ତର ପଶ୍ଚିମ ଯେ ସରିଲା ଗଣିତ
ମଲ୍ଲ ମହାମଲ୍ଲ ଦେଖିଣ ହେଲେ ସ୍ତମ୍ଭୀଭୂତ ।
ଚାରିଦିଗରୁ କପି ଆସିଣ ଠୁଳ ହେଲେ
ଶ୍ରୀରାମ କହିବାରୁ ଜମ୍ବେବ ଲେଖିଲେ ।

ସ୍ୱର୍ଗରେ ଦେବତା ଦେଖନ୍ତି ତୋଷ ହୋଇ
ବିଚାରିଲେ ଦୈତ୍ୟବଳ ମାରିବେ ଦୟାବହି ।
ଗହଳରେ ଶବଦ ଶୁଭଇ ଅତି ଘୋର
ବନଲତା କମ୍ପଇ ମହା ଭୟଙ୍କର ।
ଏଥୁ ଅନନ୍ତରେ କର୍ଦ୍ଦନ ବୀର ମିଳି
ଦୁଇ ସାଗର ସୈନ୍ୟ ସଙ୍ଗରେ ହୁଳହୁଳି ।
ମୃଗନାଭି କସ୍ତୁରୀ ନେଇଣ ସେ ଦେଲା
ଚରଣେ ଓଳଗି ହୋଇ ଉଠି ଉଭା ହେଲା ।
ଦେଖିଣ ଶ୍ରୀରାମ ଯେ ଆନନ୍ଦ ମନ ହେଲେ
ଜମ୍ବେବ ବୋଇଲେ ଶୁଣହେ ଦେବ ଭଲେ ।
ଏହି କର୍ଦ୍ଦନ କପି ଅଟଇ ମହାମଲ୍ଲ
ଶତ ସିଂହର ବଳ ଦେହରେ ତାର ଠୁଳ ।
ଏହାର ସୈନ୍ୟବଳ ଦିଶେ ଏହାପରି
ନୀଳବର୍ଣ୍ଣ ସଭିଏଁ କର୍ଦ୍ଦନ ରୂପେ ସରି ।
ମହା ଭଇରବ ବନରେ ଏ ଥିଲା
ଅଙ୍ଗଦ ବରିବାରୁ ସେ ଯେ ଏଥକୁ ଅଇଲା ।
ଶ୍ରୀରାମ ବୋଇଲେ ଏ କାହାର ଅଂଶେ ଜାତ
ଜମ୍ବେବ ବୋଇଲେ ଏ କାଳ ଅଂଶୁ ସମ୍ଭୁତ
ଶ୍ରୀରାମ ବୋଇଲେ ଏ ବେଲାବନକୁ ଯାଉ
କର୍ଣ୍ଣାଟ ବେଲାବନେ ଯାଇଣ ଏହୁ ରହୁ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ଚାରିବର୍ଣ୍ଣ କପି ଯେ ବେଲାବନେ ପୂରି ।
ଚାରିବର୍ଣ୍ଣ ଭାଲୁ ଯେ ଗର୍ଜନ କରନ୍ତି ଘୋର
ବନ ଗିରି ଲତା ଯେ କମ୍ପଇ ଥରହର ।
ସୁଗ୍ରୀବର ବୋଇଲେ ତୁମ୍ଭେ ଶୁଣ ରଘୁପତି
ସୈନ୍ୟବଳ ଆସିଣ ମିଳିଲେ ତୋର କତି ।
ଏବେ ଯେଉଁ କଥା ସେ କଥା ମନେ କର
କପିରାଜା ବଚନେ ବୋଲନ୍ତି ରଘୁବୀର ।
ଯାହା ବୋଇଲ ମଇତ୍ର ସେ କଥା ଅଟେ ସତ୍ୟ
ରାବଣ ନେଲା ସୀତା ବୋଲି ଜାଣନ୍ତି ସମସ୍ତ ।
ଦେବତାଗଣମାନେ ଅଛନ୍ତି ତା ପାଶରେ
ଅସୁରକୁ ସେବା ଯେ କରନ୍ତି ନିରନ୍ତରେ ।
ତାହାଙ୍କୁ ପଚାରି ଦୟା ଗୁଣରାଶି ମୋର
ଜଣା ନ ଗଲା ରଖିଛି କେଉଁଠି ଏ ଖବର ।
ଅନେକ ଦୈତ୍ୟ ଅଛନ୍ତି ତିନିପୁରେ ପୁଣ
ଜାତି ଗୋତ୍ର ସମସ୍ତଙ୍କ ଏକତୁଲେ ଜାଣ ।
ଏହିକଥା ବିଚାରୁଅଛି ମୁହିଁ ମନେ
ଚାରିଦିଗ ଖୋଜନ୍ତୁ ଦୂତ ପେଶିବା ଜଣେ ।
ଶୁଣିଣ ସୁଗ୍ରୀବର ଶିରେ କର ଦେଲା
ତୁମ୍ଭେ ଯା କହିଲ ମୋତେ ସେ ଯୋଗାଇଲା ।

ଏଥୁ ଅନନ୍ତରେ ବୋଇଲେ ଶୂଳପାଣି
ମନ ସନ୍ତୋଷ ହେଲେ ରାମକଥା ଶୁଣି ।
ପାର୍ବତୀ ବୋଇଲେ ଦେବ ଶୁଣ ତ୍ରିପୁରାରୀ
କଥାଏ ପଚାରିବି କହିବ ଫେଡ଼ିକରି ।
ଚାରିଦିଗରୁ ଯେ ଅଇଲେ କପିଭାଲୁ
ସେନାପତିମାନେ ଅଟନ୍ତି ହନ୍ତକାରୁ ।
ଅଯୋଧ୍ୟା ନଗ୍ରରୁ କିମ୍ପା ନ ଆସିଲେ ବଳ
ସେ ଦେଶରେ ନାହିଁକି ମର୍କଟ ମହୀପାଳ ।
ଈଶ୍ୱର ବୋଇଲେ ଶୁଣ ଗୋ ଭଗବତୀ
ଅଯୋଧ୍ୟା ବନୁ ଆସିବାକୁ ବାଟ ନ ପାଆନ୍ତି ।
ପାର୍ବତୀ ବୋଇଲେ ଏତେ ବଳ ଯେ ଅଇଲେ
ଅଯୋଧ୍ୟା ବାନର ଆସିବାକୁ ବାଟ ନ ପାଇଲେ
ଈଶ୍ୱର ବୋଇଲେ ଶୁଣ ଗୋ ମହାମାୟୀ
ସେ ଦେଶରେ ଭ୍ରତ ଯୁବରାଜ ହୋଇ ।
ଶ୍ରୀରାମ ବନ ଆସିବାର ଚଉଦ ବରଷ
ଗଣିଣ ଭରତ ବୀର ବିଚାରେ ମାନସ ।
ଶ୍ରୀରାମଙ୍କର ଆସିବା ବେଳକୁ ଯେବେ ମୁହି
ଲକ୍ଷେ ରାଜା ଆଣିଣ ଠୁଳ କରିବଇଁ ।
ତେବେ ଅବା ମୋରଠାରେ ଶ୍ରୀରାମ ସନ୍ତୋଷୀ
ମାତାର ଦୁର୍ଗୁଣେ ହୋଇଲିମୁହିଁ ଦୋଷୀ ।
ଏମନ୍ତେ ବିଚାରି ସେ ଲକ୍ଷେ ରାଜା ବରି
ରାଜାମାନ ଆଣିବାକୁ ଶତ୍ରୁଘନ ବରି ।
ରାଜ୍ୟକୁ ନିର୍ମଳ ଯେ କଲା ଭ୍ରତବୀର
ବିଶ୍ୱକର୍ମା ଆସିଣ ନିର୍ମାଣ କଲା ପୁର ।
ସେଦେଶର କପିରାଜାମାନେ ଦେଖୁଛନ୍ତି ରହି
ବିଚାରନ୍ତି ଆସିବେ ନିକଟେ ରଘୁସାଇଁ ।
ଏମନ୍ତ ସମୟରେ ଅଙ୍ଗଦର କଥା
ଦୂତ ଯାଇ କହିଲା ଶୁଣରେ ସାମରଥା ।
ବାଳୀର ନନ୍ଦନ ଅଙ୍ଗଦ ଆସିଲଇଁ
ରାମାୟଣ ଯୁଦ୍ଧ ଲଙ୍କାରେ ହୋଇବଇଁ ।
ଶୁଣିଣ ମର୍କଟ ମହୀପାଳ ପୁଣି ଆସି
ତେଣୁଟି ଉଛୁରଗୋ ହୋଇଲା ଶଶୀମୁଖୀ
ସେ ଆସିଲା ବେଳେ ସୈନର ଗହଳ
ସଙ୍କୋଳି କରି ହୋ ଆସଇ ପଛେ ବୀର ।
ମାଲ୍ୟବନ୍ତ ଗିରିରେ ପ୍ରବେଶ ଯାଇ ହେଲା
ଶ୍ରୀରାମ ଛାମୁରେ ଦର୍ଶନ ଯେ କଲା
ଦେଖିଣ ଶ୍ରୀରାମ ଯେ ହରଷ ହୋଇଲେ
କେଉଁ ବନରୁ ଅଇଲ ପଚାରିଲେ ।
ଜମ୍ବେବ ବୋଇଲେ ଅଇଲେ ଅଯୋଧ୍ୟାରୁ
ନିର୍ମଳ ଗିରି ବନରେ ଘର ସେ ହନ୍ତାକରୁ ।

ଚାରି ସାଗର ବାନର ଧରିଣ ଏହି ଆସେ
ଶତ ଚାଳିଶ ରାଜା ଖଟେ ଏହା ପାଶେ ।
କର୍ପୂର ପୁଡ଼ାଏ ଯେ ଆଣିଅଛି ବୀର
ଶ୍ରୀରାମଙ୍କର ଛାମୁରେ ଦେଲା ତତପର ।
ଚରଣରେ ଗଡ଼ଘାଲି ଶୋଇଲେ ବେଗେ ପୁଣ
ଶ୍ରୀରାମ ବୋଇଲେ ବାନର ରାଏ ଶୁଣ ।
କେତେଦିନ ହେଲା ଅଇଲୁ ଯେ ପୁଣ
ମଳୟ ବୋଇଲେ ଦେବ ଅଟଇ ବାରଦିନ ।
ବାଟ ନ ପାଇଲେ ଗହଳ ଦେବ ସୈନ୍ୟ
ସେଥିଯୋଗୁ ଆସିବାର ଉଛୁର ହୁଏ ଜାଣ ।
ଶ୍ରୀରାମ ବୋଇଲେ ଅଯୋଧ୍ୟା ରାଜା କିଏ
ମଳୟ ବୋଇଲେ ନୂଆ ରାଜା ହୁଏ ।
ଦଶରଥ ନୃପତିର ଅଟନ୍ତି ଚାରିପୁତ୍ର
ରାମଲକ୍ଷ୍ମଣ ଶତ୍ରୁଘ୍ନ ଆବର ଭରତ ।
ଶ୍ରୀରାମ ଅଟଇ ଜ୍ୟେଷ୍ଠ କନିଷ୍ଠଶତ୍ରୁଘନ
ଭରତ ଲକ୍ଷ୍ମଣ ଯେ ଅଟନ୍ତି ମଧମ ।
ଶ୍ରୀରାମଙ୍କୁ ରାଜ୍ୟ ଦେବାକୁ ରାଜା ମନ
ବଶିଷ୍ଠଙ୍କଠାରୁ ଶୁଣିଲା ରାମ ନାରାୟଣ ।
ବଡ଼ପାଟ ସେ ରାଜାର ଅଟଇ କୈକେୟୀ
ମାୟାକରି ବୋଇଲା ମୋ ପୁତ୍ରକୁ କରଦୟା ।
ଚଉଦ ବରଷ ଯେ ପୁତ୍ର ରାଜା ହେବ
ଭାଇ ଭାରିଯା ଘେନିଣ ରାମ ବନ ଯିବ ।
ଯେବେ ଦେବକାର୍ଯ୍ୟ ହୋଇବ ବହୁତ
ଶୁଣିଣ ଦଶରଥ ଆଗେ କଲା ସତ୍ୟ ।
ଶୁଣି ରାମ ଲକ୍ଷ୍ମଣ ସୀତା ବନେ ଗଲେ
ପିତାର ସତ୍ୟ ସେ ଯେ ପାଳିବାର ତୁଲେ ।
ଭରତ ଶତ୍ରୁଘନ ଅଜାଘରେ ଥିଲେ
ବାରଦିନେ ଦଶରଥ ସ୍ୱର୍ଗକୁ ଚଳିଲେ ।
ବାରତା ପାଇ ଅଇଲେ ଭରତ ଶତ୍ରୁଘନ
କ୍ରିୟା କର୍ମ ପିତାର ସାରି ଯେ ବାରଦିନ ।
ଶ୍ରୀରାମକୁ ଆଣିବାକୁ ଚଳିଗଲେ ତେଣେ
ବନେ ଖୋଜି ରାମକୁ ଦେଖିଲେ ନୟନେ ।
ଚିତ୍ରକୁଟ ପର୍ବତେ ରାମଙ୍କୁ ସେ ଭେଟିଲେ
ଶ୍ରୀରାମ ଯେ କେବେହେଁ ଲେଉଟି ନ ଆସିଲେ
ଅଯୋଧ୍ୟା ନଗ୍ରକୁ ଗଲା ଭରତ ବୀର
ନନ୍ଦୀଗ୍ରାମ ନାମରେ କଲାକ ନବର ।
ସିଂହାସନ କରିଣ ପାଦୁକା ସେଥି ରଖି
ସେ ରାଜ୍ୟରେ ରାଜା ପାଦୁକା ହୋଇଲାଟି ।
ଶତ୍ରୁଘନକୁ ଯୁବରାଜା ଯେ କରିଲା
ସୈନ୍ୟବଳ ଥାଟ ତାର ଜଗରେ ବୋଇଲା ।

ମାତା ଲୀଳାବତୀ ବୋଲଇ ରାଜ୍ୟ ବୁଝ
ମୋତେ ରାମ ନାମ ପଦରେ ଏବେ ହେଜ ।
ସୁଖ ଭୋଗ ଛାଡ଼ି ତପସ୍ୱୀ ରୂପ ହେଲା
କାନିଶିରି ଶାଗ ଖାଇ ଦିନ ନେଲା ।
ଚଉଦ ବରଷ ହୋଇଲା ଯହୁଁ ଆସି
ରାଜ୍ୟ ନିର୍ମଳ କରେ ଦାଶରଥି ବସି ।
ଲକ୍ଷେ ରାଜା ଆଣିବାକୁ ଶତ୍ରୁଘନ ପେଶି
ଅନେକ ସମ୍ଭାର ଭିଆଇଲା ହୋଇ ଖୁସି ।
ସେ କଥା ଦେଖିବାର ବିଳମ୍ବ ମୋର ହେଲା
ଶୁଣିଣ ଶ୍ରୀରାମ ହେ ମନରେ ବିଚାରିଲା ।
ସୁଗ୍ରୀବର ବୋଇଲା ଧନ୍ୟରେ ଭରତବୀର
ଆଉ କଥାମାନ ଭରତ କଲା କି ପ୍ରକାର ।
ଶୁଣିଣ ମଳୟ ମର୍କଟ କହଇ ରାମ ଆଗେ
ଶୁଣ ଦେବ ଶ୍ରୀରାମ ସେଥିର କଥା ଏବେ ।
ସଗର ରାଜା ଦିନରେ ଉତ୍ତର ପାଶେ ନଗ୍ର
ସତଷଠି ପୁରୁଷ ତାଙ୍କର ହେଲା ଭୋଗ ।
ଏବେ ନୂଆ କଥାମାନ ଭରତ ଭିଆଇଲା
ଦକ୍ଷିଣ ପାଶେ ନୂଆ ନଗ୍ର ତୋଳାଇଲା ।
ସେ ଗ୍ରାମ ଭିତରେ ଯେ ନଗ୍ରେକ ଭିଆଇଲା
ସେ ନବର ଭିତରେ ନିଜ କୁଟୁମ୍ବ ରଖାଇଲା ।
ଦକ୍ଷିଣ ପାଶରେ ନବର କଲା ପୁଣି
ସେ ନବରେ ଶତ୍ରୁଘନ କୁଟୁମ୍ବ ରଖେ ଆଣି ।
ପୁରୁଣା ନବର ରାମର ପାଇଁ ରଖି
ତହିଁ ପାଇଁ ନବର ଲକ୍ଷ୍ମଣ ପାଇଁ ରଚି ।
ପୂର୍ବର ମୁଣ୍ଡରେ ନନ୍ଦିଗ୍ରାମ କଲା
ଉତ୍ସବ ମଣ୍ଡପ ସେଥିରେ ଭିଆଇଲା ।
ନଗ୍ର ଚାରି ଦ୍ୱାରରେ ତୋଟାମାନ ଯେ ଜାଣ
ନବରେ ଅବକାଶ ତୋଟା କରିଲାକ ପୁଣ ।
ମଧୁବନ ତୋଟା ଯେ ଅଟଇ ଆଠକୋଶ
ଖାଣ୍ଡବ ବନ ତୋଟା ଷଡ଼କୋଶରେ ଶେଷ ।
ମଧୁବନ ତୋଟାରେ ଲକ୍ଷେକ ଫୁଲ ବୃକ୍ଷ
ଫଳନ୍ତି ଫୁଟନ୍ତି ଯେ ରୋପିଲା ତୁରିତ ।
ଚୂନର ପ୍ରାଙ୍ଗଣ ଯେ ବୃକ୍ଷମାନଙ୍କ ମୂଳେ
ଏ ରୂପେ ତୋଟା ନିର୍ମଳ କରିଛି ଭରତବୀରେ ।
କେଳିପୁରମାନ ବୈଡୂର୍ଯ୍ୟରେ କରି
ନାନା ରତ୍ନେ ତିଆରିଛି ମନରେ ସେ ବିଚାରି
ଲକ୍ଷ୍ମଣର ପାଇଁକି ଖାଣ୍ଡବ ବନ କଲା
ସେହିରୂପେ ଲକ୍ଷେ ଫୁଲ ସେଥିରେ ରୋପିଲା ।
ଫଳିଲା ଫୁଟିଲା ବୃକ୍ଷ ରୋପିଲା ଲକ୍ଷେକ
ଚୂନର ପ୍ରାଙ୍ଗଣ ସେରୂପେ ସଞ୍ଚୁଲାକ ।

ଜନନୀ ସୁମିତ୍ରାଙ୍କୁ ସେଥିରେ ନେଇ ରଖି
ବୋଇଲା ଲକ୍ଷ୍ମଣର ଏ ନବର ଗୋଟି ।
ପୁରୁଣା ନବରେ ରହିଲେକ କୌଶଲ୍ୟା
ରାମ ରାଜା ହେବା କୁ ବିଚାରି ଭୃତ ଭଲା ।
ସହସ୍ରେ ପରିବାରୀ ସଙ୍ଗତରେ ତାର
ନିଜ ନବର ଭଣ୍ଡାର ଅଟଇ ଯେ ରାଣୀର ।
ବସନ୍ତ ନାମେ ତୋଟା ସେ ନନ୍ଦିଗ୍ରାମେ କଲା
ଲକ୍ଷେକ ତରୁମାନ ସେଥିରେ ଲଗାଇଲା ।
ଲକ୍ଷେ ବର୍ଣ୍ଣ ଫୁଲ ସେଥିରେ ଲଗାଇଲା
ମୂଳ ମାନଙ୍କରେ ଚୂନ ପ୍ରାଙ୍ଗଣ କରାଇଲା ।
ସେ ପୁରେ ତାର ମାତ କୈକେୟୀ ରାଣୀ ରହି
ଶତେ ରାଣୀହଂସ ତାହାର ସଙ୍ଗେ ଯାଇ ।
ସହସ୍ରେକ ଦାସୀ ଯେ ତା ସଙ୍ଗେ ରହିଲେ
ଏଥି ଅନନ୍ତରେ କଥା ଶୁଣ ତୁହି ଭଲେ ।
ନନ୍ଦନ ବନ କରି ଯାହାକୁ ତିଆରିଲା
ସେ ନବରେ ଶତ୍ରୁଘନ ଯାଇଣ ରହିଲା ।
ଲୀଳାବତୀ ରାଣୀର ଅଟଇ ସେ ଯେ ପୁତ୍ର
ପିତାମାତା ବିଭାବେଳେ କରିଦେଲେ ସତ୍ୟ ।
ପଞ୍ଚାଶ ରାଣୀହଂସ ଘେନି ସେ ରହିଲା
ସହସ୍ରେ ଦାସୀ ଖଟେ ଚରଣରେ ପରା ।
ସେ ବନରେ ଲକ୍ଷେ ବୃକ୍ଷ ରଖିଲା ପୁଣ ନେଇ
ଚୂନ ପୀଢ଼ାମାନ ବୃକ୍ଷମୂଳେ ଦେଇ ।
ଲକ୍ଷେ ଜାତିର ପୁଷ୍ପ ଯେ ଲଗାଇଲା
କୂପ ବାପୀ ପୋଖରୀ ନିବିଡ଼ କରାଇଲା ।
ବଡ଼ଦାଣ୍ଡଠାରୁ ଚଉଷଠି ଦାଣ୍ଡ ଜାଣ
ସହସ୍ରେ କନ୍ଦି ବିକନ୍ଦି କଲାକ ନିର୍ମାଣ ।
ସେ ପୁର ଗୋଟିକୁ ମଞ୍ଚରେ ସରି ନାହିଁ
ସ୍ୱର୍ଗପୁର ପ୍ରାୟେ ସେ ପୁର ଦିଶଇ ।
ଶ୍ରୀରାମ ଅଇଲା ଦିନୁ ସକଳ ହେଲେ କାଳ
ଲୀଳାବତୀ ରାଣୀ ସେ ଯେ କେବଳ ଭଲ ।
ଦେବା ରାଜ୍ୟର ଯେତେକ ଭଲ ମନ୍ଦ
ପଦାତି ଅଶ୍ୱ ଗଜ ପରଜାଙ୍କର ଦ୍ୱନ୍ଦ ।
ସେ ରାଣୀ ଆଜ୍ଞାରେ ସକଳଜନେ ଥାନ୍ତି
ମେଣ୍ଟିବାକୁ ଶକ୍ତି କାହାର ନାହିଁଟି ।
ସମସ୍ତଙ୍କର ଚିନ୍ତା ଯେ ରାମ ଆସିବାକୁ
ରାଣୀ ଲୀଳାବତୀ ବୋଲେ ପୁତ୍ର ଆସିବ ଏଠାକୁ
ଶୁଣିଣ ଶ୍ରୀରାମ ଯେ ରୋଦନ ଉଚ୍ଚେ କଲେ
ଲକ୍ଷ୍ମଣକୁ ବୋଇଲେ ଶୁଣିଲୁ ବାବୁ ଭଲେ ।
ମଳୟ ସେନାପତି ବୋଲଇ ଦେବ ଶୁଣ
ଶ୍ରୀରାମ କେଉଁଠାରେ ଅଛିକି ତୁମ୍ଭେ ଜାଣ ।

ଦେବକାର୍ଯ୍ୟ କଲା କିବା ମାଇଲା ଅସୁର
ଚଉଦ ବରଷତ ପୂରିଲା ଆସି ତାର ।
ପିତା ସତ୍ୟ ପାଳିଲା ଅଟଇ ସେ ଯେ ଭଲା
ପିତୃ ସତ୍ୟ ପାଳି ଯଶ ସଂସାରେ ରଖିଲା ।
ଘର କଲେ ଧନରେ ଲୋଭ ହୁଏ
ଘରଣୀ କଲେ ପୁତ୍ର ଦୁହିତା ଉପଜାଏ ।
ଧର୍ମ କଲେ ତୀର୍ଥମାନଙ୍କୁ ତେବେ ପାଇ
ବିଦ୍ୟା ପଢ଼ିଥିଲେ ହରି ନାମ ଗାଇ ।
ସଜ୍ଜପଣ କଲେ ରାଜ୍ୟରେ ଯଶ ପାଇ
ଦୁଷ୍ଟଜନ ନାଶିଲେ ଦେବ କାର୍ଯ୍ୟ ହୋଇ ।
ଗୟାରେ ପିଣ୍ଡଦେଲେ ପିତୃ ଯେ ସନ୍ତୋଷ
ଗୟାରେ ଝାସ ଦେଲେ ପ୍ରାପତ ଅଭିଳାଷ ।
କାଶୀ କ୍ଷେତ୍ରେ ମଲେ କ୍ଷୟ ନୁହେଁ ପୁଣ୍ୟ
ଘରଣୀ ଅଳଙ୍କାର ଘେନିଲେ ଦୋଷ ଜାଣ ।
ପିତା ଯେବେ ପୁତ୍ରକୁ ଧନ ଦେଇ ଯାଇ
ଏତେ କଥା କଲେ ସେ ଯେ କୁଳ ବୋଲଇ ।
ଦଶରଥ ରାଜାର ସାତଶ ପଞ୍ଚାଶ ରାଣୀ
କୌଶଲ୍ୟା ପୁତ୍ର ସାହସୀ ଧାମକ ଜାଣି ।
କେକେୟୀ ରାଣୀ ଯେ ରାମକୁ ବାଦୀ ହେଲା
ସ୍ୱାମୀଙ୍କୁ କହିଣ ଯେ ବନକୁ ପେଷିଲା ।
ଧର୍ମ ଆତ୍ମା ଯେ ତାଙ୍କର ଅଟେ ଜାଣ
ଦେବ କାର୍ଯ୍ୟ କରିବାକୁ ବିଚାର କଲା ମନ ।
ଲୀଳାବତୀ ରାଣୀ ଯେ ଅଟଇ ପରିବାର
ଅସମ୍ଭାଳ ବେଳେ ସମ୍ଭାଳେ ରାଜ୍ୟଭାର ।
ସୌମିତ୍ରୀ ରାଣୀ ଯେ ସତ୍ୟ ଶାନ୍ତି ଅଟେ
ନୋହିଲେ କି ତାର ପୁତ୍ର ଶ୍ରୀରାମ ପାଦେ ଖଟେ
ଭରତ ସମାନେ ଭାଇ ନିର୍ମଳ ଯେ ଆଉ
ରାମ ନାମ ଭଜିଣ ତପ କରେ ସେହୁ ।
ଶତ୍ରୁଘନ ସମାନରେ ରବିତଳେ ବୀର
ବିଚାରିଲେ ଜିଣି ପାରଇ ତିନିପୁର ।
ଲକ୍ଷ୍ମଣକୁ ବଳି ଯେ ନାହିଁ ଆଉ ବଡ଼
ସୀତା ସଙ୍ଗେ ଆସିବାକୁ ଅବଶ୍ୟ କରେ ଗାଢ଼ ।
ଜାନକୀ ସମାନେ ସ୍ତିରୀ ତିନିପୁରେ ନାହିଁ
ଘରଦ୍ୱାର ତେଜ୍ୟା କରି ସ୍ୱାମୀରେ ମନ ଦେଇ ।
ତାହାର ଭଉଣୀ ଯେ ଉର୍ମିଳା ନାମେ ନାରୀ
ପଚାରିଲେ ତିନିପୁର କଥା ସେ କହିପାରି ।
ସବୁରୀ ଶରୀରେ ଯେ ଅଟଇ ତାଙ୍କର
କୁଶଧ୍ୱଜ ଦୁହିତା ମାଳିନୀ ନାମ ଯାର ।
ଭରତର ଘରଣୀ ଅଟେ ଭଲ ପୁଣ
ଶାଶୁ ତେଜି କୌଶଲ୍ୟା ଚରଣେ ଖଟେ ଜାଣ ।

ଶତ୍ରୁଘନ ଘରଣୀ ବିବେକୀ ଅଟେ ପୁଣି
ନିତ୍ୟ ସଦାଛତ୍ର ଦିଅଇ ବାଟୋଇକି ଜାଣି ।
ବିପ୍ରବର ବସାଇ ଦେବ ଆଳେ ପୁଣ
ନାରାୟଣ ଦେବତାଙ୍କୁ ଶୁଣାଏ ସହସ୍ର ନାମ ।
ଶିବଲିଙ୍ଗ ମସ୍ତକେ ଅଭିଷେକ କରାଇ
ଦେବୀମାନଙ୍କ ଛାମୁରେ ଚଣ୍ଡୀ ଯେ ଶୁଣାଇ ।
ଧର୍ମପୂଜା କରଇ ରବି ଉଦୟ ବେଳେ
ବୋଲେ ଯାଆ ଦେଢ଼ଶୁର ଆସନ୍ତୁ ଶୁଭରେ ।
ଏସନ ପ୍ରକାର ଦଶରଥର ଅଂଶ ଧନ୍ୟ
ଭଲଯୋଗେ ଦଶରଥି ଚାରିପୁତ୍ର କଲା ଜନ୍ମ ।
ଭଲ ଯୋଗେ ବିଶ୍ୱାମିତ୍ର ରାମ ଘେନିଗଲା
ଭଲ ଯୋଗେ ଜନକ ଚାରିଝିଅ ଦେଲା ।
ସେପରି ଧର୍ମିକ ରାଜା ନ ଥିବେ ରବିତଳେ
ଶନି କି ଜିଣିଣ ପିତା ଜିଆଇଲେ ଛଅ ଦିନେ
ଶୁଣିଣ ଶ୍ରୀରାମ ଯେ ଛାଡ଼ିଲେ ବୋବାଳୀ
ଛତି ରଖି ଲକ୍ଷ୍ମଣ ଯେ ଭେଟିଲେ ମହୀପାଳୀ ।
ସୁଗ୍ରୀବର କେଶରୀ ଯେ ରାମକୁ ଯାଇ ଟୋଳି
ଅଙ୍ଗଦ ହନୁମନ୍ତ ଲକ୍ଷ୍ମଣ ଯେ ଧରି ।
ସଚେତ କରିଣ ରାମରେ ବୁଝାଇଲେ
ଲକ୍ଷ୍ମଣକୁ ଅଙ୍ଗଦ ସଚେତ କରାଇଲେ ।
ମଳୟ କର୍କଟ କହେ ଏ କିମ୍ପା ରୋଦନ୍ତି
ଦଶରଥ ରାଜାର କି ଏମାନେ ଅଟନ୍ତି ।
ବାନ୍ଧବ ବନ୍ଧୁ କି ଯେ ସହୋଦର ପୁଣି
ଏ କଥାରେ ମୋର ଆଗେ କହ ମନ୍ତ୍ରୀମଣି
ଅଙ୍ଗଦ ବୋଇଲା କପି ଏବେ ତୁହି ଶୁଣ
ସୁଗ୍ରୀବର ହସିଲେ ଶୁଣିଣ ବଚନ ।
ପଞ୍ଚାଶ ଯୁଥପତି ହସିଲେ ତାହା ଶୁଣି
ହାସ୍ୟ ଦେଖି ମଳୟ ମନରେ ଚିନ୍ତା ପୁଣି ।
ଶ୍ରୀରାମ ବୋଇଲେ ତୁ ଶୁଣରେ ଲକ୍ଷ୍ମଣ
ଦେବ କାର୍ଯ୍ୟ ନିମନ୍ତେ ଜାନକୀ ଗଲା ପୁଣ ।
ଶ୍ରୀରାମ ବୋଇଲେ ମଳୟ ଏବେ ଶୁଣ
ଦଶରଥ ରାଜା ପୁତ୍ର ଭରତ ଶତ୍ରୁଘନ ।
ସେ ପୁରେ ଉତ୍ପାତ କି ନୁହଇ କିଛି ଆଉ
ଶୁଣିଣ ମଳୟ ଯେ ବୋଲଇ ଶୁଣ ମହାବାହୁ ।
ରାଜାମାନେ ଆସିବାକୁ ନବର ହେଲା ପୁଣ
ଋଷିମାନେ ଆସିବାକୁ ଉଛଳ ବନମାନ ।
ଗଜ ଅଶ୍ୱ ପାଇକ ଯେ ହେଉଛନ୍ତି ସଜ
ଚିତ୍ରପଟମାନ ବଡ଼ଦାଣ୍ଡକୁ ସୌନ୍ଦର୍ଯ୍ୟ ।
ଘୃତ ମିଠା ଦହି ଯେ ଚାଉଳ ଅଟା ଗୁଡ଼
ସକଳ ସାମଗ୍ରୀ ସଞ୍ଚେ ଭରତ କରି ଦୃଢ଼ ।

ଶ୍ରୀରାମ ବୋଇଲେ ରେ କପିରାୟ ଶୁଣ
ଆମ୍ଭେ ରାମ ଲକ୍ଷ୍ମଣ ଦଶରଥ ନନ୍ଦନ ।
ଆମ୍ଭେତ ବନେ ଆସି ସୀତାଙ୍କୁ ହରାଇଲୁ
ସୁଗ୍ରୀବର ସଙ୍ଗତରେ ମଇତ୍ର ହୋଇଲୁ ।
ବାଳୀ ମାରି ତୁମ୍ଭମାନଙ୍କୁ ଅଣାଇଲୁ
ରାବଣ ମାରିବାକୁ ଏବେ ମନ କଲୁ ।
ତୋହର କଥା ବାବୁ ଅଟଇ ପ୍ରମାଣ
ଆଗେ ଜନନୀ ଗଲା ଅସୁର ମାରି ପୁଣ ।
ଶୁଣି ମଳୟ ବାନର ବୋଇଲା ଏବେ ଶୁଣ
ତୋହର ଚିହ୍ନ ମୁଁ ଯେ ଦେଖିଲି ପ୍ରମାଣ ।
ଶ୍ରୀରାମ ବୋଇଲେ ମୋର କେଉଁ ଚିହ୍ନ ଅଛି
ଦେଖ କପିକୁଳପତି ଏବେ ମୁଁ କହୁଛି ।
ଶୁଣିଣ ମଳୟ ଋକ୍ଷପତି ଗଲା ବେଗେ
ଶ୍ରୀରାମ ତାହାକୁ ଚାହିଁଲା ସରାଗେ ।
ଦେଖିଲି ଶ୍ରୀବତ୍ସ ଚିହ୍ନ ହୃଦୟେ ରହିଛି
ଦେଖି କପିବୀର ପାଦରେ ନମିଲାଟି ।
ସୁଗ୍ରୀବର ବୋଇଲା ପାଇଲୁ କି ସାକ୍ଷାତ
ମଳୟ ବୋଇଲା ଏ ଈଶ୍ୱର ସାକ୍ଷାତ ।
ଏଥୁ ଅନନ୍ତରେ ଶୁଣ ଗୋ ଶାକମ୍ଭରୀ
ଦେଖିଣ ମଳୟ ଯେ ମନରେ ବିଚାରି ।
ବୋଇଲା ରଘୁନାଥ ଚିହ୍ନିଲି ଯେ ତୋତେ
ଏମନ୍ତ ବୋଲିଣ ବ୍ୟାକୁଳ ହେଲା ଚିତ୍ତେ ।
ଶ୍ରୀରାମ ବୋଇଲେ ତୁରେ ଋଷ୍ୟମୁକେ ରହ
ବୁଦ୍ଧି ଶିଖାଇଲୁ ମୋତେ ପୂର୍ବର କଥାସ୍ନେହ ।
ସୁଗ୍ରୀବର ବୋଲେ କି ସଙ୍କେତ ଦେଖିଲୁ
ସେକଥା ମୋର ଆଗେ କହରେ ଏବେ ଓଲୁ ।
ମଳୟ ବୋଇଲା ଦେଖ ଶ୍ରୀବତ୍ସର ଚିହ୍ନ
ବଶିଷ୍ଠ ଚିହ୍ନାଇଥିଲେ ଦଶରଥର ପୁଣ ।
ଶୁଣିଣ ସମସ୍ତେ ସେ ହୃଦୟକୁ ଚାହିଁ
ଶ୍ରୀବତ୍ସର ଚିହ୍ନ ଯେ ସମସ୍ତେ ଦେଖ ତହିଁ ।
ସେଠାରୁ ମଳୟ ଯେ ବେଗେ ଚଳିଗଲା
ଋଷ୍ୟମୁକ ବନରେ ଯାଇଣ ବସା କଲା ।
ଏଥୁ ଅନନ୍ତରେ ଶୁଣ ଗୋ ହୈମବତୀ
ଅଯୋଧ୍ୟା କଥା ଶୁଣି ସନ୍ତୋଷ ଦାଶରଥି ।
ପାର୍ବତୀ ବୋଇଲେ ଶୁଣ ହେ ଚନ୍ଦ୍ରଶେଖର
ଏଥୁ ଅନନ୍ତରେ କଥା କେବଣ ପ୍ରକାର ।
ଶ୍ରୀରାମ ସୈନ୍ୟ ଦେଖି ସନ୍ତୋଷ ହୋଇଲେ
ସୁଗ୍ରୀବର ଅଙ୍ଗଦକୁ ପ୍ରଶଂସା ସେ କଲେ ।
କରଯୋଡ଼ି ସୁଗ୍ରୀବର ଜଣାଏ ପୁଣ ପୁଣ
ସୈନ୍ୟ ଅଇଲେ ବିଚାର କର ହେ ରଘୁରାଣ ।

ଯେ ତୋହର ଇଚ୍ଛା ତହିଁକି ମନେ କର
କପିରାଜ ବଚନେ ବୋଲନ୍ତି ଚାପଧର ।
ଯାହା ବୋଇଲେ ସେକଥା ଅଟେ ସତ୍ୟ
ଚାରିଦିଗକୁ ପେଷିବା ଏବେ ଦୂତ ।
କେବଣ ଦିଗରେ ରାବଣର ଘର
ଲଙ୍କାଗଡ଼ ନାମରେ ଅଛି ଯେତେ ପୁର ।
ରାବଣ ନାମରେ ଅନେକ ଅଛନ୍ତି
କେବଣ ରାବଣ ମୋର ନେଲା ପ୍ରିୟବତୀ ।
ଜୀଇଁ ଅଛି କି ନାହିଁ ଜନକ ଦୁହିତା
ଅନେକ ଯୁବତୀର ନାମ ଅଛି ସୀତା ।
ରାବଣର ପୁରେ ଯେ ଅଛନ୍ତି କେମନ୍ତ
କି ଅବା ତାହାକୁ ଯେ ଦଇତ ବଳବନ୍ତ ।
ହାନି ଲାଭ କଲା ଜାଣିବା ନିମିତ୍ତ
ସାଧକଥା ବାରତା ପାଇବା ପେଷି ଦୂତ ।
ଯଦ୍ୟପି ରାବଣ ସୀତାକୁ ଥିବ ହରି
ସୈନ୍ୟ ବଳ ନେଇଣ କିସ ତାକୁ କରି ।
ନାଶ କଲା ଯୁବତୀ ନ ଆଣିବି ମୁହିଁ
ତେଣୁ ସେ ଦୂତ ମୋର ପେଷିବାର ତହିଁ ।
କି ଅବା ସୀତା ମୋର ଘାତକୀ ହୋଇ ମଲା
ଯେଣୁ ରାବଣ ବଳକୃତ୍ୟ କଲା ।
ଏମନ୍ତ ଶୁଣିଲେ ଆମ୍ଭେ କାହିଁପାଇଁ ଯିବା
ବାର୍ତ୍ତା ପାଇଲେ ସିନା ଉପାୟ କରିବା ।
ସୁଖରେ ଜାନକୀ ପ୍ରାଣରେ ଯେବେ ଥିବ
ଅସୁର ସଙ୍ଗରେ କରି ଥିବ ଭାବ ।
ଦୂତର ଆଗରେ ଯେବେ ହୋଇବ ବିକଳ
ଅବିରତ ନୟନୁ ବହୁଥିବ ନୀର ।
କାର୍ପୁଣ୍ୟ ହୋଇ ବୋଲିବ ସ୍ୱାମୀ ମୋତେ ନିଅ
ଏସନକ ଯେବେ ବୋଲିବ ସେ ଜନକ ଝିଅ ।
ଶୁଣିଲେ ସୈନ୍ୟବଳ ଏଥୁ ଘେନି ଯିବା
ରାବଣକୁ ମାରିବି ରଖିବେ ନାହିଁ ଦେବା ।
ଏବେ ହୋ ମଇତ୍ର ତୁମ୍ଭେ ଦୂତ ବେଗେ ପେଶ
ମାସକେ ବାହୁଡ଼ି ଆସି ଦେବ ଯେ ସନ୍ଦେଶ ।
ଶୁଣିଣ ସୁଗ୍ରୀବର ପରମ ତୋଷ ହେଲା
ସେନାପତିମାନଙ୍କୁ ପାଖକୁ ହକାରିଲା ।
ଦ୍ୱିବିନ୍ଦ ପନଶାଙ୍କ ଧୂମ୍ରାକ୍ଷ ଶରଭରୀ
ତୁମ୍ଭେ ଚାରିଜଣ ପାର ବଇରୀ ସଂହାରୀ ।
ପୂର୍ବଦିଗକୁ ଯେ ଏହିକ୍ଷଣି ଯିବ
ଶ୍ରୀରାମ ଘରଣୀ ଯେ ସୀତାକୁ ଖୋଜିବ ।
ଦେଖିଲେ ନିଜ ରୂପ କହିବ ଜପ ଗୀତି
ସ୍ୱୟଂ କମଳିନୀ ଅଟଇ ଦେବୀ ସତୀ ।

ଗୁପତ ପ୍ରଘଟ ଯେ ଖୋଜିବ ତାହାର
କରେ ଧରି ଥିବ ମନ ମଧ୍ୟ ଶର ।
ମାସକେ ଖବର ଆସି କହିବ ମୋ ଆଗର
ନବର ବନ ଘୋର ଖୋଜିବ ସବୁଠାର ।
ଦିନେ ବଳିଲେ ତୁମ୍ଭେ ନାଶକୁ ଭଜ ଜାଣ
ସନ୍ଦେଶ ଆଣି ଦେଲେ ସମ୍ପତ୍ତି ଦେବି ପୁଣ ।
ଶ୍ରୀରାମ ବୋଲେ ଦ୍ୱିବିନ୍ଦ ନାମେ ବୀର
କରେ ଧର ବାବୁରେ ତାଡକା ବଧ ଶର ।
ସୀତାଙ୍କୁ ଦେଖିଲେ ତୁରେ କହିବୁ ବାରତା
ଯଦି ପ୍ରତେ ନ ଯିବ ଜନକ ଦୁହିତା ।
କୌସ୍ତୁଭ ମଣି ଯେ ଦେଖାଇବୁ ନେଇ ।
ବୋଲିବୁ ଦେଖିଲାବେଳେ ଶାଶୁ ଥିଲେ ଦେଇ ।
ତେବେ ସେ ପ୍ରତେ ଯିବେ ମୋର ଚାନ୍ଦମୁହିଁ
ତାଙ୍କଠାରୁ ସନ୍ତକ ଆଣିବୁରେ ତୁହି ।
ଗୁପତ ପ୍ରକାରେ ପ୍ରଘଟ ତାର ଖୋଜି
ଲଘିବା ନ ଲଘିବା ଆସିବୁ ତୋର ବୁଝି ।
ଶୁଣିଣ ଦ୍ୱିବିନ୍ଦ ସଙ୍ଗରେ ଚାରିଜଣ
କୌସ୍ତୁଭମଣି ଘେନି ଚଳିଲେ ତତକ୍ଷଣ ।
ପୂର୍ବଦିଗକୁ ସେହି ଚଳିଗଲେ
ଏଥୁ ଅନନ୍ତରେ ଶୁଣ ଗୋ ଦେବୀ ଭଲେ ।
ପୂର୍ବ ଦିଗକୁ ଦୂତ ଚାଲିଣ ସୁଗ୍ରୀବର
କୁନ୍ଦ କାମୋଦ କାଳିଞ୍ଜନ ଡାକି ପାଶେତାର ।
ପଶ୍ଚିମ ଦିଗକୁ ତୁମେ ଯାଅରେ ଜାଣିକରି
ଲତା ବନଗିରି ସବୁ ଖୋଜିବ ହେତୁକରି ।
ଶ୍ରୀରାମ ଘରଣୀ ସେ ଯେ ସୀତାଙ୍କୁ ଖୋଜିବ
ଲେଉଟି ମାସକେ ବାରତା ଆଣି ଦେବ ।
ଦିନେ ବଳିଲେ ତୁମ୍ଭେ ସମସ୍ତେ ନାଶଯିବ
ମାସକରେ ଅଇଲେ ସମ୍ପଦ ଲଭିବ ।
କୁମୁଦକୁ ଚାହିଁଣ ଶ୍ରୀରାମ ଆଜ୍ଞା ଦେଲେ
ପଦକ ମାଳି ନିଅ ବୋଲିଣ କରେଦେଲେ ।
ବୋଇଲେ ଏ ମାଳିକୁ ଦେଖିଲେ ତାକୁ ଦେବ
ଗୁପତ ପ୍ରଘଟ ଯେ ତାହାର ଖୋଜିବ ।
ବୋଲିବ ରାମ ଦେଇ ଅଛନ୍ତି ମାଳ ଗୋଟି
ମାଲ୍ୟବନ୍ତ ପର୍ବତ ଉପରେ ଛନ୍ତି ସେଟି ।
ଦେଖୁଣୀବେଳେ କୈକେୟୀ ଶାଶୁ ଦେଲେ
ସେ ମାଳ ପକାଇ ଆସିଲ ପର୍ବତ ଉପରେ ।
ସୁଗ୍ରୀବର ପାଇଣ ସାଇତି ରଖିଥିଲା
ଶ୍ରୀରାମଙ୍କୁ ଦେଖି ଏ ମାଳ ତାକୁ ଦେଲା ।
ପ୍ରତେ ଯିବା ନିମନ୍ତେ ରାମ ମୋ ହସ୍ତେ ଦେଲେ
ଏମନ୍ତ କହିଲେ ସେ ପ୍ରତେ ଯିବ ଭଲେ ।

ଏତେ କହି ତାଙ୍କଠାରୁ ସନ୍ତକ ଆଣିବ
ହରଷ ବିରଷ ଯେ ତାହାର ବୁଝିବ ।
ତାରା ଚିହ୍ନ ନାରାଚ ତାହାର ହସ୍ତେ ଦେଲେ
ପ୍ରତେ ନ ଗଲେ ସତୀ ଦେଖାଇବ ଭଲେ ।
ଦୁଷ୍ଟଜନ ଦେଖିଲେ ନ ଡରିବ ତୁମ୍ଭେ
ମାରିବ ନ ଘୁଞ୍ଚିବ କହିଲି ମୁହିଁ ଏବେ ।
ଶୁଣିଣ ଏହି କଥା ଜିବାପାଇଁ ମନ
ପଶ୍ଚିମ ଦିଗକୁ ସେ ଯେ କଲେକ ଗମନ ।
ଗମନ କରିବା ବେଳେ ଶ୍ରୀରାମ ତାଙ୍କୁ କହି
ଗୁପତ ପ୍ରଘଟ ଖୋଜିବରେ ତହିଁ ।
ବୋଇଲେ ନିଶ୍ଚେ ଯେବେ ଦେଖିବ ତୁମେସୀତା
ଅପ୍ରତେ ହୋଇଲେ ପୁଣ କହିବ ପୂର୍ବକଥା ।
ବୋଲିବ ଶାମବଟ ତଳେ ନିୟମ କଲୁ ତୁହି
ତିନି ଦିଅର ରାଜା ଯେ ହେବେ ନାହିଁ ।
ଏ କଥା କହିଲେ ସତୀ ପ୍ରତେ ଯିବ
ଯେମନ୍ତେ ପାର ବାବୁ ତେମନ୍ତେ କର ଠାବ ।
ଏମନ୍ତ ବଚନ ସନ୍ତୋଷେ ରାମ କହି
ଶୁଣିଣ ଚାରି ଦୂତ ପଶ୍ଚିମ ଦିଗେ ଯାଇ ।
ଏଥୁ ଅନନ୍ତରେ ସୁଗ୍ରୀବର ଭାଳି
ଗୁପ୍ତ କରିଣ ଯେ ରାଇଲା ଶତ ବାଳୀ ।
ମଙ୍ଗଳ ଋକ୍ଷ କପି ଗବୟ ଗବାକ୍ଷ
ଶଉରୀ ସେନାପତି ଆବର ଦଧିମୁଖ ।
ତୁମ୍ଭେ ସାଜ ସେନା ଯେ ଉତ୍ତରଦିଗେ ଯିବ
ମାସକେ ବାର୍ତ୍ତାଆଣି ମୋତେ ଦେବ ।
ଉଛୁର କଲେ ତୁମ୍ଭେ ପ୍ରାଣର ଯିବ ନାଶ
ସନ୍ଦେଶ ଆଣିଦେଲେ ପାଇବ ପୌରୁଷ ।
ଆସ୍ତି ନାସ୍ତି ବାର୍ତ୍ତା ଯେ ଉଛୁର ନ କରିବ
ଦେଖ ଦେଖ ସୈନ୍ୟ ପୂରିଛନ୍ତି ଠାବ ଠାବ ।
ଶତବାଳୀକି ଯେ ରାଇଲେ ରାମ ପାଶ
ଗୁପ୍ତ କରିଣ ତାକୁ କହିଲେ ବିଶ୍ୱାସ ।
ଗରୁଡ଼ଧ୍ୱଜ ଶର ତାର ହସ୍ତେ ଦେଲେ
ସୀତାଙ୍କୁ ଦେଖିଲେ ଏହା ଦେଖାଅ ବୋଇଲେ
ସେ ଦିଗ ସବୁଠାରେ ଖୋଜିବ ତୁମ୍ଭେ ପୁଣ
ବନ ଗିରି ପର୍ବତ ହିମଗିରି ପୁଣ ।
ଗୁମ୍ଫା ବିମ୍ବର ଯମୁନାତୀର ପୁଣ
ଏମାନରେ ଯେବେ ଦେଖିବ ମୋ ସଖି ଜାଣ ।
ତେବେ ମୋ ଶର ତାହାକୁ ଦେଖାଇବ
ସକଳ କଥା ବୁଝି ସମ୍ବାଦ ଆଣିବ ।
ଗୁପତ ପ୍ରଘଟ ଯେ ଖୋଜିବ ତାହାର
କହିବ ଅବିଶ୍ୱାସୀ କଲେ ଯେ ତୁମ୍ଭର ।
ବୋଲିବ ଦଣ୍ଡକା ଅରଣ୍ୟର ଭିତରେ
ମୃଗର ମୃଗୁଣୀ କଥାର ବେଳରେ ।
ତୁମ୍ଭେ ଦୁଇଜଣ ବନରେ ବୁଲୁଥିଲ
ମୃଗ ମୃଗୁଣୀଙ୍କର ସମ୍ବାଦ ଶୁଣିଲ ।
ସେହି ବନଜନକୁ ତୁମ୍ଭେ ଦୁଇଜଣ
କୈକେୟୀର କଥା କହିଲା ମୃଗୁଣୀ ପୁଣ ।
ସେ କଥା କହିଲେ ପ୍ରତେ ଯିବ ସହୀ
ହରଷ ବିରସ ବୁଝିବ ତାର ଦେହୀ ।
ଏତେ କହି ରାମ ଯେ ତାହାକୁ ଗାଳି ଦେଲେ
ଶୁଣିଣ ମହାବୀର ନାରାଚ ଘେନି ଚଳେ ।
ଉତ୍ତର ଦିଗକୁ ଯେ ଚଳିଲେ ସାତ ବୀର
ବିଚାରନ୍ତି ମନରେ ଯଶ ଯେ ଆମ୍ଭର ।
ଏଥୁ ଅନନ୍ତରେ ରାଜା ସୁଗ୍ରୀବର
ପାଶକୁ ଡକାଇଲା ଅଙ୍ଗଦ କୁମର ।
ଜମ୍ବେବ ହନୁମାନ ଗନ୍ଧମାରଦନ
ନଳ ନୀଳ ତାରାକ୍ଷ ଏମନ୍ତ ଅଷ୍ଟ ଜଣ ।
ଏମାନଙ୍କୁ ବୋଇଲା ଯେ ଗଉରବ କରି
ଦକ୍ଷିଣ ଦିଗେ ଯିବ ଏକମୁଖ କରି ।
ଶ୍ରୀରାମ ଘରଣୀ ଯେ ସୀତାକୁ ଖୋଜିବ
ମାସକେ ବାହୁଡ଼ି ବାର୍ତ୍ତା ତୁମ୍ଭେ ଆସି ଦେବ ।
ତେବେ ସେ କାର୍ଯ୍ୟ ଯେ ହୋଇବ ସିଦ୍ଧି
ଏତେ ବୋଲି ପ୍ରବୋଧ କଲେ ଗଜନିଧି ।
ମାସକରୁ ବଳି ଯେ ଦିନ ବେଶି ହେବ
ଆଜ୍ଞାଭ୍ରଷ୍ଟ ନ କରି ବେଗେ ଯେ ଆସିବ ।
ଶ୍ରୀରାମ ବୋଇଲେ ଏ ପାରିବେ କାର୍ଯ୍ୟ କରି
ବନ ପର୍ବତ ଲତା ପାତାଳ ଖୋଜି କରି ।
ଲଙ୍କା ବିଲଙ୍କା ସୁଲଙ୍କା ଯୋଡ଼ି ଲଙ୍କା
ଆଲଙ୍କା ଗଡ଼ମାନ ନ କରିବ ଶଙ୍କା ।
ସିନ୍ଧୁର ଭିତର ଅଟଇ ପାଞ୍ଚ ଗଡ଼
ଏମାନେ ଖୋଜି ପାରିଲେ ପାରନ୍ତି ସକଳ ।
ଏତେ ବୋଲିଣ ଯେ ହନୁକୁ ରାମ ଚାହିଁ
ବୋଇଲେ ମୋର ପାଶକୁ ଆସତୁ ବେଗ ହୋଇ
ଶୁଣିଣ ହନୁମନ୍ତ ରାମର ପାଶେ ଗଲା
କରଯୋଡ଼ି ଆଗରେ ଯାଇଣ ଉଭା ହେଲା ।
ପାଶରେ ବସାଇ ରାମ କହନ୍ତି ବିଶ୍ୱାସ
ଯାଅବାବୁ ବାର୍ତ୍ତା ଯେ ଶୀଘ୍ର ଘେନି ଆସ ।
ଦେଖିଲୁ ଅଙ୍ଗଦ ଯେ ତିନି ପକ୍ଷରେ ପୁଣ
ନଉ ସାଗର ସୈନ୍ୟ ସାଧିଲା ଏକା ଜାଣ ।
ଲକ୍ଷେ ମର୍କଟ ଭାଲୁ ରାଜା ସଙ୍ଗେ ଘେନି
ମଲ୍ଲ ମହାମଲ୍ଲ ଅକଳିତ ପୁଣି ।
ପଞ୍ଚାଶ ଯୂଥପତିଙ୍କୁ ସାଧିଣ ଅଣାଇଲା
ତେଣୁ ସେ ବାଳୀରାଜା ନାମ ଯେ ପାଇଲା ।

ଯାବୁ ଯେବେ ହନୁ ଅଙ୍ଗଦକୁ ବଳି
ବାଳୀର ଶତ ପ୍ରଶଂସା ତୋତେ କରି ।
ଜନକ ଦୁହିତାଙ୍କୁ ଠାବ ଯେବେ କରୁ
ତେବେ ତୋର କଥା ଅଟଇ ମହା ଗରୁ ।
ଜଳ ସ୍ଥଳ ପାତାଳରେ ଭେଟ ଯେବେ ପୁତ୍ର
ତେବେ ତୋର ନାମ ଜଗତେ ବିଖ୍ୟାତ ।
ସୀତାଙ୍କୁ ବାବୁରେ ନିଶ୍ଚୟ ଭେଟିବୁ
ଏ ମୋହ ଅବସ୍ଥା ଯେ ତାହାଙ୍କୁ କହିବୁ ।
ଭ୍ରାନ୍ତି କରି ବାବୁରେ କହୁ ଆନକୁ କଥା
ଯେ ଯେଉଁ ବାଳୀକିରେ ଲମ୍ଭାଇ ଥିବ ମଥା ।
ଶରଦ ଚନ୍ଦ୍ରମା ଜାଣି ମୁଖ ତା ବିକାଶଇ
ଅଧର ଡାଳିମ୍ବ ପ୍ରାୟେକ ଯେ ଦିଶଇ ।
କୁରଙ୍ଗ ନୟନ ଅଟେ ବଦନ ମୁକୁତା
ପାଦ ତଳେ ଅଳତା ଦିଶଇ ତାର ଲତା ।
କୁସୁମ ବିହୁନେ ଗଛା ଅସୁନ୍ଦର ଦିଶେ
ଚିକତା ବିହୁନେ ଅଙ୍ଗ ପ୍ରକାଶ ନଦିଶେ ।
ଅଣ୍ଡିରା କୋକିଳ ଯେହ୍ନେ ଦିଅଇ ସ୍ୱର ବାଣୀ
ତେମନ୍ତ ପ୍ରାୟ ଭାଷା କହଇ ସଙ୍ଗାତୁଣୀ ।
ମଝା ଗୋଟି ତାହାର ସିଂହକଟୀ ପ୍ରାୟେ
କୁଚ ବେନଦିଶଇ ସୁବର୍ଣ୍ଣ କୁମ୍ଭ ପ୍ରାୟେ ।
ସୁବର୍ଣ୍ଣ କାନ୍ତି ଯେ ଗଜ ମୁକ୍ତା ପ୍ରାଏ ଜ୍ୟୋତି
ଆଗ ଭାଗେ ଶରୀର ଦିଶଇ ଶୋଭାପନ୍ତି ।
ଉଲଟ କଦଳୀ ପ୍ରାୟେ ଜାଣି ଜାନୁ ଦୁଇ
ବୃକ୍ଷାଳ ତମ୍ବରୁ ଜିଣି ସାଦୃଶ୍ୟ ଦିଶଇ ।
ପ୍ରସନ୍ନ ବଦନ ଯେ ଅଳ୍ପ ହସ ହସ
ଦୁଇ ଶ୍ରବଣ ନିନ୍ଦେ ବାମଦେବର ପାଶ ।
ପଦ୍ମ ନାଡ ଜିଣି ଦିଶଇ ବାହୁ ବେଣୀ
ଅଳକାପନ୍ତି ପ୍ରାଏ ମୁଖ ତା ଦିଶେ ପୁଣି ।
ପୁଞ୍ଜ ପୁଞ୍ଜ ହୋଇଣ ଦିଶଇ ରୋମାବଳୀ
ଉଦର କୋମଳ ଯେ ପତ୍ର କି ଉଲୁଳି ।
ଯେତେ ଗୁଣ ବାବୁରେ କହିଲଇଁ ମୁହିଁ
ରାବଣେ ଭକତି ଯେବେ ନଥିବ ମୋ ପ୍ରିୟସହୀ
ତେବେ ଯେ ହନୁମନ୍ତ କହିବୁ ମନାଇଁ ।
ରାତ୍ର ଦିବସରେ ଜାଣିବୁ ତୁ ଗୁପ୍ତ
ଆଗହୁଁ ପ୍ରଘଟ ନ କରିବୁ କଦାଚିତ ।
ନିର୍ଦ୍ଦୋଷୀ ଦେଖିଲେ କହିବୁ ତୁ ବିଶ୍ୱାସ
ଭୋ ଦେବ ଶ୍ରୀରାମ କଲେକ ବନବାସ ।
ଚିତ୍ରକୂଟ ପର୍ବତେ ବରଷେ ଥିଲେ ରହି
ମନ୍ଦାକିନୀରେ କ୍ରୀଡ଼ା କରୁଥିଲେ ଯେ ତହିଁ ।
ଲକ୍ଷ୍ମଣକୁ ବସା ଜଗାଇ ବେନି ଜନ
କ୍ରୀଡ଼ା କଲେ ଯାଇ ନାଗେଶ୍ୱର ବନ ।
ନଦୀରେ ସ୍ନାହାନ ଯେ କଲେ ଚାନ୍ଦମୁହାଁ
ଓଦା ବସ୍ତ୍ର ପିନ୍ଧିଣ ବସିଲୁ ଚାନ୍ଦମୁହାଁ ।
ସେ ଧାତୁଣୀଳା ଯେ ପାଣିରେ ଉକୁଟିଲା
ସେଠାରୁ ଗେରୁ ଘୋରି ଶ୍ରୀରାମ ଚିତା କଲା ।
ଲଲାଟରେ ଲାଗନ୍ତେ ଦିଶିଲା ସେ ସୁନ୍ଦର
ଅରୁଣ ଉଦେ କି ଚନ୍ଦ୍ର ଉପର ।
ସେଠାରୁ ହାତ ଧରାଧରି ହୋଇ ଗଲେ
ତୁ ଯେ ମହାସତୀ ଦେଖିଲୁ କପିପଲେ ।
ତରିଣ ମହାସତୀ ରାମକୁ କୋଳ କଲୁ
ତୋ କପାଳେ ଶ୍ରୀରାମ ଶିର ଲାଗିଲା ତୁ ଜାଣିଲୁ
ସେ ଚିତା ଦେଖିଣ ହସିଲୁ ବୈଦେହୀ
ଶ୍ରୀରାମ କରତାଳି ମାରିଣ ହସଇ ।
ଏତେ କଥା କହିଲେ ପ୍ରତେ ଯିବ ଚାନ୍ଦମୁହିଁ
ପୂର୍ବେ ଯେ ତୋତେ ସୀତା ଦେଖି ନାହିଁ ।
ଚିତ୍ରକୂଟ ପର୍ବତରେ ମାଂସ ଶୁଖାଇଲା
କାକ ଚଣ୍ଡାଳ ଯେ ତହିଁକି ଝାମ୍ପ ଦେଲା ।
ଘଉଡ଼ି ଦିଅନ୍ତେ ବାଜିଲା ତାର ଅଣ୍ଟ
ଡେଣା ମାରି ଆବର ଯେ କାମୁଡ଼ି ଦେଲା ଓଷ୍ଠ
ଏ କଥା କହିଲେ ପ୍ରତେ ଯିବରେ ଚାନ୍ଦମୁହାଁ
ଏ କଥା ମାରୁତିରେ ନ ଜାଣନ୍ତି କେହି ।
ଏ କଥା କହିଲେ ପ୍ରତେ ଯିବ ସେହି ସତୀ
ଏ କଥା କେହି ଯେ ନଜାଣନ୍ତି ମାରୁତି ।
ଏ କଥା କହିଲେ ଜାନକୀ ଯିବ ପ୍ରତେ
ଏ ମୁଦୀ ଗୋଟି ନେଇ ଦେବୁ ତାର ହାତେ ।
ଏତେ ବୋଲି ଶ୍ରୀରାମ ଅଙ୍ଗୁଷ୍ଠିରୁ ମୁଦି କାଢ଼ି
ଶ୍ରୀରାମ ନାମ ଗୋଟି ମୁଦିରେ ଅଛି ଜଡ଼ି ।
ହନୁମନ୍ତର କରେ ସମର୍ପିଲେ ନେଇ
ଘେନିଲା ମାରୁତି ମୁଦି କରରେ ଲଗାଇ ।
ଶ୍ରୀରାମ ବୋଇଲେ ତୁ ଯେ ଲୟ କରିଥିବୁ
ସନ୍ଦେଶ ପାଇଲେ ମୁଦି ତାହାଙ୍କୁ ସମର୍ପିବୁ ।
ସେ ସତୀ ପ୍ରତେ ନ କଲେ ତୋତେ ପୁଣ
ବୋଲିବୁ ମଧୁଶଯ୍ୟା ଶୟନ ବେଳେ ଜାଣ ।
କୁଳଦୀପ ଛୁଇଁଣ ଆମ୍ଭେ କରିଛୁ ନିୟମ
ଶ୍ରୀରାମ ଠାକୁର ତୁମ୍ଭେ ଦୁହେଁ ନୁହଁ ଭିନ୍ନ ।
ରାମର ଏକ ପତ୍ନୀ ତୁମ୍ଭର ଏକ ପତି
ଏମନ୍ତ ନିୟମ ଯେ କରିଛୁ ତୁହି ସତୀ ।
ଆହୁରି କଥାଏ ଯେ ତାହାଙ୍କୁ କହିବ
ମୃଗ ବିନୋଦେ ଗଲେ ଯେବେ ରାମ ତବ ।
ମୃଗ ଘେନି ବନରୁ ଅଇଲେ ରାମ ତୋର
ମଢ଼ିଆରେ ପ୍ରବେଶ ହୁଅନ୍ତେ ଶ୍ରମ ଘୋର ।

ତୃଷାରେ ବୋଇଲି ଜଳ ମୋତେ ଦିଅ
ହସ୍ତେ ଜଳ ମୋ ନ ଦେଲୁ ଜନକର ଝିଅ ।
କ୍ରୋଧରେ ଶ୍ରୀରାମଙ୍କୁ ବଚନ ନ କହିଲ
କେଉଁ ସୁନ୍ଦରୀ ପୁରକୁ ଆଜ ଯାଇ ଥିଲ ।
ଏ କଥା କହିଲେ ଯିବ ସେ ପରତେ
ଏତେ ଗୋପନ କଥା କହିଲି ଯେ ତୋତେ
ଯାଅ ତୁ ଶୁଭ ଯୋଗେ ମୋହର କାର୍ଯ୍ୟ କର
ତୁମ୍ଭେମାନେ ଆସିବାଯାଏ ରଖିବି ଶରୀର ।
ମାସକ ଭିତରେ ବାରତା ଦେବୁ ଆଣି
ଅଙ୍ଗଦକୁ ରାଇଣ ବୋଇଲେ ରଘୁମଣି ।
ତୁ ରାଜା କୁମର ତ ଜାଣୁରେ ସର୍ବ କଥା
ଯେମନ୍ତେ ଫେଡ଼ ବାବୁ ମୋହର ମନ ବ୍ୟଥା ।
ଧର୍ମରେ ଜ୍ୟେଷ୍ଠପୁତ୍ର ଅଟୁରେ ତୁ ମୋର
ଜାନକୀ ଠାବ ଯାଇ ଚଞ୍ଚଳରେ କର ।
ଜମ୍ବେବକୁ ଚାହିଁଣ ଶ୍ରୀରାମ ଆଜ୍ଞା ଦେଲେ
ତୁମ୍ଭେ ମନ୍ତ୍ରୀବର ଯୁଗ ଯୁଗାନ୍ତରେ ।
ମୋହର କାର୍ଯ୍ୟ କରହେ ବେଗେ ସିଦ୍ଧି
ଶୁଣିଣ ଜମ୍ବେବ ମନରେ ସୁଖନିଧି ।
ଶୁଭ ଯୋଗରେ ଯାଅ ବୋଇଲେ ରଘୁବୀର
ବାଟରେ ଭଗବତୀ ସାହା ଯେ ତୁମ୍ଭର ।
ଶୁଣିଣ ହନୁ ଅଙ୍ଗଦ ମୂଳରେ ଅଷ୍ଟଜଣ
ଶ୍ରୀରାମ ଚରଣେ ନମିଲେ ସେହୁ ପୁଣ ।
ଦକ୍ଷିଣ ଦିଗକୁ ବେଗେ ସେ ଚଳିଗଲେ
ଚାରିଦିଗକୁ ଦୂତ ରାମ ପେଶି ଦେଲେ ।
ଆଶ୍ୱିନ ଶୁକ୍ଳ ଦଶମୀର ଦିନ
ଶୁକ୍ରଙ୍କର ବେଳେ ଦୂତ କଲେକ ଗମନ ।
ଦେଖିଣ ଶ୍ରୀରାମ ଯେ ଆନନ୍ଦ ମନ ହେଲେ
ଦୂତ ଯିବାରୁ ରାମ ମନରେ ବିଚାରିଲେ ।
ବର୍ଷକ ଆଜଦିନ ଅଟଇ ଯେ ସାର
ରଣକୁ ଅନୁକୂଳ ଜାଣ ଯେ ଆଜ ମୋର ।
ଦିଗଶୂଳ ନୁହଇ ମଙ୍ଗଳ ଶୁଭଦିନ
ଶୁକ୍ରଙ୍କର କେବେ ଦୂତ ହୋଇଲେ ପରସ୍ଥାନ ।
ଆପଣେ ରଣସ୍ଥଳୀ ଅନୁକୂଳ କଲା
ସେ ଦିନର ରାମ ଅପ୍ରାଜିତ ବୋଲି ହେଲା ।
ପାର୍ବତୀ ଆଗରେ ଏହା ଶଙ୍କର କହିଲେ
ଶୁଣିଣ ପାର୍ବତୀ ଯେ ସନ୍ତୋଷ ହୋଇଲେ ।
ପାର୍ବତୀ ବୋଇଲେ ଏବେ ଶୁଣ ଦେବ ହର
କଥାଏ ପଚାରିବି କହ ମୋ ଆଗର ।
ମାଲ୍ୟବନ୍ତ ଠାରୁ ଯେ ବାରାଣସୀ ଯାଏ
ମେଦିନୀରୁ ଚଉଠେ କପି ଯେ ରହେ ।
ବନଗିରି ଲତା ଯେ ପୁଷ୍କରିଣୀ ପୁଣ
ସବୁଠାରେ ମର୍କଟ ଭାଲୁ ଯେ ପୁଣ ଜାଣ ।

ସମସ୍ତଙ୍କ ଶିରେ କ୍ଷୁଧା ତୃଷା ଅଛି
ଅକଳିତ ବଳଯେ କଳନା ନାହିଁ କିଛି ।
ପଞ୍ଚାଶ ସେନାପତି ଲକ୍ଷେ ଯେ ନରେଶ
ଚାରିଲକ୍ଷ ମଲ୍ଲ ମହାମଲ୍ଲ ସେ ବିଶେଷ ।
କାଶୀକି ମାଲ୍ୟବନ ତିନିଶତ ଯୋଜନ
ଏତେ ପଥ ପୂରି ଅଛନ୍ତି କପି ସୈନ୍ୟ ।
ବାସୁଦେବ ଜାତ ଶ୍ରୀରାମ ରୂପେ ପୁଣ
କମଳା ଜାତ ହେଲେ ଜାନକୀ ରୂପେ ଜାଣ ।
ଦେବ ଅଂଶେ କପି ଭାଲୁ ହୋଇଲେ ଜନମ
ରାବଣ ଶତ୍ରୁକୁ କରିବେ ନିବାରଣ ।
ସେଥିର ସକାଶେ ଦେବତା ବିଚାରିଲେ
ଦେବକୂଟେ ଉପାୟ କିସ କଲେ ।
ଈଶ୍ୱର ବୋଇଲେ ଶୁଣଗୋ ଭଗବତୀ
ଦେବତାମାନେ ସକଳ ବିଚାର କରନ୍ତି ।
ବୋଇଲେ ବାସୁଦେବ ଆମ୍ଭର ପାଇଁ ଦୁଃଖୀ
ଶୟନ ତେଜିଣ ଯେ ହୋଇଲେ ନିର୍ମାକ୍ଷୀ ।
ଏବେ ଲୀଳା ଭାଙ୍ଗିଣ ଦଶରଥ ଘରଗଲା
ସେଥିର ସକାଶୁ ଶ୍ରୀରାମ ଛଳ କଲା ।
ବାନର ଭାଲୁ ଆଣି କରିଅଛି ଠୁଳ
ଚାରିଦିଗକୁ ଦୂତ ପେଷିଛି ଆଦିମୂଳ ।
ଆମ୍ଭେ ଯେବେ ସୈନ୍ୟବଳକୁ ନଦେବା ଆହାର
ବାସୁଦେବ ବିଚାରିବେ ଦେବତା ରିପୁ ମୋର ।
ଏମନ୍ତ ବିଚାରି ଯେ କାମଧେନୁ ଆଣି
ଲଙ୍କାଠାରୁ ବାଣାରାଣି ପର୍ଯ୍ୟନ୍ତ ଯେ ପୁଣି ।
ଦୋହନ କରିଣ ପୃଥ୍ୱୀ ରସେ ପଡ଼ିଲେ
ତେଣୁ ସେ ସୁଖରସେ ଲତା ଫଳ କଲେ ।
ତେଣୁ ସେ ଅସରନ୍ତି ଫଳ ଯେ ମୂଳ ପୁଣ
ଯେତେ ସରଇ ତେତେ ଫଳଇ ସେ ଜାଣ ।
ବଜ୍ରଧର ଅମୃତ ସିଞ୍ଚିଲେ ଏତେ ସ୍ଥାନ
ଚନ୍ଦ୍ର ବରଷିଲେ ମହୁ ଯେ ଆଣିଣ ।
ମେଘମାନେ ବୃଷ୍ଟି କଲେକ ହିମ ଜଳ
ତେବେ ଫଳମୂଳ ତରୁ ହେଲେ ଯେ ବହଳ ।
ପତ୍ର ଫଳ ମୂଳ ଯେ ତେଣୁ ସ୍ୱାଦ ହେଲା
ସାତପୁଳା ଖାଇଲେ ପୁରଇ ପେଟ ଭଲା ।
ଏତେ ଉପାୟରେ ଅସୁର ଯିବ ନାଶ
ତେବେ ସ୍ୱର୍ଗ ଦେବେ ଚିନ୍ତାରୁ ହେବ ଉଶ୍ୱାସ ।
ପୃଥିବୀ ଦେବୀ ପୁରି ଅଚିନ୍ତା ହୋଇବ
ମୁନିଜନମାନେ ପୁଣି ହେବେ ଦିବ୍ୟଭାବ ।
ଶୁଣିଣ ପାର୍ବତୀ ଯେ ସନ୍ତୋଷ ଭାବ ହେଲେ
ଦୂତ ଯିବାର ଚାରିଦିଗେ ପଚାରିଲେ ।

ଦୂତଙ୍କୁ ବରଗି ଦଶରଥର ତନୟୀ
ମାଲ୍ୟବନ୍ତ ପର୍ବତରେ କଟକ କରି ରହି ।
ଯେ ଯାହା ଦିଗକୁ ଗଲେ ଚାରମାନେ ।
ପୂର୍ବଦିଗକୁ ଚାର ଯେ ଗମିଲେ ସର୍ବସ୍ଥାନେ ।
ଦେଶ ଘୋଷ ଲତା ବନ ଯେ କନ୍ଦର
ବିମ୍ବା ବିମ୍ବର ଯେ ରଜାର ନବର ।
ନୀଳଗିରି ଠାରୁ ହିମାଳୟ ପର୍ଯ୍ୟନ୍ତ
ବିନ୍ଧ୍ୟ ସ୍ଥାନମାନ ଯେ ସେହୁ ତୁରିତ ।
ମନ୍ତ୍ରୀମାନଙ୍କର ଘର ପାତ୍ରଙ୍କ ଉଆସ
ନଗର ପାଟଣା ଯେ ଖୋଜନ୍ତି ଦେଶ ଦେଶ ।
ଗଙ୍ଗାସାଗର ତୁଠ ଠାରେ କପିଳ ଋଷି ଦେଖି
ପଚାରିଲେ ଋଷି ଯେ କହିଲେ ସଞ୍ଚପି ।
ଶ୍ରୀରାମ ଘରଣୀକି ରାବଣ ଘେନିଗଲା
ସମୁଦ୍ର ଭିତରେ ଲଙ୍କା ଗଡ଼ରେ ରଖିଲା ।
ଏ ସ୍ଥାନରେ ସତୀ ନାହିଁ ଜଳରେ ଅଛି ରହି
ସିନ୍ଧୁ ଡେଇଁ ଲଙ୍କାକୁ ଗଲେ ଭେଟିବଇଁ ।
ଶୁଣିଣ ସେଠାରୁ ଦୂତ ଚଳିଗଲେ
କାଉଁରୀ ଦେଶରେ ପ୍ରବେଶ ଯାଇ ହେଲେ ।
କାମଚଣ୍ଡୀଙ୍କୁ ପଚାରିଲେ ସତୀଙ୍କ ବାରତା
ଶୁଣିଣ କାମଚଣ୍ଡୀ କହିଲେ ସର୍ବକଥା ।
ବୋଇଲେ ଦେବତାଏ ହୋଇଲେ କପିରୂପ
ଆମ୍ଭମାନଙ୍କୁ ଦୁର୍ଗା କହିଲା ସମସ୍ତ ।
ବୋଇଲା ସକଳ ଦେବୀ ସଜ ହୋଇଥାଅ
ବାସେଳି ସଙ୍ଗତେ ସୁବଳ ଗିରିକୁ ଯାଅ ।
ଶ୍ରୀରାମଙ୍କ ଯୁଦ୍ଧରେ ତୁମେ ଉପକାର କର
କପି ଭାଲୁ ଜିଆଁଇଣ ଅସୁର ଭକ୍ଷକର ।
ଆମ୍ଭେ ସଜ ହେଲୁ ପୁଣି ଯିବାପାଇଁ
ତୁମ୍ଭେମାନେ ଲେଉଟି ରାମକୁ କହ ଯାଇ ।
ଶୁଣିଣ ଦୃବିନ୍ଦ ପନଶୀଳ ଯେ ଧୂମ୍ରାକ୍ଷ
ଶଉରୀ ସେନାପତିକୁ ଘେନି ଲେଉଟିଲେ ସେତ ।
ସେଠାରୁ ଚାରି ଦୂତ ଘେନିଣ ଅଇଲେ
ମାସେ ଦୁଇ ଦିନରେ ପ୍ରବେଶ ଆସି ହେଲେ ।
ସକଳ କଥା କହିଲେ ଶ୍ରୀରାମଙ୍କ ଆଗ
ବୋଇଲେ ଖୋଜି ନ ପାଇଲୁ ସେହି ଦିଗ ।
ଅଙ୍ଗ ବଙ୍ଗ କଳିଙ୍ଗ ସହର ଖୋଜିଲୁ
ଗିରିଜା ମଣ୍ଡଳ ଉଦେଗିରିକୁ ଦେଖିଲୁ ।
କାଉଁରୀ କାମଚଣ୍ଡୀଙ୍କୁ ଦେଖିଲୁ ଯାଇ
ସେ ବୋଇଲେ ଜାନକୀ ଲଙ୍କାଗଡ଼େ ରହି ।
ସକଳ ଦେବତା ଯେ ବାନର ଭାଲୁ ଗଲେ
ଆମ୍ଭେମାନେ ଯାଉଛୁ ଲଙ୍କାଗଡ଼ ଭଲେ ।
ଶ୍ରୀରାମ ଯୁଦ୍ଧ କରିବେ ଅସୁର ନିଧନେ
ଯୁଦ୍ଧେ ଭାଲୁ ବାନର ମରିବେ ରଣାଙ୍ଗନେ ।
ସେମାନଙ୍କୁ ଦେବତା ପ୍ରତ୍ୟହ ଜୀଆଇଁ
ଆମ୍ଭେ କେବଳ ଦେହ ସଙ୍ଖ କରିବଇଁ ।
ଏମନ୍ତ ଶୁଣିଣ ସେଠାରୁ ଚଳିଗଲୁ
କପିଳ ଋଷି ଦେଖି ସମସ୍ତ ପଚାରିଲୁ ।
ସେ ବୋଇଲେ ଲଙ୍କାର ରାବଣ ଘେନିଗଲା
ଜଳ ଭିତରେ ନେଇ ଗଡରେ ଥୋଇଲା ।
ବୈତରଣୀ ଚିତ୍ରୋତ୍ପଳା ଆବର ବ୍ରାହ୍ମଣୀ
କୁଞ୍ଜଗଳ ଉଡ଼ଙ୍ଗ ଚେମଣ୍ଡୀ ବାଳି ପୁଣି ।
ମଙ୍ଗଳା ରାମଚଣ୍ଡୀ କାଳିକା ସେ ବାସେଳୀ
ଏମାନେ କହିଲେ ରାବଣ ନେଲା ବୋଲି ।
କାହିଁରେ ନ ପାଇଲୁ ସୀତାର ସନ୍ଦେଶ
ଫେରିକରି ଅଇଲୁ ଶୁଣ ହେ ରଘୁଶିଷ୍ୟ ।
କହିଣ ଦୂତମାନେ ନମସ୍କାର କଲେ
ସେ ଚାରି ସେନାପତି ସୈନ୍ୟକୁ ଚଳିଗଲେ ।
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ
ଉତ୍ତର ଦିଗେ ଗଲେ ସାତ ଯେ ସେନାପତି ।
ଦେଶ ନବର ଯେ ପାଟଣା ଖୋଜିଲେ
ରାଜାଙ୍କ ନବର ଆଦି ସମସ୍ତ ଦେଖିଲେ ।
ହେମଗିରି ପର୍ଯ୍ୟନ୍ତ ପଶିଲେ ପେଲିକରି
ଦେଖିଲୁ ସେ ଲୋକମାନେ ଲୁହା ସାଞ୍ଚପରି ।
ପଚାରନ୍ତେ ସେ ବୋଇଲେ ସେ କଥା ନ ଜାଣୁ
ଶୁଣି ଜମ୍ୱନଦୀ କୂଳରେ ଆସି ହେଲୁ ।
ବିଘ୍ନନାଶିନୀକି ଦେଖି ଦୂତ ପଚାରିଲେ
ଶ୍ରୀରାମ ନାରୀ ସୀତୟା ଦେଖିଛକି ବୋଇଲେ
ସେ ବୋଇଲେ ଲଙ୍କାଗଡ଼ରେ ଅଛି ରହି
ସେଠାରୁ ସାତଜଣ ଶୀଘ୍ର ଚଳିଯାଇ ।
ମୁକ୍ତେଶ୍ୱର ଲିଙ୍ଗ ପାଶରେ ପ୍ରବେଶ ହେଲେ କ
ସେଠାରୁ ଅଳକାପୁର ଦିଶଇ ଜକଜକ ।
ମୁକ୍ତେଶ୍ୱର ଲିଙ୍ଗକୁ ଦର୍ଶନ ସର୍ବେ କଲେ
ଶ୍ରୀରାମ ଘରଣୀ କେଉଁ ଠାବରେ ପଚାରିଲେ ।
ମହେଶ୍ୱର ବୋଇଲେ ଲଙ୍କାର ରାବଣ
ଶ୍ରୀରାମ ଘରଣୀ ନେଲା ସେହୁ ପୁଣ ।
ଶୁଣି ଦୂତମାନେ ସେଠାରୁ ଚଳିଗଲେ
ବଦିରୀ ନାରାୟଣ ଛାମୁରେ ମିଳିଲେ ।
ନାରାୟଣ ରୂପକୁ କଲେ ସେ ଦର୍ଶନ
ପଚାରିଲେ ରାମନାରୀ କେଣେ ଗଲା ପୁଣ ।
ନାରାୟଣ ବୋଇଲେ ଅସୁର ମାରିଗଲେ
ଲଙ୍କାଗଡ଼େ ଠାକୁରାଣୀ ମନକୁ ବିଜେ କଲେ ।
ଲେଉଟି ରାମ ପାଶେ ଚଳିଲେ ପୁଣ ଯାଇ
ମାସେ ପାଞ୍ଚ ଦିନରେ ସେ ଫେରିଲଇଁ ।

ନ ପାଇଣ ସୀତାଙ୍କୁ ଅନେକ ରାଜ୍ୟ ଖୋଜି
ରାମର ଛାମୁରେ କହିଲେ ଆସି ବୁଝି ।
ବୋଇଲେ ଶୁଣ ତୁମ୍ଭେ ଧନୁକ ଚୁଡ଼ାମଣି
ଖୋଜିଲୁ ହେ ତବ ଅଯୋଧ୍ୟା ଠାକୁରାଣୀ ।
ମଥୁରା ବୃନ୍ଦାବନ ଅଷ୍ଟରୀ କାଶୀପୁର
ହସ୍ତିନା ବଙ୍ଗଳା ପୁଣି ଭରତପୁର ।
ହିମାଳୟ ପର୍ଯ୍ୟନ୍ତେ ଖୋଜିକରି ଗଲୁ
ଜମ୍ବୁବତୀ ନଦୀରେ ବିଘ୍ନନାଶିନୀ ଦେଖିଲୁ ।
ସେ ବୋଇଲେ ଲଙ୍କାକୁ ସୀତା ଯେ ଗଲେ ପୁଣ
ଦେବ କାର୍ଯ୍ୟ ନିମନ୍ତେ ଚଳିଲା ସତୀ ପୁଣ ।
ବଦରୀ ନାରାୟଣ ଛାମୁରେ ମିଳିଲୁ
ରାବଣ ନେଲା ବୋଲି ସେଠାରୁ ଶୁଣିଲୁ ।
ପଚାରି ମୁଞ୍ଜଶୀଳକୁ ଗଲୁ ଚଳି
ପର୍ବତ ଶିଖରୀ ଉଠିଲୁ ଯାଇ କରି ।
ସୁବର୍ଣ୍ଣମୟୀ ସେ ଯେ ଅଟଇ ମହାଗିରି
ତହିଁରେ ବିଜେ କରିଛନ୍ତି ତ୍ରିପୁରାରି ।
ସେ ଦେବ ଆମ୍ଭଙ୍କୁ ସେ ପ୍ରସନ୍ନ ହୋଇଲେହିଁ
ଏ ଦିଗେ ଜାନକୀ ନାହିଁ ସେ ବୋଲଇ ।
ଏ ଦେବ ଆଶ୍ରମେ ଯେ ଜନ ମନୁଷ୍ୟ ନାହିଁ
ନ ଜାଣଇ ଏଥକୁ ଅଇଲୁ କିମ୍ପାଇ ।
ଯେ ହେତୁ ହେମଗିରି ବଡ଼ ସେ ସନ୍ଦେହ
ଶ୍ରୀରାମ ଦୂତ ନୋହିଲେ ଛାଡ଼ନ୍ତ ଆଜ ଦେହ ।
ଫେରିଯାଅ ଏଥି ନ ରହ ତୁମ୍ଭେ କ୍ଷଣ
ଜାଣିଲେ କୋପ ଯେ କରିବେ ଦେବଗଣ ।
ସେ ଦେବଙ୍କୁ ଆମ୍ଭେ ପେଲିଣ ପଚାରିଲୁ
ଆରପାଖେ କିସ ଅଛି ବୋଲିଣ ବୋଇଲୁ ।
ସେ ବୋଇଲେ ଆରପାଖେ ଦେବଙ୍କ ଆଶ୍ରମ
ନର ବାନର କେହି ନାହାନ୍ତି ସେଠି ପୁଣ ।
ତାଙ୍କଠାରୁ ଶୁଣି ପର୍ବତୁ ଅଇଲୁ
ଅପୂର୍ବ କଥାଏ ଦେବ ଗିରିରେ ଦେଖିଲୁ ।
ଜାମୁଗଛ ଗୋଟି ଯେ ଅଛଇ ବଡ଼ ଉଚ୍ଚ
ଫଳ ପତ୍ର ବହୁତ ଅଟଇ ବଡ଼ ସେ ତ ।
ସେ ଗଛରେ ପୁଣି ଯେତେ ଫଳ ଫଳି
ଲୋକେ ନାହାନ୍ତି ଯେ କେ ଅବା ତାକୁ ତୋଳି ।
ଆପଣା ଇଚ୍ଛାରେ ପାଚି ସେ ଝଡ଼ଇ
ସେ ଗଛତଳେ ପଡ଼ି ଗଦା ହୋଇଥାଇ ।
ସେଥିରୁ ରସଧାତୁ ବହଇ ବହୁତ
ନଦୀ ଏକ ସେ ରସରୁ ହୋଇଛି ପ୍ରକଟ ।
ଜମ୍ବୁନଦୀ ବୋଲି ତାହାକୁ ଦେବେ କହି
ଫଳମାନଙ୍କ ରସ ଆସଇ ସେଠୁ ବହି ।
ସେ ରସ ସବୁ ଅଟେ ଜମ୍ବୁବତୀ ସୁନା
ବିଚାରିଲୁ ଏଥିରୁ ଖଣ୍ଡିଏ ନେବା କିନା ।
ଏତେ ବୋଲି ସେ ନଦୀରେ ପଶିବା ମନକଲୁ
ସ୍ୱର୍ଗତ ଦେଖି ତହୁଁ ବାହୁଡ଼ି ଅଛଲୁ ।
ସେ ଅହି ବୋଇଲାରେ ପାମର କପି ଛାର
ଦେବଙ୍କର ପଦାର୍ଥକୁ କିମ୍ପା ଲୋଭ କର ।
ଶୁଦ୍ଧ ସୁବର୍ଣ୍ଣ ଏ ଯେ ଦେବତା ମାନଙ୍କର
ଦେବତାଏ ସୁପ୍ରସନ୍ନେ ଅଙ୍ଗେ କରି ହାର ।
ତୁମ୍ଭେ କି ଭାଜନରେ ପାମର ଛାର କପି
ତୁମ୍ଭଙ୍କୁ ଏ ସ୍ଥାନକୁ କେ ପଠିଆଇ ଅଛି ।
ମଞ୍ଚପୁରେ ତୁମ୍ଭେ ଜନ୍ମତ ହୋଇଲ
ଏତେ ବୋଲି ଅହୀ ଆମ୍ଭଙ୍କୁ ବୋଲେ ଚଳ ।
ବୋଇଲା ମଞ୍ଚଲୋକେ ଏ ସ୍ଥାନେ ଗମନ
ଆମ୍ଭଙ୍କୁ ବୋଇଲା ତୁମ୍ଭେ ଦଣ୍ଡେ ନ ରହ ପୁଣ ।
ଏତେ ବୋଲି ଅହୀ ପ୍ରସ୍ଥାନ କଲା ଜାଣ
ପ୍ରସନ୍ନରେ ଅହୀ ସକଳ ଜାଣେ ପୁଣ ।
ଆମ୍ଭଙ୍କୁ ବୋଇଲା ତୁମ୍ଭେ ଶ୍ରୀରାମଚନ୍ଦ୍ର ଦୂତ
ଏ ବେଳକ ଦୟା କଲି ତୁମ୍ଭଙ୍କୁ ମୁଁ ତ ।
ଏତେ ବୋଲି ସର୍ପ ବେନିଙ୍କୁ ମାଳ ଦେଲା
ଶ୍ରୀରାମଙ୍କ ଛାମୁରେ ଦେବରେ ବୋଇଲା ।
ଶ୍ରୀରାମ ବୋଇଲେ ଅହୀ କେମନ୍ତେ ଦିଶେ ପୁଣ
କେତେ ଯୁଣେ ମଞ୍ଚନଦୀକି କଥା ପ୍ରମାଣ ।
ଶୁଣିଣ ସେନାପତି ବୋଲନ୍ତି ବଚନ
ଆମ୍ଭେ ତାଙ୍କୁ ପଚାରିଲୁ କାହିଁରେ ତୁମ୍ଭ ସ୍ଥାନ ।
ସେ ଆମ୍ଭଙ୍କୁ କହିଲା ଯେ ଉଚିତ ବାଣୀ
ବୋଇଲା ମୋ ଘର ପାତାଳ ପୁରେ ପୁଣି ।
ଯେଉଁ ଜାମୁଗଛ ଗିରିଶିଖେ ଦେଖିଲେ
ସୁକନ୍ୟର ଗଛ ଦେବତା ରୋପିଥିଲେ ।
ତାର ଫଳ ରସ ଆସେ ଯେତେ ବହି
ତେଣୁ ଜମ୍ବୁବତୀ ନଦୀ ଯେ ଏହା କହି ।
ଏ ନଦୀ ଗୋଟାବାବୁ ଅଟେରେ ସୁବର୍ଣ୍ଣ
ପୂର୍ବରୁ ଲାଗିଅଛି ପଶ୍ଚିମ ଦିଗ ଜାଣ ।
ହେମଗିରିକି ଏ ଯେ ହୋଇଅଛି ବଢ଼
ଜମ୍ବୁଦ୍ୱୀପରୁ ଅର୍ଦ୍ଧେ ହେଉଅଛି ବେଢ଼ ।
ତେଣୁ ଲକ୍ଷ ଯେ ଜନ ଯାଏ ନଦୀଠାରୁ
ଦେବତାଏ ଲୀଳା କରନ୍ତି ସେ ଠାବରୁ ।
ଯେ ଯାହା ସ୍ଥାନମାନ କରିଣଛନ୍ତି ପୁଣ
ଅସୁର ଭୟ ହେଲେ ଛାଡ଼ନ୍ତି ସ୍ୱର୍ଗ ଜାଣ ।
ସକଳ ଦ୍ରବ୍ୟ ପୁଣି ସଞ୍ଚିଣ ଥାଆନ୍ତି
ଏଠାରେ ଲୁଚିବାକୁ ଦେବତା ଆସିଥାନ୍ତି ।
ଏ ପୁର ନାମ ଯେ ଧର୍ମ ସ୍ୱର୍ଗ କହି
ଜନ ମାନବ ଅସୁର ଏଥିରେ କେହି ନାହିଁ ।
ଜମ୍ବୁନଦୀ ଗୋଟି ଯେ ଘୋଟିଛି ଲକ୍ଷ ଯୁଣ
ଏ ନଦୀକି ଜଗିଥାଇ ମୁହିଁ ଜାଣ ।

ଏ ହିମଗିରି ଯେ ଅଧା ସ୍ୱର୍ଗକୁ ବେଢ଼ି
ହେମର ପୁଡାପରେ ଗଲେଣି ସର୍ବେ ସଢ଼ି ।
ହିମଗିରି ଯେ ମେରୁରୁ ଉଚ୍ଚ ଅଟେ ପୁଣ
ଚଉଦପ୍ରକାର ଏହାର ଗତି ଜାଣ ।
ଜମ୍ବୁନଦୀ ଯେ ସୁବର୍ଣ୍ଣ ତୁମ୍ଭେ ଜାଣ
ଚଉଦପୁରକୁ ଅଳଙ୍କାର ପୁଣ ।
ଏମନ୍ତ ବଚନ ଯେ ଆମ୍ଭକୁ ସେ କହି
ବେଗେ ଯାଅ ବୋଲି ଆମ୍ଭଙ୍କୁ ସେ ବୋଲଇ ।
ଏ ବେଳ ଦୟା କଲି ଯାଅରେ ମର୍କଟ
ବାହୁଡ଼ି ଯାଅ ଦୁତେ ଜାନକୀ ନାହିଁ ଏଥ ।
ଶୁଣିକି ଭୟ ଯେ ପାଇଲୁ ରଘୁବଂଶି
ସେ ନଦୀକୁ ଅଇଲୁ ଇଚ୍ଛା ନ କରି କିଛି ।
ସେଠାରୁ ଚଳିଯାଇ ଗୟାରେ ପ୍ରବେଶ
ଗୟାକୁ ଯାଇ ହସ୍ତିନା ଖୋଜିଲୁ ବିଶେଷ ।
କାଶୀ ପ୍ରୟାଗ ଚିତ୍ରପୁଟ ବୃନ୍ଦାବନ ଖୋଜି
ନଅ ସହସ୍ର ରାଜ୍ୟ ଯେ ଖୋଜିଲୁ ମନେ ହେଜି ।
ଘୋଡ଼ାଘାଟୀ ରଙ୍ଗପୁରୀ ସିନ୍ଧୁର ହରଦ୍ୱାର
କାଞ୍ଚନ କାଳିନ୍ଦୀ ବୈଦ୍ୟନାଥ ଆବର ।
ନ ପାଇ ଫେରିଲୁ ଆମ୍ଭେ ଯେ ସାତଜଣ
ଦିନେ ବିଶ୍ରାମ ଆମ୍ଭେ ନ କରିଲୁ ପୁଣ ।
ବୋଇଲେ ଶ୍ରୀରାମ ଯେ ତୁମ୍ଭର ବଳ ରଖ
ନ ପାଇଲ ଖୋଜିଲ ସେଥିରେ କିବା ଦୁଃଖ ।
ଏଥୁ ଅନନ୍ତରେ ଶୁଣଗୋ ଭଗବତୀ
ପଶ୍ଚିମ ଦିଗକୁ ଚାରି ଦୂତ ଯାଇଛନ୍ତି ।
ଦେଶ ଘୋଷ ପାଟଣା ନବର ଉଆସ
ଗିରି ଲତା ବନ ଯେ ଖୋଜିଲେ ବିଶେଷ ।
ଏଗାର ଗୋଟି ପୁର ଖୋଜିକରି ଗଲେ
ଜେନାମଣି ପାଟଣାରେ ପ୍ରବେଶ ହୋଇଲେ ।
ସେ ପୁରେ ଘୋଟିଛନ୍ତି ଅସୁର ବଳ ପୁଣ
ପଶିଲେ ଚାରି ଦୂତ ନ ମାନି ଦୈତ୍ୟଗଣ ।
ଯେଉଁ ଦୈତ୍ୟ କହେ ତାଙ୍କୁ ଦିଅନ୍ତି ଯେ ମାଡ଼
ଜେନାମଣି ପାଟଣାରେ ଚହଳ ବଡ଼ ଭିଡ଼ ।
ଜୟସିଂହ ଆଗେ କହିଲେ ଦୂତ ଯାଇ
ବୋଇଲେ ଚାରି ବାନର ତୋ ପୁରେ ମିଳଇ ।
ମନାକଲେ ପେଲି ଯେ ପଶଇ ତୋର ପୁରେ
କହିଲେ ଉପ୍ରୋଧ ନ କରି ମାରନ୍ତି ରେ ।
ଶୁଣି ଜୟସିଂହ ବେଗେ ଚଳିଗଲା
ବାନରଙ୍କ ଆଗେ ପ୍ରବେଶ ଯାଇ ହେଲା ।
ବୋଇଲେ କେଉଁ ଦେଶୁ ଅଇଲେ କପିବୀର
କି କାରଣେ ଗୋଳ ଯେ କର ଏହି ପୁର ।
ଶତବାଳୀ ବୋଇଲା ଶୁଣରେ ଅସୁର
ଶ୍ରୀରାମ ଘରଣୀକୁ ଘେନିଗଲା ଚୋର ।
କେଉଁଠାରେ ଅଛି ଖୋଜୁ ଯେ ଆମ୍ଭେ ଆସି
ଏପୁର ଲୋଡ଼ିବାକୁ ଆମ୍ଭେ ଆସିଛୁ ବିଶେଷି ।
ତେଣୁ ତୋର ସୈନ୍ୟ ଯେ କରନ୍ତି କଳିଗୋଳ
ଆମ୍ଭକୁ ମାରିବାକୁ କଲେ ଯେ ବିଚାର ।
ଜୟସିଂହ କହିଲେ ସେ ଚୋର ଲଙ୍କାରେ ଅଛି ।
ବିଶ୍ରବା ଋଷିର ସେହୁ ବସି ।
ଚାରିଦୂତ ପଚାରିଲେ କେମନ୍ତେ ଜଣାଗଲା
ଜୟସିଂହ ବୋଇଲେ ମୁଁ ଲଙ୍କା ଗଲି ପରା ।
ରାବଣ ଆଣିଅଛି ସେ ପୁରେ ଜାଣିଲି
ସେ ସତୀ ଅଗ୍ନୀରୂପ ବୋଲି ଯେ ଶୁଣିଲି ।
ଯାଅ ଫେରି ଏ ପୁରୁ ନାହିଁରେ ରାମନାରୀ
ଜଳର ଭିତରେ ଅଛି ଜନକ କୁମାରୀ ।
ଇଚ୍ଛା ଯେବେ ନ ପାଏ ଖୋଜ ମୋର ପୁର
ବ୍ରହ୍ମାଣ୍ଡ ଠାକୁର ଯେ ଅଟନ୍ତି ଚକ୍ରଧର ।
ଚାରି ରାବଣ ମାରିବାକୁ ଜାତ ହେଲେ
ଏମନ୍ତ ବୋଲି ଯହୁଁ ବଚନ କହିଲେ ।
ଜାଣିଣ ଚାରିବୀର ଖୋଜିଲେ ସର୍ବସ୍ଥାନ
କାହିଁ ନ ଦେଖିଲେ ଜାନକୀ ବର୍ଣ୍ଣ ଚିହ୍ନ ।
ନ ଦେଖି ଜାନକୀ ଫେରି ସେଠାରୁ ଗଲେ
ହିରଣ୍ୟ ଗର୍ଭରେ ଯାଇ ପ୍ରବେଶ ହୋଇଲେ ।
ହିରଣ୍ୟ ଗର୍ଭ ଦ୍ୱାରେ ଭେଟିଲେ ଅସୁର
ବୋଇଲେ ଦ୍ୱାର ଛାଡ଼ ଯିବୁରେ ଭିତର ।
ଶୁଣିଣ ଅସୁର ଛାଡ଼ିଣ ଦେଲେ ଦ୍ୱାର
ପଶିଲେ ଚାରିବୀର ହିରଣ୍ୟ ଗର୍ଭର ।
ତକ୍ଷଣେ ଚାରିବୀର ରୂପ ଭିନ୍ନ ହେଲେ
ହିରଣ୍ୟ ଗର୍ଭ ଭିତରେ ଯାଇଣ ମିଳିଲେ ।
ବାରକୋଟି ସ୍ତିରୀ ଯେ ଦେଖିଲେ ସେ ଗର୍ଭରେ
ସମସ୍ତେ ପାର୍ବତୀ ପ୍ରାୟ ଦିଶନ୍ତି ରୂପରେ ।
ନଅକୋଟି ବୁଢ଼ା ଜନେ ହିରଣ୍ୟ ଗର୍ଭରେ
ସୂର୍ଯ୍ୟ ସୁନା ନ ହୁଅଇ ସେ ପୁରରେ ।
ଦେଖିଣ ଚାରିଦୂତ ଫେରିଣ ସେ ଅଇଲେ
ବଳିପୁତ୍ର ବେଲାଳ ବସିଛି ସେ ଦେଖିଲେ ।
ବେଲାବଳି ବୋଇଲା ଶୁଣରେ ରାମଦୂତ
ଏ ପୂରେ ଜାନକୀ ନାହିଁ ଗଲା ଲଙ୍କା ସେତ ।
ତାର କୁଳ ଗୋତ୍ର ରାମ କରିବେ ନିଶ୍ଚେ ହତ
ଚାରି ରାବଣ ମାରିବେ ବୀର ରଘୁନାଥ ।
ଶୁଣି ଚାରିଦୂତ ସେ ପୁରୁ ବେଗେ ଆସି
ବାନରରୂପ ଧରି ରାମ ପାଶେ ପ୍ରବେଶି ।
ଦର୍ଶନ କରିଣ ସେ ଚରଣେ ନମିଲେ
ନ ଦେଖିଲୁ ତୋର ସୀତା ବାରତା ଭାଷିଲେ ।
ଯମୁନା ନଦୀ କୂଳକୁ ଆମ୍ଭେଗଲୁ
ହେମଗିରି ଦେଖିଣ ପଶ୍ଚିମରେ ମିଳିଲୁ ।

ତହିଁପରେ ଦେବ ହେ ପଶିଲୁ ଘୋରବନ
ହେଙ୍ଗୁଳା ଦେବୀକୁ ଦେଖିଲୁ ଆମ୍ଭେ ଜାଣ ।
ପଶ୍ଚିମ ସମୁଦ୍ର କୂଳେ ମିଳିଲୁ ଆମ୍ଭେ ଯାଇ
ତେଣିକି ଦେଶ ଘୋଷ ଘର ଆଉ ନାହିଁ ।
ପୁରୁଷେ ଦେଖିଲ ଯେ ସାଗରକୂଳେ ଅଛି
ଆମ୍ଭେ ଚାରିଜଣ ବାରତା ତାକୁ ପୁଛି ।
ସେ ବୋଇଲା ଏଠାରେ ନାହିଁ ଯେ ବୈଦେହୀ
ଶ୍ରୀକୃଷ୍ଣ ବନ ରାମ ସ୍ଥାନ ଏ ଅଟଇ ।
ଶ୍ରୀରାମ ଅବତାର ଉତ୍ତାରୁ ଷୋଳଯୁଗେ
ମଥୁରାରେ ଶ୍ରୀକୃଷ୍ଣ ଜନ୍ମ ହେବେ ଭାବେ ।
କଂସ ଡରେ ଯାଇଣ ଗୋପରେ ବଢ଼ିବେ ।
ଗୋପାଳ ନାରୀଙ୍କ ସଙ୍ଗେ ରତିରଙ୍ଗ କରିବେ ।
ଏମନ୍ତ ବଚନ ଯେ ସେ ପୁରୁଷ କହି
ଏ ସ୍ଥାନେ ଜାନକୀ ନାହାନ୍ତି ବୋଲଇ ।
ସେ ଅବଶ୍ୟ ଏ ପୁର ଭୋଗ ଯେ କରିବେ
କୁଶସ୍ଥଳୀ ଦ୍ୱାରକା ଏ ହାରା ନାମ ଦେବେ ।
ମୁହିଁ ସେ ପ୍ରଭୁର ଗୟା ତୀର୍ଥବାସୀ
ନାରାୟଣ ଏ ପୁର ମୋତେ ଜଗାଇଛି ।
ତାହାଠାରୁ ଶୁଣି ଆମ୍ଭେ ଫେରିଣ ଅଇଲୁ
ନଗ୍ର ପୁର ପାଟଣା ବାରକୋଟି ଯେ ବୁଲିଲୁ ।
କୈଳାସ ସ୍ଥାନେ ନ ଦେଖିଲୁ ଜାନକୀ ତୋହରି
ଅସ୍ଥିର ହୋଇଣ ବୁଲିଲୁ ବନଗିରି ।
ଜେନାମଣି ପାଟଣାରେ ପ୍ରବେଶ ହୋଇଲୁ
ଅସୁରଙ୍କୁ ନ ମାନିଣ ସେ ପୁରେ ପଶିଲୁ ।
ଜୟସିଂହ ନାମ ଅସୁର ନୃମଣି
ସେ ବୋଇଲା ଲଙ୍କଗଡେ ଦେଖିଲ ସୀତାପୁଣି ।
ଶ୍ରୀରାମ ଘରଣୀ ଯେ ଦଶରଥଙ୍କର ବୋହୂ
ଲଙ୍କଗଡ଼େ ପ୍ରବେଶ କରିଅଛି ସେହୁ ।
ଅଗ୍ନିର ରୂପ ଧରି ଅଶୋକ ବନେ ଅଛି
ଲଙ୍କାଗଡ଼ରେ ଦୈତ୍ୟ ଦେଖିଣ ଆସିଅଛି ।
କେ ବୋଲଇ ରାରଣ ମରିବାକୁ ଆଣି
କେ ବୋଲେ ସୈନ୍ୟବଳ ମରିବଟି ପୁଣି ।
କେ ବୋଲଇ ଲଙ୍କଗଡ଼ ଭସ୍ମ ଏ କରିବ
କେ ବୋଲେ ରାବଣର ଉତ୍ପାତ ସରିବ ।
ଏମନ୍ତ ବିଚାର କରନ୍ତି ସର୍ବେ ତହିଁ
ଚାରିଦିନ ତଳେ ମୁଁ ତ ଶୁଣି ଆସିଲଇଁ ।
ଶୁଣିଣ ଆମ୍ଭେମାନେ ତାହାକୁ ପଚାରିଲୁ
କୂଳକୁ କେତେ ଛଡ଼ା ବୋଲିଣ ବୋଇଲୁ ।
ଜୟସିଂହ ବୋଇଲା କୂଳକୁ ଶତେଯୂଣ
ଶୁଣିଣ ସେଠାରୁ ଅଇଲୁ ବେଗ ପୁଣ ।
ହିରଣ୍ୟଗର୍ଭ ଦ୍ୱାରେ ହୋଇଲୁ ପ୍ରବେଶ
ଦ୍ୱାରୀମାନେ ବୋଇଲେ ଭିତରେ ନ ପଶ ।
ତାହାକୁ ନ ମାନି ଭିତରେ ପଶିଲୁ
ବାନର ରୂପ ତେଜି ଅସୁର ରୂପ ହେଲୁ ।
ବାରକୋଟି ଅସୁରୁଣୀ ଗର୍ଭରେ ଦେଖିଲୁ
ଶିବଙ୍କ ଘରଣୀ ପ୍ରାୟେ ତାହାଙ୍କୁ ମଣିଲୁ ।
ବଳିର ତନୟ ଯେ ଅଟଇ ବେଲାବଳୀ
ସେ ବୋଇଲା ଏ ଗର୍ଭରୁ ଯାଆରେ ବାହାରି ।
ସ୍ଥଳରେ ନାହିଁ ଜାନକୀ ଜଳରେ ଅଛି ଯାଇ
ଶୁଣିଣ ସେଠାରୁ ଅଇଲୁ ବେଗ ହୋଇ ।
ଦ୍ୱାରରେ ମିଳନ୍ତେ ନିଜ ରୂପ ଧରି
ସେଠାରୁ ଚାରିଜଣ ଅଇଲୁ ବାହାରି ।
କନ୍ଦି ବିକନ୍ଦି ଯେ ନଗ୍ର ପରିମଳ
ପାଗକର ଉଆସ ରାଜାର ନବର ।
କେଉଁସ୍ଥାନେ ନ ଦେଖିଲୁ ଖୋଜିଣ ତୋନାରୀ
ପଶ୍ଚିମ ଦିଗଯାକ ବୁଲିଲୁ ଚାପଧାରୀ ।
ଶତେଯୁଣ ପର୍ଯ୍ୟନ୍ତ ଗର୍ଭର ଚାରିପାଶ
ନର ବାନର ଜୀବଜନ୍ତୁ ନ ଦେଖିଲୁ ମନୁଷ୍ୟ ।
ସେ ସ୍ଥାନୁ ସବୁଙ୍କୁ ଧରି ଖାଇଲେ ଅସୁର
ଫଳ ମୂଳ ନ ପାଇ ସେ ବନର ଭିତର ।
ସାତ ଦିନ ଉପବାସେ ସେ ପୁରୁ ଅଇଲୁ
ସେ ସ୍ଥାନମାନ ଖୋଜି ନ ପାଇଲୁ ।
ଅନେକ ଦେଶ ଘୋଷ ଖୋଜି ପୁଣ
କୌଣସି ସ୍ଥାନେ ଜାନକୀ ନ ଦେଖିଲି ପୁଣ ।
ସେଠାରୁ ଧାଡ଼ି ଗିରିରେ ପ୍ରବେଶ ହୋଇଲୁ
ସେ ବନ ଭିତରେ ଆମ୍ଭେ ବହୁତ ଖୋଜିଲୁ ।
ସାତ ଧାଡ଼ି ହୋଇଣ ଲାଗିଛି ପର୍ବତ
ଅଶୀଯୁଣ ମୋଟ ଲୁହା ସିଙ୍କୁଳି ଛନ୍ଦାଛନ୍ଦିତ ।
ସେଥିପରେ ଆମ୍ଭେ ଉଠିଲୁ ଯାଇକରି
ସିଙ୍କୁଳି ଉଠି ଦେଖିଲୁ ସେହିପୁରୀ ।
କନ୍ୟା ଏକ ବସିଅଛି ସର୍ବାଙ୍ଗ ସୁନ୍ଦରୀ
ବୈଦୁର୍ଯ୍ୟ ମଣ୍ଡପରେ ଅଛି ବିଜେକରି ।
ଦାସୀ ପରିବାରୀ ଯେ ଅଛନ୍ତି ଅନେକ
ସମସ୍ତେ ସୁନ୍ଦର ଦିଶନ୍ତି ସେ ରଘୁନାୟକ ।
ସାତଯୂଣ ପର୍ଯ୍ୟନ୍ତ ନୀଳବର୍ଣ୍ଣ ଘର
ଗୋଟିଏ ପୁରୁଷ ଯେ ନାହାନ୍ତି ସେ ପୁର ।
ଗାୟତ୍ରୀ ସାବିତ୍ରୀ ପାର୍ବତୀ ଯେ କମଳା
ଏମାନଙ୍କୁ ଜିଣିଣ ଦିଶଇ ସେହୁ ତୋରା ।
ଉପରେ ଥାଇ ଆମ୍ଭେ ତଳକୁ ଦୃଷ୍ଟି ଦେଲୁ
ଚାରିଜଣ ଉଠିଣ ତା ପାଶେ ମିଳିଲୁ ।
ଦେଖିଣ ଗୌରବ କଲାକ ସେହୁ ନାରୀ
ବୋଇଲା ଏ ପୁରେ ନାହିଁ ଜନକକୁମାରୀ ।
ନାଗବଳ ମାନଙ୍କର ଆମ୍ଭେ ଯେ ଘରଣୀ
ଚନ୍ଦ୍ର ଉଇଁଲେ ସ୍ୱାମୀ ଆମ୍ଭର ଆସେ ପୁଣି ।

ସୂର୍ଯ୍ୟ ଥିବାଯାଏ ପାତାଳପୁରେ ଥାନ୍ତି
ଶ୍ରୀରାମ ଦୂତ ତୁମ୍ଭେ ଯାଅରେ ତଡ଼ତି ।
ନାଶବଳ ଆସିଲେ କରିବେ ପୁଣି ଧ୍ୱଂସ
ଏତେବୋଲି ଆମ୍ଭଙ୍କୁ ଦେଲେ ସୁଧାରସ ।
ସେ ସ୍ଥାନରୁ ଆମ୍ଭେ ଶୀଘ୍ର ହୋଇ ଆସି
ନ ଦେଖିଲୁ ଜାନକୀ ଶୁଣହେ ସୂର୍ଯ୍ୟବଂଶୀ ।
ବାହୁଡ଼ି ଅଇଲୁ ଯେ ନ ଦେଖିଲୁ ସୀତା
ଶୁଣିଣ ଯେ ଅଧୈର୍ଯ୍ୟ ହୋଇଲେ ଜଗନ୍ନିତା ।
ବୋଇଲେ ତିନି ଦିଗ ଦୂତ ଯେ ଆସିଲେ
ବିନ୍ଧ୍ୟ ସ୍ଥାନମାନ ଦେଖିଣ ଖୋଜିଲେ ।
ସମସ୍ତେ କହିଲେ ଯେ ରାବଣ ନେଲା ବୋଲି
ସ୍ଥଳରେ ନାହିଁ ଜାନକୀ ଜଳରେ ଅଛି ବୋଲି ।
କଥାର ତଥ୍ୟକରି ଜାଣିଲି ମୁଁ ଏବେ
ଜୟସିଂହ ଦେଖିଲା ଲଙ୍କାଗଡ଼ରେ ଯେବେ ।
ସେ କଥା ସବୁଙ୍କର ମୁଖରେ ଶୁଭେ ଧ୍ୱନି
ଦେଖି ଅଇଲା ବୋଲି ଅସୁରୀ କହେ ପୁଣି ।
ରାବଣ ଯେ ଜାନକୀ ରୂପରେ ନେଲା
ଜାନକୀ ଲଙ୍କାଗଡ଼େ କି ରୂପେ ଭୟ ଦେଲା ।
ସେ କଥା ତ ଜଣା ନ ଗଲା ଆମ୍ଭଙ୍କୁ
କଞ୍ଚନବୀର ଯେ କହିଲା ରାମଙ୍କୁ ।
ବୋଇଲା ଜୟସିଂହଙ୍କୁ ଆମ୍ଭେ ପଚାରିଲୁ
ଜାନକୀକୁ କି ରୂପରେ ଦେଖାକଲୁ ।
ସେ ଅସୁର ବୋଇଲା ଅଗ୍ନି ରୂପତାର
ଅଗ୍ନିରେ ସ୍ନାନ କରେ ପକ୍ଷେକ ଏକଥର ।
ଅଗ୍ନି ସ୍ନାନ ଦେଖି ତାର ସମସ୍ତେ ଭୟ କଲେ
ଲଙ୍କାଗଡ଼େ ନରନାରୀ ଭାଳନ୍ତି ଯେଝାପୁରେ ।
ଶୁଣିଣ ଶ୍ରୀରାମ ଯେ ବୋଇଲେ କଥା ସତ
ମୋ ସଙ୍ଗେ ଥିଲା ଦିନେ ଅଗ୍ନିରେ ତ ନିୟତ ।
କୁନ୍ଦ କୁମୁଦେ ଚାହିଁଣ ଶ୍ରୀରାମ ଆଜ୍ଞା ଦେଲେ
ତୁମ୍ଭର ସୈନ୍ୟକୁ ଚଳା ବୋଲିଣ ବୋଇଲେ ।
ଶୁଣି ଚାରିସେନା ନମସ୍କାର କଲେ
ଯେ ଯାହା ସୈନ୍ୟ ନେଇ ବେଗେ ଚଳିଗଲେ ।
ଏଥୁଅନନ୍ତରେ ଶୁଣଗୋ ଶାକମ୍ଭରୀ
ଜାନକୀ କଥା ଶୁଣି ଶ୍ରୀରାମ ମନେ ଘାରି ।
ସୁଗ୍ରୀବକି ଘେନି ରାମ କରନ୍ତି ବିଚାର
କିମ୍ପାଇ ନ ଅଇଲେ ଦକ୍ଷିଣ ଦିଗ ଚାର ।
ଏଥୁ ଅନନ୍ତରେ ଶୁଣଗୋ ପାର୍ବତୀ
ତିନି ଦିଗେ ଦୂତ ପ୍ରବେଶ ହେଲେଟି ।
ଦକ୍ଷିଣ ଦିଗ ଦୂତ ଖୋଜିବା ପାଇଁ ଯାଏ
ମୋହର ମନରେ ପଡ଼ିଲା ସେ କଥାଏ ।
ଜାନକୀ ଲଙ୍କାଗଡ଼ ଭିତରେ ରହିଲା
ଅଶୋକ ବନରେ ବିଶ୍ରାମ ଯେ କଲା ।

ଆଠମାସ ହେଲା ଲଙ୍କାରେ ସେ ରହି
କେମନ୍ତ ବିଚାର କଲା ସେ ବଇଦେହୀ ।
ସହଜେ ପକ୍ଷକେ ଅଗ୍ନି ସ୍ନାନ ତାର
ଅଗ୍ନିସ୍ନାନ କରିବାର ହେବ ଷୋଳଥର ।
ତେଣୁ ସେ ଲଙ୍କାଗଡ଼ ସହଜେ କମ୍ପୁଥିବ
ମନ କେବଳ ନିରସ ଜାନକୀର ଭାବ ।
ଈଶ୍ୱର ବୋଇଲେ ତୁମ୍ଭେ ଶୁଣ ଭଗମତୀ
ଲଙ୍କାଗଡ଼ରେ ରହିଲେ ଯାଇ ଦେବୀ ସତୀ ।
ଅନୁକ୍ଷଣ ଚିନ୍ତା ଶ୍ରୀରାମଠାରେ ହୋଇ
ନୟନୁ ଲୋତକଧାରା ଆବିଶ୍ରାନ୍ତ ବହି ।
ଧାତାକୁ ସୁମରଣା କରଇ ସେ ଜାନକୀ
କର୍ମରେ ମୋର ଏହା ଲେଖିଥିଲା ଧାତାକି ।
ଏମନ୍ତ ଚିନ୍ତାରେ ଯେ ଦେବୀ ନାହିଁ ସୁଖ
ଅମୃତ ଖାଇ ଦେବୀ ପେଟରେ ନାହିଁ ଭୋକ ।
ଅଗ୍ନି ପବନ ଦେବତା ଦୁହେଁ ପାଖେ ଥାନ୍ତି
ଶାନ୍ତି ଶାନ୍ତି ଅନୁକ୍ଷଣେ ତୁଣ୍ଡରେ ଭାଷନ୍ତି ।
ପବନ ଦେବ ବୋଲେ କିଛି ଯେ ନ ବିଚାର
ଅଗ୍ନି ବୋଲେ ଦେବୀ ଛଅମାସ ତୁ ସମ୍ଭାଳ ।
ଏ ରାବଣଟି ମରିବ ଛଅମାସେ
ଶ୍ରୀରାମ ଆସିବେଟି ଆଉ ପାଞ୍ଚମାସେ ।
ବାନର ଭାଲୁ ସୈନ୍ୟ କରଇ ରାମ ଠୁଳ
ଚାରିଦିଗକୁ ଦୂତ ବରଗେ ରଘୁବୀର ।
ତିନି ଦିଗ ଦୂତ ଫେରିଣ ପୁଣି ଆସେ
ଦକ୍ଷିଣ ଦିଗ ଦୂତ ସେହୁ ବେଗେ ଆସେ ।
ଚାରିମାସେ ଚାର ଆସି ପ୍ରବେଶ ହୋଇବେ
ତୋତେ ଠାବ କରିଣ ଲଙ୍କା ଯେ ପୋଡ଼ିବେ ।
ବାର୍ତ୍ତା ପାଇଲେ ରାମ ଆସିବେ ଲଙ୍କାକୁ
ପୁତ୍ରନାତି ରାବଣର ମାରି ସମସ୍ତଙ୍କୁ ।
ବନ୍ଧୁ କୁଟୁମ୍ବ ଯେ ରାବଣ ସଙ୍ଗେ ଯିବେ
ପରିବାର ହୋଇ ଯେ ଗୋଟିଏ ନ ରହିବେ ।
ଦେବକାର୍ଯ୍ୟ ହୋଇବ ମରିବେ ଦୁଷ୍ଟ ପୁଣ
ଧରଣୀ ଉଶ୍ୱାସ କରି ତୋତେ ନେବେ ଜାଣ ।
ତୋହର ସଙ୍ଗରେ ଆମ୍ଭେ ଅଛୁ ବେନି ଦେବ
ଅଗ୍ନି ପବନ ଆମ୍ଭେ ଯେ ଦୁଇ ଅଙ୍ଗ ।
ଯେତେବେଳେ ତୋତେ ବଳାତ୍କାର କରି
ତେତେବେଳେ ତହିଁ ଦେବୁ ଯେ ଭସ୍ମକରି ।
ପବନ ଦେବତା ଅଛଇ ମୋ ସଙ୍ଗରେ
କହିଲେ ଉଡ଼ାଇ ଦେବ ଯେ ଲଙ୍କାପୁରେ ।
ପବନର ସୁତ ଯେ ଅଟଇ ହନୁମନ୍ତ
ଏ ଲଙ୍କାଗଡ଼କୁ ଆସିବ ଆଗ ତ ।

ଅସୁର ମାରିଣ ସେ ଲଙ୍କା ପୋଡ଼ି ଦେବ
ତୋଠାରୁ ବାର୍ତ୍ତା ନେଇ ଶ୍ରୀରାମରେ ଦେବ ।
ଶୁଣିଣ ସନ୍ତୋଷ ଯେ ହୋଇଲେ ବଇଦେହୀ
ଏଥୁ ଅନନ୍ତରେ ଶୁଣଗୋ ମହାମାଈ ।
ନାରଦ ପ୍ରବେଶ ହୋଇଲେ ଲଙ୍କାଗଡ଼େ
ରାବଣର ନବରେ ଅନ୍ତଃପୁର ଭିତରେ ।
ଦେଖିଣ ମନ୍ଦୋଦରୀ ଚରଣେ ଓଳଗିଲା
ସିଂହାସନ ଉପରେ ମୁନିଙ୍କ ବସାଇଲା ।
ମନ୍ଦୋଦରୀ ସଙ୍ଗରେ ରାଣୀହଂସ ନ ରହି
ନିଶ୍ଚଳ କରି କଥା କହ ହେ ମୁନି ତୁହି ।
ଶ୍ରୀରାମ ଯେ କେତେ ଦିନେ ଲଙ୍କାକୁ ଆସିବେ
ଜାନକୀ ଏ ପୁରୀରୁ କେତେ ଦିନେ ଯିବେ ।
ବିଭୀଷଣ କେତେ ଦିନେ ହୋଇବ ରାଜନ
ଏଥିର କଥା ମୋତେ କହ ବୁଝାଇଣ ।
ନାରଦ ବୋଇଲେ ରହିଲା ଛ ମାସ
ଆସନ୍ତା ବୈଶାଖେ ରାବଣ ହେବ ନାଶ ।
ଦଶଗ୍ରୀବ ମଲାଦିନ ବିଭୀଷଣ ରାଜା
ସୈନ୍ୟବଳ ସଜ କରନ୍ତି ରାମରାଜା ।
ବାଳୀକି ମାରିଣ ସୁଗ୍ରୀକି ରାଜା କଲେ
ଚାରି ବଣରୁ ଭାଲୁ ଯେ ବାନର ଅଣାଇଲେ ।
ଖୋଜିବାକୁ ଚାରିଦିଗକୁ ଗଲେ ଦୂତ
ତିନିଦିଗ ଖୋଜି ପକାଇଲେ ଦୂତ ।
ଦକ୍ଷିଣ ଦିଗକୁ ଆସେ ଅଙ୍ଗଦ ହନୁମନ୍ତ
ଅଷ୍ଟ ସେନାପତି ଅଛନ୍ତି ସଙ୍ଗରେତ ।
ଲଙ୍କା ଗଡ଼କୁ ହନୁମନ୍ତ ଯେ ଆସିବ
ସୀତା ଠାବ କରି ଅସୁର ସେ ମାରିବ ।
ଲଙ୍କା ପୋଡ଼ି ଦେଇଣ ଯିବ ଏ ଗଡ଼ରୁ
ଶୁଣି ଶ୍ରୀରାମ ହନୁମନ୍ତ ଲକ୍ଷ୍ମଣ ହକାରୁ ।
ସମୁଦ୍ରରେ ତେବେ ବନ୍ଧ ବାନ୍ଧିବେ ରଘୁନାଥ
ଏମନ୍ତ ବଚନ ଯେ କହିଲେ ତପୋବନ୍ତ ।
ଏତେ ବୋଲି ନାରଦ ଅନ୍ତର୍ଦ୍ଧାନ ହେଲେ
ବିଭୀଷଣ ମନ୍ଦୋଦରୀ ଡ଼କାଇ ଆଣିଲେ ।
ବୋଇଲେ ସାନୁଜ ଶୁଣ ମୋର ବଚନ ଏବେ
ନାରଦ ରୂପୀ ଯେ ଆସିଥିଲେ ଭାବେ ।
ବୋଇଲେ ଛଅମାସେ ମରିବ ରାବଣ
ସେହିଦିନୁ ରାଜା ହେବ ବିଭୀଷଣ ।
ଏତେ କହି ପୁଣ ବୋଇଲେକ ଦେବ
ବାଳିକି ମାରି ରାମ ସୁଗ୍ରୀ ରାଜା ହେବ ।
ସୁଗ୍ରୀ ରାଜା ହେବାରୁ ଥାଟ ସଜ କଲେ
ସୀତା ଠାବ କରିବାକୁ ଦୂତ ବରଗିଲେ ।
ଏ ଲଙ୍କା ଗଡ଼କୁ ହନୁମନ୍ତ ଯେ ଆସିବ
ସୀତାଙ୍କୁ ଠାବ କରି ବାରତା ନେଇ ଦେବ ।
ତେବେ ରାମ ଲକ୍ଷ୍ମଣ ଆସିବେ ଲଙ୍କାପୁର
ଏତେ କହି ନାରଦ ଗଲେ ସ୍ୱର୍ଗପୁର ।
ଶୁଣିଲେ ବିଭୀଷଣ ମନ୍ଦୋଦରୀ କହି
ଗୁପ୍ତକଥା ଏହୁ ନ ଜାଣିବେ କେହି ।
ମନ୍ଦୋଦରୀକୁ ବିଭୀଷଣ ପ୍ରବୋଧ କରିଗଲେ
ରାବଣ ଆଗରେ ବିଧାତା ଯେ ମିଳିଲେ ।
ଦେଖିଣ ରାବଣ ଯେ ନମସ୍କାର କଲା
ବୋଇଲା ଦେବ ଯେ ଶୁଣିମା ହେଉ ପରା ।
ଛଶୋଇବା ସୀମସ୍ଥାନ ମୋହର ରାତ୍ରି ପୁଣ
କାଳ ଫାଶ ଧରିଣ ଉଭା ଯେ ଚାରିଜଣ ।
ପଚାରିଲ କହୁଛି ବିଶ୍ରବାର ବତ୍ସ
ତୋର କାଳ ପୁରିଲା ଯିବ୍ରେ ଯମପାଶ ।
ଦେଖ କାଳଫାଶ ଧରିଛୁ ଆମ୍ଭେ କରେ
ବାନ୍ଧିଣ ନେବୁ ତୋତେ ସଞ୍ଜିବନୀ ପୁରେ ।
ରଙ୍ଗ ପୁଷ୍ପ ରଙ୍ଗ ଅଶ୍ୱ ରଙ୍ଗ ରଥପୁଣ
ମାସେ ହେଲା ସ୍ୱପ୍ନ ଦେଖୁଛି ମୁହିଁ ଜାଣ ।
ଶୋଇଲା ବେଳେ ଯେ ଦକ୍ଷିଣ ମୁଣ୍ଡ କରେ
ଉଠିଲା ବେଳେ ମୋର ମୌଳି ଉତ୍ତରେ ।
ଶୁଣିଣ ବେଦବର କହିଲେ ତାକୁ ବାଣୀ
ସୀତା ଆଣିଲା ଦିନୁ କାଳ ଯେ ଅଟେ ପୁଣି ।
ସୀତାକୁ ବଳକୃତ୍ୟ ନ କରିବୁରେ
ଜାନକୀ କ୍ରୋଧ କଲେ ଭସ୍ମ ହେବୁ ତୁରେ ।
ପୁରୁଷ ହତ୍ୟା ନ କରିବ ଅଛଇ ଦୟାକରି
ଚିତ୍ରଦେଖ ଯାଇରେ ଦଶଶିରୀ ।
ଏତେ କହି ବେଦବର ସେଠାରୁ ଚଳିଗଲେ
ସଭା ମଧ୍ୟରେ ଯାଇଣ ବିଜେକଲେ ।
ରାବଣ ଉଠିଣ ବେଗେ ଚଳିଗଲା
ଜଗତୀ ଉପରେ ଯାଇଣ ବସିଲା ।
ଶୁଣିଣ ପାର୍ବତୀ ଯେ ମନେ ତୋଷ ହେଲେ
ଦକ୍ଷିଣ ଦିଗ ଦୂତ କଥାକ କହହେ ବୋଇଲେ ।
ଏଥୁ ଅନନ୍ତରେ ଯେ ଦକ୍ଷିଣ ଦିଗ ଦୂତ
ପଶିଲେ ଘୋର ବନେ ବିପୁନ୍ୟ ପର୍ବତ ।
ଅବିରତେ ସୀତାଙ୍କୁ ଖୋଜିଣ ଯେ ତହିଁ
ଭୋଜନ ଶୟନରେ ତାଙ୍କର ଚିନ୍ତା ନାହିଁ ।
ନଗ୍ର ପୁର ପାଟଣା ଯେ ଦେଶ ଘୋଷ ସୀମା
ଖୋଜନ୍ତି ଲୋଡ଼ନ୍ତି ଯେ ନ କରନ୍ତି ଉଣା ।
ବନ ଗିରି ପର୍ବତ ଲୋଡ଼ି ସେ ଦେଖନ୍ତି
ଝାଡ଼ ବାଡ଼ ଅଲଗା ଲୋଡ଼ିଣ ଦେଖନ୍ତି ।
ଯାନ୍ତେଣ ବେଦବର ଏକର ଆଖିର
ବିକଟ ରୂପ ତାର ଦିଶଇ ଭୟଙ୍କର ।
ଅଷ୍ଟ ସେନାପତିଙ୍କି ଦେଖିଣ ଝାମ୍ପିଲା
କ୍ଷୁଧାର ବିକଳେ ଖାଇବାକୁ ମନ କଲା ।

ଯାଇଣ ହନୁମନ୍ତ ଧରିଲା ତାର ବାଳ
ବିଧାଏ ମାଇଲା ବାଳୀର ଦୁଲାଳ ।
ଜମ୍ୱେବ ଘୋସରାଇ ଥୋକାଏ ଦୂର ଗଲା
ତାରାକ୍ଷ ବୀର ଯାଇଣ କହୁଣୀଏ ମାଇଲା ।
ଗନ୍ଧମାର୍ଦ୍ଦନ ସୁଷେଣ ଜଣ ତିନି
ମାରନ୍ତେ ଅସୁରକୁ ହାରନ୍ତେ ପ୍ରାଣ ପୁଣି ।
ତକ୍ଷଣେ ସ୍ୱର୍ଗରୁ ବିମାନ ଅଇଲା
ଦିବ୍ୟରୂପ ଧରି ଅସୁର ବିଜେ କଲା ।
ମାନ୍ୟଧର୍ମ କରିବାରୁ ରଥରୁ ଚଳିଗଲା
ଗନ୍ଧର୍ବଙ୍କ ମେଳରେ ସ୍ୱର୍ଗରେ ରହିଲା ।
ଅଷ୍ଟସେନା ଦୈତ୍ୟମାରି ସେଠାରୁ ଚଳିଗଲେ
କୁଳହ ଗିରୀପରେ ଜାଇଣ ମିଳିଲେ ।
ବୁଲିଣ ବନଘୋରେ ଖୋଜନ୍ତି ଚଉକତି
କେଉଁଠାରେ ନ ଦେଖିଲେ ଜନକ ଦୁହିତୀ ।
ପର୍ବତରୁ ଓହ୍ଲାଇଲେ ବିସ୍ମୟମୁଖ ହୋଇ
ବିମ୍ୱର ଦେଖିଲେ ପାତାଳଭେଦ ତହିଁ ।
ସେଠାରେ ଅଷ୍ଟସେନା ବିଚାର କଲେ ବସି
ଜମ୍ୱେବ ମୁଖ ଚାହିଁ ବୋଲନ୍ତି ସର୍ବେ ହସି ।
ବୁଝହେ ମନ୍ତ୍ରୀବର ଏ କେବଣ ବେଭାର
ଅତି ବିସ୍ତାର ଯେ ଦିଶଇ ଗଭୀର ।
ଋକ୍ଷକପି ଭାବିଲେ ଏଥିରେ ଥିବେ ସୀତା
ଗୁପ୍ତେ ଥବା ରଖିଥିବ ଇନ୍ଦ୍ରଜିତ ପିତା ।
ସୁଗ୍ରୀବର ପୁତୁରା ଅଙ୍ଗଦ ବୋଇଲା
ଧାତା ଏ ବିମ୍ୱର ଭେଟ କରାଇଲା ।
ଚାଲ ସମସ୍ତେ ପଶିବା କିଛି ନ ବିଚାର
ଅଙ୍ଗଦ ହନୁମନ୍ତ ଜମ୍ୱେବ ଆଗୁଁ ସାର ।
ସାତ ସେନାପତି ତାଙ୍କରେ ସଙ୍ଗେ ଚଳି
ଏକୁ ଆରେକ ଯେ ଭିତରେ ପଶେ ପେଲି ।
ଅଷ୍ଟସେନା ସେଥିରେ ଧରାଧରି ହୋଇ
ଯୋଗୀଜନ ପର୍ଯ୍ୟନ୍ତ କିଛି ନ ଦିଶଇ ।
ସେଠାରୁ ଯାଇ ଦେଖିଲେ ସୁବର୍ଣ୍ଣ ନବର
ଅଷ୍ଟ ରତ୍ନ ତହିଁ ଖଞ୍ଜା ସବୁ ଘର ସାର ।
ମର୍କତର ଚାଳ ସୁବର୍ଣ୍ଣର କଳସ
ପୋହଳାର ଖମ୍ୱ ଯେ ଘେରିଛି ଚାରିପାଶ ।
ବିଚିତ୍ର ଚିତ୍ର ଯେ ପିତୁଳା ପନ୍ତି ପନ୍ତି
ଦେଖିଣ ଅଷ୍ଟସେନା ବିଚାର କରନ୍ତି ।
କେବଣ ଦେବତାର ଅଟଇ ଏହି ପୁର
ଜାନକୀ କି ଏଥିରେ ଲୁଚାଏ ଦୈତ୍ୟବୀର ।
ଏମନ୍ତ ବିଚାରି ସେଠାରୁ ଚଳିଗଲେ
ଥୋକାଏ ଦୂର ଯାଇ ପୋଖରୀରେ ଦେଖିଲେ ।
ଚାରିପାଶେ ପାବଛୁ ଲୀଳାରେ ଅଛି କରି
ଦେଖିଣ ରାମଦୂତ ମନରେ ବିଚାରି ।
ମଧ୍ୟରେ ଦୀପଦଣ୍ଡି ଅଷ୍ଟରତ୍ନମୟେ
ହଂସ ଯେ ଡାହୁକ ସେଥିରେ ଖେଳୁଥାଏ ।
ଅମୃତ ପ୍ରାୟେ ସ୍ୱାଦ ଅଟଇ ଦିବ୍ୟପାଣି
ନାନା ପକ୍ଷୀମାନେ ରାବନ୍ତି ତହିଁ ପୁଣି ।
ପୋଖରୀ କୂଳରେ ଅଛଇ ବିପିନ
ଶୁକସାରୀମାନେ ରାବନ୍ତି ଘନଘନ ।
ଚମ୍ପା ମଲ୍ଲୀ ପୁନାଗ ନିଆଳୀ ଅଗର
ଜାଇଫଳ ମନ୍ଦାର କଞ୍ଚନ କନିଅର ।
ପଣସ ରମ୍ଭାଫଳ ଅଛଇ ଦାରାକ୍ଷ
ଖଜୁରୀ ପିପଳ ମହୁଲ ଲବଙ୍ଗ ତ ।
ମରିଚ ଅଳାଇଚ ଜାଇଫଳ ଜାଇତ୍ରୀ
ବିବିଧ ଫଳମାନେ ପାଚିଣ ଲୋଟନ୍ତି ।
ବୃକ୍ଷଙ୍କର ମୂଳରେ କର୍ପୂର ଗୁଣ୍ଡି ଛେରା
ଚନ୍ଦନର ପୀଢ଼ାରେ କରିଣ ଚଉରା ।
କସ୍ତୁରୀର ଗୁଣ୍ଡି କରିଣ ସେଥିରେ ଧୂଳି
ମୃଗ ଶୂକର ହରିଣ ସେଥିରେ କରେ କେଳି ।
ତୋଟାର ମଧ୍ୟରେ ମଣ୍ଡପ ଏକ ଅଛି
ତହିଁରେ ବସିଅଛି ଏକଇ ମୃଗାକ୍ଷୀ ।
ରୂପରେ ସୁନ୍ଦର ଅଟେ ବୟସରେ ଯୁବା
ଦେବସ୍ତିରୀ ପ୍ରାୟେ ଦିଶଇ ଅତି ଶୋଭା ।
ଜଗତ ପରେ ନିର୍ଜିତ ଅଟଇ ତରୁଣୀ
ଚନ୍ଦ୍ରମା ପ୍ରାୟେ ମୁଖ ଦିଶଇ ତାର ପୁଣି ।
ଶିରରେ ଜଟା ଶୋହେ ଅଗର ବିଭୂତି
ତପୀ ରୂପ ଧରିଣ ବସିଛି ସେହି ସତୀ ।
ତାହାର ସନ୍ନିଧକୁ ଚଳିଲେ ଆଠବୀର
ପଚାରିଲେ ଏ ପୁର ଅଟଇ କାହାର ।
ତୁମ୍ଭର ତହୁଁ ଆମ୍ଭେ ନ ଦେଖିଲୁ ଆନ
ମହିମା ତୋହର ଅଟଇ ଯେ ଧନ୍ୟ ।
ସୁନ୍ଦରୀ ବୋଇଲା ଶୁଣ ଋକ୍ଷ କପି
ଏ ପୁଣ୍ୟ ସ୍ଥାନକୁ ନ ଆସନ୍ତି ତପୀଜପି ।
ପୂର୍ବରେ ମୟ ଦୈତ୍ୟକୁ ବିଶ୍ୱକର୍ମା ଦେଲା
ଅନେକ ଯତନରେ ପୁର ନିର୍ଭା କଲା ।
ମେରୁର ଘରଣୀ ହିମାଳବନ୍ତ ନାରୀ
ତାହାର ଗର୍ଭୁ ଜନ୍ମିଲେ ଦୁଇଟି କୁମାରୀ ।
ମେରୁ ରାଜା ଆମ୍ଭଙ୍କୁ ଆଣି ଏ ପୁରରେ ରଖି
ବୋଇଲେ ତପ କର ବିଧାତାକୁ ଦେଖି ।
ପିତାଙ୍କର ବଚନେ ଆମ୍ଭେ ତପ କଲୁ
ବାର ବରଷେ ଆମ୍ଭେ ବ୍ରହ୍ମାଙ୍କୁ ଦେଖିଲୁ ।
ବେଦବର ଆସିଣ ଆମ୍ଭଙ୍କୁ କହିଗଲେ
ଆମ୍ଭ ଦୁହିଁଙ୍କର ନାମ ସେ ଯେ ଦେଲେ ।

ବୋଇଲେ କମଳା ଅଂଶରେ ଜାତ ବଡ଼
ଯାର ନାମ ବେଦମତି ହୋଇଲା ଯେ ସାର ।
ସ୍ୱୟଂ ନାରାୟଣ ଅବତାର ହେବେ
ରାମ ନାମ ବହିଣ ଅସୁର ମାରିବେ ।
ସେତେବେଳେ ଏହୁ ଲଭିତ ତାକୁ ପୁଣ
ଏ ଦେହ ତେଜ୍ଜି ଜନ୍ମିବ ଜନକ ଗୃହେଣ ।
ଶୁଣିଣ ବେଦମତି ମୋ ସଙ୍ଗରୁ ଗଲା
ମୃତ୍ୟୁପୁରରେ ରହି ତପସ୍ୟା ସେ କଲା ।
ତାହାର ତପସ୍ୟାକୁ ଭାଙ୍ଗିଲା ଲଙ୍କ ସାଇଁ
କ୍ରୋଧରେ ବେଦମତି ଶାପ ତାକୁ ଦେଇ ।
ମୋହର ତପ ଭାଙ୍ଗିଲୁ ଦୁଷ୍ଟ ତୁ ଅସୁର
ମୋହର ସକାଶୁ ମୃତ୍ୟୁ ହେଉ ତୋର ।
ଏତେ ବୋଲି ବେଦମତି ସେ ଦେହ ଛାଡ଼ିଲା
ଦେଖିଣ ରାବଣ ପିଣ୍ଡ ଘେନିଗଲା ।
ସମୁଦ୍ରେ ପକାଇଣ ନିଜ ପୁରେ ଗଲା
ଅନେକ ଦିନ ପିଣ୍ଡ ଜଳରେ ଭାସୁଥିଲା ।
ରାମଜନ୍ମ ହେବାରୁ ସେ ପିଣ୍ଡ ଦେବେ ନେଲେ
ଜୀବନ୍ୟାସ କରିଣ ମଞ୍ଜୁଷେ ଭରିଲେ ।
ଜନକ ଯଜ୍ଞଶାଳେ ପୋତିଲେ ମଞ୍ଜୁଷୀ
ଏକଥା ନ ଜାଣନ୍ତି ଜନକ ମହର୍ଷି ।
ଯାଗଶାଳ ଶୋଧନ୍ତେ ଜାନକୀ ଜାତ ହେଲା
କାଳେଣ ଶ୍ରୀରାମ ସେ କନ୍ୟା ଲଭିଲା ।
ପିତା ସତ୍ୟ ପାଳିଣ ବନକୁ ଗଲେ ରାମ
ଅନେକ ଅସୁର କଲେ ସେ ନିଧନ ।
ରାବଣ ମାରିବାକୁ ଜାନକୀ ଲଙ୍କା ଗଲା
ନ ଦେଖି ଶ୍ରୀରାମ ବିକଳ ହୋଇଲା ।
ବାଳୀକି ମାରି ସୁଗ୍ରୀକି ରାଜ୍ୟ ଦେଲେ
ଭାଲୁ ବାନର ସୈନ୍ୟ ଆଣି ଠୁଳ କଲେ ।
ଚାରିଦିଗକୁ ଦୂତ ପେଶିଲେ ରାମ ରାଣ
ତିନିଦିଗୁ ଫେରିଣ ଆସେପୁଣ ।
ଦକ୍ଷିଣ ଦିଗକୁ ଆସିଲେ ଆଠଜଣ
ଦେଶ ଘୋଷ ବନଗିରି ଖୋଜିଲେ ବହୁ ପୁଣ ।
ନ ପାଇ ବିମ୍ବରେ ପଶିଣ ଅଇଲି ଏବେ
ରାମଙ୍କ ଘରଣୀ ନାହିଁ ତ ଏ ଠାବେ ।
ଅଙ୍ଗଦ ବୋଇଲା ଶୁଣ ମୋ ବଚନ
ତୋତେ କିସ କହିବି ବିଧାତା ତୁହି ଜାଣ ।
ନାରୀ ବୋଲେ ବିଧାତା ମୋତେ ଆଜ୍ଞା ଦେଲା
ଧୀରାବତୀ ତୋର ନାମ ହୋଇବ ବୋଇଲା ।
ଗୋଳକ ନାରାୟଣ ମର୍ତ୍ତ୍ୟରେ ଅବତାର
ପିତୃ ଶତ୍ରୁ ଅର୍ଜୁନକୁ କରିବେ ନିବାର ।
ସପ୍ତପୁର ଦୁଷ୍ଟ ମାରିଣ ସନ୍ଥ ରଖି
ଯମଦଗ୍ନି ସୁତ ପକାଇବ ମଛି ।
ପର୍ଶୁରାମ ନାମଟି ହୋଇବ ତାହାର
ଗୋଲକ ନାରାୟଣ ଅଟଇ ସେହୁ ସାର ।
ତୁହି ସେ ରାଧିକା ଅଂଶରେ ଜାତ ହେଲୁ
ପର୍ଶୁରାମଙ୍କୁ ଲଭିବୁ ଏଣୁ ଯେ କହିଲୁ ।
ଶୁଣିଣ ବିଧାତାକୁ ମୁଁ ବୋଇଲି ବଚନ
କେତେଦିନେ ଲଭିବି ଋଷିର ନନ୍ଦନ ।
ବେଦବ୍ରହ୍ମା ବୋଇଲେ ଅଳ୍ପ ଦିନେ ତୋର
କଷ୍ଟ ଯିବ ସୁନ୍ଦରୀ ଚିନ୍ତା ତୁ ନ କର ।
ବାଳକ ଶରୀରେ ଅଳ୍ପଦିନ ଥିବୁ
ଜାନକୀ ବିଭା ସରିଲେ ତୁ ଯୁବା ହୋଇବୁ ।
ରାବଣ ମାରି ଶ୍ରୀରାମ ଅଯୋଧ୍ୟାକୁ ଯିବେ
ପାତାଳ ଦିଗେ ବିଜେ କରିବେ ରାମ ଦେବେ ।
ତେତେବେଳେ ପର୍ଶୁରାମ ସଙ୍ଗରେ ଘେନିଆସି
ବେନି ନାରାୟଣ ପାତାଳପୁର ଧ୍ୱଂସୀ ।
ତେତେବେଳେ ତୋର ପୁରକୁ ଆସିବେ
ପର୍ଶୁରାମକୁ ତୋତେ ବିଭା କରାଇବେ ।
ଏତେ କହି ବିଧାତା ନିଜପୁର ଗଲା
ବେଦବର କଥା ନିକଟ ହୋଇଲା ।
ସ୍ୱାମୀର ସହିତେ ମୋର ଭେଟ ଯେ ନିକଟେ
ତିନିବର୍ଷେ ରାମ ଭେଟିବେ ଆସି ମୋତେ ।
ଶୁଣି ଆଠସେନା ସନ୍ତୋଷ ହୋଇଲେ
କେଉଁଠାରେ ରାମନାରୀ ଭେଟିବୁ ବୋଇଲେ ।
ଧୀରାବତୀ ବୋଇଲେ ଲଙ୍କାଗଡ଼କୁ ଗଲେ
ଅଶୋକ ବନେ ସୀତା ଦେଖିବ ଯାଇ ଭଲେ ।
ଅଙ୍ଗଦ ବୋଇଲା କୂଳକୁ କେତେ ଛଡ଼ା
ଧୀରାବତୀ ବୋଇଲେ ଶତେ ଯୋଜନ ପରା ।
ଯିବାକୁ ସାମରଥ ନୁହ ତୁମ୍ଭେ କେହି
ସେ ସିନ୍ଧୁଜଳ ଆଶ୍ରା ବିଶ୍ରାମ କେହି ନାହିଁ ।
ଉପରେ ଉଡ଼ିଗଲେ ଲଙ୍କାରେ ହେବ ଯାଇ
ପଡ଼ିଲେ ଜଳରେ ମଗର ଖାଇଯାଇ ।
ବଳ ନଥିଲେ ଅସୁରେ ମାରିବେ ଲଙ୍କାରେ
ଫେରିଲେ ବୀରତା ଦେବେ ଶ୍ରୀରାମରେ ।
ଶୁଣିଣ ଆଠବୀର ତାଟକା ହୋଇଲେ
ଧୀରାବତୀ ଚରଣରେ ପ୍ରଣିପାତ କଲେ ।
ଏଥୁ ଅନନ୍ତରେ ଧୀରାବତୀ ପୁଣ
ଲକ୍ଷେ ଦାସୀ ଭିତରୁ ଅଣାଇଲା ଜାଣ ।
ଚମ୍ପାଫୁଲ ପରାୟେ ଦିଶନ୍ତି ସର୍ବେ ଜାଣ
ଦେବନାରୀମାନେ ତାଙ୍କୁ ନୋହିବେ ସମାନ ।
ସଧୀରେ ସୁନ୍ଦରୀ ବୋଲଇ ବଚନ
ଏ ସ୍ଥାନେ ଆସନ୍ତା ନାହିଁ ଅନ୍ୟ ଜନ ।

ଯେ ଅବା ପଶନ୍ତି ନ ଜାଣି ବଣା ହୋଇ
ସେ ପୁଣି ଜୀବନ ପାଇବାର ନାହିଁ ।
ଶ୍ରୀରାମ ଦୂତ ବୋଲି ତୁମ୍ଭେ ଯେ କହିଲ
ଏ ବେଳକ ତୁମ୍ଭେମାନେ ଜୀବନ୍ତେ ଏଥୁ ଗଲ ।
ଆଖି ବୁଜି ତୁମ୍ଭେ ସର୍ବେ ଉଭା ହୁଅ
ମୋହର ତପବଳେ ଘାରି ହୋଇ ଯାଅ ।
ଯେ ଆଖି ନ ବୁଜିବ ସେ ରହିବ ଏଥି
ତୁମ୍ଭର ଆଗରେ ଏହା କହିଲି ଯଥାର୍ଥ ।
ତାହା ଶୁଣି ଆଖି ବୁଜିଲେ ଆଠବୀର
ତକ୍ଷଣେ ବିମ୍ବରୁ ହୋଇଲେ ବାହାର ।
ପାର୍ବତୀ ବୋଇଲେ କହ ହେ ଈଶାନ
ସେ ପୁରେ ଧୀରାବତି କହିଲା ଏସନ ।
ବୋଇଲା ଭୋଜନ କର ତୁମ୍ଭେ ଯାଇ
ସେ କଥା ଗୁପତ କଲ କାହିଁ ପାଇଁ ।
ଈଶ୍ୱର ବୋଇଲେ ସେ ରାମ ନାମ ଶୁଣି
ସନ୍ତୋଷ ହୋଇଣ ମେରୁର ଦୁଲଣି ।
ହରଷେ ବୋଇଲା ଆହେ ରାମ ଦୂତ
ମୋହର କଥାକୁ ଶୁଣ ଶ୍ରୁତିପଥ ।
ମେରୁର ଦୁହିତା ମୁଁ ଜନ୍ମରୁ ଅଟଇ
ଏ ପୁର ଗୋଟି ମୋତେ ପିତା ଗଲେଦେଇ ।
ମନ ଇଚ୍ଛାରେ ବର ବର ମୋତେ କହି
ଆନନ୍ଦେ ପିତାମହ ନିଜପୁରେ ଯାଇ ।
ସେଠାରୁ ମନରେ ବିଚାର କଲି ପୁଣ
ଜ୍ୟେଷ୍ଠ ଭଉଣୀ ମୋର ଗଙ୍ଗା ଅଟେ ଜାଣ ।
ତହିଁର ତଳ ଭଗ୍ନି ଅଟଇ ଯମୁନା
ତାହା ତଳେ ସରସ୍ୱତୀ ଜନ୍ମ ହେଲେ କିନା ।
ସେ ଦେବୀ ତଳରେ ପାର୍ବତୀ ଜାତ ହେଲେ
ପାର୍ବତୀ ତଳରେ ସାବିତ୍ରୀ ଜନମିଲେ ।
ସାବିତ୍ରୀ ତଳରେ ବେଦମତୀ ହୋଇ
ବେଦମତୀ ତଳରେ ଜନମିଲି ମୁହିଁ ।
ବେଦମତିକି ମୋତେ ବିଧାତା କହିଲା
ତପ କଲେ ନାରାୟଣ ପାଇବ ବୋଇଲା ।
ଶ୍ରୀରାମ ଅଟନ୍ତି ବେଦମତି ନାଥ
ମୁହିଁ ଅଟଇ ପର୍ଶୁରାମଙ୍କ ଦାସୀତ ।
ଜାନକୀ କମଳିନୀ ତୁମ୍ଭେମାନେ ଜାଣ
ନେଇଅଛି ତାକୁ ଲଙ୍କାର ରାବଣ ।
ସମୁଦ୍ର ମଧରେ ଅଟେ ଲଙ୍କାଗଡ଼
ଦିନେ ବିଜୟ କଲା ପୁର ଏହୁ ମୂଢ଼ ।
ମୋତେ ନେବାକୁ ସେମନରେ ବିଚାରିଲା
ବିଂଶ ନୟନକୁ ତାହାପର ନ ଦିଶିଲା ।
ଏଗାର ଦିନ ପର୍ଯ୍ୟନ୍ତ ଏଥିରେ ରହିଲା
ବିଧାତା ଆସିଣ ତାକୁ ଘେନି ଗଲା ।

ଶୁଣିଣ ହନୁମନ୍ତ ପଚାରେ ତାକୁ ପୁଣି
ତୁମ୍ଭେ କେମନ୍ତେ ଜାଣିଲ ଏସବୁ କାହାଣୀ ।
ସେ ବୋଇଲେ ମୋତେ ଅଙ୍ଗିରା ଗଲେ କହି
ମୋର ପୁରକୁ ଦିନେ ଆସିଲେ ତପୀସାଇଁ ।
ମନ୍ତ୍ର ଉପଦେଶ ଦେଇଗଲେ ମୋତେ
ତେଣୁ ସେ ଆସିଥିଲେ ଦେଖିବା ନିମନ୍ତେ ।
ବୋଇଲେ ରାବଣ ମନ୍ଦୋଦରୀର ସାଇଁ
ଲଙ୍କାଗଡ଼ରେ ରାଜା ସେହି ଯେ ଅଟଇ ।
ଅନେକ ଅନ୍ୟାୟ ସେହି ରାଜା କଲା
ଦେବତାଙ୍କୁ ଆଣି ପାଦ ତଳରେ ଖଟାଇଲା ।
ତେଣୁ ସେ ଦେବତାଏ ମନେ ବିଚାରିଲେ
ମର୍ତ୍ତ୍ୟପୁରେ ନାରାୟଣ ଆସି ଜନ୍ମ ହେଲେ ।
କୂଟରେ ଶ୍ରୀରାମଙ୍କୁ ବନକୁ ଆଣିଲେ
ରାବଣକୁ ଭେଳିକି ଲଗାଇଣ ଦେଲେ ।
ସେଠାରୁ ରାବଣ ସୀତାଙ୍କୁ ନେଲା ହରି
ଆହୁରି ପାଞ୍ଚମାସେ ମରିବ ଦଶଶିରୀ ।
ଏତେ କହି ମୁନି ସ୍ୱର୍ଗପୁର ଗଲେ
ଗଲାର ବେଳେ ମୋତେ କହି ଯାଇଥିଲେ ।
ବୋଇଲେ ରାମଦୂତେ ତୋ ପୁରେ ଆସିବେ
ତାହାଙ୍କୁ ବାରତା କହିବୁତ ତୁହି ଭାବେ ।
ଚରଚା କରିଣ ତାହାଙ୍କୁ ଛାଡ଼ି ଦେବୁ
ପ୍ରାଣନାଥ ଦୂତଠାରେ ଅପ୍ରୀତି ନୋହିବୁ ।
ତୁମ୍ଭେ ମୋର ବୋଲ କର ଦୂତମାନେ
ସୀତା ଠାବ କର ଲଙ୍କାର ଭୁବନେ ।
ଏତେ ବୋଲି ଦେବୀ ଦାସୀଙ୍କି ଚାହିଁ ବେଗେ
ବୋଇଲେ ଏମାନଙ୍କୁ ଚର୍ଚ୍ଚା କର ଏବେ ।
କନକପୁରେ ନେଇ ପୂର୍ଣ୍ଣ ଭୋଜନ ଦିଅ
ଶ୍ରୀରାମଙ୍କ ଦୂତଙ୍କୁ ସନ୍ତୋଷ କରାଅ ।
ଶୁଣି ଅପସରୀ ସଙ୍ଗରେ ଘେନିଗଲେ
କନକ ପୁରରେ ନେଇଣ ବସାଇଲେ ।
ଉତ୍ତମ ଭାବେଣ ଭୋଜନ ଯେ ଦେଲେ
ଅମୃତ ସୁସ୍ୱାଦୁ ଦ୍ରବ୍ୟେ ସନ୍ତୋଷ କରାଇଲେ ।
ସୁଖ ଭୋଗ ପାଇଣ ରହିଲେ ଆଠବୀର
ଶ୍ରୀରାମଙ୍କ କଥା ପାଶୋରିଲେ ମନର ।
ତିନିମାସ ସେଠାରେ ଦିନ ବହିଗଲା
ଅଙ୍ଗିରା ଋଷି ଆସି ସତୀଙ୍କି କହିଲା ।
ଶ୍ରୀରାମଙ୍କ କାର୍ଯ୍ୟ ଯେ ହୋଇବ ବିଳମ୍ବ
ଦୁଇ ମାସରେ ସେ ରାବଣ ମରିବ ।
ତିନିମାସ ରହିଲେ ଶ୍ରୀରାମ ଦୂତ ଏଥି
ସେ କଥାକୁ ବିଚାର ତୁ ନ କରୁ କେମିତି ।
ଶୁଣିଣ ଧୀରାବତୀ ଦୂତଙ୍କୁ ଅଣାଇଲେ
ଯାଅ କିମ୍ପାଇ ରହିବୁ ବୋଲିଣ ବୋଇଲେ ।

ଉଠି ଯାଇ ତାଙ୍କୁ ବିମ୍ବର ଦ୍ୱାରେଣ
ବୋଇଲା ଏହି ବାଟେ କର ହେ ଗମନ ।
ଆଖି ବୁଜି ଯାଅ ଧରାଧରି ହୋଇ
ବେଗେ ଯାଅ ବୋଲିଣ ବୋଇଲେ ଚାନ୍ଦମୁହିଁ ।
ଶୁଣିଣ ଦୂତମାନେ ନେତ୍ର ବୁଜି ହସ୍ତେ
ବେଗେଣ ବାହାର ହୋଇଲେ ସମସ୍ତେ ।
ଶୁଣିଲୁଟିକିଗୋ ମନରେ ହୋଇ ତୋଷ
ପାର୍ବତୀ ବୋଇଲେ କହ ହେ ମହେଶ ।
ସେଠାରୁ ଆଠ ବୀର କେଣେ ପୁଣ ଗଲେ
ସେ କଥା ସଞ୍ଚପି ମୋତେ କହ ଦେବ ଭଲେ ।
ଶୁଣିଣ ଈଶ୍ୱର ବୋଲନ୍ତି ଦେବୀ ଶୁଣ ।
ବିମ୍ବରୁ ବାହାର ହୋଇଲେ ଆଠଜଣ ।
ଶାଏର କୁଳରେ ବିନ୍ଧ୍ୟଗିରି ପର୍ବତ
ସେ ଗିରିରେ ମିଳିଲେ ରାମଙ୍କର ଦୂତ ।
ଦେଖିଲେ ସେ ଗିରୀରେ ବନସ୍ତ ଆଚ୍ଛାଦି
ଏକକୁ ଆରେକ କହନ୍ତି କଥା ଭେଦି ।
ଚ୍ୟୂତ ବଉଳିଲା ଭାଷନ୍ତି କୋକିଳ
ଦକ୍ଷିଣା ପବନ ବହିଲା କୋମଳ ।
ଶୁଖିଲା ସରୋବର ମେଘ ଗଲେ ଜାଣ
ବାଟ ଘାଟେ ଚଳିଲେ ଛାଡ଼ିଲା ଶୀତ ପୁଣ ।
ଅନୁମଦେ ଉଲ୍ଲସି ଉଠିଲେ ଯେ ଭୃଇଁ
ଏମନ୍ତେ ବିଚାର ଦୂତେ କଲେ ତହିଁ ।
ଶରତ ଋତୁରେ ପେଶିଲେ ରାଜା ତ
ଏବେ ସରିଲା ଶୀତ ଋତୁ ବସନ୍ତ ।
ଅଙ୍ଗଦ ଲେଖିଲା ଅଙ୍ଗୁଳି ଘେନିଣ
ପାଞ୍ଚମାସ ଆସି ହୋଇଲା ସଂପୂର୍ଣ୍ଣ ।
ତାରାର ନନ୍ଦନ ଶୁଖାଏ ପୁଣ ମୁଖ
କେଜାଣି ତାହାକୁ ଲାଗିଲା ମହାଦୁଃଖ ।
ଆଖି ଥନ ଥନ କରିଣ ବୋଇଲା
ଏ ଘାନ୍ତି ମରଣ ନିଶ୍ଚୟ ହୋଇଲା ।
ମାସକେ ବାର୍ତ୍ତା ଆଣିବ ବୋଲିଣ ସେ ପେଷି
ଏବେ ତ ପାଞ୍ଚମାସ ହୋଇଲାଣି ଆସି ।
ଆସିବାର ବେଳରେ ବୋଇଲା କପିରାଣ
ଦିନେ ଉଛୁର ହୋଇଲେ ଘେନିବି ପରାଣ ।
ତିରିଶ ଦିନରେ ବାରତା ଆଣି ଦେବ
ବଳିଲେ ଦିନେ ନିଶ୍ଚେ ପ୍ରାଣେ ନାଶ ଯିବ ।
ତହିଁକି ସତେ ଯେ ବହୁତ ଦିନ ଗଲା
ସୁଗ୍ରୀବର ପ୍ରାଣ କି ରଖିବ ମୋର ଭଲା ।
ତୁମ୍ଭେମାନେ ବାବୁରେ ବାହୁଡ଼ି କହ ଯାଇ
ବିଷ ଖାଇ ମରିବି ସଂଶୟ ଏଥି ନାହିଁ ।
ସବୁଙ୍କରି ଦୋଷ ଉପେକ୍ଷା ହୋଇବ
ମୋହର ମଲା ବୋଇଲେ ତୁମ୍ଭର ଭାବ ହେବ ।

କିଛି ଭୟ ନ କରି କହ ତୁମ୍ଭେ ଯାଇ
ସୀତା ଠାବ ନ କଲେ ମୁଁ କେବେ ଯିବି ନାହିଁ ।
ଅଙ୍ଗଦ ବଚନେ ତାରାକ୍ଷ ବୀର କହି
ସମସ୍ତେ ପଶିବା ଚାଲ ବିମ୍ବରରେ ଯାଇ ।
ସୁଗ୍ରୀବର ଛାମୁକୁ ଯିବା ହୋ କେମନ୍ତ
କି ବୋଲି ଆମ୍ଭଙ୍କୁ ବୋଲିବେ ରଘୁନାଥ ।
ବର୍ଷାକାଳ ସାରିଣ ପେଶିଲେ ଲକ୍ଷ୍ମଣ
ସୁଗ୍ରୀବର ଥାଟ ଆଣ ଏହିକ୍ଷଣ ।
ଜାନକୀଙ୍କ ପାଇଁ ଆରତ ହୋଇଛନ୍ତି
ତୁହୋ ଅଙ୍ଗଦ ପ୍ରତିଜ୍ଞା କରିଛୁ ମାରିବୁ ଲଙ୍କପତି ।
ସବୁଙ୍କରି ପ୍ରାଣକୁ ଲାଗିଲା ଏବେ ଶଙ୍କା
ତୁ କିମ୍ପା ରହିବୁ ଆମ୍ଭେ ଛାଡ଼ିଯିବୁ ଏକା ।
ସମସ୍ତେ ଚାଲ ପାତାଳ ବିମ୍ବରେ ପଶିବା
ବିଚାରେ ଯାହା ଯୋଗାଇ ସେ କଥା କରିବା ।
ଲୁଚିଣ ରହିଲେ କେହି ତ ନ ଦେଖିବେ
ମୋର ବୁଦ୍ଧି କଲେ ଜୀବନ ପାଇ ଏବେ ।
ଏ ବଚନ ଶୁଣି ବୋଇଲା ହନୁମନ୍ତ
ଯାହା କହିଲ ହେ ବାଳୀରାଜା ସୁତ ।
ସୁଗ୍ରୀବର ଅଟଇ ତୁମ୍ଭର ବଇରୀ
ବାପକୁ ମରାଇ ଘେନିଅଛି ଶିରୀ ।
ତୋତେ ଯେବେ ଏଠାରେଆମ୍ଭେ ଛାଡ଼ିଯିବୁ
ଲକ୍ଷ୍ମଣ ହସ୍ତେ ସିନା ଜୀବନ ହରାଇବୁ ।
ଜନନୀ ତୋହର କହିଛି ଲକ୍ଷ୍ମଣଙ୍କୁ
ମୋର ପୁତ୍ର ଅଙ୍ଗଦ ଲାଗିଲା ତୁମ୍ଭଙ୍କୁ ।
ବୋଲିବ ଯାଙ୍କ ପ୍ରାଣ ଆଗ ନେବି ମୁହିଁ
ଏତେ ବୋଲି ମାରିବେ ଶ୍ରୀରାମଙ୍କ ଭାଇ ।
ବୋଲିବେ ସୁଗ୍ରୀବର କପଟେ ପେଶିଥିଲା
ଅଙ୍ଗଦକୁ ମାରି ଆସ ବୋଲି କହିଥିଲା ।
ତୁମ୍ଭେ ସଙ୍ଗେ ନେଇ ତାହାକୁ କଲ ନାଶ
ଏବେ ଆସିଅଛ ଘେନିଣ ସନ୍ଦେଶ ।
ଏସନକ ବୋଲିଣ ଛେଦିବ ଆମ୍ଭ ଶିର
ରକ୍ଷା କରି ନ ପାରିବେ କାଳେଣ ସୁଗ୍ରୀବର ।
ଏ କଥା ଆମ୍ଭକୁ କଦାପି ନ ଯୋଗାଇ
ମୋର ବୋଲ ଏବେ କରସିରେ ଭାଇ ।
ଆମ୍ଭେମାନେ ବିମ୍ବରେ ପଶିଣ ପଛେ ମରୁ
ଯାଇ ନ ପାରୁଁ ଯେ ଲକ୍ଷ୍ମଣଙ୍କୁ ଡରୁ ।
ତୁ ଯାଇ ଅଙ୍ଗଦରେ କହ ସୁଗ୍ରୀବଙ୍କୁ
ବୋଲିବୁ ଖୋଜି ନ ପାଇଲୁ ସୀତାଙ୍କୁ ।
ବୁଲି ବୁଲି ମଲେ ସେ କେଣେ ସାତବୀର
ମୁହିଁ ଅଇଲି ଭାଗ୍ୟରେ ଥିଲା ଯେ ମୋହର ।

ଏମନ୍ତ ବୋଇଲେ ତୋତେ ନ ବୋଲିବେ କିଛି
ତୋହର ଜୀଇଥିଲେ ବହୁତ କାର୍ଯ୍ୟ ଅଛି ।
ବାଳୀ ସୁଗ୍ରୀବରର ଅଟୁ ତୁ ନନ୍ଦନ
କୁଳ ରକ୍ଷା କରିବାକୁ ତୋ ବିନୁ ନାହିଁ ଆନ ।
ଅଙ୍ଗଦ ବୋଇଲା ହନୁମନ୍ତ କଥା ଶୁଣି
ସୁଗ୍ରୀବର କଥା ନାହିଁକି ତୁମ୍ଭେ ଜାଣି ।
ଯାହାର ସକାଶେ ବାଳୀ ବୀର ମଲା
ଚଣ୍ଡାଳ ଦୈତ୍ୟ ଯାଇଣ ପାତାଳେ ରହିଲା ।
କ୍ରୋଧରେ ପିତା ମୋର ଗଲାକ ଗୋଡ଼ାଇ
ବର୍ଷେ ଯୁଦ୍ଧ କଲା ପାତାଳପୁରେ ରହି ।
ବିମ୍ୱର ଦ୍ୱାର ପର୍ବତେ ପୋତିଲା ସୁଗ୍ରୀବର
ଏସନେକ ପ୍ରକାର ଯେବଣ ବେଭାର ।
ବାଳୀ ଘଉଡ଼ି ଦେବାରୁ ସେ ପର୍ବତେ ରହିଲା
ଶ୍ରୀରାମଙ୍କୁ ଦେଖିବାରୁ ସେ କଥା କହିଲା ।
ସୋଦର ଜ୍ୟେଷ୍ଠଭାଇକି ପ୍ରାଣରେ ମରାଇଲା
ନିର୍ଦ୍ଦୟା ଭାବରେ କିଷ୍କିନ୍ଧ୍ୟା ରାଜା ହେଲା ।
ରାଜା ହୋଇଣ ହରିଲାକ ନାରୀ
ଗୁରୁପତ୍ନୀ ବୋଲିଣ ବିଚାର ନ କରି ।
ଏମନ୍ତେ ରିପୁ ତାର ଅଟଇ କପିରାଏ
କାର୍ଯ୍ୟ ନ କଲେ କିଛି ମୁଁ କି ଘର ଯାଏ ।
ସୀତାର ସନ୍ଦେଶ ଯେବେ ନ ପାଇବା
ଫେରିଯାଇ ଘରେ କିସ ଯେ କରିବା ।
ଶିର ଛେଦିଣ ଯେ କରିବ ପ୍ରାଣ ନାଶ
ଏ କଥାରେ ମୋତେ ଲାଗୁଅଛି ତ୍ରାସ ।
ତୁମ୍ଭେ ମୋର କଥା କହ ବେଗେ ଯାଇ
ମୁହିଁ ମରିବି ଯେ ନିଶ୍ଚୟ ବିଷ ଖାଇ ।
ଏତେବୋଲି ଅଙ୍ଗଦ ଯେ ଶୋଇଲା କୁଶ ପାଡ଼ି
ସାତ ସେନାପତି କାନ୍ଦନ୍ତି ତାକୁ ବେଢ଼ି ।
ଭୋ ଅଙ୍ଗଦ ବୀର ବାଳୀର ତନୟେ
କିଷ୍କିନ୍ଧ୍ୟା ରାଜ୍ୟରେ ଅଟୁ ତୁ ଯୁବରାଏ ।
ତୋତେ ଛାଡ଼ିଣ ଯେ କେଣେ ଆମ୍ଭେ ଯିବୁଁ
ନିଶ୍ଚୟ ତୋର ସଙ୍ଗେ ପ୍ରାଣ ହରାଇବୁଁ ।
ଯେଉଁଦିନ ତୋର ପିତା ରାଜ୍ୟ ପାଳୁଥିଲା
ସେ ବେଳେ ଗଉରବେ ଆମ୍ଭଙ୍କୁ ରଖିଲା ।
ସେଗୁଣ ନଘେନି ତୋତେ କେମନ୍ତେ ଛାଡ଼ିଯିବୁ
ତୋହର ସଙ୍ଗରେ ଆମ୍ଭେ ନିଶ୍ଚୟ ମରିବୁ ।
ଏମନ୍ତ ବୋଲିଣ ସାତ ସେନାପତି
କୁଶଶଯ୍ୟା କରିଣ ଶୋଇଲେ ତାର କତି ।
ଫଳ ମୂଳ ଆହାର ଛାଡ଼ିଲେ ସମସ୍ତେ
ମରିବା ବୋଲିଣ ବିଚାର କଲେ ଚିତ୍ତେ ।
ଦିନ ଯାମିନୀ ସାରିବାକୁ କଥା ଯେ ହୁଅନ୍ତି
ଶ୍ରୀରାମଙ୍କ କଥାମାନ ମନରେ ସୁମରନ୍ତି ।

ଋଷ୍ୟଶୃଙ୍ଗ ଚରୁ ଦେବାର ଦଶରଥେ
ଶିବଧନୁ ଭାଙ୍ଗି ରାମ ବିଭା ସଂଯୋଗତେ ।
କୈକେୟୀ କପଟେ ଯେ ମନ୍ଥରାର ଦୋଷ
ରାମ ବନ ଯିବାର ଦଶରଥ ନାଶ ।
ସୂର୍ପଣଖା ନାକ କାନ ଛେଦିବାର ପୁଣ
ଖର ଦୂଷଣ ତ୍ରିଶିରା ସଙ୍ଗରେ ଯେତେ ରଣ ।
ରାବଣ ତପସ୍ୱୀରୂପେ ସୀତା ଯେ ହରଣ
ମାରିଚ କବନ୍ଧ ପକ୍ଷୀଚଟା ଯେ ମରଣ ।
ଋଷିମାନଙ୍କୁ ଭେଟିବା ଶବରଣୀ ସେବା
ମୃଗୁଣୀର କଥା ରାମ ଜାନକୀ ଶୁଣିବା ।
ହନୁମନ୍ତ ଭେଟ ଯେ ସୁଗ୍ରୀବର ମିତ
ସପ୍ତଶାଳା ରାମ ଯେରୂପେ କଲେ ହତ ।
ଦୁନ୍ଦୁଭୀର ହାଡ଼ ଫିଙ୍ଗିଲେ ଚରଣେ
ବାଳୀ ବୀରକୁ ବଧ କଲେ ଏକବାଣେ ।
ସୁଗ୍ରୀବର ରାଜା ହେଲା ଅଙ୍ଗଦ ଯୁବରାଜା
ତାରା ପ୍ରବୋଧରେ ରାମଙ୍କୁ କଲେ ପୂଜା ।
ଚତୁର୍ମାସ୍ୟା ମାଲ୍ୟବନ୍ତେ ସାରିଲେ ରାମରାଣ
ସୁଗ୍ରୀବଠାକୁ ଲକ୍ଷ୍ମଣ ଯିବାର ଦୂତପଣ ।
ସେ କଥାମାନ ପୁଣ କୁହାକୁହି ହୋନ୍ତି
ଶୁଣିଲୁ ହେତୁକରି ମନରେ ସମ୍ପାତି ।
ରବି ତେଜ ଲାଗି ତାର ଡେଣା ଯେ ତୁଟିଲା
ଅଚଳ ହେବାରୁ ସେ ପର୍ବତେ ରହିଲା ।
ସମୁଦ୍ର କୂଳରେ ସେ ପର୍ବତରେ ଅଛି
କପିଙ୍କର କଥାମାନ କର୍ଣ୍ଣରେ ଶୁଣୁଛି ।
ମନରେ ବିଚାର କରଇ ଖଗବର
ଅପାର କାଳରୁ ମୋର ନାହିଁ ଯେ ଆହାର ।
ଜୀବଜନ୍ତୁ ଫଳମୂଳ ଆହାର ନୋହିଲା
ଆଜି ସରିକି ଈଶ୍ୱର ମୋର ପଡ଼ି ଦେଲା ।
ଏମାନଙ୍କୁ ଖାଇଲେ ପେଟ ମୋର ସୁଖ
ଅପାର କାଳର ପଳାଇବ ଭୋକ ।
ସମ୍ପାତି ଭାଳିବାର ଅଙ୍ଗଦ ବୀର ଜାଣି
ବିଚାରିଲା ଏ ସ୍ଥାନ ପ୍ରମାଦ ହେବ ପୁଣି ।
ଆମ୍ଭେ ଆଠଜଣ ଯାର ମୁଖେ ପଡ଼ିଲୁତ
ଏ ସଙ୍କଟରୁ ଉଦ୍ଧାର କରିବେ ରଘୁସୁତ ।
ବଳରାମ ଦାସ ଶ୍ରୀରାମ ପାଦେ ଶରଣ
ତୁମ୍ଭର ଚରଣ ତଳେ ରଖହେ ରାମରାଣେ ।
ଏଥୁ ଅନନ୍ତରେ ଶୁଣଗୋ ଶାକମ୍ଭରୀ
ଆଠବୀର ସମ୍ପାତି ବଚନ ଶୁଣିକରି ।
ମନରେ ବିଚାରିଲେ ଅଟଇ କଥା କିସ
କେବଣ ମହାତ୍ମା ଡାକଇ ଆସ ପାଶ ।
ଏମନ୍ତ ସମୟରେ ସମ୍ପାତି ଡାକ ଦେଲା
ଜଟାୟୁଷ ମୋର ଭାଇ କେଉଁଠାରେ ମଲା ।

ଚଳି ନ ପାରଇ ମୁଁ ପକ୍ଷୀ ମୋର ହତ
ତେଣୁ ସେ ମୁହିଁ ଯେ ହେଉଛି ଅଶକତ ।
ତୁମ୍ଭର ନିକଟକୁ ମୋତେ ଘେନି ଯାଅ
ଯହିଁକି ଆସିଛ ସେ କାର୍ଯ୍ୟ ଏବେ ପାଅ ।
ଶୁଣିଣ ଆଠବୀର ସନ୍ତୋଷ ହୋଇଲେ
ପର୍ବତୁ ସମ୍ପାତିକୁ ତଳକୁ ଘେନିଗଲେ ।
ଧରାଧରି କରିଣ ବସାଇଲେ ନେଇ
ଅଙ୍ଗଦ ବୋଇଲା ଶୁଣ ପକ୍ଷୀସାଇଁ ।
ଯେଣେ ଜଟାୟୁଷ ହୋଇଲା ପ୍ରାଣନାଶ
ମୋହଠାରୁ ଶୁଣ ତୁ ସେଥିର ସନ୍ଦେଶ ।
ଖଡଗଦ ନୃପତି କିଷ୍କିନ୍ଧ୍ୟାର ରାଏ
ବାଳୀ ସୁଗ୍ରୀବର ତାହାର ତନୟେ ।
ବାଳୀର ପୁତ୍ର ମୁଁ ଯେ ଅଙ୍ଗଦ ମୋର ନାମ
ପିତା ମୋର ରାଜା ଅଟେ କିଷ୍କିନ୍ଧ୍ୟା ଗ୍ରାମ ।
ଭାଇ ସୁଗ୍ରୀବର ରାଜ୍ୟ ଭୋଗ କଲା
ମୁହିଁ ଯାହା କହୁଛି ଶୁଣ ତୁହି ପରା ।
ଏମନ୍ତ ସମୟେ ଦଶରଥ ସୁତ
ଶ୍ରୀରାମ ଲକ୍ଷ୍ମଣ କୋଦଣ୍ଡ କାଣ୍ଡ ହସ୍ତ ।
ପିତାର ବଚନେ ସେ ବନବାସ୍ କଲେ
ଦଣ୍ଡକା ଅରଣ୍ୟେ ଘରଣୀ ହରାଇଲେ ।
ଲଙ୍କାର ରାବଣ ଆସିଣ ନେଲା ସୀତା
ଶ୍ରୀରାମ ନଥିବାରୁ ଅସୁର ନିଧୋକା ।
ରାମ ସଙ୍ଗେ ଜଟାୟୁଷ ଆଗରୁ ବନ୍ଧୁ ପୁଣ
ଶ୍ରୀରାମର ସୁଦୟା ତାହାଠାରେ ଜାଣ ।
ସେ ଘେନି ଜଟାୟୁଷ ରାବଣ ଓଗାଳିଲା
ଦେଖିଣ କୋପ କଲା ବିଶ୍ରବାର ବଳା ।
ଖଡ୍‌ଗଦ ଘେନିଣ କାଟିଲା ତାର ଡେଣା
ଡେଣା ଯିବାରୁ ସେ ନ ପାରେ ଚଳିକିନା ।
ଶ୍ରୀରାମଙ୍କୁ ଦେଖିବାଯାଏଁ ତୋହର ଭାଇ ଥିଲା
ସୀତାର ବାରତା କହିଣ ପ୍ରାଣ ଦେଲା ।
ରଘୁନାଥ ତାହାକୁ ଅଗ୍ନିରେ ଭସ୍ମ କଲେ
ସୁଗ୍ରୀବର ସଙ୍ଗରେ ରାମ ମଇତ୍ର ହେଲେ ।
ସୀତାର ନିମନ୍ତେ ବାଳୀକି ବଧ କଲେ
ସୁଗ୍ରୀବକୁ ରାମ କିଷ୍କିନ୍ଧ୍ୟା ରାଜା କଲେ ।
ମୋତେ ଯୁବରାଜ କଲେକ ରଘୁନାଥ
ବର୍ଷାକାଳ ବଞ୍ଚିଲେ ମାଲ୍ୟବନ୍ତ ପର୍ବତ ।
ଋକ୍ଷ କପିବଳ ଅଇଲେ ପୁଣ ଯହିଁ
ଖୋଜିବାକୁ ସୀତାଙ୍କୁ ବରଗିଲେ ତହୁଁ ।
ଅନେକ ଦେଶ ପାଟଣା ବୁଲିଲୁ ବନ ଘୋର
ପର୍ବତ କନ୍ଦର ଯେ ନଦୀ ସରୋବର ।
କେଉଁଠାରେ ନ ଦେଖିଲୁ ଶ୍ରୀରାମ ଘରଣୀ
ପାତାଳ ବିୟରେ ପଶିଲୁଁ ଆମ୍ଭେ ପୁଣି ।
ପୂର୍ବର ଭାଗ୍ୟରୁ ବାହାର ତହୁଁ ହେଲୁ
ଏ ସ୍ଥାନେ ମରିବାକୁ କୁଶଶଯ୍ୟା କଲୁ ।
ବହୁତ ବିଳମ୍ବ ଆମ୍ଭର ଏଣେ ହୋଇ
ଏମନ୍ତ ବୋଲିଣ ଭାଳେଣି କରଥାଇ ।
ଅଇଲାବେଳେ କଣ୍ଟ କରିଛି ରାଜନ
ଠାବ କରି ତୁମ୍ଭେ ଆସରେ ବେଗେ ପୁଣ ।
ମାସକ ସମ୍ପୂର୍ଣ୍ଣରେ ବାରତା ଆଣି ଦେବ
ଦିନେ ଉଛୁର ହେଲେ ପ୍ରାଣ ନ ପାଇବ ।
ମାସକୁ ପାଞ୍ଚମାସ ହୋଇଲା ଏବେ ଆସି
ଶରତ ଋତୁରେ ଆମ୍ଭଙ୍କୁ ଥିଲେ ପେଷି ।
ଏତେକାଳ ପର୍ଯ୍ୟନ୍ତ ନ ପାଇ ସନ୍ଦେଶ
ଆମ୍ଭମାନଙ୍କ ବୁଦ୍ଧି ତେଣୁ ନାଶ ।
ଗଲେ କୋପ କରିବ କିଷ୍କିନ୍ଧ୍ୟାର ନାହା
ବୋଲିବ କେଉଁଠାରେ ପାଇଲ କାହା ସାହା ।
ତେଣୁ କରି ଆମ୍ଭେମାନେ ଭୟରେ ନ ଯାଉ
ଦଶରଥ ସୁତ ରାମ ତାହାକୁ ଭୟ ପାଉ ।
ଅଙ୍ଗଦର ବଚନେ ବୋଲଇ ସମ୍ପାତି
ମୁହିଁ ଜାଣଇଁ ଯେଉଁଠାରେ ଅଛି ସତୀ ।
ଏବେ ମୋତେ ସମୁଦ୍ର କୂଳକୁ ଘେନିଯାଅ
ସେ ତୀର୍ଥ ଜଳରେ ସ୍ନାହାନ କରାଅ ।
ସ୍ନାହାନ କଲେ ହେବ ମୋ ପିଣ୍ଡ କୃତାର୍ଥ
ଯେମନ୍ତେ ତୋହର କାର୍ଯ୍ୟ ହେବ ସିଦ୍ଧଯୁକ୍ତ ।
ଶୁଚିବନ୍ତ ଯେ ଭଲ ଅଟଇ ସମସ୍ତର
ଶୁଚି ନ ହେଲେ କାର୍ଯ୍ୟ ନୁହଇ କାହାର ।
ଶୁଚିବନ୍ତ ହୋଇଲେ ମୁଁ କହିବି ବାରତା
ଯେହୁ ଘେନିଗଲା ଜନକର ସୀତା ।
ଶୁଣି ଅଷ୍ଟ ସେନାପତି ସମୁଦ୍ର କୂଳେ ନେଲେ
ସମୁଦ୍ର ପାଣିରେ ସ୍ନାହାନ କରାଇଲେ ।
ତେଣୁ ସେ କହିଲେ ଆଣିଲେ ତାକୁ ବୀର
କୂଳରେ ଆଣିଣ ରଖିଲେ ସତ୍ୱର ।
ସୁସ୍ଥ ହୋଇଣ ଯେ କହଇ ସମସ୍ତ
ବୋଇଲା ଏବେ ଶୁଣ ଶ୍ରୀରାମର ଦୂତ ।
ମୁହିଁ ସମ୍ପାତି ଜଟାୟୁ ମୋର ସାନ
ଦୁହେଁ ଗରୁଡ଼ର ଯେ ଅଟୁ ନନ୍ଦନ ।
ଖଳ ଲୋକଙ୍କର ବଚନ ଆରମ୍ଭିଲୁ
ସୋଦର ବେନିଭାଇ ବାଦ ଆରମ୍ଭିଲୁ ।
ଜଟାୟୁଷ ବୋଇଲା ମୁଁ ହୋଇବି ପୁଣ ରାଜା
ସକଳ ଋଷି ଆସି କରିବେ ମୋତେ ପୂଜା ।
ମୁହିଁ ବୋଇଲୁ ଜଟାୟୁ ମୋର ବୋଲ କର
ଜ୍ୟେଷ୍ଠ ଭାଇ ମୁହିଁ ନୃପତିପଣ ମୋର ।
ଖଗ ରାଜାପଣ ଅଟଇ ମୋହର ।

ମୁହିଁ ସେ ଖଗ ଇନ୍ଦ୍ର ଅଟଇ ସହୋଦର ।
ତୁ କିମ୍ପା ସାନୁଜରେ ମୋ ବୋଲ ନ କରୁ
ହିତ ଅଣହିତ ମନରେ ନ ବିଚାରୁ ।
ଜଟାୟୁଷ ବୋଇଲା କିସ ମୋର ଶ୍ରେଷ୍ଠ
ମୁହିଁ କେବଣ ଗୁଣରେ ଅଟଇ କନିଷ୍ଠ ।
ସମର କରିବା ମଧ୍ୟମ ସଙ୍ଗେ ଥାଇ
ଯେ ହାରିବ ସେ ଯିବ ଯୋଗୀ ହୋଇ ।
ଏତେ ବୋଲିଣ ଆରମ୍ଭ କଲୁ ଯୁଦ୍ଧ
ବିବିଧ ଲୋକ ଆମ୍ଭଙ୍କୁ କଲେ ଯେ ବିରୋଧ ।
କି କାରଣେ ସମ କରିବ ଦୁଇ ଭାଇ
ଏ କଥା ତୁମ୍ଭର ଉଚିତ ନୁହଇ ।
ଏକ ପିତାରୁ ଯେ ହୋଇଲ ତୁମ୍ଭେ ଜାତ
କଳି କରିବାର ଅଟଇ କେଉଁ ମତ ।
ଏକଇ ସମ୍ପଦେ କି ଆରେକ ନୁହେ ସିଦ୍ଧି
କେବଣ କାରଣେ ମରିବ ଦଗଧି ।
ଜଟାୟୁଷ ବୋଲେ ତୁମ୍ଭେ ନ ଜାଣ କିଛି
ଏ କଥାରେ ବହୁତ ଅଭିମାନ ଅଛି ।
ଜୀଇବାରୁ ମରିବାର ଅଟଇ ବଡ଼ କାର୍ଯ୍ୟ
ଯେ ଯୁଦ୍ଧେ ଜିଣିବ ହୋଇବ ଖଗରାଜ ।
କହିଲେ ଶାନ୍ତି ପୁଣ ନୋହିଲା ମୋର ମନ
ଆବର କଥାଏ ଶୁଣ କପି ପୁଣ ।
ଜଟାୟୁଷ ବୋଇଲା ଯୁଦ୍ଧ ମୁଁ ନ କରିବି
ଆଦିତ୍ୟ ଦେବତା ରଥକୁ ଉଡ଼ିଯିବି ।
ଯେ ଆଗେ ଛୁଇଁବ ଯାଇଣ ବିମାନ
ସେହି ଖଗଙ୍କର ହୋଇବ ରାଜନ ।
ଶୁଣି ତ ତବଦ ହୋଇ ବିବୁଧେ
ଉଡ଼ ଏବେ ବୋଲିଣ ବୋଇଲେ ସେ କ୍ରୋଧେ ।
ଶୁଣିଣ ସନମତ କରିଲି ଯେ ମୁହିଁ
ସମସ୍ତଙ୍କ ବିଚାରକୁ ଯୋଗାଇଲା ଯେହି ।
ଜଟାୟୁଷ ଆଗ ହୋଇଣ ଉଡ଼ିଗଲା
ଦେଖୁ ସେ ଯେ ଅଦୃଶ୍ୟ ହୋଇଲା ।
ତାହାର ପଛରେ ମୁହିଁ ଉଡ଼ିଗଲି
ଦୀନକରଙ୍କର ତେଜ ସହି ନ ପାରିଲି ।
ତପତିକି ନ ମାନି ମୁଁ ପେଲି ଉଡ଼ିଗଲି
ରବିର ରହୁବର ଯାଇଣ ଛୁଇଁଲି ।
ପକ୍ଷୀ ପୋଡ଼ିଗଲା ମୋର ତାର ତେଜ ପାଇ
ଡେଣା ଛିଡ଼ିବାରୁ ନ ପାରିଲି ରହି ।
ସେଠାରୁ ଖସିଣ ପଡ଼ିଲି ଆସି ଏଥ
ପୁତ୍ର ଦାରା ମୋର ହୋଇଲେ ଅନାଥ ।
ଘଡ଼ିକ ବେଳଯାଏ ପଡ଼ିଲି ପର୍ବତେ
ଋଷିମାନେ ଆସି ଦେଖିଲେ ମୋତେ ଏଥେ ।
ପ୍ରସନ୍ନ ହୋଇଣ ବୋଇଲେ ତପୋବନ୍ତେ
ସୀତାଙ୍କୁ ଖୋଜିବାକୁ ଆସିବେ ରାମଦୂତେ ।
ସେମାନେ ଯେତେବେଳେ ଭେଟିବେକ ତୋତେ
ସେବେଳେ ତୁ ତାହାକୁ କହିବୁ ନିଅ ମୋତେ ।
ସେମାନଙ୍କୁ ରାବଣ କଥା ତୁ କହିବୁ
ପକ୍ଷୀ କଅଁଳିବ ପୂର୍ବମତ ହେବୁ ।
ତେବେ ସେ ଦୂତମାନେ ଲଙ୍କାଗଡ଼ ଯିବେ
ସୀତାଙ୍କୁ ଠାବକରି ରାମଙ୍କୁ କହିବେ ।
ତେବେ ସେ ଶ୍ରୀରାମ କରିବେ କଟକାଇ
ତେବେ ସେ ମରିବ ଲଙ୍କାଗଡ଼ ସାଇଁ ।
ଅଙ୍ଗଦ ବୋଇଲା ଏବେ ସମ୍ପାତି ତୁହି ସୁଣ
ଜଟାୟୁଷ ବାପୁଡ଼ା କିସ କଲା ପୁଣ ।
ସମ୍ପାତି ବୋଇଲା ଶୁଣ ସେହୁ ରସ
ତେଜ ସହି ନ ପାରି ପଡ଼ିଲା ଜଟାୟୁଷ ।
ଅନ୍ତରାଳ ହୋଇଣ ପଡ଼ିଲା ସେ ଯାଇ
ଦଣ୍ଡକା ଅରଣ୍ୟ ପଞ୍ଚବଟୀରେ ରହି ।
ଲଜ୍ୟାରେ କୌଣସି ପୁରକୁ ନ ଗଲା
ପଞ୍ଚବଟୀ ବନରେ ଲୁଚିଣ ରହିଲା ।
ପିଆଶାଳ ଗଛ ଉପରେ ବସାକରି
ଯତୀମାନଙ୍କ ଗତାଗତ ସେଠାରେ ଦେଖେ ହେରି ।
ଏମନ୍ତ ସମୟେ ଶ୍ରୀରାମ ଆସି ହୋଏ
ଜଟାୟୁଷ ଦେଖିଣ ମନରେ ଖୁସି ପାଏ ।
ଈଶ୍ୱର ବୋଇଲେ ଶୁଣଗୋ ଭଗବତୀ
ଦୁତେ ଯେ ଶୁଣନ୍ତି ସମ୍ପାତି କହନ୍ତି ।
ଗରୁଡ଼ର ପୁତ୍ର କହେ ମୋହରଠାରୁ ଶୁଣ
ସେ ରାବଣ ଅଟଇ ବରିଷ୍ଠ ଦୈତ୍ୟ ଜାଣ ।
ସେ ମଲେ ସଂସାର ହୋଇବ ମହାସୁଖୀ
ଦେବତାମାନେ ଯାହାକୁ ସୁମରନ୍ତି ବସି ।
ସେ ମଲେ ଦେବତାଏ ବସିବେ ସ୍ୱର୍ଗପୁର
ଏମନ୍ତ ବଚନ ସମ୍ପାତି କହିବାର ।
ଧ୍ୟାନରେ ମୋତେ ଯେ ହୋଇଲା ପୁଣ ଦୃଶ୍ୟ
ନିଶ୍ଚୟେ ମାରିବେ ତାକୁ ପୀତବାସ ।
ହନୁମନ୍ତ ବୋଇଲା ଶୁଣ ହେ ସମ୍ପାତି
ଦେବଗଣେ ଯାହାଙ୍କୁ ଭୟ ଯେ କରନ୍ତି ।
ଶଙ୍କର ଦଇବ ଦଶଦିଗପାଳ
ଏମାନେ ଖଟନ୍ତି ଯାହାର ପାଦତଳ ।
ସହସ୍ରାର୍ଜୁନ ଯେ ପର୍ଶୁରାମ ବୀର
ବାଳୀ ନୃପତି ଯେ ସଂସାର ସାର ଧାର ।
ଏମାନେ ଯାହାକୁ ନ ପାରନ୍ତି ମାରି
ତୋର କେତେ ବଳ ମାରନ୍ତୁ ତାକୁ ଧରି ।

ଭାଇ ଯେ ଜଟାୟୁଷ ରାମଙ୍କୁ କହିଥିଲେ
ଯେ ଆସିବ ତାହାକୁ ମାରିବ ବୋଇଲେ ।
କାଳେ ତାର ଡେଣା କାଟିଲା ରାବଣ
ଶ୍ରୀରାମର ଦୟାରେ ଲଭିଲା ସ୍ୱର୍ଗସ୍ଥାନ ।
ସୀତା ଗଲା ବେଳରେ କିସ ଯେ ସମ୍ବାଦ
ତାହା ଆମ୍ଭଙ୍କୁ କହ ଗରୁଡ଼ର ସୁତ ।
ସମ୍ପାତି ବୋଇଲା ଶୁଣହେ ରାମଦୂତ
ଗଲାବେଳେ ଯାହା ମୁଁ ଦେଖିଛି ସଙ୍କେତ ।
ରଥର ପତାକା ମୋତେ ଦିଶୁଥିଲା ସତ
ସୁବର୍ଣ୍ଣ କଳସ ଚାମର ସହିତ ।
ତାହା ଦେଖି ମୋର ମନ ଆକୁଳିତ
ନୋହିଲେ କି ଛାଡ଼ି ମୁଁ ଦେଇଥାନ୍ତି ରଥ ।
ନିଜ ଶରୀର ଯେ ନ ଚଳଇ ପୁଣ
ମଧ୍ୟାହ୍ନ ସମୟରେ ଜାନକୀ ନେଲା ଜାଣ ।
ଗଗନ ମାର୍ଗରେ ସେ ରଥ ବାହି ନେଲା
ରାମ ରାମ ବାଣୀ ସେ ରଥରୁ ଶୁଭୁଥିଲା ।
ଏଠାକୁ ଶତେ ଯୁଣ ସମୁଦ୍ର ଭିତରେ
ଲଙ୍କାଗଡ଼ ଅଟଇ ଶୁଣହେ କପିବୀରେ ।
ଅଶୋକ ବନରେ ଥୋଇଲା ସୀତା ନେଇ
ସହସ୍ରେ ଅସୁରୀ ଅଛଇ ଜଗାଇ ।
ସୀତା ଅଟେ କମଳା ସ୍ୱୟଂ କମଳିନୀ
ଛୁଇଁବାକୁ ଭାର୍ଜନ ନୁହଇ ବିଂଶପାଣି ।
ଦେବତାଙ୍କ କୂଟରେ ତାହାକୁ ଘେନିଗଲା
ରାବଣ ମରିବ ଦୁଇମାସ ରହିଲା ।
ଯେବେ ତୁମ୍ଭେ ଶତେଯୁଣ ଉଡ଼ି ଯାଇପାର
ତେବେ ସେ କାର୍ଯ୍ୟ ଯେ କରିବ ଶ୍ରୀରାମର ।
ଏସନକ ବଚନ କହିଲା ସେ ଖଗ
ପୋଡ଼ିଥିବା ପକ୍ଷୀ ତାର କଅଁଳିଲା ବେଗ ।
ଶ୍ରୀରାମଙ୍କ ଦୂତକୁ ଦେଖିଲି ମୁଁ ଆଜ
ହେଉ ମୋର ଅନେକ ପ୍ରକାରେ ଶୁଭକାର୍ଯ୍ୟ ।
ଭାଇ ମଲା ଯେ ଜାଣିଲି ମୁହିଁ ଏବେ
ଯାହା ସେ ଲେଖନ କରିଛି ଦଇବେ ।
ଏସନକ ସମୟରେ ହୋଇଲା ଡେଣା ତାର
ଅଙ୍ଗଦ ସହିତରେ ଥିଲେ ଆଠବୀର ।
ଗରୁଡ଼ ପୁତ୍ର ଚରଣେ ସମସ୍ତେ ଓଳଗିଲେ
କୃତାଞ୍ଜଳି ହୋଇଣ ତାହାଙ୍କୁ କହିଲେ ।
ଆମ୍ଭଙ୍କୁ ଦୟା ଏବେ କର ଖଗପତି
ଶ୍ରୀରାମଙ୍କ କାର୍ଯ୍ୟ ଆମ୍ଭେ କରିବୁଁ ଯେପରିଟି ।
ସିନ୍ଧୁ ଲଙ୍ଘି କେମନ୍ତେ ଆମ୍ଭେ ଯାଉ ଲଙ୍କା
ଏ କଥା ଶୁଣିଣ ଆମ୍ଭଙ୍କୁ ଲାଗେ ଶଙ୍କା ।

ତୁ ଏବେ ସମ୍ପାତି ଆମ୍ଭଙ୍କୁ ବୁଦ୍ଧି କହ
ସମ୍ପାତି ବୋଇଲା ଆସୁ ମୋର ପୁଅ ।
ଏତେ ବୋଲି ସମ୍ପାତି ଧ୍ୟାନ କରି ବସି
ଜାଣିଣ ହିମବନ୍ତ ପର୍ବତୁ ପୁତ୍ର ଆସି ।
ପଶ୍ଚିମ ପବନ ଘାଏ କମ୍ପଇ ଜଗତ
ଜାଣି ପଟାନ୍ତର ଦ୍ୟୁତି ବଇନେତ୍ର ।
ପିତାର ଚରଣେ କଲାକ ନମସ୍କାର
ଆଗେ ଉଭା ହୋଇ ପୁତ୍ର ଯୋଡ଼େ କର ।
ସମ୍ପାତି ବୋଇଲା ଶୁଣରେ ମୋର ସୁତ
ଏ କପିମାନେ ଅଟନ୍ତି ଶ୍ରୀରାମଙ୍କ ଦୂତ ।
ସୀତା ହରିନେଲା ଲଙ୍କାର ରାବଣ
ସେ କଥା ଶୁଣି ସୁଗ୍ରୀ ପେଶିଛି ଚାର ଜାଣ ।
ମୋତେ ଯେ ସୁଦୟା କଲେ ସେହୁ ଦେଖି
ଏହାର ସୁଦୟାରେ କଅଁଳିଲା ପକ୍ଷୀ ।
ବଣା ହୋଇଣ ଏ ଯେ ଏଥିରେ ଆସି ହେଲେ
ତିନିମାସ ଧୀରାବତୀ ବିମ୍ବରେ ଏ ଥିଲେ ।
ମୋତେ ଜଣା ପୁଣ ନଥିଲାରେ ପୁତ
ଏ ଗିରିରେ ଏହୁ ଆସି ହୋଇଲେ ଉପଗତ ।
ରାମ ନାମ ସୁମରଣା କଲେ ଏହୁ ପୁଣ
ଖୁଡ଼ୁତା ମରିବାର କହିଲେ ଏ ଜାଣ ।
ତୁ ଏବେ ସୁପାରୁଶ ମୋହର ବୋଲ କର
ଏହାକୁ ବସାଅ ବାବୁ ତୁ ପିଠି ଉପର ।
ଲଙ୍କାଗଡ଼ ଦେଖାଅ ଶ୍ରୀରାମର ଚାର
ଶୁଣିଣ ସୁପାରୁଶ କହଇ ଉତ୍ତର ।
ଯେବେ ତୁ ବୋଲିବୁ ମୁଁ ଘେନିଣ ଯିବି ଲଙ୍କା
ସମ୍ପାତି ବୋଇଲା ଏ କଥା ଅଟେ ଶଙ୍କା ।
ତୁ ଯେବେ ନେଇଯିବୁ ଏହାଙ୍କ କିସ ବଳ
କେମନ୍ତେ ଦୈତ୍ୟବଳ ମାରିବେ ରଘୁବାଳ ।
ଶୁଣିଣ ପାରୁଶ ହୋଇଲା ହରଷ
ଦେଖନ୍ତୁ ଲଙ୍କାଗଡ଼ ସୁବର୍ଣ୍ଣମୟ ଦେଶ ।
ସୀତାର ସହିତେ ଦେଖିବ ମଧୁବନ
ପାତ୍ରଙ୍କର ଉଆସ ରାଜା ନବର ପୁଣ ।
ମେଘନାଦ ପାଚେରୀ ଦେଉଳ ଅଟ୍ଟାଳି
ଭିନ୍ନ ଭିନ୍ନ ଦିଶଇ ଦୈତ୍ୟଙ୍କର ପୁରୀ ।
ଅଙ୍ଗଦ ବୋଇଲା ଏ କଥା ନ ଯୋଗାଇ
ପିଠିରେ ବସି ଦେଖିଲେ କେବଣ ଯଶ ପାଇ ।
ଲଙ୍କା ଦେଖିଲେ କି ହେବ ଆମ୍ଭ କାର୍ଯ୍ୟ
ତୋର ନିଜ ପୁରକୁ ଚଳହୋ ପକ୍ଷୀରାଜ ।
ଶତେ ଯୁଣ ସମୁଦ୍ର ତରିବୁ କେମନ୍ତେ
ତେବେ କାର୍ଯ୍ୟ କରିବୁଁ ଶ୍ରୀରାମର ହିତେ ।

କଟକ ଦେଖିଲେ ହୋଇବ କିସ କାର୍ଯ୍ୟ
ଯାଅହେ ସମ୍ପାତି ବେଗେ ତୁମ୍ଭ ସ୍ଥାନେ ନିଜ ।
ଧର୍ମ ଦେବତା ଆମ୍ଭଙ୍କୁ କରିବ ଯେବେ ପାର
ତେବେ ଲଙ୍କାକୁ ଯିବୁ କିଛିହିଁ ନ ବିଚାର ।
ହନୁମନ୍ତ ବୋଇଲେ କିମ୍ପା ଭାଙ୍ଗ ତାକୁ
ପିଠିରେ ବସାଇ ଲଙ୍କା ଦେଖାଉ ଆମ୍ଭଙ୍କୁ ।
ଶୁଣିଣ ପାରୁଷ ପିଠିରେ ବସାଇଲା
କୋଡ଼ିଏ ଯୁଣ ଉଚ୍ଚକୁ ବେଗେ ସେ ଉଠିଗଲା ।
ଲଙ୍କାଗଡ଼ ସୀମା ଯେ ଦେଖାଇଲା ତାକୁ
ମଧୁବନ ତୋଟା ଯେ ଅଶୋକ ବିପିନକୁ ।
ରାବଣର ନବର ପାତ୍ରଙ୍କ ଉଆସ
ଭିନ୍ନ ଭିନ୍ନ କରିଣ ଚିହ୍ନାଏ ପାରୁଷ ।
ମଣ୍ଡପ ଅଟ୍ଟାଳିକା ଦେଉଳ ପନ୍ତି ପନ୍ତି
ସହସ୍ର କୋଶ ଲଙ୍କା ସୁବର୍ଣ୍ଣର ଜ୍ୟୋତି ।
ସମସ୍ତଙ୍କ ଘର ନବ ନବ ଯେ ପାଚେରୀ
ଦେଖିଣ ଆଠବୀର ମନରେ ବିଚାର ।
ବିଭୀଷଣ ଘର କୁମ୍ଭକର୍ଣ୍ଣର ନବର
ଇନ୍ଦ୍ରଜିତ ନବର ଚାରିଦିଗକୁ ଚାରି ଦ୍ୱାର ।
ସମସ୍ତଙ୍କ ଘର ନବର ପାଚେରୀ
ଦେଖିଣ ଅଷ୍ଟବୀର ମନରେ ବିଚାରି ।
ପିଠିରେ ଆରୋହିଣ ସକଳ ଦେଖିଲେ
ପାରୁଷକୁ ବହିଣ ତଳକୁ ଆସିଲେ ।
ଓହ୍ଲାଇଲେକ ସର୍ବ ବୀରମଣି
ସମ୍ପାତିକୁ କହିଲେ ଶୁଣ ଆମ୍ଭ ବାଣୀ ।
ପୁତ୍ରକୁ ଘେନିଣ ଯାଅ ନିଜପୁର
ମାତା ପତ୍ନୀ ଘେନିଣ ନିଶ୍ଚିନ୍ତେ ଘର କର ।
ଶ୍ରୀରାମ ଯେବେରେ ଆସିବେ ଲଙ୍କାଗଡ଼
ପିତାକୁ ଦେଖିବାରେ ଶ୍ରଦ୍ଧା ଯେବେ ତୋର ।
ଶ୍ରୀରାମ ଦର୍ଶନରେ ଗରୁଡ଼ ଆସିବ
ବେଳେକ ଆସି ପୁଣି ଦର୍ଶନ କରିଯିବ ।
ଏହା ଶୁଣି ସମ୍ପାତି ହରଷ ମନ ହେଲା
ପିତାକୁ ଦର୍ଶନ କରିବ ବୋଇଲା ।
ଅଷ୍ଟବୀରଙ୍କୁ ବୀର ସୁକଲ୍ୟାଣ କଲା
ସୀତାଙ୍କୁ ଠାବ କରି କହି ବୋଇଲା ।
ଅଷ୍ଟବୀରକୁ ପୁତ୍ର ନମସ୍କାର କରି
ପିତାକୁ ଘେନିଣ ଗଲା ସେ ହେମଗିରି ।
ପାରୁଷ ସମ୍ପାତି ଚଳିଲେ ହରଷ
ହେମବନ୍ତ ପର୍ବତରେ ହୋଇଲେ ପ୍ରବେଶ ।
ଅଷ୍ଟ ସେନାପତି ସାଏରକୁ ନେଇଛନ୍ତି
ଶୁଣନ୍ତି ପାର୍ବତୀ ଈଶ୍ୱର କହନ୍ତି ।
ଈଶ୍ୱର କହିବାରୁ ପାର୍ବତୀ ଦେବୀ ତୋଷ
ବୋଇଲେ ଏଠାରୁ କିଷ୍କିନ୍ଧ୍ୟା କାଣ୍ଡ ଶେଷ ।
ନଣେନୀ ଦନ୍ୟା ଋଷି ରାମ ଶରେ ପୁଣି
ମୁରାଟ କର ସ୍ୱରେ କଲାକ ଏହୁ ବାଣୀ ।
କିଷ୍କିନ୍ଧ୍ୟାକାଣ୍ଡ ଯେ ସୁଧାରସ ବାଣୀ
ଆନନ୍ଦେ ବଳରାମ ଦାସ ଏହା ଭଣି ।
କିଷ୍କିନ୍ଧ୍ୟା କାଣ୍ଡ ଯେ ହୋଇଲା ସମାପ୍ତ
ସାଗର କୂଳରେ ରହିଲେ ରାମ ଦୂତ ।
ମାଲ୍ୟବନ୍ତ ଗିରିରେ ରାମ ଲକ୍ଷ୍ମଣ ଅଛନ୍ତି
ମଲ୍ଲ ମହାମଲ୍ଲ ଯେ ସଙ୍ଗରେ ସେନାପତି ।
ବାଣରାଶିଠାରୁ ମାଲ୍ୟବନ୍ତ ଯାଏ
ମର୍କଟ ଭଲ୍ଲୁକ ଅଟନ୍ତି ଅପ୍ରମେୟେ ।
ଦକ୍ଷିଣ ଦିଗର କଥା ସର୍ବେ ଭାଳି
କଥାର ଚହଳରେ ଆକାଶ ଉଛୁଳି ।
ଈଶ୍ୱର ବୋଇଲେ ପାର୍ବତୀ ଗୋ ଶୁଣ
ଶ୍ରୀରାମ କଥା ଶୁଣି ସନ୍ତୋଷ ଯେ ମନ ।
କିଷ୍କିନ୍ଧ୍ୟାକାଣ୍ଡ ସମ୍ପୂର୍ଣ୍ଣ ହେଲା ଏହି ଭାବେ
ଆଠସହସ୍ର ଦୁଇଶଛପଦରେ ଏବେ ।





## ବିଜ୍ଞାପନ

ନିମ୍ନଲିଖିତ ପୁସ୍ତକ ସବୁ ସରସ କାଗଜରେ ସୁନ୍ଦର ଛାପା ହୋଇ ବିକ୍ରୟ ନିମିତ୍ତ ଗଚ୍ଛିତ ଅଛି । କ୍ରୟ କରିବା ପାଇଁ ଆପଣଙ୍କ ନିକଟସ୍ଥ ପୁସ୍ତକ ବ୍ୟବସାୟୀଙ୍କ ସହିତ ଯୋଗାଯୋଗ କରନ୍ତୁ । ଏଥିରେ ସ୍ୱତନ୍ତ୍ର କମିଶନ ବ୍ୟବସ୍ଥା ଅଛି ।

- ତୁଳସୀ ଦାସଙ୍କ କୃତ ରାମଚରିତ ମାନସ ବା ତୁଳସୀ ରାମାୟଣ
- ରଘୁନାଥ କୀର୍ତ୍ତନ ବା ମାଠ ରାମାୟଣ
- ଭାଗବତ ପ୍ରସାଦ ଦାନ୍ ରାମାୟଣ
- ଆଦର୍ଶ ତୁଳସୀ ରାମାୟଣ
- କ୍ଷେତ୍ର ମୋହନ ରାମାୟଣ
- ଚନ୍ଦ୍ର ମୋହନ ରାମାୟଣ
- ଆନନ୍ଦ ରାମାୟଣ
- ବିଲଙ୍କା ରାମାୟଣ
- ଆଧାତ୍ମ୍ୟ ରାମାୟଣ
- ଟୀକା ରାମାୟଣ
- ରାବଣ ରାମାୟଣ
- ବିଚିତ୍ର ରାମାୟଣ
- ଅଦ୍ଭୁତ ରାମାୟଣ

ପ୍ରକାଶକ :
ଧର୍ମଗ୍ରନ୍ଥ ଷ୍ଟୋର
ଅଲିଶା ବଜାର, କଟକ - ୨
ଫୋନ୍ : (୦୬୭୧) ୨୬୦୮୨୯୬